ଭକ୍ତକବି ଅଚ୍ୟୁତାନନ୍ଦ ଦାସଙ୍କ କୃତ

# ସପ୍ତଖଣ୍ଡ ହରିବଂଶ

## ପଞ୍ଚମ ଖଣ୍ଡ

( ନୂତନ ମୁଦ୍ରଣ )

ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର



ପ୍ରାପ୍ତିସ୍ଥାନ : ଧର୍ମଗ୍ରନ୍ଥ ଷ୍ଟୋର
ପ୍ରୋପ୍ରାଇଟର : ଶ୍ରୀ ଗଦାଧର ସାହୁ
ଅଲିଶା ବଜାର : କଟକ-୨
ଫୋନ୍ ନଂ-୨୫୨୨୬

ମୂଲ୍ୟ— ଟ ୧୨-୦୦ ବାରଟଙ୍କା ମାତ୍ର

**ହରିବଂଶ ପଞ୍ଚମ ଖଣ୍ଡର**

# ସୂଚିପତ୍ର



| ବିଷୟ | ପୃଷ୍ଠାଙ୍କ |
|---|---|

| ବିଷୟ | ପୃଷ୍ଠା |
| --- | --- |
| ଜରାସନ୍ଧର ମୋହ ଏବଂ ବଳଦେବଙ୍କର ଗୋପପୁରେ ପ୍ରବେଶ | ୧୩୭ |
| କୃଷ୍ଣଙ୍କର ମଥୁରାପୁରେ ପ୍ରବେଶ | ୧୪୧ |
| ଜରାସନ୍ଧର ଅଷ୍ଟାଦଶବାର ଧାଡ଼ | ୧୪୩ |
| ଉଗ୍ରସେନ ନିକଟକୁ କାଳଦମନର ଚିଠାଉ | ୧୪୭ |
| କୃଷ୍ଣଙ୍କର ଦ୍ୱାରକାଗଡ଼ ନିର୍ମାଣ ଓ ଦ୍ୱାରକାରେ ଯାଦବମାନଙ୍କର ଅବସ୍ଥିତି | ୧୫୨ |
| ମୁଚୁକୁନ୍ଦ କୋପାନଳରେ କାଳଦମନ ଭସ୍ମ | ୧୫୫ |
| ମୁଚୁକୁନ୍ଦ ରାଜାଙ୍କର ପୂର୍ବ ବୃତ୍ତାନ୍ତ ଓ କୃଷ୍ଣଙ୍କର ମଥୁରାପୁର ଯାତ୍ରାନ୍ତର ଦ୍ୱାରକା ପ୍ରବେଶ | ୧୬୨ |
| ଅର୍ଜ୍ଜୁନଙ୍କ ସେନ ସାତ୍ୟକିର ବାରୁଣାବନ୍ତ ଗମନ ଓ ଗୋପନଗରୁ ସୁଭଦ୍ରା ଆନୟନ | ୧୬୮ |
| ମଥୁରାରେ ସୁରଥର ଅଭିଷେକ | ୧୭୫ |
| ଦ୍ୱାରକାପୁରୀ ବର୍ଣ୍ଣନ ଓ ଦେବତାମାନଙ୍କର ଶ୍ରୀକୃଷ୍ଣଙ୍କୁ ଦେଖିବାପାଇଁ ଦ୍ୱାରକାକୁ ଆଗମନ | ୧୭୭ |

ହରିବଂଶ ପଞ୍ଚମ ଖଣ୍ଡର ସୂଚିପତ୍ର ସମାପ୍ତ



# ସପ୍ତଖଣ୍ଡ ହରିବଂଶ

## ପଞ୍ଚମ ଖଣ୍ଡ

—※—

ଯଂ ସର୍ବଦେବାଃ କଥୟନ୍ତି ସାରଂ, ବ୍ରହ୍ମା ନ ଜାନାତି କମସ୍ୟ ପାରଂ ।
ଅନେକବାରଂ ଜଳ ନିର୍ବିକାରଂ, ବନ୍ଦେ ଜଗନ୍ନାଥକ ସୂତ୍ରଧାରଂ ।

ନିଗମ କଳ୍ପତରୋର୍ଗଳିତଂ ଫଳଂ ଶୁକମୁଖାଦମୃତଦ୍ରବ ସଂଯୁତଂ
ପିବତ ରାମାମୃତୋ ରସମାଳଂ ମୁହୁରହୋ ରସିକା ଭୁବି ଭାବୁକାଃ ॥

ବେଦେ ରାମାୟଣେ ଚୈବ ପୁରାଣେ ଭାରତେ ତଥା
ଆଦ୍ୟୋପାନ୍ତେ ଚ ମଧ୍ୟେ ଚ ହରିଃ ସର୍ବତ୍ର ଗୀୟତେ ।

ଅଣନିଚିତସୁଧାରଂ ଯସ୍ୟ ଚକ୍ରଂ ସୁଦୃଷ୍ଟ—
ମଣିକନକ ଖଚନୈଃ କୁଣ୍ଡଳ ଯସ୍ୟ କର୍ଣ୍ଣେ
ଭ୍ରମରଶତସହସ୍ରୈଃ ସେବିତା ଯସ୍ୟ ମାଳା,
ଅସୁରକୁଳନିହନ୍ତା ପ୍ରୀୟତାଂ ବାସୁଦେବଃ ॥



### ଜରାସନ୍ଧ ଧାଡ଼ି

ଏଥୁ ଅନ୍ତେ ପରୀକ୍ଷିତ ନାମେ ମହାରାଜା
ଶୁକମୁନି ଚରଣରେ କରି ଦିବ୍ୟ ପୂଜା ।
ବୋଇଲେ ହେ ମୁନି ତୁମ୍ଭେ ସୁପ୍ରସନ୍ନ ହୋଇ
ଚତୁର୍ଥ ଖଣ୍ଡ ଚରିତ କହିଲ ବୁଝାଇ ।
ତବ ମୁଖୁଁ ଶୁଣିକରି ହରିଗୁଣ ଗାଥା
କୃତାର୍ଥ ହୋଇଲି ପୂତ ହେଲା ମୋର ଆତ୍ମା
ଆବର ସୁଦୟା ମୋତେ କର ବ୍ୟାସସୁତ
ସଂକ୍ଷେପି କହିବା ଧାଡ଼ି ଖଣ୍ଡର ଚରିତ
ହେଥି ଯେ ପ୍ରତ୍ୟେକ କଂସରାଜାର ବନିତା
ପତି ପୁତ୍ର ମରଣରେ ପାଇ ଘୋର ବ୍ୟଥା ।
ନିଜ ପିତା ଜରାସନ୍ଧ ଛାମୁରେ ମିଳିଲେ
ସକଳରେ କାନ୍ଦି ନିଜେ ଦୁଃଖ ଜଣାଇଲେ ।
ଶୁଣି ଜରାସନ୍ଧ ରାଜା କଲେ କି ବିଚାର
ଏକଥା ବିସ୍ତାରି ମୋତେ କହ ମୁନିବର ।
ଶୁକ ବୋଲନ୍ତି ଯେ ଶୁଣ ଅରଜୁନ ନାତି
ପବିତ୍ର ଏ ଗଙ୍ଗାଜଳ ଶ୍ରୀହରି କୀରତି
ନିଜ ବେନି ଦୁହିତାଙ୍କ ପତି ପୁତ୍ର ବଧ
ଶୁଣି ମହା କୋପ କଲା ରାଜା ଜରାସନ୍ଧ ।

ପ୍ରତ୍ୟକ୍ଷରେ ଦେଖି ନନ୍ଦ ସୁତାଙ୍କ ସକଳ
କାଳସର୍ପ ପ୍ରାୟେ ଗର୍ଜି ହେଲା ଅନ୍ତରାଳ ।
ଅଧରେ ଅଧର ଚାପେ ରଟମଟ ପାଟି
କ୍ରୋଧଭରେ ବେନି ଚକ୍ଷୁ ଦିଅଇ ଭରାଟି ।
ନୟନ ଘୂରାଇ କୁମ୍ଭକାର ଚକ୍ରପ୍ରାୟେ
ଜଳ୍ପଇ ରୋମାବଳି ପୁଲକଇ କାୟେ ।
ପୁଣ ପୁଣ ପ୍ରତିଜ୍ଞା ଯେ କରେ ଅପ୍ରମାଣ
ଭାଙ୍ଗିବି ମଥୁରାପୁର କରି ରଣଭଣ ।
ଉଗ୍ରସେନ ଆଦି କରି ସମସ୍ତ ମାରିବି
ଜୁଆଇଁ ଛଳେ ଦୁଷ୍ଟତା ମାନ ଉଛେଦିବି ।
ଉପ୍ରୋଧ ମୁଁ କରିଥିଲି ସିନା ବନ୍ଧୁ ହେତେ
ଛପନକୋଟି ଯାଦବ ସଂହାରିବି ରଣେ ।
ଯେବେ ଉଗ୍ରସେନ ରାମକୃଷ୍ଣ ଏଡ଼ିଦେବ
ତାହାର ଆମର ବନ୍ଧୁ ପଣ ରହିଥିବ ।
ନୋହିଲେ ଯାଦବକୁଳ ସମୂଳେ ସଂହାରି
ମଥୁରାରେ ବସାଇବି ଆନ ଦଣ୍ଡଧାରୀ ।
ଏମନ୍ତ ବୋଲିଣ କ୍ରୋଧେ ହୋଇ ଘୋରଚଣ୍ଡ
ମନ୍ତ୍ରୀଙ୍କୁ ବୋଲଇ ସାଜ ଆଣ ସମଦଣ୍ଡ ।
ରାଜା ଆଜ୍ଞା ଶୁଣି ବେଗେ ମନ୍ତ୍ରୀଗଣ ଯାଇ
ଦଣ୍ଡ ସଜାଇଲେ ଦାଣ୍ଡେ ଢମକ ବଜାଇ ।
ହାତୀ ରଥୀ ପଦାତି ଯେ ଅଶ୍ୱ ଅପ୍ରମିତ
ବୀର ମହାବୀର ଯୋଦ୍ଧା ପାବକ ରାଉତ ।
ଏକ ଏକକରି ତାହା କେ କହିବ ଗଣି
ଜରାସନ୍ଧି ଅଙ୍ଗବଳ ସତାଇଶ କ୍ଷୌଣୀ ।
ଯେ ଯାହାର ଶସ୍ତ୍ର ଧରି ହେଲେ ଆଗୁସାର
ଛୟାଶୋଇ ସହସ୍ର ରାଜା ବନ୍ଦୀଘରେ ତାର ।
ଏକ ଏକ ରାଜାଙ୍କର ଲକ୍ଷକୋଟି ବଳ
ଚଳନ୍ତେଣ ବସୁମତୀ ହେଲା ଟଳମଳ ।
ପଞ୍ଚାଶ ସହସ୍ର ରାଜା ଚଳନ୍ତି ଆଗରେ
ପଞ୍ଚାଶ ସହସ୍ର ରାଜା ଯାନ୍ତି ପଛୁଆରେ ।
ଏଗାର ସହସ୍ର ରାଜା ଦକ୍ଷିଣଭାଗେ ଯାନ୍ତି
ବାମଭାଗେ ଦଶସହସ୍ର ଗମନ କରନ୍ତି
ରାଜାମାନଙ୍କର ଯେତେ ଚତୁରଙ୍ଗ ବଳ
ସେ ଯାହା ସଙ୍ଗରେ ହୋଇ ଚଳନ୍ତି ସକଳ ।
ରଥର ଉପରେ ରଥ ହାତୀ ପରେ ହାତୀ
ପଦାତି ଉପରେ ଅଶ୍ୱ ମାଡ଼ି ଚଳଯାନ୍ତି

ମସ୍ତକେ ଟୋପର ପାଗ ଅଙ୍ଗେ ବଜ୍ରସେହ୍ଲା
ରଥଧ୍ୱଜ ମାନଙ୍କରେ ଉଡ଼େ ବୀର ବାନା ।
କୋଦଣ୍ଡ କାଣ୍ଡ କମାଣ ଶୂଳ ଖଣ୍ଡା ଛୁରି
ଝିଲଟଙ୍କ ଫରିଦ ଯେ କୁନ୍ତ ଯଷ୍ଟି ତୁସି ।
ଜାଲପାଶ ଚର୍ମପାଶ ଯମଦଣ୍ଡ କାତି
କୁଠାର ପରଶୁ ଗଦା ମୁଦ୍ଗର ଶକତି ।
ଏମନ୍ତେ ଆୟୁଧମାନ ଘେନି ଯେ ଯାହାର
କଷଣି ଛୁରେଣି କରେ କଟିରେ ତୂଣୀର ।
ଏସନକ ସଜ ହୋଇ ସୈନ୍ୟ ଅପ୍ରମିତ
ଆରୋହିଲେ ଯେ ଯାହାର ହାତୀଘୋଡ଼ାରଥ
ସାରଥିଏ ଘୋଡ଼ାବାଗ ଧରି ଛୁଟପିଟି
ପବନୁ ବେଗରେ ରଥ ବାହାନ୍ତି ଚହଟି ।
ଏକକୁ ଆରେକ ରଥ ବଡ଼ବଡ଼ ମଣ୍ଡଣି
ଖମ୍ବେ ଖମ୍ବେ ବସାଇଲ ନାନା ରତ୍ନମଣି ।
ଅପୂର୍ବ କ୍ଷୀନ ବସନ ଶ୍ୱେତ ପୀତ ନୀଳ
କଳସ ଉପରେ ଉଡ଼େ ବଡ଼ବଡ଼ ଚଗଳ ।
ନେତ ପଟମୀ ସିନ୍ଦୁରିଆ ସୁପୀତ ମାଞ୍ଜିଷ୍ଠ
ବସନ୍ତ ଧବଳ ନୀଳ ନାନା ବର୍ଣ୍ଣେ ପାଟ ।
ଉଭା କାଠକୋଣ ଖମ୍ବମାନଙ୍କେ ମଣ୍ଡାଇ
ବିବିଧ କୁସୁମ ହାର ତହିଁରେ ସଜାଇ ।
ରଥ ଆରୋହଣ କରେ ହେଲେ ଆଗୁଆଣି
ଅଙ୍କୁଶ ଘାତରେ ଗଜେ କରନ୍ତି ପଳାଣି ।
ଗଣ୍ଡସ୍ଥଳ ଜରଜର ଗଳେ ମଦଜଳ
ଖଣ୍ଡଗିରି ପ୍ରାୟେ ଦୁହୁଁ ଦଶେ ହାଣ୍ଡଦଳ
ଗଳାରେ ଲମ୍ବଇ ଘଣ୍ଟ କ୍ଷୁଦ୍ର ଘଣ୍ଟି ମାଳା
ପିଠିରେ ସିନ୍ଦୁରିଆ ଶୋହେ ଦନ୍ତେ ସୁନାବଳା
ମଣିମାଣିକ୍ୟ ମୁକୁତା ଲମ୍ବେ ଚଉପାଶେ
ଉଦୟ ପର୍ବତେ ଯେହ୍ନେ ଦିନକର ଦିଶେ ।
ମାହୁନ୍ତେ ଅଙ୍କୁଶେ ଘାତେ କରନ୍ତି ପହଜ
ରଥୀଙ୍କର ଚଉପାଶେ ଆବୋରିଲେ ଗଜ ।
ଛତିଶ ବନ୍ଧାଣେ ଜିତା ରଣରଙ୍ଗା ଯେତେ
ମାହୁନ୍ତଙ୍କୁ ଆବୋରିଲେ ଯାଇ ସେ ରାଉତେ
ବାଗ ବନ୍ଧ ବଳିଯାର ଫରୀ ତରବାରୀ
ମୂଷଳ ପରଶୁ ଝେଲ କୁନ୍ତ ଆଦି କରି ।
ବତିଶ ଆୟୁଧ ଘେନି ଅଶ୍ୱପୃଷ୍ଠେ ଚଢ଼ି
ହସ୍ତୀଙ୍କର ଚଉପାଶେ ରହିଲେ ସେ ବେଢ଼ି ।

ବଳବନ୍ତ ପଦାତିଏ ରଙ୍ଗେ ଆଗୁସାର
କରେ ଅସିପଟ୍ଟ ଢାଲ କୁନ୍ତ ଧନୁଶର ।
ପରଶୁ ମୁଦ୍‌ଗର ଗଦା କାତି ଖଡ୍‌ଗ ଫଳା
ସାମନ୍ତ ପାଇକେ ତେଜ ଦିଶେ ଅନର୍ଗଳ ।
ଅଣ୍ଟାରେ କାଛେଣି ରଙ୍ଗ ପୀତ କଳା ଧଳା
ଚଣ୍ଡିରେ ଲମ୍ବଇ ଘଣ୍ଟି ଘାଗୁଡ଼ିର ମାଳା ।
ଗୁଞ୍ଜିର ମୁଣ୍ଡ ମାଳାରେ ଶୋଭେ କାହା ଶିର
ବାହୁଟି କଙ୍କଣ କରେ ପାଦରେ ନୂପୁର ।
ହଳଦି ଚନ୍ଦନ ଓଳେ ବୋଳି ହୋଇଛନ୍ତି
କେତେ ନିଜ ଅଙ୍ଗେ ରଙ୍ଗ ଆଟି କେ ବିଭୂତି ।
କେ ମସ୍ତକେ ଦେଇଅଛି ଗୋରୋଚନା ଟିକା
କାହା ମୁଣ୍ଡେ ବେଣୀଶୋଭେ କନ୍ଧରେ ପଇତା
କେ ମନ୍ଦାର ପୁଷ୍ପମାଳ ବାନ୍ଧିଅଛି ଜଟେ
ଯମଦାଢ଼ ଖଣ୍ଡା ଶୋଭେ କାହା କଟୀତଟେ
ଚରି ମାର ସିଂହ ନାଦ କରନ୍ତି ପ୍ରମାଦେ
ଚୌଦପୁର ଚମକଇ କଳକଳା ନାଦେ ।
ଛୁଟେଣି କଷଟି ଶବ୍ଦ ଧନୁର ଟଙ୍କାର
ବୀରଙ୍କ ଗର୍ଜ୍ଜନ ଘାତେ କମ୍ପେ ତିନପୁର ।
ଏକ ଯୋଗେ ଚଳଯାନ୍ତି ଚତୁରଙ୍ଗ ବଳ
ସମୁଦ୍ର ଗର୍ଜ୍ଜନ ପ୍ରାୟେ ଶୁଭଇ ଚହଳ ।
ଘୋଡ଼ାଙ୍କର ହେଷାରବ ହାତୀ ଗରଜନ
ରଥୀଙ୍କର ରଥଘୋଷ ଧନୁର ନିଃସ୍ୱନ ।
ବୀରଙ୍କର ସିଂହନାଦ ପଦାତିଙ୍କ ରଢ଼ି
ପ୍ରଳୟ କାଳରେ ଯେହ୍ନେ ମେଘ ଘଡ଼ଘଡ଼ି ।
ବାଜଇ ନିଶାଣ ଢୋଲ ଦମା ବୀରତୁର
ଦୁନ୍ଦୁଭି ଡାଉଣ୍ଡି ବେଣୁ ଘଣ୍ଟା ସପ୍ତସ୍ୱର
ମର୍ଦ୍ଦଳ ଅଧାଟି ଶୃଙ୍ଗ ମୃଦଙ୍ଗ ମହୁରି
ଡିଣ୍ଡିମ ପଟହ ତାଳ ଯୋଡ଼ା ଶଙ୍ଖ ଭେରି ।
ଲକ୍ଷେ କୋଟି ବାଜଣା ଯେ ବାଜେ ଅପ୍ରମିତ
ବାଦ୍ୟନାଦ ଶବ୍ଦରେ ପୂରିଲା ଜଗତ ।
ପାତ୍ରମିତ୍ର ପୁରୋହିତ ମନ୍ତ୍ରୀ ଆଦିକରି
ଖଟଣି ସାମନ୍ତ ଲେଙ୍କା ଖୁଣ୍ଟିଆ ପ୍ରହରୀ ।
ଛତିଶ ନିଯୋଗ ମୂଳେ ବାସ୍ତବ ସେବକ
ରାଜପୁତ୍ର ଅମାତ୍ୟ ଅଛନ୍ତି ଅନେକ ।
ଶୁଣ ହେ ପରୀକ୍ଷ ରାଜା ଶୁକ ଯେ କହନ୍ତି
ସେନା ମଧ୍ୟେ ବିଜେ କଲେ ମଗଧ ନୃପତି ।

ଛୟାଣୋଇ ସହସ୍ର ରାଜା ବନ୍ଦୀ ଥାଇ ଘରେ
ଯେ ଯାହାର ସୈନ୍ୟଦେଇ ଆଇଲେ ସଙ୍ଗରେ ।
ଏକ ଏକ ରାଜାଙ୍କର ଦଶବିଂଶ କ୍ଷୌଣୀ
ଏସନକେ ପ୍ରଭଞ୍ଜଣା ଲକ୍ଷେ ରାଜା ଗଣି ।
ସତାଇଶ କ୍ଷୌଣୀ ଅଙ୍ଗବଳ ତାର ଏକା
ଏ ବିଧିରେ ଯେତେସୈନ୍ୟ କେକରିବ ଲେଖା
କହିବାକୁ ଅସମ୍ଭବ ଶ୍ରୁତି ଅଗୋଚର
ଦୁହିତାଙ୍କ ଛଳେ ଆସେ ମଗଧ ଈଶ୍ୱର ।
ପଞ୍ଚାଶ ଯୋଜନ ମାଡ଼ି ଚଳେ ସମଦଣ୍ଡ
ପାଦଭରେ କମ୍ପମାନ ପୃଥ୍ୱୀ ନବଖଣ୍ଡ ।
ଟଳମଳ ବସୁମତୀ କମ୍ପେ ସପ୍ତଫେଣୀ
ପାଦରେଣୁରେ ଅଦୃଶ୍ୟ ହେଲେ ଦିନମଣି ।
ବନ କନ୍ଦର ପର୍ବତ ମାଡ଼ି ଚଳେ ଥାଟ
ସୁଚମୁନ ଭେଦିବାକୁ ନ ମିଳଇ ବାଟ ।
ଜରାସନ୍ଧ ରାଜା ଆପେ ବୀରବେଶ ହୋଇ
ମଧ୍ୟରେ ବିଜୟ କଲ ରଥେକ ଆରୋହି
ବାଜଇ ବିଜୟ ଶଙ୍ଖ ମର୍ଦ୍ଦଳ ମହୁରି
ଆଗରେ ସେବକେ ଜଳ ଦଧି ମତ୍ସ୍ୟ ଧରି ।
ବ୍ରାହ୍ମଣେ ମଙ୍ଗଳାଷ୍ଟକ ପଢ଼ନ୍ତି ଆଗରେ
ଜ୍ୟୋତିଷେ ଲଗ୍ନ କହନ୍ତି ପାଞ୍ଜି ଦେଇ କରେ
ଭାଟଗଣେ କୀର୍ତ୍ତି ବର୍ଣ୍ଣି କରୁଛନ୍ତି ସ୍ତୁତି
ବେନି ଧାଡ଼ି ପଟୁଆରୀ ଛାମୁରେ ଯୁବତୀ ।
ଏସନ ପ୍ରକାରେ ରାଜା ଶୁଭ ଅନୁକୂଳେ
ମଥୁରାକୁ ଦଣ୍ଡ ବାହେ ନାତିଙ୍କର ଛଳେ ।
ପଞ୍ଚାଶ ସହସ୍ର ରାଜା ଆଗୁଆଣି ସେନା
ଯେ ଯାହାର ଅଙ୍ଗବଳ ଦେଇ ଅକଳନା ।
ଆବର ପଞ୍ଚାଶ ସହସ୍ର ନୃପତି ପଛରେ
ଆସନ୍ତି ଅସଂଖ୍ୟ ସେନା ଦେଇ ସଙ୍ଗତରେ ।
ଏଗାର ସହସ୍ର ନୃପ ଦକ୍ଷଭାଗେ ଛନ୍ତି
ବାମଭାଗେ ଦଶସହସ୍ର ନୃପତି ଚଳନ୍ତି ।
ଆପଣାର ଅଙ୍ଗବଳ ସଙ୍ଗତରେ ଦେଇ
ମଧ୍ୟରେ ବିଜୟ ଜରାସନ୍ଧ ନୃପମଣି ।
ଏସନ ସମ୍ଭାରେ ଚଳେ ଚତୁରଙ୍ଗ ବଳ
ପାଦଭରେ ବସୁମତୀ ହୁଏ ଟଳମଳ ।
ମାର ମାର ଧର ଧର ଶବ୍ଦ ଘୋର ଧ୍ୱନି
ବୀରତୁର ଶବ୍ଦରେ କମ୍ପଇ ମେଦିନୀ ।

ବାଟେ ଆସୁ ଆସୁ ହାଟ ପାଟଣା ଉଜାଡ଼ି
ଯହିଁ ତହିଁ ଗୃହଳଯାନ୍ତି ବନଗିରି ମାଡ଼ି ।
ପ୍ରଥମ ଦିବସେ ଥାଟ ଯାନ୍ତେ ପଥ ବାହି
ଭୃଙ୍ଗଭଦ୍ରା ନଦୀତୀରେ ପ୍ରବେଶିଲେ ଯାଇ
ରନ୍ଧନ ଭୋଜନ କରି ଯାମେକ ବଞ୍ଚିଲେ
ପାହାନ୍ତି ପ୍ରଭାତେ ତହୁଁ ପୁଣି ଚଳିଗଲେ ।
ଅଶ୍ୱ ଗଜ ମହାରଥେ ସଇନ ଚଳାଇ
ଯବନଙ୍କୁ ଅଧିକରେ ଗଲେ ପଥ ବାହି ।
କାଶୀଶ୍ୱର ନାମେ କାଶୀ ଦେଶର ନୃପତି
ଜରାସନ୍ଧ ସଙ୍ଗେ ତାର ବାଳକାଳୁ ପ୍ରୀତି ।
ଏକ ରାତ୍ର୍ୟେ ବିଶ୍ରାମ କରି ପୁଣି ଆର ଦିନ
ପ୍ରଭାତେ ସଇନ୍ୟ ସେନା ଚଳିଲେ ବହନ ।
ବିପୁଳ ପର୍ବତେ ବିଭାଣ୍ଡକ ଋଷି ଥିଲେ
ସେ ପର୍ବତ ପୂର୍ବଭାଗେ ସୈନ୍ୟ ଚଳିଗଲେ ।
ଜୈମିନ ଆଶ୍ରମ ଦେଖି ଗନ୍ଧର୍ବ ପର୍ବତେ
ଗାନ୍ଧର୍ବୀ ନଦୀକି ପାର ହୋଇଲେ କଷ୍ଟେତେ ।
ସେ ନଦୀ ଦକ୍ଷିଣେ ଗନ୍ଧମାଦନ ଯେ ବନ
ବେନି ଶତ ଯୋଜନ ସେ ବନ ଆୟତନ ।
ପର୍ବତ ତଳରେ ନଦୀ ବହେ ନିରମଳ
ଫଳ ଫୁଲ ବୃକ୍ଷଙ୍କର ଲୋଟୁଅଛି ଡାଳ ।
ହସ୍ତୀ ଘୋଡ଼ା ରହିବାକୁ ଭଲ ସ୍ଥାନ ଥାଇ
ସୂର୍ଯ୍ୟ ଅସ୍ତମାନେ ଥାଟ ରୁହାଇଲେ ତହିଁ ।
ରନ୍ଧନ ଭୋଜନ ଆଦି କର୍ମ ବଢ଼ାଇଲେ
ରାତ୍ର ପ୍ରହରକେ ଥାଉ ଉଠି ଚଳିଗଲେ ।
ଅନେକ ରାଜ୍ୟ ଉଜାଡ଼ି କଲେ ନାରଖାର
ଭୟ ପାଇ ନୃପେ ଦେଲେ ନାନା ଉପହାର
ଏଥୁ ଅନ୍ତେ ବୃହସ୍ପତି ସୁଧର୍ମା ସଭାରେ
ବସିଣ କହିଲେ ଇନ୍ଦ୍ରଙ୍କ ସମ୍ମୁଖରେ ।
ଜରାସନ୍ଧ ଯାଉଅଛି ଚତୁରଙ୍ଗ ବାହି
ସମର କରିବେ ରାମକୃଷ୍ଣ ବେନି ଭାଇ ।
କୌତୁକେ ଅନେକ ସୈନ୍ୟ ମାରିବେ ଶ୍ରୀହରି
ସମର ଦେଖିବା ଚାଲ ଦେବଗଣେ ଥିରି ।
ବାସବ ବୋଇଲେ ଭଲ ଆମ୍ଭେ ସର୍ବେ ଯିବା
କୃଷ୍ଣ ସଙ୍ଗେ ମିଳି ଜରାସନ୍ଧକୁ ମାରିବା
ଅଙ୍ଗିରା ବୋଇଲେ ତୁମ୍ଭେ ଶୁଣ ଦେବରାଜ
ଜରାସନ୍ଧ ବଞ୍ଚିଥିଲେ ଅଛି କେତେ କାର୍ଯ୍ୟ ।

ଯୁଧିଷ୍ଠିର ରାଜସୂୟ କଲା ପର୍ଯ୍ୟନ୍ତେ
ପାପୀ ଜରାସନ୍ଧ ରାଜା ରହିବ ଜୀବତେ ।
ଭୀମସେନ ହାତେ ତାକୁ ମରାଇ ଶ୍ରୀହରି
ସମସ୍ତ ରାଜାଙ୍କୁ ନେବେ ବନ୍ଦମୁକ୍ତ କରି ।
ତେଣୁ କୃଷ୍ଣ ନ ମାରିବେ ଏହାକୁ ସ୍ୱହସ୍ତେ
ଅଷ୍ଟାଦଶ ବେଳ ମାତ୍ର ଦେବେ ଏହିମତେ ।
ବୃହସ୍ପତି କଥା ଶୁଣି ଇନ୍ଦ୍ର ହେଲେ ତୁନି
ଶୁଣ ପରୀକ୍ଷିତ ବଦନ୍ତି ଶୁକ ମହାମୁନି ।
ଏଥୁଅନନ୍ତରେ ଜରାସନ୍ଧ ନରପତି
ପ୍ରଭାତୁ ସଇନ୍ୟ ସେନା ଚାଲେ ଶୀଘ୍ର ଗତି ।
ଭାରତଖଣ୍ଡରେ ଯେତେ ଜମ୍ବୁଦ୍ୱୀପ ରାଜା
ସକଳେ କରନ୍ତି ଭଲେ ତା ପାଦରେ ପୂଜା
ପାତ୍ରମନ୍ତ୍ରୀ ପୁରୋହିତ ସଇନ ସହିତେ
ପ୍ରାଣ ଭୟେ ପୂଜା କରି ଗୋଡ଼ାନ୍ତି ପଶ୍ଚାତେ
ତିନି ଊଣା ଲକ୍ଷେ ରାଜା ଅସଂଖ୍ୟ ସଇନ
ଦିନକୁ ଚାଲନ୍ତି ବାଟ ପଚିଶ ଯୋଜନ ।
ଏସନ ପ୍ରକାରେ ଯାଇ ସରସ୍ୱତୀ ତୀରେ
ରନ୍ଧନ ଭୋଜନ କରି ରହିଲେ ସେଠାରେ ।
ଅଶ୍ୱ ଗଜ ଆଦି ସର୍ବେ ଜଳପାନ କରି
ଅଚେତାରେ ନିଦ୍ରାଯାଇ ବଞ୍ଚିଲେ ଶର୍ବରୀ ।
ଏଥୁ ଅନନ୍ତରେ ନିଶି ହୁଅନ୍ତେ ପ୍ରଭାତ
ମଥୁରା କଟକେ ଯାଇ ପ୍ରବେଶିଲେ ଦୂତ ।
ଡାକରେ କହିଲେ ମିଳି ଉଗ୍ରସେନ ଆଗେ
ଥାଟ ସାଜ ଜରାସନ୍ଧ ଆସୁଅଛି ବେଗେ ।
ଛୟାଣୋଇ ସହସ୍ର ରାଜା ଅନେକ ସଇନ
ପାତ୍ରମନ୍ତ୍ରୀ ଅମାତ୍ୟ ସଙ୍ଗେ ଅଛି ସେନ ।
ରଥ ଗଜ ପଦାତିକ ଅଶ୍ୱ ଅପ୍ରମିତ
ଏତେ ତେତେ ବୋଲି ସଂଖ୍ୟା ନୁହଇ ଗଣିତ
ଖାଲ ଢିପ ପୋଡ଼ି ହୋଇ ସମ ହେଲା ବାଟ
ଶତେକ ଯୋଜନ ମାଡ଼ି ରହିଛନ୍ତି ଥାଟ ।
ଚତୁରଙ୍ଗ ସେନା ଯେତେ ରଥ ଅଶ୍ୱ ଗଜ
ଘେରିଯାଇ ସମରକୁ ହୋଇଛନ୍ତି ସଜ ।
ସରସ୍ୱତୀ କୂଳେ ଥାଟ ରହିଛନ୍ତି ମାଡ଼ି
ପୁଛିଲେ ବୋଲନ୍ତି ଦେବୁ ମଥୁରାକୁ ଧାଡ଼ି ।
ନିଶ୍ଚୟ ଏ କଥା ଆମ୍ଭେ ଆସିଅଛୁ ଜାଣି
ଶୁଣି ଶଙ୍କା କଲେ ଉଗ୍ରସେନ ନରମଣି ।

ଓସ୍ତ କଣ୍ଠ ତାଲୁ ଶୁଖି କମ୍ପିଲ୍ ଶରୀର
ଭୟେ ଶତ୍ରୁ ଅନ୍ତରାଳ ନ ଆସେ ଉତ୍ତର ।
ଯାଦବେ ବୋଲନ୍ତି ଯାଇ ଏସନ ବାରତା
ବିନାଶ କାଳକୁ ହେଲ୍ ବିପରୀତ କଥା ।
ଏତେ ବଳ ପ୍ରୀତି ଯାର୍କି ଗଲ୍ ଅଳ୍ପକାଳେ
ମଥୁରା କଷ୍ଟରେ ରହି ନ ପାରିବା ତାଳେ ।
କେହୁ ଯେ ବୋଲନ୍ତି ଦ୍ୱଂସ ଡମ୍ଭ ଥିଲେ ବଳି
ବଳ ପ୍ରଣ ସ୍ତୁତକେ କ ମଗଧ ନୃପତି ।
ତିନିଅଙ୍କ ବଳ ପୁଣି ଜାମାତା ମରଣ
ଯାଶୋଉ ଥିଲେ ସେ ଦ୍ୱଂସ ଡମ୍ଭଙ୍କୁ ଦେଖିଣ
ବିରାଗାଳ ଯମବେଶ ନାଥ ଯାନ୍ତି ନାଶ
ଯାଦବଙ୍କଠାରେ ତେଣୁ ବହିଛନ୍ତି ଦ୍ୱେଷ ।
ଥୋକାଏ ବୋଲନ୍ତି କଂସ ଥିଲେ ହିନ୍ତା ଭଲ
ସେ ମରିଯିବାରୁ ହେଲ ମଥୁରାକୁ ସଲ ।
ଜରାସନ୍ଧ କୋପ କଲେ ନ ପାରିବା ରହି
ଛୟାଣୋଇସହ ରାଜା ବନ୍ଦୀ କଲ୍ ସେହି ।
ଉଗ୍ରସେନ ଅବା ତାଙ୍କୁ କେତେକ ମାତର
ସେହିମନ୍ତ ବନ୍ଦୀଘରେ ଭରିବେ ସତ୍ୱର ।
କେହୁ ଯେ ବୋଲନ୍ତି ଏକା ରାମକୃଷ୍ଣ ଥାନ୍ତେ
କ କରିବ ଜରାସନ୍ଧ ଆସି କୋପଚିତ୍ତେ ।
ନାନା ଉପଦ୍ରବ ଖଣ୍ଡି ପାରନ୍ତି ସେ ହରି
ତାଙ୍କ ପ୍ରସାଦରୁ ଆମ୍ଭେ କାହାକୁ ନ ଡରି ।
ଯା ନାମ ସ୍ମରନ୍ତେ କୋଟି ପାପ ହୁଏ କ୍ଷୟ
ଦେହବନ୍ତ ହୋଇଅଛୁ ସେହି ଦେବରାୟ ।
ତାଙ୍କ ମୁଖ ଚାହିଁ ଯେବେ ପ୍ରାଣେ ହେବନାଶ
ପ୍ରତ୍ୟହ ଲଭିବା ଆମ୍ଭେ ବଇକୁଣ୍ଠ ବାସ ।
ଉଚିତ ସଂଗ୍ରାମ ଯେବେ କରିବେ ଶ୍ରୀହରି
କୋଟି ଜରାସନ୍ଧ ହେଲେ ପଳାଇବେ ହାରି ।
କଂସଠାରୁ ବଳୀୟାର ନୁହେ ଜରାସନ୍ଧ
ତେତେ ବଳବନ୍ତ ହୋଇ ପ୍ରାଣେ ହେଲ ବଧ
କଳ୍ପିତ ସମରେ ଅଷ୍ଟମଲ୍ଲ ନାଶଗଲେ
ସେହି ଅଷ୍ଟମଲ୍ଲେ ସ୍ୱାକୁ କ କରି ନ ଥିଲେ
ସେମାନେ ମରିବା ଶୁଣି ଅଇଲ୍ ଏଥକୁ
ମଲ୍ଲରବେ ଚହ୍ନି ନ ପାରଇ ଏ କୃଷ୍ଣଙ୍କୁ ।
ସଙ୍ଗେ ଥିବା ଉଗ୍ରସେନ ଏବେ ନାହିଁ ଗଲ୍
ଏତେକ ମାନ୍ଦକେ ବନ୍ଧୁପଣ ଏ ଛାଡ଼ିଲ୍ ।
ଏମନ୍ତ ଭାଳେଣି ଯେ କରନ୍ତି ଯାଦବେ
ବସନ୍ତ ଉତ୍ସବ ଛାଡ଼ି ଯେ ଯାହାରେ ସର୍ବେ ।
ଯେ ଯାହାର ମନେ ଚିନ୍ତା ଲଗିଲ୍ ସବୁନ୍ତି
ବୋଇଲେ ମଥୁରା ନାଶ ଗଲ୍କ ଏ ଯାନ୍ତି ।
ପରମ ପୁରୁଷେ ରାମକୃଷ୍ଣ ବେନଭାଇ
ଦୁଷ୍ଟଙ୍କୁ ସଂହାରି ରକ୍ଷା କରିବେ ଏ ମହୀ ।
ସେ ପ୍ରଭୁଙ୍କ ପାଦପଦ୍ମେ ରହୁ ମୋର ସେବା
ଅଚ୍ୟୁତ ଦାସ ଲଭିବ ଗତି ମୁକ୍ତି ସେବା ।

—*—

## ଉଗ୍ରସେନ ଓ ଯାଦବମାନଙ୍କୁ ରାମ କୃଷ୍ଣଙ୍କର ଆଶ୍ୱାସନା ଏବଂ ସୈନ୍ୟସଜ୍ଜା

ଏଥୁଅନନ୍ତରେ ପୁଣି ଶୁକ ତପୋଧନ
ପରୀକ୍ଷ ମୁଖକୁ ଚାହିଁ କହିଲେ ଏମନ୍ତ ।
ପବିତ୍ର ବଂଶରେ ଜାତ ତୁମ୍ଭେ ନୃପମଣି
ମୁକତ ହୋଇ ଭାଗ୍ୟେ ଭାଗବତ ଶୁଣି ।
ଯାଦବେ ଏମନ୍ତ ଭାଳ କରୁଥିଲେ ଚିନ୍ତା
ଗୁରୁ ମୁଖୁ ରାମକୃଷ୍ଣ ପାଇଲେ ବାରତା ।
ଅନ୍ତର୍ଯ୍ୟାମୀ ନାରାୟଣ ନ ଜାଣନ୍ତି ତାହା
ଆପେ ନବାରବେ ଆପେ କରିଛନ୍ତି ଯାହା ।
ଗୁରୁ କହିବାରୁ ଶୁଣି ରାମ ଶିରୀପତି
ଉଗ୍ରସେନ ଆଗେ ଆସି ମିଳିଲେ ତ୍ୱରିତ ।
ବସୁଦେବ ଆଦି ସର୍ବେ ବସିଛନ୍ତି ଯହିଁ
ପ୍ରବେଶ ହୋଇଲେ ରାମକୃଷ୍ଣ ବେନଭାଇ ।
ଯେ ଯାହାର ଯଥାମାନ୍ୟ କଲେ ସର୍ବେ ଚହ୍ନି
ରତ୍ନସିଂହାସନେ ବିଜେ କଲେ ଭାଇ ବେନି ।
ଉଗ୍ରସେନ ରାଜା ମୁଖ ଚାହିଁ ପୀତବାସ
ବୋଲନ୍ତି କେ ତାତ କମ୍ପା ହେଉଛ ବିରସ
ଉଗ୍ରସେନ ବୋଲେ ତୁମ୍ଭେ ସର୍ବ ଅନ୍ତର୍ଯ୍ୟାମୀ
ମୁଁ କିସ କହିବ ତୁମ୍ଭେ ନ ଜାଣିକ ସ୍ୱାମୀ ।
ମଗଧ ଦେଶର ନୃପ ସଙ୍କୋଚନ ବଳା
ଜରାସନ୍ଧ ନାମେ ରାଜା ତେଜ ଅନର୍ଗଳା ।
ଜମ୍ବୁଦ୍ୱୀପ ମଣ୍ଡଳେ ଯେ ଅଛନ୍ତି ନୃପବର
ଛୟାଣୋଇ ସହ ରାଜା ବନ୍ଦିଘରେ ତାର ।
ସତାଇଶ ଅକ୍ଷୌହିଣୀ ଅଙ୍କ ବଳ ତାର ଏକା
ଲକ୍ଷେ ନୃପଙ୍କର ସୈନ୍ୟ ଅଛଇ ଅଲେଖା ।

ସଧବା ହୋଇଣ ତାର ବେନ ସୁତା ଗଲେ
ପିତାର ଗୃହରେ ଯାଇ କାନ୍ଦଣା କହିଲେ ।
ଯମୁନାରେ ବୁଡ଼ି ହଂସ ଡିମ୍ଭ ମଲ କଥା
କାନ୍ଦି ଜଣାଇଲେ ତହୁଁ ତା ବେନ ଦୁହିତା ।
ନାତିର ମରଣ ଶୁଣି କ୍ରୋଧେ ହୋଇ ଅନ୍ଧ
ସୈନ୍ୟ ସାଜ ଆସିଅଛି ରାଜା ଜରାସନ୍ଧ ।
ମଥୁରା କଟକ ଭାଙ୍ଗି କରିବ ସେ ଧ୍ୱଂସ
ସକଳ ଯାଦବ ଶୁଣି ପାଉଛନ୍ତି ତ୍ରାସ ।
ଏହା ଶୁଣି ସର୍ବଭୂତ ଆତ୍ମା ଦେବାଧ୍ୟେ
ବୋଇଲେ ଏଥକୁ କିମ୍ପା କରୁଅଛ ଭୟେ ।
ଆମ୍ଭେ କି ନ ଜାଣୁ ଜରାସନ୍ଧ ଦୁଷ୍ଟପଣେ
ରଣେ ଜିଣି ପାରଇ ଯେ ଦେବ ଦୈତ୍ୟଗଣେ ।
ଛୟାଣୋଇ ସହସ୍ର ରାଜା ବନ୍ଦୀ ତାର ଘରେ
ଯତାଇଣ କ୍ଷୌଣୀ ବଳ ଏକାନ୍ତ ପାଦରେ ।
ଜନ୍ମାଇଁ ନାତି ମରନ୍ତେ ଝିଅ ଦୁଃଖ ଦେଖି
ଯମଦଣ୍ଡ ବାହିଲ ସେ ଉତ୍ପ୍ରୋଧେ ଉପେକ୍ଷି ।
ଆବର ବିଶେଷେ ଆସି ହେଲଣି ନିକଟେ
ଏତେବେଳେ ଭୟକଲେ ଯିବା ଯେଉଁ ବାଟେ
ଜନେ ହେଲେ ରହିପାରେ ଲୁଚି ଯହିଁ ତହିଁ
ଯାଦବଂଶ ଏ ଯାଦବେ ପକାଇବେ କାହିଁ ।
ନିଯତ ହୋଇବା ମାତ୍ର ନ ପାଇବା କାର୍ଯ୍ୟ
ସମ୍ପଦ ବିନାଶ ହେବ ଉପୁଜିବ ଲାଜ ।
ଜରାସନ୍ଧ ନୃପତିର ହୋଇଣ କଇଦ
ପଳାଇଲେ କେହି ରକ୍ଷା ନ କରିବେ ଡର ।
ପୃଥିବୀ ମଧ୍ୟରେ ଆମ୍ଭେ ସ୍ଥାନ ନ ପାଇବା
ଗୋଟି ଗୋଟି ହୋଇ ଶତ୍ରୁ ହସ୍ତରେ ମରିବା ।
ସଙ୍କଟ ପଡ଼ିଲା ବୋଲି ମନରେ ନ ଡର
ଜରାସନ୍ଧଠାରେ କାର୍ଯ୍ୟ ଅଛଇ ଆମ୍ଭର ।
ଆବର କଥାଏ ସର୍ବେ ଶୁଣ ମନଦେଇ
ଯମପୁରେ ଗଲୁ ଆମ୍ଭେ ଗୁରୁ ପୁତ୍ର ପାଇଁ ।
ଆମ୍ଭଙ୍କୁ ଦେଖିଣ ଯମ ସମ୍ଭାବନା କଲେ
ସଭାମଧ୍ୟେ ନିଜେ ସିଂହାସନେ ବସାଇଲେ ।
ପଣ୍ଡୁ ରାଜା ବ୍ରହ୍ମହତ୍ୟା କରି ସେ ପାପରେ
ବସି ନପାରନ୍ତି ଧର୍ମଦେବଙ୍କ ସଭାରେ ।
ଦ୍ୱାଦଶ ପାବଚ୍ଛ ତଳେ କାଖେ ହସ୍ତ ଦେଇ
ଆମ୍ଭେ ଯେ ଦେଖିଲୁଁ ଉଭା ହୋଇଥିଲେ ତହିଁ ।
ଅନେକ ଆକୁଳ ହୋଇ ଅପମାନ ଯୋଗେ
ବୋଇଲେ କହିବ କୃଷ୍ଣ ଯୁଧିଷ୍ଠିର ଆଗେ ।
ଯେ ଯଦ୍ୟପି ରାଜସୂୟ କରିବେ ମୋ ପାଇଁ
ତେବେ ଏ ସଭାର ମଧ୍ୟେ ବସିବି ମୁଁ ଯାଇ ।
ଯମଙ୍କୁ ବୋଇଲେ କହି ଯୁଧିଷ୍ଠିର ଆଗ
ଅବିଳମ୍ବେ କରନ୍ତୁ ସେ ରାଜସୂୟ ଯାଗ ।
ପଣ୍ଡୁ ରାଜା ଯମପୁରେ କହିଲେ ବହୁତ
ତେଣୁ ଆମ୍ଭେ ତାଙ୍କ ଆଗେ କରିଅଛୁ ସତ୍ୟ ।
ଯୁଧିଷ୍ଠିର ହସ୍ତେ ରାଜସୂୟ କରାଇବୁ
ବିପଦ ପଡ଼ିଲେ ତାଙ୍କୁ ସହାୟ ହୋଇବୁ ।
ସ୍ୱରାଜ୍ୟଣା ଲକ୍ଷେ ରାଜା ରୁଣ୍ଡହେବେ ତହିଁ
ଯଜ୍ଞକର୍ମ କରାଇବୁ ଆମ୍ଭେ ନିଜେ ଥାଇ ।
ତେଣୁ ଏ ଜରାସନ୍ଧକୁ ନ କରିବୁ ବଧ
ନ ମାରିବୁ ନ ଜିଣିବୁ ଲାଗିଥିବ ବାଦ ।
ତୁମ୍ଭେମାନେ ଏ କଥାକୁ ନ ପାଅ ତ୍ରାସ
ଅଳ୍ପଦିନେ ଜରାସନ୍ଧ ମରିବ ଅବଶ୍ୟ ।
ଯାଦବେ ହୋଇଲେ କୃଷ୍ଣ ବଚନରେ ଶାନ୍ତ
ଉଗ୍ରସେନ ରାଜା ବୋଲେ ଫିଟିଲାକ ଭ୍ରାନ୍ତ ।
କର୍ମକର୍ତ୍ତା ପୁରୁଷ ଏ ହେଲେ ବଜ୍ରସେହ୍ନା
ଏହାଙ୍କ ପ୍ରସାଦେ ନାହିଁ ଆମ୍ଭର ଶୋଚନା
ଏମନ୍ତ ବିଚାର ସର୍ବେ କରୁଛନ୍ତି ବସି
ପୁଣି ଚର ଜଣାଇଲା ବାର୍ତ୍ତା ବେନ ଆସି ।
ଭୋ ମହିମା ସାବଧାନେ ଶୁଣ ଚକ୍ରପାଣି
ନିଶ୍ଚୟ ଏ କଥା ସ୍ୱାମୀ ଅଇଲି ମୁଁ ଶୁଣି ।
ସୈନ୍ୟ ଘେନ ଜରାସନ୍ଧ କାଲି ରଜନୀରେ
ଠଣା ମାଡ଼ି ରହିଥିଲା ସରସ୍ୱତୀ ତୀରେ ।
ପ୍ରଭାତ ହୁଅନ୍ତେ ଥାଟ ଚଳାଇ ଆସୁଛି
ଆଗରେ ନ କହି ପଛେ କହିଲେ କି ଅଛି ।
ତାହାଙ୍କ ଦେଶ ସୀମାରୁ ଅଇଲି ମୁଁ ଛାଡ଼ି
ଯମୁନାକୁ ପାରହୋଇ ଆସୁଛନ୍ତି ମାଡ଼ି ।
ରଥ ଗଜ ପଦାତି ଯେ ଅପ୍ରମିତ ଥାଟ
ପର୍ବତ କାନନ ଦଳି ଚଳେଣି ସେ ବାଟ ।
ମଥୁରା ଦେଶର ରାଜା ଛନ୍ନ ଛନ୍ନ ହୋଇ
ପଳାଇ ଲେଉଟନ୍ତି ବୃନ୍ଦାବନ ଛାଡ଼ି ଦେଇ ।
ଅକଳିତ ଥାଟ ଯେ ନୁହଇ କଳନା
ବନେ ପଶି ଭାଙ୍ଗ କ୍ରାନ୍ତ ନଗର ପାଟଣା ।

ନାଷ୍ଟ ଦାଣ୍ଡ କୁର କର ପୋଡ଼ୁଛନ୍ତି ଘର
ଯେ ଆଗେ ପଡ଼ଇ ତାଙ୍କୁ କରନ୍ତି ପ୍ରହାର ।
ହୁହୁଁ ହୁହୁଁ ଆସୁଛନ୍ତି ପବନନ୍ତୁଁ ବେଗେ
ଏକ୍ଷଣି ମିଳିବେ ଆସି ମଧୁବନ ଲଗେ ।
ସାବଧାନ ହୁଅ ମୋବେ ପାଣ୍ଡବ ଯୁଦ୍ଧରେ
ନୋହିଲେ ପଳାଇ ସବେ ଲୁଚ ଧାଡିକାରେ
ଦେଖୁ ଦେଖୁ ସୈନ୍ୟମାଡ଼ି ପଡ଼ିଲେ ଅଯୋଗେ
ଯାଇ ନ ପାରିବେ ପଛେ ପଡ଼ି ତାଙ୍କ ଆଗେ
ଯମୁନା ଉତ୍ତରକୂଳେ ଦେଇଛନ୍ତି ଧାଡ଼ି
ନ ପୁଣ ମାରନ୍ତୁ ଆସି ସମସ୍ତଙ୍କୁ ବେଢ଼ି ।
ଏସନକ ବଚବାଚ ହେଉଥିଲେ ଶୁଣି
ମାଉଡ଼ିଆ ଚ୍ଚର ଆସି ଜଣାଇଲା ପୁଣି ।
ସମସ୍ତ ଯାଦବ ତୁମ୍ଭେ ବେଗେ ହୁଅ ସଜ
ନଷ୍ଟପ୍ରାୟ ମଥୁରାପୁର ନାଶ ଯିବ ଆଜ ।
ସାଗର ସମାନ ଜରାସନ୍ଧର ସଇନ
ସ୍ବରଜଣା ଲକ୍ଷେ ରାଜା ସଙ୍ଗେ ଅଛୁ ଘେନ ।
ଏକ୍ଷଣି ଦେଖିଲୁ ଆମ୍ଭେ ଥୋକେ ଦୂର ଛାଡ଼ି
ସମୁଦ୍ର ଲହରୀ ପ୍ରାୟେ ଆସୁଅଛୁ ମାଡ଼ି ।
ଶୁଣିଣ ଯାଦବ ଗଣ ଉଠିଲେ ଚଉଦିଗ
ସୈନ୍ୟ ସାଜ ସୈନ୍ୟ ସାଜ ଶୁଭେ ଚଉକତ
ମାର ମାର ଧର ମର ଧ୍ୱନି କୋଳାହଳ
ସଜହୋଇ ବାହାରନ୍ତି ଚତୁରଙ୍ଗ ବଳ ।
ରଥ ଗଜ ଅଶ୍ୱ କେତେ କେ କରିବ ସଂଖ୍ୟା
ଛପନକୋଟି ଯାଦବେ ସବେ ରଣ ରଙ୍କା ।
ଯେ ଯାହାର ଅଶ୍ୱ ଗଜ ରଥ ଚଢ଼ି ବେଗେ
ସମସ୍ତେ ମିଳିଲେ ଆସି ରାମକୃଷ୍ଣ ଆଗେ ।
ଭୟରେ ବୋଲନ୍ତି ଥୋକେ ସନ୍ଧି କର ଯାଇ
ବାହୁଡ଼ାଇ ଦିଅ ବାକ୍ୟେ ପ୍ରବୋଧ କରାଇ ।
ଯାଦବେ ଆରତ ହେବା ଦେଖି ଦେବରାୟ
ବୋଲନ୍ତି କମ୍ପାଇ ତୁମ୍ଭେ କରୁଅଛ ଭୟ ।
ଲକ୍ଷେ ଜରାସନ୍ଧ ଯେବେ ଆସୁଥିବ ବାହି
ଆମ୍ଭଙ୍କୁ ହାରଣ ନଷ୍ଟେ ଲଜ୍ଜା ଯିବ ପାଇ ।
ତୁମେମାନେ ଭୟଙ୍କର ଅଥୟ ନ ହୁଅ ।
ରାଜାଙ୍କୁ ଅଗୋର ସବେ ଆନନ୍ଦରେ ଥାଅ
ଆମ୍ଭ ବେନି ଭାଇଙ୍କ ତ ଲାଗେ ଯୁଦ୍ଧ କଥା
ଆକୁଳ ହେଉଛ ତୁମ୍ଭେ କହ କମ୍ପା ବୃଥା ।

ଯାଦବେ ବୋଇଲେ ତୁମ୍ଭେ ଶୁଭାଶୁଭ ଦାତା
ତୁମ୍ଭେ ଯେବେ ଆବୋରିଲ ଆମ୍ଭର କି ଚିନ୍ତା
ଏତେ କହି ଯେ ଯାହାର ଅସ୍ତ୍ରଶସ୍ତ୍ର ଧରି
ଉଗ୍ରସେନ ଚଉପାଶେ ରହିଲେ ଆବୋରି ।
ଜଗତର ଆଦିକର୍ତ୍ତା କୃଷ୍ଣ ବଳରାମ
ତାଙ୍କୁ କି କରିବ ଜରାସନ୍ଧ କରି ରମ ।
ସେ ବେନି ଭାଇଙ୍କ ପାଦେ ଲୁଚ ମୋର ମାଥ
ଅଚ୍ୟୁତ ଦାସକୁ ରକ୍ଷା କର ଗୋପୀନାଥ ।

—❋—

## ଜରାସନ୍ଧ ସୈନ୍ୟରେ ରାମ କୃଷ୍ଣଙ୍କର ପ୍ରବେଶ ଓ କପଟରେ ପଳାୟନ

ଶୁକ ବୋଲନ୍ତି ଯେ ଶୁଣ ପରୀକ୍ଷ ନୃମଣି
ଯାଦବେ ସନ୍ତୋଷ ହେଲେ କୃଷ୍ଣ କଥା ଶୁଣି
ଏଥୁଅନ୍ତେ ଜରାସନ୍ଧ ନୃପ ଅତି ବେଗେ
ସୈନ୍ୟ ଘେନି ମାଡ଼ିଆସେ ପବନନ୍ତୁଁ ବେଗେ
ପଞ୍ଚାଶ ସହସ୍ର ରାଜା ଥାଟ ଆଗେ ଥିଲେ
ଜରାସନ୍ଧ ଆଜ୍ଞା ଧାଇ ସଭରେ ମାଇଲେ ।
ମାର ମାର ମାର ଧର ଡାକ ଦେଇ ଉଚ୍ଚେ
ବସନ୍ତ ଉତ୍ସବ ପୁର ବେଢ଼ିଲେ ନିଘଞ୍ଚେ ।
ରଥ ଗଜ ପଦାତିକ ଅଶ୍ୱ ଅପ୍ରମାଣ
କରେ ଧରିଛନ୍ତି ନାନା ଅସ୍ତ୍ରଶସ୍ତ୍ର ବାଣ ।
ସମୁଦ୍ର ଲହରୀ ପ୍ରାୟ ମାଡ଼ିଯାନ୍ତେ ସୈନ୍ୟ
ଧୂଳି ଉଡ଼ି ଅନ୍ଧକାର ହୋଇଲା ଗଗନ ।
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ବୀରେ ଛାଡ଼ି ସିଂହରଡ଼ି
ପ୍ରଳୟ କାଳରେ ଯେହ୍ନେ ମେଘ ଘଡ଼ ଘଡ଼ି ।
ଯାଦବେ ତ୍ରସ୍ତ ହେଲେ ପାଇ ମହାଭୟ
ରାମକୃଷ୍ଣ ମୁଖରୁ ଚାହିଁ ଉଗ୍ରସେନ ରାୟ ।
ବୋଇଲେ ଶ୍ରୀଦେବ ତୁମ୍ଭେ ଶୁଣ ଭବତ୍ରାହୀ
ବିଷମ ସଙ୍କଟୁ ମୋତେ କରିବାକୁ ହୋଇ ।
ଶରଣପଞ୍ଜର ତୁମ୍ଭେ ଭକ୍ତଜନ ବନ୍ଧୁ
ଆର୍ତ୍ତିକାଳେ ବଜ୍ର ସେହ୍ଲା ହୁଅ କୃପାସିନ୍ଧୁ ।
ତୁମ୍ଭର ବାହୁକୁ ପ୍ରଭୁ କରଅଛୁ ଆଶ
ନୋହିଲେ ସବୁ ଯାଦବେ ଗଲୁ ନଷ୍ଟେଁ ନାଶ
ବସୁଦେବ ଶ୍ରୀହରିତ ଉଦ୍ଧବ ଅକ୍ରୁର
ସାତ୍ୟକି ସହସ୍ରାଜିତ ଅନାଧୃଷ୍ଟ ବୀର ।

ରାମ କୃଷ୍ଣ ମୁଖ ଚାହିଁ ସର୍ବେ କଲେ ଶୋକ
ବୋଲନ୍ତି ମରିବୁ ସର୍ବେ ପାରିଲେ କି ରଖ ।
ଯାଦବେ ଆରତ ହେବା ଦେଖି ଭାଇ ବେନି
ସଂଗ୍ରାମକୁ ବାହାରିଲେ ସୁରଥକୁ ଘେନି ।
ନନ୍ଦଘୋଷ ରଥେ ଆରୋହିଲେ ବନମାଳୀ
ତାଳଧ୍ୱଜ ନାମ ରଥେ ବିଜେ କଲେ ହଳୀ ।
ପୁଷ୍ପକ ରଥେ ଚଳିଲା ସୁନାସ କୁମର
ଶୁଭଯୋଗରେ ଉଭୟେ ହୋଇଲେ ବାହାର
ଯାଦବଙ୍କୁ ଚାହିଁଣ ଯେ ବୋଲନ୍ତି ଶ୍ରୀହରି
ରାଜାଙ୍କୁ ଆବୋଧି ଥାଅ ଭୟ ଦୂର କରି ।
ଏତେ କହି ରାମକୃଷ୍ଣ ଚଳି ଅତି ବେଗେ
କ୍ଷଣକେ ମିଳିଲେ ଯାଇ ଶତ୍ରୁ ସୈନ୍ୟଆଗେ
ତାଳଧ୍ୱଜ ରଥେ ରାମ ହୋଇଲେ ଆଗୁଆଣି
ମଧ୍ୟରେ ସୁରଥ ପଛେ ହେଲେ ଚକ୍ରପାଣି ।
ଅନ୍ତରୀକ୍ଷେ ଦେବରଥ ଆସନ୍ତେ ତ ବାହି
ସମସ୍ତ ନୃପେ ଦେଖିଲେ ଖଣ୍ଡେ ଦୂରେ ଥାଇ ।
ଏକକୁ ଆରେକ ଚାହିଁ ପୁଚ୍ଛନ୍ତି ବାରତା
କେଉଁମାନେ ବୋଲନ୍ତି ସେ ଅପୂର୍ବ ଏ କଥା
ଯାହାର ନିମନ୍ତେ କରୁଥିଲେ ପରିଶ୍ରମ
ସେ ଆସି ମିଳିଲେ ପାଶେ ଏ ତ ଶୁଭକର୍ମ ।
ଶୁଭବେଳେ ହୋଇଥିଲା କଲେ ଅନୁକୂଳ
ଆସିଲା ମାତ୍ରକେ କାର୍ଯ୍ୟ ହୋଇଲା ସଫଳ ।
ଏତେ ବଡ଼ ଯଶ କେତେ ପୁଣ୍ୟ କଲେ ପାଇ
ଜରାସନ୍ଧ ଶୁଣି ଦେବ ଅନେକ ବଧାଇ ।
ସର୍ବେ ଆସି ଏକାବେଳେ ବେଢ଼ି ତା ଧରିବା
ଶାବତରେ ବାନ୍ଧି ଜରାସନ୍ଧ ଆଗେ ଦେବା ।
କେ ବୋଲଇ ଦେଖି ଆଗ ଭଲ କରି ଚାହାଁ
ନିଶ୍ଚେ ଦୁହେଁ ଅଟନ୍ତି କି ରାମ ଭଗବାନ ।
ଏତେକ ସାହସ କମ୍ପା କଲେ ଏ ନ ଜାଣି
ମରିବାକୁ ଆସୁଛନ୍ତି ଖେଳ ପ୍ରାୟେ ମଣି ।
ବେଳ ନ ବଞ୍ଚିଲେ ସମସ୍ତେ କ ବଞ୍ଚିପାରି
ଆସନ୍ନ ମରଣଠାରୁ ଢୁଞ୍ଚିଗଲେ ତରି ।
କେ ବୋଲଇ ଦେଖ ଏହି ଜରାସନ୍ଧ ଥାଟ
ସୁରମୁନେ ଭେଦିବାକୁ ନ ଦିଶଇ ବାଟ ।
ଲକ୍ଷେ ପୂରି କରି ସୈନ୍ୟ ରହିଲେ ବେଢ଼ାଇ
ପଳାଇ ଯିବାକୁ ବାଟ ନ ପାଇଲେ କାହିଁ ।

ତେଣୁ ମହାଭୟ ପାଇ ଆକୁଳ ହୋଇଣ
ଆସୁଛନ୍ତି ରାଜା ପାଦେ ପଶିବେ ଶରଣ ।
ନୋହିଲେ ବା ଉଗ୍ରସେନଆପେ ଦେଇଦେଖା
ତୁମ୍ଭଙ୍କୁ ପଠାଇଥିବ କରିବାକୁ ରକ୍ଷା ।
ସୁନାସ ନନ୍ଦନ ଅଛି ଏହାଙ୍କର ସଙ୍ଗେ
ଆମ୍ଭ ସମର୍ପିବେ ଯାଇ ଜରାସନ୍ଧ ଆଗେ ।
ଥୋକାଏ ନୃପ ବୋଲନ୍ତି ଧର୍ମଦେବ ରଖୁ
ଜରାସନ୍ଧ ନୃପ ଯାଙ୍କୁ ମିତ୍ରପଣେ ଦେଖୁ ।
କେହୁ ଯେ ବୋଲନ୍ତି ଅବା ଆସୁଥିବେ ଯୁଝି
ନିଶ୍ଚୟ କରିବା ଆସ ଯଥାର୍ଥରେ ବୁଝି ।
ଯେ ଯାହାର ଶସ୍ତ୍ର ଧରି ରଥେ ଥାଅ ବସି
ଦ୍ୱନ୍ଦ୍ୱ ଜାତ କଲେ ସର୍ବେ ପ୍ରହାରିବା ମିଶି ।
ନ ଜାଣେ କି ଯେତେଯେତେ କର୍ମ ଏହୁ କଲେ
କଂସ ଆଦିଯେ ବୀରଙ୍କୁ କଞ୍ଚିତେ ବଧିଲେ ।
ଅଷ୍ଟମଲ୍ଲଙ୍କର କଥା ସମସ୍ତେ ତ ଜାଣ
ମଲ୍ଲ ଭ୍ରାତୀ ଖାଇଲେ ଏହି ନାରାୟଣ ।
ଏ ଜଗଦ୍ବନ୍ଦନ ନାଥ ଅଟନ୍ତି ଶ୍ରୀହରି
ଏହାଙ୍କ ସଙ୍ଗରେ କମ୍ପା ହୋଇବା ବଇରୀ ।
ଜାଣୁ ଜାଣୁ ଆମ୍ଭେ ଯେବେ ଆରମ୍ଭିବା ଦ୍ୱନ୍ଦ
ପରିଶେଷରେ ଫଳ ନିଶ୍ଚେ ଜାତ ହେବ ମନ୍ଦ
ଏମନ୍ତ ବଚନ ଥୋକେ ନୃପେ ମାନ୍ୟକଲେ
ଥୋକେ ନୃପ ଆଡ଼ ହୋଇ ପଛଦୁଆଦେଲେ
ଥୋକେ ବୋଇଲେ ଦେଖିଲା କାର୍ଯ୍ୟ ଏବେକର
ରଥେ ରଥ ଚରିତାଳ ଦେଇ ବେଗେ ଧର ।
ରାଜକାର୍ଯ୍ୟ ରଞ୍ଜି ହେଲେ ଧର୍ମ କୀର୍ତ୍ତି ଅଛି
ନୋହିଲେ ପାଷ୍ଟାତେ ପୁଣି କହିବେନା ବାଛି
କେ ବୋଲଇ ଆସୁଛନ୍ତି ଶରଣାର୍ଥୀ ହୋଇ
ଅଜାମିରେ ତୋଳ ଆମ୍ଭେ କରିବା କମ୍ପାଇ ।
ପିଠି ଦେଇ ଗଲାବେଳେ ଗୋଡ଼ାଇ ଧରିବା
ଏତେ ଭଟରୁ କି ରୂପେ ପଳାଇବ ଅବା ।
ଏମନ୍ତ ବଚନୁ ଆସି ମିଳିଲେ ନିକଟେ
ସ୍ୱରଉଣ୍ଡା ଲକ୍ଷେ ରାଜା ପଚୁଆର ଥାଟେ ।
ଆଗ ପଛେ ଉଭେ ରଥ ଚଳେ ଅତିବେଗେ
ମଧ୍ୟେ ସୁରଥ କୁମର ବଳରାମ ଆଗେ ।
ପଛେ ନନ୍ଦଘୋଷ ରଥେ ଚଢ଼ି ଚକ୍ରଧର
ପସାଇ ପଶିଲେ ଯାଇଁ ସୈନ୍ୟର ଭିତର ।

ଅଶ୍ୱବାଗ ଧରି ବାହେ ଦାରୁକ ସାରଥି
ଆପେ ଜଗନ୍ନାଥ ପ୍ରଭୁ ଦୋଳନ୍ତନ୍ତି ରଥି ।
ଶ୍ରୀଭୁଜେ ସାରଙ୍ଗ ଧନୁ କାଳାନ୍ତକ ଶର
ଚତୁର୍ଦ୍ଧା ମୂରତିଧାରୀ ଦେବ ଚକ୍ରଧର ।
ଶ୍ରୀବାଧ୍ରଲାଞ୍ଛନ ହୃଦେ କଉସ୍ତୁଭ ମଣି
କୁମାର ଦଶା ଦରଷରୂପେ କାମକ୍ଷଣୀ ।
କର୍ଣ୍ଣ ଉଜ୍ଜ୍ୱଳ ମୁକୁଟ ଶିରେ ଯନ୍ତ୍ରଶାଖା
ଖାଦ ମୂର୍ଦ୍ଧ ବାହୁଟି ହେ କରେ ଊର୍ଦ୍ଧ୍ୱ ରେଖା
ନାନାରତ୍ନ ଆଭରଣେ ଶ୍ରୀଅଙ୍ଗ ଶୋଭନ
ଲଲାଟେ କସ୍ତୁରୀ ଟିକା ହୃଦରେ ଚନ୍ଦନ ।
ନୀଳେନ୍ଦୀବର ପରାୟେ ଶୋଭେ ଦିବ୍ୟବପୁ
କୋଟି କାମ ଜିଣୁଛନ୍ତି ରୂପେ କଂଶରିପୁ ।
ତାଳଧ୍ୱଜ ରଥ ଚଢ଼ି ବିଜେ ହଳପାଣି
ନୀଳାମ୍ବର ପ୍ରଭୁ ଶିରେ ଉଭା ସପ୍ତଫେଣୀ ।
ସୌନନ୍ଦ ମୂଷଳ ହଳ ବେନି କରେ ଶୋଭେ
କାନ୍ତି ବିରାଜଇ ଶଙ୍ଖ ଗୋକ୍ଷୀର ପରାୟେ ।
କର୍ଣ୍ଣରେ କୁଣ୍ଡଳ କଟିତଟେ ନୀଳବାସ
କାଦମ୍ବରୀ ପାନେ ଭୋଳ ସର୍ବଜ୍ଞ ପୁରୁଷ ।
ବିଜୟ ସାରଥି ରଥ ବାହେ ଶୀଘ୍ର କରି
ଦକ୍ଷେ ବେତ୍ରବାଡ଼ି ବାମେ ଅଶ୍ୱବାଗଧରି ।
ପୁଷ୍ପକ ଯାନରେ ଚଳେ ସୁରଥ କୁମର
ବାମକରେ ଧନୁ ଶୋଭେ ଦକ୍ଷକରେ ଶର ।
ସାନନ୍ଦ ନାମେ ସାରଥି ବାହଇ ସେ ଯାନ
ପବନରୁ ବେଗେ ରଥ ଚଳେ ଘନ ଘନ ।
ସଇନ୍ୟ ଭିତରେ ପଶି ଗଲା ତିନି ରଥ
ସ୍ତମ୍ଭୀଭୂତ ହେଲେ ଦେଖି ସର୍ବ ନରନାଥ ।
ରହ ରହ ବୋଲିବାକୁ କାହା ଶକ୍ତି ନାହିଁ
ସ୍ୱରଜଣା ଲକ୍ଷେଜଣା ରହିଛନ୍ତି ଚାହିଁ ।
ଲୀଳା ଗତିକରି ବିଜେ ସ୍ୱାମୀ ନନ୍ଦବତ୍ସ
ଲେଉଟି ଗୋଡ଼ାଇଛନ୍ତି ନୃପେ ତାଙ୍କ ପଛ ।
ଶୁକ ବୋଲନ୍ତି ଯେ ଶୁଣ ପରୀକ୍ଷ ରାଜନ
ପବିତ୍ର ଶ୍ରୀହରି ବଂଶ ପୁରାଣ ଆଖ୍ୟାନ ।
ଜଗତବନ୍ଦନ ନାଥ ପ୍ରଭୁ ବନମାଳୀ
ସମସ୍ତଙ୍କୁ ଭୁଲାଇଣ ଗଲେ ଚକ୍ରୀ ଚଳି ।
ଯେଉଁଠାରେ ଥିଲା ଜରାସନ୍ଧ ନରପତି
ତହିଁର ନିକଟେ ଯାଇ ମିଳିଲେ ଝଟତି ।
ଦୟାଳୁଣ ପଶିଗଲେ ସଇନ୍ୟ ଭିତରେ
ସବୁନୃପେ ରହିଛନ୍ତି ରହି ସେ ଯାହାରେ ।
ଉଗର କହିଲେ ଜରାସନ୍ଧ ଆଗେ ଯାଇ
ଭୋ ମଣିମା ସାବଧାନେ ଶୁଣ ନୃପସାଇଁ ।
ରାମକୃଷ୍ଣ ବେନିଭାଇ ଚଢ଼ି ରଥେ ରଥେ
ସୁନାଭ କୁମର ଗଲେ ସୁରଥ ସହିତେ ।
ତୁମ୍ଭମାନଙ୍କ ମଧ୍ୟେ ଆସି ପଶିଲେ ଦୟାଳୁ
ନାନାଜାତି ରହିଛନ୍ତି ବୀରବେଶ ହୋଇ ।
ଛଦ୍ମଯୋଗେ ଗୋଇସବୁ ରାଜା ନେଲେ ଦେଖିଥିଲେ
ତୁମ୍ଭମାନଙ୍କୁ ଆସନ୍ତେ କେହି ବାରଣ ନ କଲେ ।
ଏକ୍ଷଣି ଏଠାକୁ ଆସି ଭୁଲାଇଣ ଗଲେ
ଅକଳିତ ଥାଟେ ପଶି ଶଙ୍କାହିଁ ନ କଲେ ।
ଯହିଁପାଇଁ ଆସିଥିଲ ତୁମ୍ଭେ ଥାଟ ସାଜ
ଆଗରେ ସେ ଅନାୟାସେ ପଡ଼ିଥିଲା ଆଜ ।
ଧରି ନ ପାରିଲ ତୁମ୍ଭେ କଥାଗଲା ବଳି
ଖୋଜିଲେ ମିଳେକି ଆଉ ହଜିଲା ସଙ୍ଖାଳି ।
ଶୁଣିହିଁ ଉଗର ଆସି ବାରତା କହିଲେ
ଏହିକ୍ଷଣି ରାମକୃଷ୍ଣ ଆସି ପଳାଇଲେ ।
ଏହା ଶୁଣି ଜରାସନ୍ଧ କୋପେ ପରଜ୍ୱଳି
କାଳସର୍ପ ପ୍ରାୟେ ଗର୍ଜି ଉଠେ ମହାବଳୀ ।
ଦର୍ଶନେ ଅଧର ରୂପେ ବିକଟ ବଦନ
କ୍ରୋଧଭରେ ଶ୍ୱାସବାୟୁ ଛାଡ଼େ ଘନ ଘନ
ଲୌହଦଣ୍ଡ ଘେନି ଗଦା ଶୂନ୍ୟରେ ବୁଲାଇ
ଧରଣୀ ଉପରେ ଉଭା ହେଲା ରଥୁଁ ଡେଇଁ ।
ରୋମ ଠାକୁରଇ ଅଙ୍ଗୁ ବହେ ଶ୍ରମଜାଳ
ଭୟଙ୍କର ରୂପ ଦିଶେ ଅତ୍ୟନ୍ତ କରାଳ ।
ସଇନ୍ୟଙ୍କୁ ଆଜ୍ଞା ଦେଲା ବେଗେ ଯେ ପଳାଇ
ଖୋଜଆଣ କେଉଁଆଡ଼େ ଗଲା ସେ ପଳାଇ
ସ୍ୱରଆଡ଼େ ଚତୁରଙ୍ଗ ସେନା ବେଢ଼ି ଧର
ପ୍ରାଣେ ନ ମାରିଣ ଜୀବ ଥାଉ ବନ୍ଦି କର ।
ଜାମାତା ମରଣ ଦୁଃଖ ଝିଅଙ୍କ ବିକଳ
ନାତିଙ୍କ ବିୟୋଗ ବାଧା ଛାଡ଼ିବ ସକଳ ।
କରତାଙ୍କୁ ସାକ୍ଷୀଦେଇ ସତ୍ୟ ଅଛି କରି
ଅନେକ ଅବସ୍ଥା ଦେବି ବନ୍ଦିଘରେ ଭରି ।
ନାନାବିଧ ପ୍ରଚଣ୍ଡ ଦଣ୍ଡ ଦେବି ଅପ୍ରମାଣ
ଖଣ୍ଡ ଖଣ୍ଡ ମାଂସ କାଟି ନେବିଇଁ ପ୍ରାଣ ।

ଜରାସନ୍ଧ ମୁଖୁଁ ଶୁଣି ଏସନକ ଆଜ୍ଞା
ଧାଇଁଲେ ସକଳ ନୃପ କରିଣ ଭ୍ରୂଭଙ୍ଗୀ ।
ହାତୀ ରଥୀ ମହାରଥୀ ସୈନ୍ୟ ଅପ୍ରମିତ
ଚଳନ୍ତା ପର୍ବତ ପ୍ରାୟେ ଗମିଲେ ତ୍ୱରିତ ।
ବୀର ମହାବୀରମାନେ କରେ ଶସ୍ତ୍ର ଧରି
ଘୋଷିଲେ ରୌଦ୍ରବେଶ୍ରୁଳି ହେରେ ହାରକରି ।
ମାର ମାର ଧର ଧର ନିରନ୍ତରେ ଡାକ
ମେଘ ଘଡ଼ଘଡ଼ି ଠାରୁ ଶବଦ ଅଧିକ ।
ଗଲା ଗଲା ବୋଲି ଶବ୍ଦ ପୂରିଲ [illegible]
ଆଗୁଆଣି ଆଟେ ବାଜେ ସଂକୋତନ ବାଳ ।
ଧଙ୍ଗଟରେ ଅଙ୍ଗବଳ ସତାଇଶ ଷୌହିଣୀ
ପାରୁଶରେ ବେଢ଼ି ଛନ୍ତି ଅନେକ ସଇନ ।
ମନ ପବନରେ ଅଗୋଚର ଯେଉଁ ହରି
ସେ ଲୁଚିଲେ ତାଙ୍କୁ ଖୋଜି କେ ପାରିବ ଧରି
ଅଚ୍ୟୁତ ଦାସ ବୋଲଇ ଆହେ ଶିରିପତି
କୃପାକର ଅନ୍ତଃକାଳେ ଦିଅ ସଦଗତି ।

—※—

## ଜରାସନ୍ଧ ସୈନ୍ୟ ସହ ରାମକୃଷ୍ଣଙ୍କର ଯୁଦ୍ଧାରମ୍ଭ, ସରଥ ସହିତ ଦନ୍ତବକ୍ର ପ୍ରଭୃତିଙ୍କ ଯୁଦ୍ଧ ଓ ପରାଜୟ

ଶୁଣ ହେ ପରୀକ୍ଷ ରାଜା କହନ୍ତି ଯେ ଶୁକ
ଜରାସନ୍ଧ ଖୋଜେ ରାମ କୃଷ୍ଣଙ୍କୁ ଅନେକ ।
ଛପ୍ପାଣୋଇ ସସ୍ର ରାଜା ଅଛନ୍ତି ଗୋଡ଼ାଇ
ହାତେ ହାତେ ସେ ବେନହେଁ ଚଳାନ୍ତିଫେଡ଼ାଇ
ପଚ୍ଚଶ ଯୋଜନ ଦୂର ମଥୁରାରୁ ଗଲେ
ମଣିଶୃଙ୍ଗ ଗିରି ତଳେ ପାଲଟି ରହିଲେ ।
ସେ ଗିରି ତଳରେ ବହେ ମଣିଭଦ୍ରା ନଦୀ
ଦକ୍ଷିଣବାହିନୀ ହୋଇ ଯମୁନାକୁ ଭେଦି ।
ନଦୀର ଦକ୍ଷିଣ କୂଳେ କନାଉଜ ସୀମା
ଧୂମ୍ର ଲୋଚନକୁ ଚଣ୍ଡୀ ମାରଥିଲେ ଉମା ।
ଛପ୍ପାଣୀ ଯୋଜନ ପଦା ବିସ୍ତାର ସେ ଭୂଇଁ
ଝାଡ଼ବାଡ଼ ବୃକ୍ଷଲତା କଣ୍ଟା ଖୁଣ୍ଟାନୋହିଁ ।
ଅସୁରଙ୍କ ମେଦମେଦା ରକ୍ତମାଂସ ପଡ଼ି
ସିନ୍ଦୁର ପରାୟେ ମାଟି ଦିଶେ ତାହା ସଡ଼ି ।
ବଳରାମ ବୋଲନ୍ତି ଯେ ଶୁଣ ନାରାୟଣ
ଏହିଠାରେ ରହି ଆମ୍ଭେ କରିବାକ ରଣ ।
ଅନେକ କାଳର ଏ ଯେ ରଣଭୂମି ଖଣ୍ଡି
ଧୂମ୍ର ଲୋଚନକୁ ଏଥେ ମାରଥିଲେ ଚଣ୍ଡୀ ।
ଯୋଗିନୀମାନଙ୍କୁ କ୍ରୀଡ଼ାସ୍ଥାନ ଏହି ପୃଥ୍ୱୀ
ଅନନ୍ତକୋଟି ବ୍ରମଣ୍ଡା ରହିଥାନ୍ତି ଏଥି ।
ଏଠାରେ ଦୁଷ୍ଟଙ୍କୁ ମାରି ଦେବା ବିଷାବଳ
ରକ୍ତ ମାଂସ ଖାଇ ତୋଷହେବେ ଭଦ୍ରକାଳୀ
ଏମନ୍ତ ବିସ୍ତର କରି ଛୁଟାଇଲେ ରଥ
ଦକ୍ଷିଣରେ କାମପାଳ ବାମେ ଜଗନ୍ନାଥ ।
ସୁରଥକୁଆବୋରିଲେମଧ୍ୟେ ବେନଭାଇ
ଏ ସମୟେ ଜରାସନ୍ଧ ସୈନ୍ୟ ଆସି ଥଇଁ ।
ଶତେପୁର କରି ଚଉପାଶରେ ବେଢ଼ିଲେ
ଜାଲମଧ୍ୟେ ମତ୍ସ୍ୟ ପ୍ରାୟେ ବେନହେଁ ରହିଲେ ।
ତର୍ଜନ୍ତି ଗର୍ଜନ୍ତି ବୀରେ କରନ୍ତି ପ୍ରହାର
ଆବର ବୋଲନ୍ତି ବାଞ୍ଛା ସିଦ୍ଧ ହେଲା ଆଜ ।
ଲୁଚିଣ ପଳାଉଥିଲେ ଏବେ ଯିବେ କାହିଁ
ପାଦ ଫିଟିବାରୁ ଚଳ ନ ପାରନ୍ତି ଯାଇ ।
କେହୁ ଯେ ବୋଲନ୍ତି ଦେଖି ହେଲେଣି କପଟ
ପଳାଇଲେ ମାରିବାର ନୁହଇ ଯୁକତ
କେଉଁମାନେ ବୋଲନ୍ତି ଏ ପ୍ରଭୁଙ୍କ ବଇରୀ
ନିଜେ ରାଜା ଦଣ୍ଡ ଦେବେ ଅଛନ୍ତି ବସ୍ବର ।
ଥୋକାଏ ବୋଲନ୍ତ୍ୟସ୍ତଙ୍କୁ ଦଣ୍ଡେହେଁ ନରଖ
ଏହାଙ୍କ ଯୋଗୁଁ ପାଇଲେ ରାଜା ଅତି ଦୁଃଖ
ଏଥିଅନ୍ତେ ଜରାସନ୍ଧ ନରପତି ଆଗେ
ପଡ଼ି ଆସି ଜଣାଇଲା ଯାଇ ଅତି ବେଗେ ।
ହେ ମଣିମା ସାବଧାନେ ଶୁଣ ନୃପନାଥ
ଏବେ ସେ ଭୂମିର ମନବାଞ୍ଛା ହେଲା ସିଦ୍ଧି
ପ୍ରାଣଭୟେ ରାମକୃଷ୍ଣ ଦୁହେଁ ପଳାଇଲେ
ମଣିଶୃଙ୍ଗ ଗିରିତଳେ ପୁଚିଣ ରହିଲେ ।
ବ୍ରମୁଣ୍ଡା ନାମରେ ପଦା ମଣିଭଦ୍ରା ତୀରେ
ଛପ୍ପାଣୀ ଯୋଜନ ଦୀର୍ଘ ପ୍ରସ୍ତ ବଖାଣରେ ।
ଦେଶଗ୍ରାମ ନାହିଁ ଶୂନ୍ୟ ଅଟଇ ସେ ପଦା
ଯୋଗିନୀ ବ୍ରମଣ୍ଡା ବାସ କରନ୍ତି ସର୍ବଦା ।
ସେ ପଦାର ମଧ୍ୟେ ଛୁଟାଇଲେ ଦୁଇ ରଥ
ସୁନାସ ନନ୍ଦନ ବଳଦେବ ଜଗନ୍ନାଥ ।
ପଞ୍ଚଶ ସହସ୍ର ନୃପ ଆଗୁଆଣିଥିଲେ
ଘୋଡ଼ାଇଣ ଆସେ ବେଢ଼ି ଆକୁଳ ରହିଲେ

ଓଟେପୁର ବେଢ଼ି ସୈନ୍ୟ ରହିଛନ୍ତି ଘେରି
ବନ୍ଦିବେଙ୍କ ଜୀବନରେ ଆଣିଦେବେ ମରି ।
ଏହା ଶୁଣି ଜରାସନ୍ଧ କଣ ମୋଡ଼ି ଗର୍ବେ
ବୋଲେ ମୋର ମନୋବାଞ୍ଛା ସିଦ୍ଧ ହେଲା ଏବେ ।
ଆବର ସେ ଟହ ଟହ ହସି କୁତୂହଳେ
ବୋଲେ ପ୍ରାଣେ ନ ମାରଣ ଧରି ଆଣ ବଳେ
ଏସନକ ଆଜ୍ଞା ଶୁଣି ଦୂତ ବେଗେ ଗଲା
ସବୁ ରାଜାଙ୍କର ଆଗେ ବାରତା କହିଲା ।
ବୋଲଇ ଶ୍ରୀମୁଖେ ଆଜ୍ଞା ଦେଲେ ଦଣ୍ଡଧାରୀ
ଜୀବନେ ନ ମାର ସର୍ବଙ୍କୁ ବାନ୍ଧି ଆଣ ଧରି ।
ଶୁଣି ସେ ସକଳ ନୃପ ଉଠି ଅତି ବେଗେ
ଏକ ପଛ କରି ଅନ୍ୟ ଧାଏଁ ଆଗେ ଆଗେ
ବନ୍ଧ ଭଙ୍ଗି ଗଲେ ଯେହ୍ନେ ଘୋଟିଆସେ ଜଳ
ତେସନ ଝଣିଲେ ତହିଁ ନୃପତି ସକଳ ।
ଶେଲ ଚକ୍ର ଭିନ୍ଦିପାଳ ଭୁଷୁଣ୍ଡି ମୁଦ୍‌ଗର
ଧନୁ ଖଡ଼୍‌ଗ କୁନ୍ତ ଭଲ୍ଲ ନରାଚ ତୋମର ।
ଝୁସି ଯମଦାଢ଼ ଗଦା ଶୂଳ ଚକ୍ର ଯଷ୍ଟି
ଏକମୁଖ ହୋଇ ପ୍ରହାରିଲେ କୋଟି କୋଟି ।
ଅନଳ ଦେଖି ପତଙ୍ଗ ପଡ଼େ ଯେହ୍ନେ ଉଡ଼ି
ତେସନ ପ୍ରକାରେ ଆଟ ପଡ଼ିଲେକ ମାଡ଼ି ।
ଶ୍ରୀକୃଷ୍ଣ ବୋଇଲେ ବଳଦେବ ମୁଖ ଚାହିଁ
ହେ ସ୍ୱାମୀ ଦକ୍ଷିଣ ଦିଗେ ଯୁଦ୍ଧ କର ଯାଇ ।
ସୁରଥକୁ ବୋଇଲେ ତୁ ପଶ୍ଚିମରେ ଜଗ
ପୂର୍ବ ଉତ୍ତର ଏ ଦୁଇ ହେଲା ଆମ୍ଭ ଭାଗ ।
ଶ୍ରୀକୃଷ୍ଣ ଆଜ୍ଞା ପ୍ରମାଣେ ବଳଦେବ ସ୍ୱାମୀ
ଦକ୍ଷିଣ ଦିଗେ ସମର କଲେ ଅନ୍ତର୍ଯାମୀ
ବାର ସହସ୍ର ନୃପତି ଏକୁ ଏକ ବଳୀ
ସଂଗ୍ରାମେ ଶକତ ସର୍ବେ ପରାକ୍ରମଶାଳୀ ।
ରଥ ଗଜ ଆଦି ଯାର ଅଙ୍ଗବଳ ଯେତେ
ଯେ ଯାହାର ଅନୁରୂପେ ସେନାଇ ସଙ୍ଗତେ ।
ସମୁଦ୍ର ଲହରୀ ପ୍ରାୟ ମାଡ଼ି ଆସୁଥିଲେ
ବଳଦେବ ରୂପ ଦେଖି ନିବର୍ତ୍ତି ରହିଲେ ।
ପଞ୍ଚାଶ ସହସ୍ର ନୃପ ପୂର୍ବେ ଥିଲେ ଧାଇଁ
ନନ୍ଦିଘୋଷ ଚଢ଼ି କୃଷ୍ଣ ଓଗାଳିଲେ ଯାଇ ।
ପଚିଶ ସହସ୍ର ନୃପ ଥିଲେ ପଶ୍ଚିମରେ
ସୁରଥ କୁମର ମିଳି ତାହାଙ୍କ ଆଗରେ ।

ବଡ଼ ବିଚକ୍ଷଣ ସେହି ଉଗ୍ରସେନ ନାତି
ମୂଳବଂଶ ଭୋଜବଂଶୀ କ୍ଷତ୍ରୀ ଶୁଦ୍ଧ ଜାତି ।
ପୁଷ୍ପକ ବିମାନ ଚଢ଼ି ସେ ସୁରଥବୀର
ପଶ୍ଚିମ ଦିଗ ଆବୋରି ହେଲା ଆଗୁସାର ।
ବନ୍ଧ ବନ୍ଧାଇଲେ ଯେହ୍ନେ ସ୍ଥିର ହୁଏ ଜଳ
ତେସନକ ସ୍ଥିର ହେଲେ ନୃପତି ସକଳ ।
ସମସ୍ତଙ୍କ ହୃଦୟରେ ଜାତ ହେଲା ଭ୍ରାନ୍ତି
ସଂଯମନୀ ପୁରୁ କିବା ଆସେ ଜନ୍ତୁପତି ।
ବୋଲନ୍ତି ଏମନ୍ତ ରୂପ ଦେଖିଲୁ ତ ନାହିଁ
ଲକ୍ଷେବଳ ଧନୁ ବରେ ବହିଅଛି ଏହି ।
ଏ କାହାର ପୁତ୍ର ସର୍ବେ ଭଲ କରି ଚାହିଁ
କେ ବୋଲନ୍ତି ଏହି ଅଟେ ସୁନାସନନ୍ଦନ ।
ଉଗ୍ରସେନ ରାଜାଙ୍କର ଅଟଇ ଏ ନାତି
ବାଳକ ବୟସ ମାତ୍ର ଚଞ୍ଚଳ ପ୍ରକୃତି ।
ସଙ୍ଗେ ରଥଗଜ ନାହିଁ ନାହିଁ ସୈନ୍ୟ ସଖା
ସାହସ କରିଣ ଦେଖି ଆସିଅଛି ଏକା ।
ପଣାଖେଳ ବୋଲି ମନେ କରିଛି ବର୍ବର
ନିଶ୍ଚେ ଆଜ ଭେଟିବ ଏ ସଂଯମନୀପୁର ।
ରଥୀ ମହାରଥୀଗଣ ହୋଇଛନ୍ତି ମେଳ
ପିମ୍ପୁଡ଼ି ବଳରେ କାହିଁ ଗିରି ହୁଏ ଟାଳ ।
ବାଲି ପକାଇଲେ କାହିଁ ସିନ୍ଧୁ ହୁଏ ପୋତା
କରପତ୍ରେ ଲୁଚଇ କି ସବିତା ଦେବତା ।
ବୃର ଉଣା ଲକ୍ଷେ ରାଜା ଅସଂଖ୍ୟ ସଇନ୍ୟ
ପାଦଭରେ ଦଲ ଦଲ କମ୍ପଇ ମେଦିନୀ ।
ସତାଇସ କ୍ଷୌଣୀ ବଳ ସେନ ସଙ୍ଗତରେ
ଆସେ ଜରାସନ୍ଧ ରାଜା ବିଜୟ ସମରେ ।
ଯୁଝିତେ ବାଳକ ସ୍ମାର ବୁଦ୍ଧି ଲେଶ ନାହିଁ
ମରଣ ବରଣ କରି ଆସିଅଛି ଧାଇଁ ।
ଏମନ୍ତ ବିଚାରୁଥିଲେ ସକଳ ନୃପତି
ସୁନାସନନ୍ଦନ ରଥ ଚାଳି ଶୀଘ୍ର ଗତି ।
ଗୁଣନାଦେ ଚରାଚର ମେଦିନୀ କମ୍ପାଇ
ଆଟ ଆଗେ ଉଭାହେଲା ନିର୍ଭୟରେ ଯାଇ ।
ସବୁରି ଅଗ୍ରତେ ଦନ୍ତବକ୍ର ରାଜା ଥିଲା
ତାହାର ସମ୍ମୁଖରେ ରଥ ନେଇଣ ଠେକିଲା ।
ସମ୍ମୁଖରେ ଦୁଇରଥ ହେଲା ଏକଭେଟ
ଐରାବତ ଗଜ ଯେହ୍ନେ ବିନ୍ଧ୍ୟଗିରି ତଟ ।

ଦନ୍ତବକ୍ର ରାଜାବୋଲେ ସୁରଥକୁ ରହିଁ
ବାବୁ ଅକଳତ ଥାଟେ ପଶିଲୁ କମ୍ପାଇଁ ।
ମୁନାସର ନନ୍ଦନ ତୁ ଉଗ୍ରସେନ ନାତି
ଭୋଜବଂଶର ମନ୍ତ୍ରୀ ଶୁଦ୍ଧ କ୍ଷତ୍ରୀ ଜାତି ।
ଯାଠକୁ ତୁ ବାଙ୍କାରି ରଜେ ଯୁବରାଜା
ଚଉଷଠି କୋଟି ଯାଦବେ ତୋହର ପରଜା
ତୋର ପିତା ଦେହ୍ର ତାକୁ କୃଷ୍ଣକଲା ନାଶ
ତା ପଛେ ଆମ୍ଭବା ତୋର ପ୍ରୟୋଜନ କସ
ବାବୁ ତୋର ପିତା ଶତ୍ରୁ ଏହୁ ଚକ୍ରପାଣି
ତୋତେ ମରାଇବ ସଙ୍ଗେ ବାଣ୍ଟାଧାରେ ଆଣି ।
କଂସ ଉମ୍ଭ ବେନଭାଇ ଜାଣି ନ ପାରିଲେ
ଏହାର ବାଣ୍ଟାଯେ ପଡ଼ି ଜଳେ ବୁଡ଼ିମଲେ ।
ଯେଉଁ ଲୋକ ବଂଶନାଶ କରିଛି ତୋହର
ତା ସଙ୍ଗେ ବିଶ୍ୱାସ କରୁ କେବଣ ପ୍ରକାର ।
ତୁ ମରନ୍ତେ ଭୋଜବଂଶ ସମୂଳେ ସରିବ
ଉଗ୍ରସେନ ବୁଢ଼ା ଥାଇ ଆଉ କି କରିବ
ଛଣବଢ଼ା ପ୍ରାୟେ ତାକୁ ଉଡ଼ାଇଣ ଦୂରେ
ରାମକୃଷ୍ଣ ରାଜା ହେବେ ମଥୁରାନଗରେ ।
ଜାଣୁ ଜାଣୁ କେମନ୍ତେ ତୁ ହେଲୁ ଜ୍ଞାନ ଧ୍ୱଂସ
ଏହୁ କୃଷ୍ଣ ସମୂଳରେ ନାଶିଲା ତୋ ବଂଶ ।
ଆମ୍ଭ ସାହାପକ୍ଷ ପାଇ ସମର ତୁ କର
ଏ ତୋହର ପିତାଶତ୍ରୁ ସ୍ୱହସ୍ତରେ ମାର ।
ଏହୁ ଜରାସନ୍ଧ ନୃପ ଧର୍ମେ ତୋର ଅଜା
ରାମକୃଷ୍ଣ ମାରି ତୋତେ କରାଇବା ରାଜା ।
ଚାଲ ଏବେ ଜରାସନ୍ଧ ନିକଟକୁ ଯିବା
ସମ୍ମୁଖରେ ଜହ୍ନିଣ ଦରଶନ କରାଇବା ।
ଯେ କୁମ୍ଭର ବନ୍ଧୁପଣ ଅଛି ସେହି ମତେ
କୁମଠାରେ କୋଟିକର ନାହାନ୍ତି ସେ ଶତ୍ରେ
ଯେ ଯାହାର ବୈରି ତାହା ଜାଣଇସେଭଲେ
ତେଣୁ ଯୁଦ୍ଧ ନ କରନ୍ତି ଯାଦବଙ୍କ କୁଳେ ।
କୃଷ୍ଣ ଆମ ବନ୍ଧୁ ନୁହେଁ ନୁହେ ସହୋଦର
ତା ସଙ୍ଗେ ପୀରତି ନୁହେ ଜଗତ ବେଭାର ।
ଗଉଡ଼ ବାଉଡ଼ ଯେ ହାଉଡ଼ ମୂଢ଼ମତି
ନନ୍ଦ ନାମ ବହଇ ଯେ ତାର କିସ ଜାତି ।
କାଦମ୍ବରୀ ପାନକରି ଗୋବୁହନ୍ତା କଲା
ରଙ୍ଗୁଆଳ ହୋଇ ବନେ ବଣ୍ଠା ଚରାଇଲା ।
ମାଉସୀ ପିଉସୀ ଖୁଡ଼ୀ ମାଈଁ ଆଦି କରି
ପରନାରୀ ହରିଲା ସେ ପାପକୁ ନ ଡରି ।
ସହୋଦର ମଉଳାକୁ ଆପେ ବଧ କଲା
ଗୁରୁଦ୍ରୋହ ରାଜଦ୍ରୋହ ପାତକ ଅର୍ଜିଲା ।
ଗଉଡ଼ଙ୍କ ଘରେ ଅନ୍ନ ଖାଇଅଛି ସେହି
ଆଠବର୍ଷ ରହିଲା ସେ ଗୋପପୁରେ ଯାଇ ।
ଆବର ଯେ ମହାପାପ ଅରଜିଛି ତେତେ
ଏକ ଏକ ନାମ ଧରି କହିବଇଁ କେତେ ।
ତୁ ତାର ଚରିତ ସବୁ ପ୍ରତ୍ୟକ୍ଷରେ ଜାଣୁ
ଆପଣାର ହିତ କଥା କହିଲେ ନ ଶୁଣୁ ।
ମିଛେ ମିଛେ ନାରାୟଣ ବୋଲାଉଛି ସେହି
ତା ସମାନେ ମହାପାପୀ ଜଗତରେ ନାହିଁ ।
ଆଜ ଜାଣିମା ଉବୁରି ଯିବ କେଉଁ କତି
ଭଲ ଯୋଗେ ପଡ଼ି ଅଛି ମରିବ ଏ ଘାନ୍ତି ।
ତୁ ତାହାର ସଙ୍ଗେ ଥିଲେ ନଷ୍ଟେ ନାଶଯିବୁ
ଆପଣାର ପ୍ରାଣ ଥିଲେ ଅଛି କାର୍ଯ୍ୟ ସବୁ ।
ସାଧୁଙ୍କର ସଦବିଦ୍ୟା ସତ୍‌କର୍ମ ଗ୍ରାହକ
ସଂସାରେ ଜନମ ହେଲେ ଏହି ସବୁ ଲେଖା
ଦନ୍ତବକ୍ର କଥା ଶୁଣି ସୁନାସ କୁମର
କ୍ରୋଧଭରେ କମ୍ପାଇଲା ଆପଣା ଶରୀର ।
ବେନି ଚକ୍ଷୁ ରଙ୍ଗ କରି ଦନ୍ତେ ଦନ୍ତ ଚାପି
ବୋଇଲା ତୁ ବିଷ୍ଣୁ ନିନ୍ଦା କଲୁ ମହାପାପୀ ।
ଅଜ୍ଞାନ ପାମର ତୁହି ତୋର ମନ୍ଦବୁଦ୍ଧି
କି ଅବା ଘୋଟିଲା ତୋତେ ଅଧି କାଳବ୍ୟାଧି
ଜଗତନାଥଙ୍କୁ ନିନ୍ଦା କଲୁ ତୁ ପାମର
ଅବଶ୍ୟ ଏ ଦୋଷେ କଣ୍ଠ ହୋଇବ ଚୋଷିର
କ୍ଷଣକେ ଗୋଟିଏ ସୃଷ୍ଟି ଯେ କରନ୍ତି ଆନ
ଦେବଙ୍କ ଉପରେ ଦେବ ଯେଉଁ ଭଗବାନ
ଆଦିଅନ୍ତ ମଧ୍ୟେ ଯାର ନାହିଁ ରୂପ ରେଖ
ତୁ ତାଙ୍କୁ ନ ଜାଣି ନିନ୍ଦା କରୁଅଛୁ ମୂର୍ଖ ।
ଦ୍ୱାପର ଯୁଗରେ ଭାର ନିବାରଣ ଅର୍ଥେ
ମାନବ ଶରୀରେ ଜାତ ହେଲେ ଜଗନ୍ନାଥେ
ତାଙ୍କୁ ମନ୍ଦ ଚିନ୍ତି କିସ କରିବୁ ଜହତ
ମୁଣ୍ଡ ଛେଦି ପେଲିଲେକ ଟଳଇ ପର୍ବତ ।
ଅଞ୍ଜଳରେ ବାହିଲେ କି ଶୁଖେ ବାରିନିଧି
ନକ୍ଷତ୍ରମାଳ ଗଣିବାକୁ ଅଛି କାହା ବୁଦ୍ଧି ।

ନଳ ଯେସନ ଆକାଶକୁ କେ ପାରଇ ମାପି
ତୁ ତାହାଙ୍କ ବସ୍ତୁ ମାୟା ନ ଜାଣୁରେ ପାପୀ
ଏହା ଶୁଣି ଶାଲ୍ୱ ବୋଲେ ଧିକ ତୋ ଜୀବନ
ନାଥ ପାଦେ ସେବାକରି କଷ୍ଟାଇଲୁ ଦିନ ।
ବନ୍ଧୁ ବୋଲି ଜଗସନ୍ଧ ଦୟା କରିଥିଲେ
ଏବେ ତୋର ପାପବୁଦ୍ଧି ଜଣାଗଲା ଭଲେ ।
ଆପଣା ବୁଦ୍ଧିରେ ଆପେ ମରଣ ଡାକିଲୁ
ମନ୍ତ୍ରରୁ ଅମୃତଗୁଡ଼ ଗରଳ ଭକ୍ଷିଲୁ ।
ଏକ୍ଷଣି କାଟିବି ତୋର ମୁଣ୍ଡ ଏକ ବାଣେ
ତୋ କୃଷ୍ଣ ବାପକୁ ଡାକ ରକ୍ଷା କରୁ କ୍ଷଣେ ।
ଶୁଣିଣ ସୁରଥ ବୀର କୋପେ ପରଜ୍ୱଳି
ଆକୋଶି ଧଇଲା ଧନୁ ବାମ କରେ ତୋଳି ।
ସିଂହନାଦ କରି ଧନୁ ଆମଞ୍ଜନ କଲା
ବାବଲ ନାମେ ନାରାଚ ଗୁଣେ ବସାଇଲା ।
ହରି ବଳରାମଙ୍କର ରୂପ ଅନ୍ତର୍ଗତେ
ଧ୍ୟାନକରି ଗୁରୁପାଦ ସୁମରିଲା ଚିତ୍ତେ ।
କଙ୍କପତ୍ର ଶତେବାଣ ଗୁଣରେ ବସାଇ
ଦନ୍ତବକ୍ର ଉପରକୁ ବିନ୍ଧିଲା ନଠାଇ ।
ପୁନରପି ଶତେବାଣ ବସାଇଣ ଗୁଣେ
ଶାଲ୍ୱ ରାଜା ଉପରକୁ ବିନ୍ଧିଲା ତକ୍ଷଣେ ।
ପୁଣି ଅଧାଚନ୍ଦ୍ର ବାଣ ପୂରାଇଣ ଶତ
ଦୁହିଙ୍କ ଉପରେ ବୃଷ୍ଟି କଲା କୋପଚିତ୍ତେ ।
ବୃର ଅଶ୍ୱ ଉପରକୁ ବିନ୍ଧ ଦଶ ଦଶ
ବେନ ସାରଥିଙ୍କୁ ବାଣ ବିନ୍ଧିଲା ପଚିଶ ।
ପୁଣି ନିଃଶ୍ୱାସକେ ପାଞ୍ଚବାଣ ଯେନି କରେ
ଧ୍ୱଜ ଉପରକୁ ଯୋଖି ବିନ୍ଧିଲା ସତ୍ୱରେ ।
ଆବର ସହସ୍ରେ ବାଣ ଧନୁରେ ପୂରାଇ
ଦନ୍ତବକ୍ର ଉପରକୁ ବିନ୍ଧିଲା ଭୁଲାଇ ।
ଶାଲ୍ୱର ଦେହକୁ ପୁଣି ଶତେକାଣ୍ଡ ବିନ୍ଧି
ସେ ଆସିବା ରଣଦାଣ୍ଡ ପକାଇଲା ରୁନ୍ଧି ।
ସହସ୍ର ସହସ୍ର ବାଣ ଫିଟି ମନ୍ତ୍ରବଳେ
ଗରଜି ଧାଇଁଲେ ଘୋଟି ଆକାଶ ମଣ୍ଡଳେ ।
ଶ୍ରାବଣ ମାସରେ ଯେହ୍ନେ ବରଷଇ ଜଳ
ତେସନ ପ୍ରକାରେ ବୃଷ୍ଟି ହେଲା ଶରମାଳ
ଦେଖି ଦନ୍ତବକ୍ର କୋପେ ପ୍ରଜ୍ୱଳିତ ହୋଇ
ସୁମରିତ ଲୁହାଧନୁ କରମୁଟେ ବହି ।

ସହସ୍ରେ କଣ୍ଟୁର ବାଣ ବିନ୍ଧ ଏକାବେଳେ
ସୁରଥର କାଣ୍ଡଯାକ ଛେଦି ଦେଲା ହେଳେ ।
ପୁଣି ସେ ନାଗପାଶ ବାଣ ଗୁଣରେ ବସାଇ
କୋପମନ ହୋଇ ବୋଲେ ସୁରଥକୁ ଚାହିଁ
ଆରେ ରେ ଚଣ୍ଡାଳ ମୂଢ଼ ବାଳୁତ ତୋ ମନ
ଦେଖାଉ ତୁ ଜରାସନ୍ଧ ନୃପତିର ନାଶ ।
ଯଦୁବଂଶ ଅଧିକାଶ ସୁନାସର ବଳା
ଅଖାଡ଼େ ମରିବୁ କମ୍ପା ବେଗେ ଏଥୁ ପଳା ।
ମୁଁ ଏବା ଉଦ୍ୟୋଗ କରି ଛାଡ଼ିଦେବି ତୋତେ
ହାଣ ରଥୀ ମହାରଥୀ ନାହାନ୍ତି ଯେ କେତେ
କାଳିର ପୁତ୍ର ହୋଇ ତୁ କି ଯୁଦ୍ଧ କରିବୁ
ଏହିକ୍ଷଣି ଏକ ବାଣ ପେଶିଲେ ମରିବୁ ।
ତୁ କାହିଁ ଜାଣିବୁ ଏବା ସଂଗ୍ରାମର ଭଙ୍ଗୀ
ତୋ ଦେଉଛୁ ତା କଂସରାଜା ଥିଲା ଆମ ସଙ୍ଗୀ
ସେ ମିନା ଜାଣଇ ଆମ୍ଭ ବୀର ଶୂରପଣ
ତା ସେହ୍ନ ବସ୍ତୁର ରକ୍ଷା କଲା ତୋର ପ୍ରାଣ ।
ତୁ ନ ଜାଣି ଆମ୍ଭ ଆଗେ ହେଉଅଛୁ ଠାଣି
ଏକା ବାଣକରେ ମୁଣ୍ଡ ପକାଇବି ହାଣି ।
ଆମ୍ଭେ କି ନ ଜାଣୁ ତୁହି ଅଟୁ ବଡ଼ ଦୁଷ୍ଟ
ଗଉଡ଼ ସଙ୍ଗତେ ରହି କାୟା କଲୁ ଭ୍ରଷ୍ଟ ।
କ୍ଷତ୍ରିୟ ମର୍ଯ୍ୟାଦା ତୋର ଦେହେ ଆଉ ନାହିଁ
ତୋତେ ବଧ କଲେ ନିନ୍ଦା ପାଇବି ଯେ ମୁହିଁ
ଏବେହେଁ ପଳାଇ ଯାଅ ନ ମାରିବୁ ଦୋଷ
ତୋହଠାରୁ ତୋହବଂଶ ହେଉଅଛୁ ଶେଷ ।
ନନ୍ଦ ଗଉଡ଼ର ପୋଏ ତୋହର ବଇରୀ
କପଟରେ ମରାଇଣ ଯେନବେ ତୋ ଶିରୀ ।
ଶୁକ ବୋଲନ୍ତି ଗୋ ଶୁଣ ପରୀକ୍ଷ ନୃମଣି
ସୁରଥ କୋପିଲା କର୍ଣ୍ଣେ ବସ୍ତୁ ନିନ୍ଦା ଶୁଣି ।
ପ୍ରଚଣ୍ଡ ପବନେ ଯେହ୍ନେ କମ୍ପଇ କଦଳୀ
ତେସନ କମ୍ପିଲା ଧନୁ ଧରି ମହାବଳୀ ।
କତୁରୀ ଶରେ ନାରାଚ ସ୍ୱର୍ଣ୍ଣପୁଙ୍ଖା ଶର
ବାଛି ଗୁଣେ ବସାଇଲା ନେଇ ଧାଡ଼କାର ।
କର୍ଣ୍ଣମୂଳ ପରଜନ୍ତେ ଓଟାରଣ ବେଗେ
ସମ୍ଭାଳ ସମ୍ଭାଳ ବୋଲି ଛାଡ଼ିଦେଲା ବେଗେ ।
ବାବଲ ନାରାଚ ବିନ୍ଧ ଦନ୍ତବକ୍ର ବାଣ
ଖଣ୍ଡ ଖଣ୍ଡ କାଟିଦେଲା ସୁରଥର ବାଣ ।

ସୁରଥ ତା ଦେଖି ପୁଣି ସହସ୍ରେ ବାଣ ଧରି
ନିମିଷକେ ପେଷିଦେଲା ଧନୁର୍ବେଦ ପୂରି ।
ତୀକ୍ଷ୍ଣ ମୁନା ଲୁହାଶର ସହସ୍ରେକ ପୁଣି
ବିନ୍ଧିଲା ସୁରଥ ଧନୁ କର୍ଣ୍ଣପାଏ ଟାଣି ।
ପୁଣି କୋଟି କୋଟି ବାଣ କ୍ଷଣକରେ ବିନ୍ଧି
ଦିଗ ବିଦିଗ ସହିତେ ଶୂନ୍ୟ ଦେଲା ରୁନ୍ଧି ।
ଦିବସେ ଅନ୍ଧାରମୟେ ନ ଦିଶଇ ମାର୍ଗ
ଆକାଶରେ ପୂର୍ଣ୍ଣ ହୋଇ ରହିଲା ଆଶୁଗ ।
କୋଦଣ୍ଡ କାଣ୍ଡ ଗର୍ଜ୍ଜନ ଶବ୍ଦ ଘୋରରଡ଼ି
ପ୍ରଳୟ କାଳରେ ଯେହ୍ନେ ମେଘ ଘଡ଼ଘଡ଼ି ।
ସୁରଥ ବିକ୍ରମ ଦେଖି ଦନ୍ତବକ୍ର ବଳୀ
ବାହିଲା ଶର ସହସ୍ରେ ବିନ୍ଧିଲାକ ଚଳି ।
ଶରେ ଶର ତାଳ ବାଜ ଉଠିଲା ଅନଳ
ଅନ୍ତରୀକ୍ଷେ ଶିଖ ଟେକ ଦିଶିଲା କରାଳ ।
ସେକାଳେ ସୁରଥ ବୀର ସହସେକ ବାଣ
ଗର୍ଜିଣ ବିନ୍ଧିଲା ଟାଣି କର୍ଣ୍ଣପାଏ ଗୁଣ ।
ସେ ବାଣ ଗରୁଡ଼ ପ୍ରାୟେ ଶୂନ୍ୟମାର୍ଗେ ଚଳି
ଦନ୍ତବକ୍ର ଅଙ୍ଗେ ଭେଦ ରହିଲା ନିକଳି ।
ସୂତଅଶ୍ୱ ପ୍ରାଣ ନେଲା ବିନ୍ଧି ସୂତକାଣ୍ଡ
ସାତକାଣ୍ଡେ ଛିଣ୍ଡାଇଲା ସାରଥିର ମୁଣ୍ଡ ।
ସାରଥି ଅଶ୍ୱ ମରନ୍ତେ ଦନ୍ତବକ୍ର ରଣ
ରଥୁଁ ଡେଇଁ ତଳେ ଉଭା ହୋଇଣ ତକ୍ଷଣ ।
ଆରେକ ରଥରେ ଯାଇ ଚଢ଼ୁଥିଲା ଉଠି
ସୁରଥ ସେ କାଳେ ତାର ଧନୁଦେଲା କାଟି ।
ତୂଣୀର ଭିତରେ ଯେତେ ଅସ୍ତ୍ର ଶସ୍ତ୍ର ଥିଲା
ପାଶୁପତ ବାଣେ ତାହା ଛେଦ ପକାଇଲା ।
ପୁଣିହିଁ ବିନ୍ଧିଲା ଖରେ ଅଗ୍ନିଶର କାଢ଼ି
ଦନ୍ତବକ୍ର ନୃପତିର ରଥଗଲା ପୋଡ଼ି ।
ଅଗ୍ନି ତେଜ ଲାଗି ଅଙ୍ଗ ହୋଇଲା ବିକଳ
ନିଃଶସ୍ତ୍ର ହୋଇଣ ଦନ୍ତବକ୍ର ମହୀପାଳ ।
ଧାଡକାରେ ପାଦଗତି କରି ପଳାଇଲା
ପୁଣି ଧନୁ ଧରି ଗଜ ଉପରେ ବସିଲା ।
ଇନ୍ଦ୍ରମତି ନାତି ତାହା ଦେଖି ଦୂରେ ଥାଇ
ଶାଣଦିଆ କାଣ୍ଡମାନ ବିନ୍ଧିଲା କୁହାଇ ।
ବଜ୍ରସମ ବାଣ ବାଜି ହସ୍ତୀ ଗଣ୍ଡସ୍ଥଳେ
କାନ୍ଧରୁ ଛିଡ଼ିଣ ମୁଣ୍ଡ ପଡ଼ିଲା ଭୂତଳେ ।

ପୁନରପି ତିନି କାଣ୍ଡ ସୁରଥ ବିନ୍ଧିଣ
ମାହୁନ୍ତ କନ୍ଧରୁ ଶିର ଛେଦିଲା ତକ୍ଷଣ ।
ବେନିଖଣ୍ଡ ହୋଇ ହସ୍ତୀ ପଡ଼ନ୍ତେ ଭୂମିରେ
ଦନ୍ତବକ୍ର ଆରୋହିଲା ଯାଇ ଅଶ୍ୱପରେ ।
ଖଣ୍ଡା କାତି ନାଳି ଦେଖି ସୁନାସ କୁମର
କଳୁଷ ନାରାଚ ଯାହି ବିନ୍ଧିଲା ସତ୍ୱର ।
ଯେ ବାଣ ଆକାଶ ହୋନ୍ତି ଅଶ୍ୱ ଅଙ୍ଗେ ପଶି
ଖୁର ଗାତ୍ର ଫୁଲେ ତାର ମୁଣ୍ଡଗଲା ଛିଣ୍ଡି ।
ଶସ୍ତ୍ରାଘାତେ ଦନ୍ତବକ୍ର ନ ପାରିଲା ଚଳି
ପଛକୁ ଉଦ୍ଧାନ ହୋଇ ପଡ଼ିଲାକ ଢଳି ।
ପାତ୍ରମନ୍ତ୍ରୀ ଅମାତ୍ୟ ସନ୍ନିଧିରେ ଥିଲେ
ସମଦଣ୍ଡପାକ ଆସି ରାଜାଙ୍କୁ ବେଢ଼ିଲେ ।
ଏହା ଦେଖି ଧାଇଁଲା ଯେ ଶାଲ୍ୱ ନୃପମଣି
ସଙ୍ଗେ ତାର ଅଙ୍ଗବଳ ଥିଲେ ପାଞ୍ଚକ୍ଷୌଣୀ ।
ଅପୂର୍ବ ରଥରେ ଚଢ଼ି ଗରଜଣ ରାଗେ
ପ୍ରବେଶ ହୋଇଲା ଆସି ସୁରଥର ଆଗେ ।
ହାତୀ ରଥୀ ପଦାତି ଯେ ଅକଳନ୍ତ ସେନା
ଏକକୁ ଆରେକ ବଳୀ ସର୍ବେ ଯୁଦ୍ଧମନା ।
କରେ ନାନା ଶସ୍ତ୍ର ଧରି ଭୟଙ୍କର ହୋଇ
ସୁରଥ ଉପରେ ମାଡ଼ି ପଡ଼ିଲେ ସେ ଯାଇ ।
ହାଣ ହାଣ ମାର ମାର ଧ୍ୱନି ଭୟଙ୍କର
ଚରଣ ରେଣୁରେ ଦିଗ ଦିଶିଲା ଅନ୍ଧାର ।
ରାଜାର ଧାଉଡ଼ି ଦେଖି ସାମନ୍ତ ସକଳେ
କେ କାହାକୁ ପଛ କରି ଆଗହୋଇ ଚଳେ ।
ପଦାତି ପଛରେ ଅଶ୍ୱ ଅଶ୍ୱ ପଛେ ରଥୀ
ରଥୀପଛେ ହସ୍ତୀବଳ ହେଲେ ଯନ୍ତାଯନ୍ତି ।
କୂଳ ଲଙ୍ଘି ଆସେ ଯେହ୍ନେ ସମୁଦ୍ରର ଜଳ
ତେସନକ ମାଡ଼ିଯାନ୍ତି ଚତୁରଙ୍ଗ ବଳ ।
ବୃହୁଁ ବୃହୁଁ ମିଳିଲେ ସେ ସୁରଥ ଆଗରେ
ସୁନାସନନ୍ଦନ ତାଙ୍କୁ ଦେଖି ଖଣ୍ଡେ ଦୂରେ ।
କଳୁଷ ନାରାଚ ଶତେ ତୂଣୀରରୁ କାଢ଼ି
ଗୁଣେ ସନ୍ଧି କରିଗଲା ଧନୁର୍ବେଦ ପଢ଼ି ।
ପୁଣି ପଞ୍ଚଶତ ବାଣ ଧନୁମଧ୍ୟେ ଯୋଖି
ବୃହୁଁ ବୃହୁଁ ବିନ୍ଧିଲା ସେ ଉପ୍ରୋଧ ଉପେକ୍ଷି ।
ପଞ୍ଚମୁଖା ସପ୍ତମୁଖା ଶାଣଦିଆ ବାଣ
ହସ୍ତ ଲାଘବ ଦେଖାଇ ବିନ୍ଧେ ଅପ୍ରମାଣ ।

ମସ୍ତକାରେ ବାଣଗଣ ଶୂନ୍ୟପଥେ ଭେଦ
ଅନେକ ସଇନ୍ୟ ଅଶ୍ୱ ଗଜ ହେଲେ ଛେଦ ।
ସାରଥୀ ସହିତେ ରଥୀ ମଲେ ଅପ୍ରମାଣ
ଅତ୍ୟନ୍ତ କୋପେ ସୁରଥ ବର୍ଷେ ପୁଣ ପୁଣ ।
କାହାର କର ଚରଣ ଅଣ୍ଟା ଗଲା ଛିଣ୍ଡି
ପବନାସ୍ତ୍ରେ କେତେ ସେନା ଚଳାଇଲେ ଉଡ଼ି ।
ଶ୍ରବଣ ନାଶିକା ଛିଡ଼ି ଚକ୍ଷୁ ହେଲା ଅନ୍ଧ
ତଳେ ପଡ଼ି ମୁଣ୍ଡ ଗଡ଼େ ଛିଡ଼ିଯାନ୍ତେ କନ୍ଧ ।
ଭୟେ ଚଳ ନପାରିଲେ ଶାଲ୍ୱର ସଇନ୍ୟ
ଅଶ୍ୱଙ୍କ ଗର୍ଜନଘାତେ କମ୍ପଇ ମେଦନୀ ।
ମେଦମେଦ ରକତରେ ପଙ୍କିଳ ଧରଣୀ
ଆନନ୍ଦେ ପିଅନ୍ତି ମିଳି ଅନେକ ଯୋଗିନୀ ।
ସହସ୍ର ସଂଖ୍ୟା କବନ୍ଧ ନୃତ୍ୟ କଲେ ଉଠି
କେହୁ ତଳେ ପଡ଼େ କେହୁ ଲାଗଇ ପାଳଟି ।
ଧନ୍ୟ ସେ ସୁନାସୁତ କ୍ଷତ୍ରି ଅନର୍ଗଳା
ବିଷ୍ଣୁ ତେଜେ ବଳସ୍ୱାର ଭୋଜବଂଶ ବଳା ।
କ୍ରୋଧରେ ଗର୍ଜ୍ଜଇ ବୀର କାଳସର୍ପ ଜାଣି
ଏକା ହୋଇ ନଭପୁରେ କରଇ ଆରେଣି ।
ମହାମନ୍ତ୍ର ସୁମରି ସେ କରେ ଧନୁ ବହି
କ୍ଷଣକରେ କୋଟି କୋଟି ବାଣ ପ୍ରହାରଇ ।
ରଥକରେ ପଞ୍ଚବାଣ ହସ୍ତୀକେ ପଚଶ
ଅଶ୍ୱକେ ପଞ୍ଚାଶ ପୁଣି ପଦାତିକେ ଦଶ ।
ଏ ବିଧି ଅନେକ ବାଣ ବର୍ଷେ ନିରନ୍ତର
ଆକାଶରେ ପୂରି ବେଗେ ହୋଇଲା ଅନ୍ଧାର ।
କକଡ଼ା ମାସରେ ଯେହ୍ନେ ବରଷଇ ଜଳ
ତେସନକ ବାଣବୃଷ୍ଟି ହେଲା ଅନର୍ଗଳ ।
ସବୁରି ଶରୀରେ ହୋଇ ତୀକ୍ଷ୍ଣ ଶର ଘାତ
ହାତୀ ରଥୀ ପଦାତି ଯେ ମଲେ ଅପ୍ରମିତ ।
ସବୁରି ଅଙ୍ଗରେ ବାଣ ରହିଲା ନିକଳି
ଛଟପଟ ହୋଇ ପାଦେ ନପାରନ୍ତି ଚଳି ।
ମତ୍ତହସ୍ତୀ ମରଦଇ ଯେହ୍ନେ ପଦ୍ମ ବନ
ସୁରଥ ମର୍ଦ୍ଦିଲା ତେହ୍ନେ ଶାଲ୍ୱର ସଇନ ।
ପ୍ରଚଣ୍ଡ ପବନ ଘାତେ କୁଳାକୁଡ଼ ପ୍ରାୟେ
ଚତୁରଙ୍ଗ ସେନା ଭଙ୍ଗ ପଳାଇଲେ ଭୟେ
ପଦାତି ଉପରେ ଅଶ୍ୱ ପଡ଼େ ଗଜଗାଜ
ଗଜଙ୍କ ଉପରେ ରଥ ମାଡ଼ିପଡ଼େ ଭଙ୍ଗ ।

ବହିଲା ରକତନଦୀ ରଣରଙ୍ଗ ସ୍ଥାନେ
କାଷ୍ଠ ପ୍ରାୟ ଭାସିଯାନ୍ତି ମୃତ ଶବମାନେ ।
ବାୟସ ଜମ୍ବୁକ ବୃକ ଗୃଧ୍ରପକ୍ଷୀ ଶ୍ୱାନ
ମେଦ ମାଂସ ଖାଇ ମୁଖେ ରକ୍ତ କଲେ ପାନ ।
କଙ୍କାଳୀ ବେତାଳୀ ଚଣ୍ଡି ଚାମୁଣ୍ଡା ଯେ କାଳୀ
ଡାକିଣୀ ଭକ୍ଷିଣୀ ପିଶାଚୁଣୀ ମାଉଆଳୀ ।
କିଳକିଳା କୁହୁକୁହୁ ଭୟଙ୍କର ନାଦେ
ମେଦମେଦା ଖାଇ କ୍ରୀଡ଼ା କରନ୍ତି ଆନନ୍ଦେ ।
ରଣରଙ୍ଗେ ବିହରଇ ଉଗ୍ରସେନ ନାତି
ଦେଖି ମହାଭୟ କଲେ ସକଳ ନୃପତି ।
ସୈନ୍ୟଙ୍କ ବିକଳ ଦେଖି ଶାଲ୍ୱ ନୃପମଣି
ସୁରଥ ଆଗରେ ରଥ ରଖାଇଲା ଆଣି ।
ଦୂରୁରେ ନାରାଚ ସନ୍ଧି ବୋଲେ ଆରେ ମୂଢ଼
ସଇନ ଲେଉଟାଏ ମାରି ହୋଇଲୁ କି ବଡ଼ ।
ଜନ୍ମବନ୍ଧ ପ୍ରାୟେ ମୋତେ ମଣିଲୁ କି ତୁହି
ତୋ ପିତା ସୁନାସ ମୋର ମଇତ୍ର ଅଟଇ ।
ଯେହ୍ନେ ଧର୍ମ ରଖି ମୋତେ କରିଥିଲେ ପୂଜା
ସେ ମୋ ବଳେ ମଥୁରାପୁରେ ହୋଇଥାନ୍ତି ରାଜା
ତୁ ତାହା ନ କରି ଯେବେ ଅର୍ଜ୍ଜିଲୁ ପାପ
ଆଜଠାରୁ ତୋର ସବୁ ଶିରୀ ହେଲା ଲୋପ ।
ଗଡ଼ୁଡ଼କୁ ସାହା ପାଇ ଆମ୍ଭଙ୍କୁ ତୁ ଛାଡ଼ୁ
ଅମୃତକୁ ଦୂର କରି ବିଷ ଭକ୍ଷି ଲୋଡ଼ୁ ।
ଆପଣା ହସ୍ତରେ କମ୍ପା ଖୋଳୁ ନିଜ ଆଖି
ଶତ୍ରୁପାଦେ ଖଟିଅଛୁ ସୁହୃଦ ଉପେକ୍ଷି ।
ପିତାକୁ ଛାଡ଼ିଲୁ କର୍ପୂ । ପିଇସାକୁ ଲୋଡ଼ି
ସୂର୍ଯ୍ୟରଥ ବାନ୍ଧିବାକୁ ଲଗାଉ ଦଉଡ଼ି ।
ସମୁଦ୍ର ସଙ୍ଗରେ କରୁ କ୍ଷୁଦ୍ର ନଦୀ ଲେଖା
ଚନ୍ଦ୍ରମା ସଙ୍ଗରେ ତାରା ହୁଅଇକି ଯୋଖା ।
ଅସଂଖ୍ୟ ସାଗର ଏହି ଜରାସନ୍ଧ ଥାଟ
କୁରୁଭୂଣା ଲକ୍ଷେ ରଜା ହୋଇଛନ୍ତି ଯୋଟ
ଏ ସୈନ୍ୟ ସାଗର ମଧ୍ୟେ ପଶୁଅଛୁ ଏକା
ପଛକୁ ବୁଝିଲେ ତୋର ଜଣେ ନାହିଁ ସଖା ।
ଦମ୍ଭ ଅର୍ଜ୍ଜିଲୁ ପଶି ଚତୁରଙ୍ଗ ଥାଟେ
ଆଜ ଜାଣିବା ତୁ ଏଥୁ ଯିବୁ ଯେଉଁ ବାଟେ
ତିଳ ପ୍ରମାଣରେ କାଟି ମାଂସ ତୋର ଆଜ
ମାନ ରକ୍ଷିବି କରି ଜରାସନ୍ଧ କାର୍ଯ୍ୟ ।

ଏତେ ବୋଲି ଧନୁ ଟାଣିକଲା ଗୁଣଧ୍ୱନି
ସେ ନାଦେ କମ୍ପିଲା ସ୍ୱର୍ଗ ଆଦି ପୁର ତିନି ।
ତୀକ୍ଷ୍ଣ ଶାମୁନା ଶତେ ବାଣ ପୂରାଇ ଧନୁରେ
ପଞ୍ଚାଳ ସୁରଥ ବୋଲି ବିନ୍ଧିଲା କ୍ରୋଧରେ ।
ସନ୍ତପେ ବାଜିଲା ଶର ନିଃଶ୍ୱାସକେ ବିନ୍ଧ
ଧରଣୀ ସଙ୍ଗତେ ଦଶଦିଗ ଦେଲା ରୁନ୍ଧି ।
ଅଦୃଶ୍ୟ ହୋଇଲା ବାଣେ ସୁରଥର ଯାନ
ସିଂହନାଦ କଲେ ଏହା ଦେଖି ସେନାଗଣ ।
ନାରାଚ ଆସନ୍ତେ ଦେଖି ସୁନାଭ କୁମର
ଅର୍ଦ୍ଧଚନ୍ଦ୍ରେ ନିବାରିଲା ତେଣି ଲକ୍ଷେ ଶର ।
ପୁନରପି ଅର୍ଦ୍ଧଚନ୍ଦ୍ର ବାଣ ଶତେ ବିନ୍ଧି
ଶାଲ୍ୱ ନୃପତିର ସବୁ ଅସ୍ତ୍ର ଦେଲା ଛେଦି ।
ଦେଖି ମନେ ଲାଜ ପାଇ ଶାଲ୍ୱ ନୃପମଣି
କଙ୍କମୁଖ ନାରାଚ ଗୁଣେ ବସାଇଲା ଆଣି ।
ମନ୍ତ୍ର ସୁମରଣ ଗୁଣ ଟାଣି କର୍ଣ୍ଣଯାଏ
ସୁରଥ ଉପରେ ତାହା ବିନ୍ଧିଲା ସେ ରାୟେ ।
କ୍ଷୁରକାଣ୍ଡ ଚାରିଅଶ୍ୱ ଉପରେ ବିନ୍ଧିଲା
ତିନିକାଣ୍ଡେ ସାରଥିକ ମୁଣ୍ଡ ପକାଇଲା ।
ଅକ୍ଷ ଚକ୍ର ଯୁଆଳିକି ବିନ୍ଧି ଦଶ ଦଶ
ଧ୍ୱଜ ଉପରକୁ ପୁଣି ବିନ୍ଧିଲା ପଚିଶ ।
ପ୍ରତି ଅଙ୍ଗେ ଦଶକାଣ୍ଡ ବାଛି ବାଛି ବିନ୍ଧି
ସହସ୍ର ବାଣରେ ରଣଦାଣ୍ଡ ଦେଲା ରୁନ୍ଧି ।
ସମରେ ଅନର୍ଗଳ ସେ ଶାଲ୍ୱ ନରପତି
ଦେବତା ଗନ୍ଧର୍ବ ହେଲେ ନାହିଁ ତାର ଖ୍ୟାତି
ଦ୍ୱାପରେ ଭାରତେ ମଲ୍ଲ ଏକେ ମହାରଥୀ
ମନ କଲେ ଜିଣିପାରେ ଚରାଚର ପୃଥ୍ୱୀ ।
ଈଶ୍ୱରଙ୍କୁ ସେବା କରି ପାଇଛି ସେ ବର
ଅସ୍ତ୍ର ଶସ୍ତ୍ର ନ କାଟଇ ଅଙ୍ଗରେ ତାହାର ।
ତୋଷେ ତାକୁ ଧନୁ ଦେଇଛନ୍ତି ଶୂଳପାଣି
ଇନ୍ଦ୍ରାଦି ଦେବଙ୍କୁ ରଣେ ପାରଇ ସେ ଜିଣି
ବହଇ ପାଞ୍ଚ ସହସ୍ର ବଳ ଯେଉଁ ଧନୁ
ଯା ନାମ ଶୁଣିଲେ ଭୟେ କମ୍ପେ ଶତମନ୍ୟୁ ।
ସେ ଧନୁ ଧରି ବିନ୍ଧଇ ଶାଲ୍ୱ ନୃପବର
ଜଳମାସ ବୃଷ୍ଟି ପ୍ରାୟେ ଛାଡ଼ୁଅଛି ଶର ।
ଶରଘାତେ ଅନ୍ଧକାର ହୋଇଲା ଗଗନ
ନଶ୍ୱତ ଉଡ଼ନ୍ତି ପ୍ରାୟେ ଶୁଭଇ ଗର୍ଜ୍ଜନ ।

ଦଶ ଦାନ୍ତ ଯୋଡ଼ି ଆଗେ ବାଣ ଅପ୍ରମିତ
ଦୁହୁଁ ଦେଖି ନନ୍ଦିପୁରେ ସୁନାଭର ସୁତ ।
ଅର୍ଦ୍ଧଚନ୍ଦ୍ର କଙ୍କମୁଖ ଏ ବେନିବାଣ ଧରି
ମାଡ଼ିକାଟି ବିନ୍ଧିଲା ସେ ମନ୍ତ୍ରକୁ ସୁମରି ।
ଶାଲ୍ୱ ବାଣ ଆସୁଥିଲେ ଶୂନ୍ୟ ମାର୍ଗେ ଭେଦ
ଚାଞ୍ଚ ଚାଞ୍ଚ ଖଣ୍ଡ କରି ସବୁ ଦେଲା ଛେଦ ।
ଦେଖି ମହାକୋପ କଲା ଶାଲ୍ୱ ନୃପରାୟେ
ଶରୀର କମ୍ପିଲା ବାତେ ରମ୍ଭାପତ୍ର ପ୍ରାୟେ ।
ମହାନାଗ ପ୍ରାୟ କୋପେ କରି ଗରଜନ
ଆକର୍ଷି ଘେନିଲା କରେ ଟେକ ସରସନ ।
ଚନ୍ଦ୍ରକାନ୍ତ ତୀକ୍ଷ୍ଣ ଶମ୍ଭୁନା ଅର୍ଦ୍ଧଚନ୍ଦ୍ର ବାଣ
ଧନୁର୍ବେଦ ସୁମରି ସେ ବିନ୍ଧେ ପୁଣ ପୁଣ ।
ଦେଖିଣ ସୁରଥ କରେ ଦଶବାଣ ଧରି
ବାଣ ଉପରକୁ ବାଣ ବିନ୍ଧିଲା ଉଚ୍ଚାରି ।
ଅ ବାଟେ ଦୁଇଶସ୍ତ୍ର ବାଜି ପରିତାଳ
ପ୍ରଚଣ୍ଡ ହୋଇଣ ଶବ୍ଦ ଶୁଭେ ବିକରାଳ ।
ଦଲ ଦଲ ଦସୁନ୍ଧରା କମ୍ପେ ପୁର ତିନି
ଉଠିଲାକ ଜ୍ୟୋତିର୍ମୟ ଦାବାନଳ ଅଗ୍ନି ।
ପୁଣି ଶାଲ୍ୱ ପଞ୍ଚାଶତ କ୍ଷୁରକାଣ୍ଡ ଧରି
ମନ୍ତ୍ର ପଢ଼ିଣ ବିନ୍ଧିଲା ମହାକୋପ କରି ।
ସେ ବାଣ ଆସନ୍ତେ ଦୂରୁ ସୁରଥ ଦେଖିଣ
ଦଶକାଣ୍ଡ ବିନ୍ଧି ତାହା କଲା ନିବାରଣ
ଜଳଧର ଅସ୍ତ୍ର ଶାଲ୍ୱ କରନ୍ତେ ସନ୍ଧାନ
ପବନାସ୍ତ୍ରେ ଉଡ଼ାଇଲା ସୁନାଭ ନନ୍ଦନ ।
ପର୍ବତାସ୍ତ୍ର ପ୍ରହାରନ୍ତେ ଶାଲ୍ୱ ନରପତି
ବଜ୍ରାସ୍ତ୍ରରେ ଚୂର୍ଣ୍ଣ କଲା ଉଗ୍ରସେନ ନାତି ।
ପନ୍ନଗାସ୍ତ୍ର ବରଷନ୍ତେ ଶାଲ୍ୱ ନୃପନାଥ
ଗରୁଡ଼ାସ୍ତ୍ର ପେଷି ତାହା ଛେଦିଲା ସୁରଥ
ଅସ୍ତ୍ର ହତ ହେବା ଦେଖି ଶାଲ୍ୱ ନୃପମଣି
ପାଶୁପତ ଶର ଗୁଣେ ବସାଇଲା ଆଣି ।
ତା ଦେଖି ସୁରଥ ନାରାୟଣ ଅସ୍ତ୍ର କାଢ଼ି
ଶରାସନେ ବସାଇଲା ବେଦମନ୍ତ୍ର ପଢ଼ି ।
ନାରାୟଣ ଅସ୍ତ୍ର ଦେଖି ଶାଲ୍ୱ ଭୟ କରି
ପାଶୁପତ ଶର ଅଟେ ରଖିଲା ସହାରି ।
ବାଣ ସହରନ୍ତେ ଛିଦ୍ର ପାଇଣ ସୁରଥ
ସହସ୍ର ନାରାଚ ସନ୍ଧି ପେଷିଲା ତୁରିତ ।

ସୂତ ଅଶ୍ୱଙ୍କୁ ସଙ୍ଖ୍ୟା ସାରଥିକୁ ଅଷ୍ଟ
ଅଖ ଚକ ଉପରକୁ ଦଶ ଦଶ ପେଷି ।
ଖାମ୍ବକେ ସତର କାଣ୍ଡ ଶ୍ରେଣୀକେ ବନ୍ଧଣ
ଜଳସକୁ ପାଞ୍ଚକାଣ୍ଡ ପତାକାକୁ ଦଶ ।
ଧନୁକୁ ପନ୍ଦର ପୁଣି ତୂଣୀରକୁ ଅର୍ଣ୍ଣା
ଏକା ନିମିଷକେ ଏତେ ବାଣ ଦେଲା ପେଷି
ଶାଲ୍ୱ ନୃପ ହୃଦୟକୁ ପଞ୍ଚଦଶ ବିନ୍ଧି
ପୃଥ୍ୱୀ ନନ୍ଦ ଭୁଜେ ଅଷ୍ଟଦଶ ଦେଲା ଛିନ୍ନି ।
ସେ କାଣ୍ଡ ଅତ୍ୟନ୍ତ ବେଗେ ଶୂନ୍ୟମାର୍ଗେ ଚଳି
ସବୁର ସଙ୍ଗରେ ଭେଦ ଉଚ୍ଛିଳା ଅକାଳ ।
ସାରଥି ସହିତେ ସୂତ ଘୋଟକ ଧୁମାଇ
ପାଦେ ଚଳି ନ ପାରଲେ ଖାମ୍ବପ୍ରାୟ ହୋଇ
ମୂର୍ଚ୍ଛାଗତ ହୋଇ ରାଜା ପଡ଼ିଲେକ ଲୋଟି
ଝିଙ୍କପକ୍ଷୀ ପ୍ରାୟ ଅଙ୍ଗେ ବାଣ ଅଛି ଫୁଟି ।
ଏହା ଦେଖି ଧାଇଁଲା ଯେ ଦମଘୋଷ ରାଗେ
ଚୌଦକ୍ଷୌଣୀ ଅଙ୍ଗବଳ ଅଛି ତାର ସଙ୍ଗେ
ରାଜା ମହାରାଜା ଭୂମ୍ୟା ଭୂପାଳ ଯେ ଅଳେ
ଏଗାର ସହସ୍ର ନୃପ ପୃଷ୍ଠ ରକ୍ଷା କଲେ ।
ବଡ଼ ବଳବନ୍ତା ସେହି ଦମଘୋଷ ରାୟ
ଇନ୍ଦ୍ର ଚନ୍ଦ୍ର ହେଉ ତାର ନାହିଁ ତିଳେ ଭୟ
ଶିଶୁପାଳ ନାମେ ତାର ପୁତ୍ର ରଣରଙ୍ଗା
ବ୍ରହ୍ମା ବିଷ୍ଣୁ ଶିବଙ୍କୁ ସେ ନ କରଇ ଶଙ୍କା ।
ଜରାସନ୍ଧ ପୁତୁରା ସେ ଶିଶୁପାଳ ବୀର
ଉଗ୍ରସେନ ନାତି ଦଇବକୀର କୁମର ।
ବଳେ ଅତି ବଳୀୟାର ଦମଘୋଷ ରାଜା
ସର୍ବଗୁଣେ ପରିପୂର୍ଣ୍ଣ କ୍ଷତ୍ରୀ ମହାତେଜା ।
ସତୁରି ସହସ୍ର ବଳ ଧନୁ କରେ ଧରି
ସୁରଥ ଆଗେ ମିଳିଲା ରେରେକାର କରି ।
ଶାଲ୍ୱ ଦନ୍ତବକ୍ର ଦୁହେଁ ମୋହେ ପଡ଼ିଥିଲେ
ଘଡ଼ିକରେ ଚେତା ପାଇ ଲଜେ ପଳାଇଲେ ।
ଦମଘୋଷ ଶିଶୁପାଳ ପିତା ପୁତ୍ର ବେନି
ସଂଗ୍ରାମକୁ ଆବୋରିଲେ କରେ ଶସ୍ତ୍ର ଘେନି ।
ନାନାଦେଶ ନୃପଙ୍କର ଚତୁରଙ୍ଗ ବଳ
ଏକାବେଳକରେ ମାଡ଼ ପଡ଼ିଲେ ସକଳ ।
ସୁରଥ ମୁଖକୁ ଚାହିଁ ବୋଲେ ଦମଘୋଷେ
ଅରେ ଉଗ୍ରସେନ ନାତି ସୁନାସିର ଶିଷ୍ୟ ।

ଅଭିନ୍ନ ସୋଦର ତୁ ଯେ ଆମ୍ଭର ନିଶ୍ଚେ
ତୋ ସଙ୍ଗେ ସଂଗ୍ରାମ ଆମ୍ଭେ କରିବୁ କେମନ୍ତେ
ସଂଗ୍ରାମେ ପଶିଲେ ଗୋଟୁ ବଜ୍ର ଶିର ଛେଦ
ଆବର ବିଶେଷେ ତୁ ଯେ ନୋହୁ ଆମ୍ଭ ବାଦୀ
ଗୋପବଂଶ ଉଦ୍ଧାରଣ ତୁ ଏକଇ ବଳୀ
ଅନାମିତେ ନାଶଯିବୁ ବେଗେ ଏଥୁ ପଳା ।
ମୂର୍ଖ ଅବା ଛାଡ଼ଦେବ ସୋଦର ବିଚାର
ଆନର ହସ୍ତେ ପଡ଼ିଲେ ନେବେ କେଶ ଧରି ।
ତୋର ଶତ୍ରୁ ନୁହଇ ଏ ରାଜା ଜରାସନ୍ଧ
ତୁ କମ୍ପା ନ ଜାଣି କଲୁ ଏତେ ସୈନ୍ୟ ବଧ
ଅମୃତ ଭାଣ୍ଡରେ କମ୍ପା ଭରୁଅଛୁ ବିଷ
ତୋ ସକାଶୁ ବନ୍ଧୁପଣ ଗଲା ଏବେ ନାଶ ।
କୁଳକୁ କଣ୍ଟକ ହେଲୁ ତୁ ଯେ ହୀନପ୍ରାଣୀ
ରାମକୃଷ୍ଣ ଦେଖି ମିଛେ ହେଉଅଛୁ ଟାଣି ।
ସୁରଥ ବୋଇଲା ମୋତେ ଏ କଥା ନ କହ
ଆବର ପାଇବ କାହିଁ ବନ୍ଧୁପଣେ ସ୍ନେହ ।
ଜଗଦ୍‌ବନ୍ଦନ ନାଥଙ୍କୁ ବୋଲୁଅଛ ମନ୍ଦ
ତେଣୁ ତୁମ୍ଭ ସଙ୍ଗତେ ମୁଁ କରୁଅଛି ଦ୍ୱନ୍ଦ୍ୱ ।
ଆବର କଥାଏ ଶୁଣ କହୁଅଛି ଆଗେ
ଜରାସନ୍ଧ ସନ୍ନିଧରେ ଫେରିଯାଅ ବେଗେ ।
ତୁମ୍ଭର ଆମ୍ଭର ବନ୍ଧୁପଣ ରହିଥାଉ
ଏତେ ବଡ଼ ରାଜା ହୋଇ ନିନ୍ଦାହିଁ ନ ପାଉ
ତୁମ୍ଭେମାନେ ଗଞ୍ଜି ନୁହ ଆଜ ମୋ'ର ତହିଁ
ଜଗନ୍ନାଥ ଶତ୍ରୁ ହେଲେ ନ ବର୍ତ୍ତିବ କେହି ।
ଶିଶୁପାଳ ବୋଇଲା ରେ ତୁ ଚଣ୍ଡ ଛେଳଣ୍ଡା
ଗଉଡ଼ ସଙ୍ଗତେ ଥାଇ ହେଲେ ଗୋଳକୁଣ୍ଡା ।
ବୁଦ୍ଧି ଜ୍ଞାନ ହରାଇଲୁ ଜାତି କଲୁ ନାଶ
ତୋତେ ବନ୍ଧୁ ବୋଇଲେରେ ହେବ ଉପହାସ
ଆଗରେ ପଡ଼ିଛୁ ଏବେ ଯିବୁ ଆଜ କାହିଁ
ସତେ ବଳୀୟାର ପ୍ରାୟେ କହୁଛୁ ବଢ଼ାଇ ।
ଜୀବନ୍ତେ ବାନ୍ଧିକରି ମୁଁ ନେବି ତୋତେ ଧରି
ଦୁଇ ଚକ୍ଷୁ ଖୋଳି ରଖାଇବ ବନ୍ଦୀକରି ।
ଏତେ ବୋଲି ଶିଶୁପାଳ ନାରାଚ ପୂରାଇ
ରଥକୁ ମାଇଲା ବେଗେ କୋପଭର ହୋଇ ।
ଅତ୍ୟନ୍ତ ବେଗରେ ଧରି ସହସ୍ରେକ ବାଣ
କର୍ଣ୍ଣପାଏ ଗୁଣ ଟାଣି ଛନ୍ଦିଲା ସେ ପୁଣ ।

ବଡ଼ ବଳବନ୍ତ ସେହୁ ଶିଶୁପାଳ ବୀର
ଦେବଇନ୍ଦ୍ର ସମାନ ସେ ଅଟେ ଧନୁର୍ଦ୍ଧର ।
କାମଦେବ ପ୍ରାୟେ ଦିଶେ ତାର ତନୁ ଶୋଭା
ଅତ୍ୟନ୍ତ ଲାବଣ୍ୟ ରୂପ ଏକେ ନବଯୁବା ।
ତୋଷେ ଶିବ ତାକୁ ବରଦେଲେ ବାଲ୍ୟକାଳେ
ସଂଗ୍ରାମ ଜଣନ୍ତା ନାହିଁ ଏ ମହୀମଣ୍ଡଳେ ।
ରଥି ମହାରଥୀ ହସ୍ତୀ ଅଶ୍ୱ ଆଦିକରି
ହସ୍ତେ ଅସ୍ତ୍ର ଥିଲେ ତାକୁ କେ ନୁହନ୍ତି ସରି ।
ପିତା ଦମଘୋଷ ତାର ଅଛି ଭଗ୍ନ ହୋଇ
ଭଗ୍ନସୈନ୍ୟ ଦେଖୁଛନ୍ତି ପଛକୁ ଅନାଇ ।
ଜାଣିବା ମାତ୍ରକେ ସେହୁ ଶିଶୁପାଳ ଜେମା
ବସାଇଲା ଆଠଶତ ବାଣ ତୀକ୍ଷ୍ଣ ମୁନା ।
ମନ୍ତ୍ରରେ ଆହ୍ୱାନ କରି ବିନ୍ଧିଲା ତା ବେଗେ
ଚଳିଲେ ନାରାଚମାନେ ଅନ୍ତରୀକ୍ଷ ମାର୍ଗେ ।
ଫେଣାଭଗ୍ନହେଲେ ଯେହ୍ନେ ମହୁପୋକେ ଧାଇଁ
ତେସନେ ବିନ୍ଧିଲା ବାଣ ତୂଣୀରରୁ ନେଇ ।
ସୁନାସ କୁମର ଦେଖି ବାଣ ଆସୁ ଆସୁ
ଗୁଣେ ବସାଇଲା ଶଏ ପଞ୍ଚ ଶତ ପଶୁ ।
ରେରେକାର କରି ତାହା ଅତିବେଗେବିନ୍ଧି
ଶିଶୁପାଳର ସାୟକ ସବୁ ଦେଲା ଛେଦି ।
ଦେଖି କୋପାନଳ ହୋଇ ଶିଶୁପାଳ ବୀର
ଆଖୋଣି ଧଇଲା କରେ ଲୁହା ଧନୁବର ।
ପରିଘ ଶକତି ବାଣ ବିନ୍ଧନ୍ତେ ସେ ଟାଣି
ଗୁଣେ ନ ବସୁ ଖେଦିଲା ତା କୁମରମଣି ।
ଅଧରକୁ ପୁଷ୍ପକରି ସୁନାସର ବକ୍ଷ
କରୁଣା ନାରାଚ ହସ୍ତେ ହେଲା ପ୍ରତ୍ୟକ୍ଷ ।
ହୁଂକାର ଶବଦ କରି ବିନ୍ଧ ଅତିବେଗେ
ଶିଶୁପାଳ ଧନୁ କାଟିଦେଲା ସେ ଆଶୁଗେ ।
ଧନୁ ଭଗ୍ନ ହେବା ଦେଖି ଶିଶୁପାଳ ବଳ
ଆରେକ ଧନୁ ଧଇଲା କରେ ମହାବଳୀ ।
ସେ ଧନୁ ଟଙ୍କାର କରି ସନ୍ଧୁ ସନ୍ଧୁ କାଣ୍ଡ
ସୁରଥ କାଟିଣ ତାହା କଲା ଖଣ୍ଡଖଣ୍ଡ ।
ପୁଣି କ୍ରୋଧରେ ସୁରଥ ପଞ୍ଚବାଣ ମାରି
ଛେଦିଲା ସାରଥି ଅଶ୍ୱ ରଥଖମ୍ବ ଚୂର ।
ସିଂହାସନେ ଅଛନ୍ତି ବୀର ଶିଶୁପାଳ
ଭାଙ୍ଗେ ଚାଲୁ ନାହିଁ ରଥ ହୋଇଲା ଅଚଳ ।
ପୁଣି ଲକ୍ଷେକାଣ୍ଡ କୋପେ ବିନ୍ଧିଲା ସୁରଥ
ଚକ୍ର ଛତ୍ର ଭଗ୍ନ ହେଲା ଶିଶୁପାଳ ରଥ ।
ବିରଥ ହୋଇଲା ତେଣୁ ଦମଘୋଷ ବାଳ
କବଚ ଛିନ୍ନିଲା ଅଙ୍ଗୁ ବହେ ଶ୍ରମଜଳ ।
ଓଷ୍ଠ କଣ୍ଠ ତାଳୁକା ସେ ଶୁଖିଲା ଅଧର
ମୁକୁଟ ଯାହୁତେ ଖସି ମଣ୍ଡିଲା ଚୋପରେ ।
କଙ୍କଣ କମାଣ ସାରବେଶ ଗଲା ଛୁଟି
ପଡ଼ିଲା ବଦନ ଲୁଟେ ଅଦଭୁତେ ଫିଟି ।
ତଥାପି ସେ ଶିଶୁପାଳ ଗଦା ଘେନି କରେ
ପାଦଗତି କରି ଆସି ବୁଲାଇ କ୍ରୋଧରେ ।
ଚୌଷଠି ଚୌଷଠି ଭାର ଗଦା କରେ ଘେନି
ମହାବାତେ କମ୍ପିଲା କି ପ୍ରଚଣ୍ଡ ବହନି ।
ତେସନ ପ୍ରକାରେ ବୀର ଅତିବେଗେ ଧାଇଁ
ସୁରଥ ଉପରେ ଗଦା ପିଟିଲା ଉଞ୍ଚାଇ ।
ଦେଖିଣ ସାରଥି ରଥ ଘୁଞ୍ଚାଇଲା ଦୂରେ
ତଳେ ଭୂମିମାଡ଼ ଗଦା ପଡ଼ିଲା ସେଠାରେ ।
ବଜ୍ରର ପରାୟେ ତହିଁ ହେଲା ଯେବେ ଘାତ
କମ୍ପିଲେ ସକଳ ପୃଥ୍ୱୀ ପାଇ ଗଦାଘାତ ।
ଶବଦ ଶୁଭିଲା ଘୋର ନିର୍ଘାତ ପରାୟେ
କମ୍ପିଲେ ଅମରପୁରେ ଥାଇ ଦେବତାଏ ।
ବାବଲ ଶର ବିନ୍ଧିଲା ସୁରଥ ସତ୍ୱର
ସେ ଅସ୍ତ୍ରରେ ଶିଶୁପାଳ ଗଦା ହେଲା ଚୂର ।
ପୁତ୍ର ମାନଭଙ୍ଗ ଦେଖି ଦମଘୋଷ ରାଗେ
ସୁରଥକୁ ଓଗାଳିଲା ସୈନ୍ୟ ଘେନି ସଙ୍ଗେ ।
ସକଳ ନୃପତି ସଙ୍ଗେ ଘେନି ଯୋଦ୍ଧା ସୈନ୍ୟ
ପ୍ରାଣପଣେ ଯୁଦ୍ଧ କଲେ ପାଇ ଅପମାନ ।
ଦମଘୋଷ ଆଜ୍ଞା ଦେଲା ସୈନ୍ୟମୁଖ ରହି
ସୁରଥ କୁମାର ସର୍ବେ ଏକଯୋଗ ହୋଇ ।
ଜଣେ ହୋଇ ଆମ୍ଭଙ୍କୁ ଯେ ଦେଲା ଏଡ଼େ ଲାଜ
ଉପରେ ହେଁ ହତଲକ୍ଷ୍ମୀ ହେଲୁ ଆମ୍ଭେ ଆଜ ।
ଦମଘୋଷ ଆଜ୍ଞା ଶୁଣି ଚତୁରଙ୍ଗ ବଳ
ସୁରଥର ଚଉପାଖେ ବେଢ଼ିଲେ ସକଳ ।
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ବୀରେ ଗୁଡ଼ି ସିଂହରଡ଼ି
ଶରଦ କାଳରେ ଯେହ୍ନେ ମେଘ ଘଡ଼ଘଡ଼ି ।
ଟମକ ନିଶାଣ ଢୋଲ ଦମାଲୁ ମର୍ଦ୍ଦଳ
ବାଜନ୍ତି ବାଦ୍ୟଘୋଷ ମୁରଜ କଂସାଳ ।

ଶଙ୍ଖ ଭେରୀ କରତାଳ ବାଜଇ କାହାଳ
ରଣବାଦ୍ୟ ଶବଦରେ କୁରୁମ ଉଛୁଳ ।
ନାନାଶସ୍ତ୍ର ଝମକାନ୍ତି ଚତୁରଙ୍ଗ ସେନା
ରଥୀ ମହାରଥୀଗଣେ ଏକୁ ଏକ ଜଣା ।
କୋଦଣ୍ଡ କମାଣ କାଣ୍ଡ ଖଣ୍ଡା ଫରୀ ଯଷ୍ଟି
ପରଶୁ ପଟିଶ ଆଦି ଶସ୍ତ୍ର କୋଟି କୋଟି ।
ପରଶୁ କୁଠାର ପୁଣି ମୁଦ୍‌ଗର ଶକତି
ଶତଘ୍ନୀ ପ୍ରାବେଳ ଆଦି ଶସ୍ତ୍ର ଧରିଛନ୍ତି ।
ଛନକେନା ପାଞ୍ଚକେନା ବରଚ୍ଛି ମୁଷଳ
ଚାକୁଣି ଆଡ଼େଣି ଫଳ ଫଳା କରତାଳ ।
ଚର୍ମପାଶ ଲୌହଦଣ୍ଡ ଭାଲ ବାରକେନା
ଅମର ସାଜେଣି ଶର କାଣ୍ଡ ତୀକ୍ଷ୍ଣମୁନା ।
ଏମନ୍ତେ ଅନେକ ଶସ୍ତ୍ର ପ୍ରହାରନ୍ତି ନେଇ
ବଜ୍ର କବଚରେ ବାଜ ନ କାଟନ୍ତି କେହି ।
ଆଡ଼ବନ୍ଧେ ରଥି ରଥ ଅଶ୍ୱ ଗଜ ସାଜ
ପଶିଲେ ଅସଂଖ୍ୟ ସେନା ରଣଭଙ୍ଗେ ମଜ୍ଜି
ସେ ଯାହାର ଅନୁରୂପେ କଲେ ଶସ୍ତ୍ରବୃଷ୍ଟି
ସେ ଶବଦେ କମ୍ପମାନ ହେଲା ନବସୃଷ୍ଟି ।
ଶ୍ରାବଣ ମାସରେ ଯେହ୍ନେ ବରଷଇ ପାଣି
ତେସନକ ଅସ୍ତ୍ର ଶସ୍ତ୍ର ବୃଷ୍ଟି କଲେ ଆଣି ।
ଶର ଆଚ୍ଛାଦିତେ ଦିଗ ଦିଶିଲା ଅନ୍ଧାର
ଅଦୃଶ୍ୟ ହୋଇଲେ ଦେବ ଶୂନ୍ୟେ ଦିବାକର
ଏଗାର ସହସ୍ର ରାଜା ପଛରେ ବରଣି
ଏଥେ ସେନାପତି ଦମଘୋଷ ନୃପମଣି ।
ସେ ଯହୁଁ ଆଦେଶ ଦେଲା ସର୍ବେ ବେଢ଼ିମାର
ତେଣୁ ସମସ୍ତେ ପେଷିଲେ ଏକୁ ଏକ ଶର
ଶୁଣ ହେ ପରୀକ୍ଷ ରାଜା ଶୁକ ଯେ ବୋଲନ୍ତି
ସଂଗ୍ରାମରେ ଅନର୍ଗଳ ଉଗ୍ରସେନ ନାତି ।
ଏତେ ଶସ୍ତ୍ର ଦେଖି ତାର ଭୟ ନାହିଁ ତିଳେ
ପ୍ରତିଶସ୍ତ୍ର କରି ତାହା ନିବାରଇ ହେଳେ ।
ମନ୍ଦର ପର୍ବତ ଜବା ରଥମଧ୍ୟେ ଉଭା
ତେସନ ପ୍ରକାରେ ତାର ଦିଶୁଅଛି ପ୍ରଭା ।
ଅଶ୍ୱଙ୍କର ବାଗ ଧରି ସୁକାନ୍ତ ଯେ ରଥି
କୁନ୍ଦଯନ୍ତ୍ର ମାଡ଼ିବସିଅଛି ରଥକତି ।
ସ୍ୱର୍ଗେ ଥାଇ ଦେବଗଣ କଲେ ଜୟ ଜୟ
ବୋଇଲେ ତୁ ଧନ୍ୟ ଧନ୍ୟ ସୁନାସ ତନୟ ।

ଅକଳନ୍ତ ସୈନ୍ୟ ଏହି ଜରାସନ୍ଧ ଥାଟ
ସୁଚମ୍ପୂନ ନ ଭେଦଇ ଖଣ୍ଡାଦାଢ଼େ ବାଟ ।
ଏଡ଼େ ସଂଗ୍ରାମରେ ପଶି ଶଙ୍କା ନାହିଁ ତାର
ପିନାକ ସମାନେ ଧନୁ ଧରିଅଛି କର ।
ବୃହସ୍ପତି ବୋଲନ୍ତି ଯେ ଶୁଣ ପୁରୁହୂତ
ଯାହାକୁ ସହାୟ ଛନ୍ତି ପ୍ରଭୁ ଜଗନ୍ନାଥ ।
ତା ବଳ ବିକ୍ରମ ବର୍ଣ୍ଣି କେ କହି ପାରିବ
ସମରେ କମ୍ପାଇଁ ତାର ଭୟ ଉପୁଜିବ ।
କୃଷ୍ଣ ସଙ୍ଗେ ପିଲାଦିନୁ ପଢ଼ି ପାଠଘାଠ
ସଦଜ୍ଞାନ ପାଇଅଛି ଦେଖି ଧର୍ମବାଟ ।
ଦିବ୍ୟାସ୍ତ୍ର କୃଷ୍ଣ ପରାପ୍ତେ ଦଶେ ତାର ମୁର୍ତ୍ତି
ବଳବୀର୍ଯ୍ୟ ଦେଇଛନ୍ତି ଆପେ ଶିରୀପତି ।
ତେଣୁ ସେ ନିର୍ଭୟ ଚିତ୍ତେ କରୁଅଛି ରଣ
ଦେଖୁଥିବେ ହାରିଯିବେ ସବୁ ନୃପଗଣ ।
ଏମନ୍ତ ବିଗୃହି ଦେବେ ଦେଇ ଏକ ଦୃଷ୍ଟି
ସୁନାସ କୁମର ଶିରେ କଲେ ପୁଷ୍ପବୃଷ୍ଟି
ଜୟ ଜୟ ଶବଦରେ ପୂରିଲା ଗଗନ
ଶୁଣିଣ ଆନନ୍ଦ ହେଲା ସୁରଥର ମନ ।
ଅଶେଷ ସୈନ୍ୟ ଭିତରେ ଏକା ରଥେ ରହି
ସବୁଙ୍କୁ ଶର ସନ୍ଧାନ କରେ ଉଭା ହୋଇ ।
କ୍ଷଣକରେ ଲକ୍ଷେ ବାଣ ବିନ୍ଧଇ ସେ ଏକା
ଅଣୁମାତ୍ର ହୃଦୟରେ ନ କରଇ ଶଙ୍କା ।
କ୍ଷଣେ ମାତ୍ର ଛିଦ୍ର ନାହିଁ ବାଣ ଜ୍ୱାଳା ବଳ
ଜଳ ସ୍ଥଳ ସହିତରେ କମ୍ପେ ମେରୁସ୍ଥଳ ।
ଦମଘୋଷ ଆଦିକରି ଯେତେକ ନୃପତି
କୋପଭରେ ନାନାଶସ୍ତ୍ର ପ୍ରହାର କରନ୍ତି ।
ବ୍ରହ୍ମଶର ଆଦି ଯେତେ ଅସ୍ତ୍ର ରଖିଥିଲେ
ସୁରଥ ଉପରେ ସର୍ବେ ତାହା ପ୍ରହାରିଲେ ।
ନିଷ୍କମ୍ପ ହୋଇ ସୁରଥ ଏକା ରଥେ ରହି
ପ୍ରତିଶସ୍ତ୍ର କରି ସବୁ ଅସ୍ତ୍ର ଦେଲା ଦହି ।
ନିରନ୍ତରେ ଲଗାଇଛି କୃଷ୍ଣପାଦେ ଲୟ
ଦେବତା ଗନ୍ଧର୍ବ ହେଲେ ନାହିଁ ତାର ଭୟ
ଏକା ସୁରଥକୁ କେହି ନ ପାରିଲେ ଜିଣି
କେତୁଁ ବେଳ ବୁଦ୍ଧି ହୋଇ ବଡ଼ିଲୁଆରେଣି
ସୁରଥର ଅନ୍ତର୍ଗତ ଚିନ୍ତା ଜାଣି ହରି
ଆଜ୍ଞାଦେଲେ ସୁଦର୍ଶନ ଚକ୍ରକୁ ହକାରି ।

ସୁରଥ ସମର କରେ ଦମଘୋଷ ଭୁଲେ
ଏକଲୁ ଅନେକ ରାଜା ବେଢ଼ିଣ ଯୁଝିଲେ ।
[illegible]ବନ୍ତ ଅଶ୍ୱ ଗଜ ସୈନ୍ୟ ଛାଡ଼ିଦେଇ
ଅ[illegible] ସେନାଙ୍କୁ ରଣେ ଛେଦପଣା ଯାଇ ।
ଆଜ୍ଞାପାଇ ସୁଦର୍ଶନ ଚକ୍ର ଚଳାଇଲା
ରଥ ଗଜ ଅଶ୍ୱ ସୈନ୍ୟ ଛେଦି ପକାଇଲା ।
ବତାସ ବହିଲେ ଯେସନ୍ତେ ବନ ପଡ଼େ ଭାଙ୍ଗି
ତେସନେ ମରିଲେ ଚଢ଼ି ସୈନ୍ୟ ଗଜଗାଜ ।
କୋଟି ସଂଖ୍ୟାରେ କବନ୍ଧ ନୃତ୍ୟ କଲେ ଉଠି
କତ ଦଶାରେ ମନ୍ଦା ଭାସେ କୋଟି କୋଟି
ଦେଖ ତାଳ ତାଳରେ ବହିଲା ଶୋଣିତ
ମୁଣ୍ଡ ଗଣ୍ଡି ଭୁଲେ [illegible] ଯାଏ ଖୋଜ [illegible] ।
ପଚ୍ଛକୁ ଯେ ଗୃହୀଦେଲ ଦମଘୋଷ ରାଜ
ପାଞ୍ଚସହ୍ରଣ ଯାଏ ଦଶେ ଛିନ୍ନ ମୁଣ୍ଡମଧ୍ୟ ।
ଉଚ୍ଛୋଳ ରକତ ନଦୀ ଆସୁଅଛି ମାଡ଼ି
ପାଞ୍ଚ ମନ୍ତ୍ରୀଏ ପଳାଇଛନ୍ତି ସଙ୍ଗ ଛାଡ଼ି ।
ଶାଲ୍ୱ ଦନ୍ତବକ୍ର ଆଦି ହୋଇଥିଲେ ଧ୍ୱଂସ
ଦୁହେଁ ଛାଡ଼ି ପଳାଇଲେ ଏକା ରଥେ ବସି ।
ଶିଶୁପାଳକୁ ରଥରେ ଘେନି ଦମଘୋଷ
ରଣେ ଭଙ୍ଗ ଦେଇ ଗଲା ଜରାସନ୍ଧ ପାଶ ।
ଏଥା ଦେଖି ଜୟଶଙ୍ଖ ବଜାଇ ସୁରଥ
ପ୍ରବେଶ ହୋଇଲା ଯହିଁ ଥିଲେ ଜଗନ୍ନାଥ ।
କୃଷ୍ଣପାଦେ ନମସ୍କାର କରି ଆନନ୍ଦରେ
ଶିରେ କର ଦେଇ ଉଭାହେଲା ଖଣ୍ଡେଦୂରେ ।
କହଇ ଅଚ୍ୟୁତାନନ୍ଦ କବି ଏ ଚରିତ
ଶୁଣି ସାଧୁଜନ ହୁଅ ସଂସାରୁ ମୁକତ ।
ରାମକୃଷ୍ଣ ପାଦେ ମୋର ସଦା ରହୁ ସେବା ।
କୃପାକରି ପ୍ରଭୁ ମୋତେ ଗତି ମୁକ୍ତି ଦେବା ।



## କୃଷ୍ଣଙ୍କ ସହିତ ଜରାସନ୍ଧର ଯୁଦ୍ଧ ଓ କୃଷ୍ଣଙ୍କ ପ୍ରୟୋଗ

ଶୁକମୁନି ବୋଲନ୍ତି ଯେ ଅଭିମନ୍ୟୁ ଶିଷ୍ୟ
ସୁରଥକୁ ସଂଗ୍ରାମରେ ହାରି ଦମଘୋଷ ।
ଜରାସନ୍ଧ ନୃପତିର ନିକଟକୁ ଯାଇ
ସଂଗ୍ରାମ ବାରତା ସବୁ କହିଲା ସେଠାଇ ।
ଜରାସନ୍ଧ ଆପଣାର ସୈନ୍ୟ ହତ ଶୁଣି
କ୍ରୋଧେ ଚକ୍ଷୁ ବୁଲାଇଲା କାଳଚକ୍ର ଜାଣି ।
ପଞ୍ଚାଶ ସହସ୍ର ରାଜା ଘେନି ନିଜସଙ୍ଗେ
ସନ୍ନଦ୍ଧେ ମିଳିଲା ଯାଇ ଶ୍ରୀକୃଷ୍ଣଙ୍କ ଆଗେ ।
ବାର ସହସ୍ର ନୃପତି ସଙ୍ଗତେ ଘେନେ
ବାଟେ ଓଗାଳିଲା ବଳଦେବଙ୍କୁ ତତକ୍ଷଣ ।
ଧାଇ ବଜାଇଲେ ଯେସନ୍ତେ ଲେଉଟଇ ପାଣି
ରଥ ଫେରାଇଲେ ପୁଣି ଦେବ ଚକ୍ରପାଣି ।
ଆଗୁଆଣି ଆସେ ଜରାସନ୍ଧ ନୃପ ଥିଲା
ତେରେ ତେରକାର କରି ରଥ ଘୁମୁରେ ଠେଲିଲା ।
ମାଡ଼ିଙ୍କ ବିୟୋଗ ପୁଣି ଝିଅଙ୍କ ବିକଳ
ଜାମାତା ମରଣେ ଚିନ୍ତ ହୃଦୟ ଆକୁଳ ।
ଦମଘୋଷ ହାରିଯାନ୍ତେ ବଢ଼ିଲା ତା କ୍ରୋଧ
ନିଦନ୍ତେ ଅମର ଯୁଝି ବୋଲେ ଜରାସନ୍ଧ ।
ଆରେ ଆରେ ଗଉଡ଼ ତୁ ଏତେକ ନିର୍ଭୟ
ଆଜ ଜାଣିମା ନା ତୋର କେ ଅଛି ସହାୟ
କଂସ ପର ଜୁଆଁଇକି ମାଇଲୁ ମୋହର
ଦୁଇ ନାତି ମଲେ ପୁଣି କପଟେ ତୋହର ।
ଏବେ ଯେ ମାଇଲୁ ମୋର ଅନେକ ସଇନ
ତୋତେ ମାରି ପାସୋରିବି ମନରୁ ଏମାନ ।
ଏମନ୍ତ ବୋଲିଣ କୋପେ ଗର୍ଜି ମହାବଳୀ
ବୋଇଲା ତୋ ମାଂସ କାଟି ଦେବି ବଣାବଳି
ସବୁ ଦୁଃଖ ପାସୋରିବି ଆଜ ତୋତେ ମାରି
ଘୁମୁରେ ପଡ଼ନ୍ତୁ କାହିଁପିବୁ ତୁ ଉବୁରି ।
ଏତେ କହି ଜରାସନ୍ଧ ରାଜା କୋପଭରେ
ନିଜ ସସ୍ତ୍ର ବଳ ଧନୁ ଧରି ବାମ କରେ ।
ଶତେ କଙ୍କପକ୍ଷ ବାଣ ଗୁଣରେ ସନ୍ଧିଲା
ଆକର୍ଷଣ କରି ତାହା କୃଷ୍ଣଙ୍କୁ ବିନ୍ଧିଲା ।
ସହସ୍ରେ କଉର ବାଣ ଧନୁରେ ପୁରାଇ
ପୁଣି କୃଷ୍ଣ ହୃଦୟକୁ ବିନ୍ଧିଲା ଭିଡ଼ାଇ ।
ନାରଚ ଆସନ୍ତେ ଦୂରୁ ଦେଖି ନାରାୟଣ
ଶାରଙ୍ଗ ଧନୁରେ ସନ୍ଧି ତତକ୍ଷଣ ପଞ୍ଚବାଣ ।
ଛିଡ଼ନ୍ତେ ଚଳିଲା କାଣ୍ଡ ଗଗନରେ ଘୋଟି
ଜରାସନ୍ଧ ବାଣଯାକ ପକାଇଲା କାଟି ।
ଧନୁ ରଥ ଦେଖି ଜରାସନ୍ଧ ପ୍ରଶଂସିଲା
ଭଲରେ ଗଉଡ଼ କାହୁଁ ପାଇଲୁ ବୋଇଲା

ଧନୁର୍ଦ୍ଧର ପଣେ ଦେବା ପଶ୍ଚାନ୍ତରେ କପ
ପାଞ୍ଚକାଣ୍ଡେ ପାଞ୍ଚସପ୍ତ ବାଣ କଲୁ ନାଶ ।
ଏତେ ବୋଲି ଆପଣାର ଧନୁ କରେ ଟାଣି
ବାବଲ ଶର ସନ୍ଧାନେ ବନ୍ଧିଲ ସେ ପୁଣି ।
ପୁଣି କ୍ରୋଧ ହୋଇ କଲ୍ ନାନା ଶର ବୃଷ୍ଟି
ଗୁଣନାଦେ କମ୍ପମାନ ଚରାଚର ସୃଷ୍ଟି ।
ଅବିଚ୍ଛିନ୍ନେ ବନ୍ଧିଲ୍ ସେ କୋଟି କୋଟି ଶର
ଆଦାନ ସନ୍ଧାନ ଜଣା ନ ଯାଏ ତାହାର ।
ସେ କାଳେ ମଣ୍ଡଳାକାର ଦିଶିଲ ତା ଧନୁ
ସୃଷ୍ଟି ନାଶ ପାଇଁ କିବା ଉଦେହେଲେ ଭାନୁ ।
କଳୁଷ ନାରାଚ ଅର୍ଦ୍ଧଚନ୍ଦ୍ର ତୀକ୍ଷ୍ଣମୁନା
କଙ୍କପତ୍ର ଆଦି ବାଣବନ୍ଦେ ଅକଳନା ।
ଶ୍ୟେନପକ୍ଷୀ ପ୍ରାୟେ ଉଡ଼ି ଅନ୍ତରୀକ୍ଷ ମାର୍ଗେ
ଚଳିଲେ ନାରାଚଗଣ ଧାଇଁ ଅଧାସ୍ୱର୍ଗେ ।
ସେ ବାଣ ଦେଖନ୍ତେ କୃଷ୍ଣ ବନ୍ଧି କ୍ଷୁରକାଣ୍ଡ
ଦେହରେ ନ ବାଜୁ କାଟି କଲେ ଖଣ୍ଡ ଖଣ୍ଡ ।
ଅସ୍ତ୍ର ହତ ହେବା ଦେଖି ଜରାସନ୍ଧ କୋପେ
ପର୍ବତାସ୍ତ୍ର ବସାଇଲ୍ କାଢ଼ି ନିଜ ଚାପେ ।
ମହାମନ୍ତ୍ର ପଢ଼ି ରାଜା ବନ୍ଧିଲ୍ ସେ ଶର
ଘୋଟିଲେ ଗଗନ ମାର୍ଗେ ଲକ୍ଷେ ଗିରିବର ।
ଯେସନେକ ପକ୍ଷିଗଣ ଉଡ଼ନ୍ତି ଗଗନେ
ତେସନେ ଧାଇଁଲେ ଉଡ଼ି ସେ ପର୍ବତମାନେ
ତାଦେଖି ପେଷିଲେ କୃଷ୍ଣ ବଜ୍ର ଶର କାଢ଼ି
ମସୀଗୁଣ୍ଡା ହୋଇ ଗିରିମାନେ ଗଲେ ଉଡ଼ି ।
ପୁଣି ଜରାସନ୍ଧ ରାଜା ପନ୍ନଗାସ୍ତ୍ର ଧରି
ଲକ୍ଷେ ନାଗ ପେଷିଲ୍ ସେ ମହାମନ୍ତ୍ର ସ୍ମରି ।
ବିକରାଳ ମୂର୍ତ୍ତି ଧରି କାଳସର୍ପ ଗଣ
ଧାମନ୍ତି ମୁଖରେ କରି ଗରଳ ବମନ ।
ଲହ ଲହ ଜିହ୍ୱା ଦଶେ ମୁଖ ବିସ୍ତାରିତ
ଫୁଫୁକାର ଶବଦରେ ପୂରିଲ୍ ଜଗତ ।
ଗରୁଡ଼ାସ୍ତ୍ର ପେଷିଲେ ତା ଦେଖି ବନମାଳୀ
କ୍ଷଣକେ ସେ ଅସ୍ତ୍ର ଦେଲ୍ ସବୁ ସର୍ପ ଗିଳି ।
ଅସ୍ତ୍ର ପ୍ରତିହତ ହେବା ଜରାସନ୍ଧ ଦେଖି
ସତ୍ତ୍ୱରେ ବନ୍ଧିଲ୍ ଅଗ୍ନି ଶର ଗୁଣେ ଯୋଖି ।
ଘୋଟିଲ୍ ଅନଳ ଶିଖା ସ୍ୱର୍ଗପୁର ଯାଏ
ଭୟେ ସ୍ୱର୍ଗ ଛାଡ଼ି ପଳାଇଲେ ଦେବତା ।

ଜଳଚର ସ୍ଥଳଚର ଆଦି ଜୀବ ଯେତେ
ଅନଳ ତେଜରେ ତାପ ପାଇଲେ ସମସ୍ତେ ।
ଏହା ଦେଖି ଜଳଧାର ବାଣ କରେ ଘେନି
ଶ୍ରୀକୃଷ୍ଣ ପେଶନ୍ତେ ଲିଭିଗଲ ସେ ବହ୍ନି ।
ପୁଣି କୋପେ ଜରାସନ୍ଧ ମେଘାସ୍ତ୍ର ପେଶନ୍ତେ
ବାୟୁବାଣେ ଉଡ଼ାଇଲେ ତାହା ଜଗନ୍ନାଥେ ।
ଦେଖି ଜରାସନ୍ଧ ରାଜା ହୋଇ କୋପାନଳ
କୃତାନ୍ତକ ନାମେ ଶର ଧରି ତତକାଳ ।
ମନ୍ତ୍ରିଣ ପେଷିଲ୍ କୋପେ କୃଷ୍ଣ ନାଶ ପାଇଁ
ବାରୁଣାସ୍ତ୍ରେ ତାହା ନିବାରିଲେ ଲକ୍ଷ୍ମୀସାଇଁ ।
ଦେଖି କୋପେ ଥର ହର ମଗଧ ନୃପତି
ଆସ୍ଫୋଟ ଧଇଲ୍ କରେ ତେଜ ବ୍ରହ୍ମଶକ୍ତି ।
ତିନଥର ବୁଲାଇ ସେ ଅମୋଘ ଶକ୍ତିକି
ମଲ୍ଲୁରେ ଗର୍ଜ୍ଜି ବୋଲି ଫିଙ୍ଗିଲ୍ ସେ ତାକି
ଅବାରଣ ଅସ୍ତ୍ରକଲ୍ ସଙ୍କୋଚନ ବାଳ
ସେ ଶକ୍ତି ଘୋଟିଲ୍ ସ୍ୱର୍ଗ ମଞ୍ଚ ରସାତଳ ।
ମହା ଭଇରବ ରୂପେ ଆସନ୍ତେ ସେ ଧାଇଁ
ହନୁମାନ ଦେଖିଲେ ତା ରଥଧ୍ୱଜେ ଥାଇ ।
ମାରୁତି ବୋଇଲେ ଦେବ ଶୁଣିମା ଗୋବିନ୍ଦ
ବ୍ରହ୍ମଶକ୍ତି ପେଷିଲାଟି ଏବେ ଜରାସନ୍ଧ ।
ଏ ଶକ୍ତି ମୁଖରୁ କେହି ନ ପାରଇ ବଞ୍ଚି
ଅକାରଣେ ଗର୍ଜ୍ଜି ନୋହି ଖଲଚିବା ଘୁଞ୍ଚି ।
ପ୍ରତ୍ୟକ୍ଷ ଧର୍ମଦେବତା ଏ ଶକତି ଜାଣ
ଯେ ପିଠି ଦିଅଇ ତାର ନ ଘେନଇ ପ୍ରାଣ ।
ମାରୁତି ମୁଖରୁ ଏହା ଶୁଣି ଜଗନ୍ନାଥ
ଦାରୁକକୁ ଆଜ୍ଞା ଦେଲେ ଲେଉଟାଇ ରଥ ।
ବ୍ରହ୍ମଶକ୍ତି ପେଷିଅଛି ଜରାସନ୍ଧ ଦମ୍ଭେ
ପିଠି ଦେଇ ବଞ୍ଚାଇବା ସେ ଅସ୍ତ୍ରକୁ ଆମ୍ଭେ ।
ଗୋବିନ୍ଦ ଆଜ୍ଞାରେ ରଥ ଲେଉଟାଇ ଖରେ
ଦାରୁକ ରଖିଲେ ନେଇ ପାଞ୍ଚକ୍ରୋଶ ଦୂରେ ।
ଶୁଣ ହୋ ପରୀକ୍ଷ ରାଜା ଶୁକମୁନି ଭଣି
ଲେଉଟି ରହିଲା ଶକ୍ତି ଜରାକ୍ରୋଣେ ପଣି ।
ଦେଖିଣ ଚକିତ ହେଲା ମଗଧ ଈଶ୍ୱର
ସଇନକୁ କହି ବୋଲେ ଗୋଡ଼ାଅ ସତ୍ୱର ।
ଯେ ଯାହାର ସୈନ୍ୟବଳ ଘେନ ଯାଅ ବେଗେ
ପଳାଇ ଯାଉଛି କୃଷ୍ଣ ଓଗାଳିବ ଆଗେ ।

ଏ ଗର୍ଜନ ଟୋକା କେତେ ଗର୍ବେ କହୁଥିଲା
ବ୍ରହ୍ମଶକ୍ତି ଦେଖି ଭୟେ ପିଠି ଦେଇଗଲା ।
ଚମା ଶପଥ ମାହା କେହୁ ଅପ୍ରୋଧ ନ କର
ଯମଦଣ୍ଡ ଦେବ ଯାଇ ଶତ୍ରୁକୁ ସଂହାର
ରାମକୃଷ୍ଣ ଆଣି ମୋର ଛାମୁରେ ଯେ ଦେବ
ଠାକୁର ହୋଇ ସେ ମୋ ଠାରୁ ପୂଜା ସେ ପାଇବ
ଅନେକ ଧନଭଣ୍ଡାର ରତ୍ନକୋଷଦେବି
ଛତ୍ରପତି କରି ତାର ପାଦେ ସେବିଥିବି ।
ଜରାସନ୍ଧ ମୁଖୁ ଶୁଣି ଏସନକ ଆଜ୍ଞା
ରାଜାଗଣେ ବାହାରିଲେ କରିଣ ପ୍ରତିଜ୍ଞା ।
କରେ ନାନା ଶସ୍ତ୍ରଧରି ଧାଇଁଲେ ସକଳେ
ଟେକ କାହାକୁ ପଛକରି ଆଗ ହୋଇଚଳେ
ଥୋକେ ଦୂର ବାଟେଥିଲେ ଜଗନ୍ନାଥେ ରହି
ଆଗୁଆଣି ଥାଟ ତାଙ୍କୁ ଭେଟିଲେକ ଯାଇ ।
ଯେ ଯାହାର ଅନୁରୂପେ ଅସ୍ତ୍ର ଶସ୍ତ୍ର ଧରି
ଜଗନ୍ନାଥଙ୍କୁ ବେଢ଼ିଲେ ଶତେପୁର କରି
ପ୍ରତିଜ୍ଞାକରି ମାରନ୍ତି ଶସ୍ତ୍ର କୋଟି କୋଟି
ବର୍ଷାକାଳେ ମେଘ ଯେହ୍ନେ ବରଷଇ ଘୋଟି ।
ଦିବସେ ଅନ୍ଧାର ନ ଦିଶିଲେ ଦିନମଣି
ବୀରବର ପାଦଘାତେ କମ୍ପଇ ଧରଣୀ ।
ସୈନ୍ୟ ଆଗମନ ଦେଖି ଜଗନ୍ନାଥ ସ୍ୱାମୀ
ମନଭେଦୀ ନାରାଚକୁ କାଢ଼ି ଅନ୍ତର୍ଯ୍ୟାମୀ ।
ମନ୍ତ୍ରିଣ ବାଣକୁ ଆଜ୍ଞା ଦେଲେ ଲକ୍ଷ୍ମୀସାଇଁ
ରଥ ଗଜ ଅଶ୍ୱ ସବୁ ଛେଦ ବେଗେ ଯାଇ ।
ପୁଣିହିଁ ଚକ୍ରକୁ ଆଜ୍ଞା ଦେଲେ ଦେବରାୟ
ସଜ୍ଜନଙ୍କୁ ରକ୍ଷାକରି ଦୁଷ୍ଟ କର କ୍ଷୟ ।
ଆଜ୍ଞା ପାଇ ଚଳିଗଲେ ଚକ୍ର ମନଭେଦ
ହସ୍ତୀ ରଥୀ ପଦାତିଙ୍କି ପକାଇଲେ ଛେଦ ।
ମର୍ତ୍ତ ସହସ୍ର ଲକ୍ଷ କୋଟି ଦଶ ଦଶ
ଏକ ଏକ ପ୍ରହାରକେ ଗଲେ ସବୁ ନାଶ ।
ପ୍ରଚଣ୍ଡ ବାତରେ ଯେହ୍ନେ ଲୋଟେ ରମ୍ଭାବନ
ତେସନ ପଡ଼ିଲେ ତହିଁ ଜରାସନ୍ଧ ସୈନ୍ୟ ।
ବହିଲା ରକତନଦୀ ହିତାଳ ଉତ୍ସର୍ଗେ
ଇନ୍ଦ୍ର ଆଦି ଦେବଗଣ ଦେଖୁଛନ୍ତି ସ୍ୱର୍ଗେ ।
ଶୃଗାଳ ବାୟସ ଶ୍ୱାନ ବୃକ ଗୃଧ୍ର ପକ୍ଷୀ
ରଣସ୍ଥାନେ ବିହରିଲେ ରକ୍ତମାଂସ ଭକ୍ଷି ।

କଙ୍କାଳୀ ବେତାଳ ଚଣ୍ଡୀ ଅଶେଷ ଚାମୁଣ୍ଡା
ଜିହ୍ୱା ଲହ ଲହ କରେ ଖପର ଯେ ଖଣ୍ଡା ।
ମେଦମେଦା ମାଂସ ଖାଇ ହେଲେ ମାତୁଆଳ
ନାଚନ୍ତି ଆନନ୍ଦ ମନେ ଦେଇ ହୁଳହୁଳ ।
ଡଡ଼ଙ୍କା ଘୁମୁରା କଡ଼ା କୁଣ୍ଡଳୀ ଡାକିଣୀ
ମହଙ୍ଗା ଭେଳେ ଖେମଟା ନାଚ ନାଟଖଣ୍ଡି ।
ନାଚନ୍ତି କବନ୍ଧ ଲକ୍ଷକୋଟି ରଣରଙ୍ଗେ
ଅଶ୍ୱ ଗଜ ପଦାତିଏ ପଡ଼ି ଏକଯୋଗେ ।
କର ଚରଣ ଡାହାର ଛିଡ଼ିଲା ଅଙ୍ଗରୁ
କା ଅଣ୍ଟା ଛିଡ଼ିଲା କାର ଭଗ୍ନ ହେଲା ଉରୁ ।
ଏସନ ପ୍ରାଭବ ପାଇଲେ ଯେ ସୈନ୍ୟବଳ
ଏକା ଚକ୍ର ମନଭେଦ ଛେଦିଲେ ସକଳ ।
ଖଡ଼ଗ ଭୁଷୁଣ୍ଡି ପରିଘଣ୍ଟେ ଭଳେ ନାହିଁ ଛଡ଼ା
ପର୍ବତ ସମାନେ ତହିଁ ପଡ଼ିଅଛି ମଡ଼ା ।
ସୁରଭଣେ ଲକ୍ଷେରାଜା ଅସଂଖ୍ୟକ ଥାଟ
ପ୍ରାଣ ଭୟେ ପଳାଇଲେ ଖୋଜ ଯେଣ୍ଟା ବାଟ ।
କେତେ ମଲେ କେତେ ବର୍ତ୍ତିଗଲେ ପ୍ରାଣ ପାଇ
ଅସଂଖ୍ୟ ସଇନବଳ ଗଣନା ଯେ ନାହିଁ ।
ଏହାଦେଖି ଆନନ୍ଦରେ ହସି ପଦ୍ମମୁଖ
ମୁଖେ ଧରି ବଜାଇଲେ ପାଞ୍ଚଜନ୍ୟ ଶଙ୍ଖ ।
ଜୟ ଧ୍ୱନିକରି ଦେବେ ପୁଷ୍ପ ବରଷିଲେ
ଦେବର୍ଷି ମହର୍ଷିଗଣ ଆନନ୍ଦ ହୋଇଲେ ।
ଜୟଯୁକ୍ତ କୃଷ୍ଣଙ୍କର ଚରଣକମଳେ
ଅଚ୍ୟୁତ ଦାସର ମନ ରହୁ ସବୁକାଳେ ।

## ବଳଦେବଙ୍କ ସହିତ ରୁକ୍ମଣ ଯୁଦ୍ଧ ଓ ପରାଜୟ

ଏଥୁ ଅନନ୍ତରେ ପୁଣି ଶୁକ ତପୋବନ୍ତ
ବୋଇଲେ ଜହ୍ନବା ଶୁଣ ଅଭିମନ୍ୟୁ ସୁତ ।
ଦକ୍ଷିଣ ଦିଗ ସଂଗ୍ରାମେ ବଳରାମ ଥିଲେ
ରୁକ୍ମଙ୍କ ଭୁଲେ ଅନେକ ସଂଗ୍ରାମ ସେ କଲେ ।
ବାରସହସ୍ର ରାଜାଙ୍କ ଚତୁରଙ୍ଗ ବଳ
ଏକମୁଖ ହୋଇକରି ବେଢ଼ିଲେ ସକଳ ।
କୋପେ ପରିଘାଇ ନାନା ଶସ୍ତ୍ର ବରଷନ୍ତି
ଛେଲ ଚକ୍ର ଭିନ୍ଦପାଳ ପରିଘ ଶକତି ।

ମୁଦ୍‌ଗର ପରଶୁ ଶୂଳ ଭଲ୍ଲ କାଣ୍ଡ ଖଣ୍ଡା
ପ୍ରହାର କରନ୍ତି ରଣେ ନାଚ ପରଚଣ୍ଡା ।
ରଥୀ ମହାରଥୀ ସବେ ଏକତ୍ର ହୋଇ
ଯେ ଯାହାର ଅସ୍ତ୍ରଶସ୍ତ୍ର ମାରନ୍ତି ଭୁହାଇ ।
ସଂଗ୍ରାମେ ଅପରାଜିତ ପ୍ରଭୁ କାମପାଳ
ଯା ଅଙ୍ଗରେ ମୂଳଅଛି କୋଟିସିଂହ ବଳ ।
କାଦମ୍ବରୀ ପାନେ ସଦା ଭୋଳ ଯାର ମତି
ଅଷ୍ଟାଙ୍ଗ ଯୋଗରେ ସିଦ୍ଧ ନିରଞ୍ଜନ ଜ୍ୟୋତି ।
ସୌନନ୍ଦ ମୁଷଳ ହଳ ଧରି ବେନି ହସ୍ତେ
ବିଜେ କରିଛନ୍ତି ସ୍ୱାମୀ ତାଳଧ୍ୱଜ ରଥେ ।
ନୃପତିମାନଙ୍କୁ ରାମ ନଜରରେ ନ ଗଣି
ରୁକ୍ମଣ ଆଗରେ ରଥ ଟେକାଇଲେ ଆଣି ।
କୃଷ୍ଣଙ୍କ ନନ୍ଦନ ତାଙ୍କୁ ସମ୍ମୁଖରେ ଦେଖି
ସହସ୍ରେ ବାଣ ବିନ୍ଧିଲେ ଉଗ୍ରୋଧ ଉପେକ୍ଷି ।
ପୁଣି ହସ୍ତବ୍ୟଗ୍ରେ ଶତ ନାରାଚ ପୂରାଇ
କାମପାଳ ଉପରକୁ ବିନ୍ଧିଲେ ହଠାଇ ।
ବୃହଁ ବୃହଁ ପାଞ୍ଚସହସ୍ର ବାଣ ପୁଣି ଧରି
ହୃଦୟକୁ ଲକ୍ଷ୍ୟକରି ବିନ୍ଧିଲେ ଓଟାରି ।
ସେ ବାଣ ଆସନ୍ତେ ଦୂରୁ ଦେଖି କାମପାଳ
ଧନୁ ଧରି ଛାଡିଲେ ସେ ଲଙ୍ଗଳ ମୁଷଳ ।
ସେ ଧନୁ ଗୁଣରେ ସନ୍ଧି ସାତଗୋଟି କାଣ୍ଡ
ରୁକ୍ମଣ ନାରାଚ କାଟି କଲେ ଖଣ୍ଡ ଖଣ୍ଡ ।
ପୁଣି ସେ ବାବଲ ଶର ଶତେକ ସନ୍ଧିଲେ
ରୁକ୍ମଣ ବକ୍ଷକୁ ଲକ୍ଷ୍ୟ କରି ଛାଡ଼ିଦେଲେ ।
ସେ ବାଣ ଚକ୍ଷୀଙ୍କ ପ୍ରାୟେ ଅନ୍ତରୀକ୍ଷେ ଚଳି
ସେଥିଁ ଫୁଟି ରୁକ୍ମଣର ହୃଦେ ଗଲା ଗଳି ।
ପୁଣି ପାଞ୍ଚବାଣ ବିନ୍ଧି ରୋହିଣୀର ଶିଷ୍ୟ
ସାରଥି ସହିତେ ବଧ କଲେ ଚାରି ଅଶ୍ୱ ।
ବିରଥୀ ହୁଅନ୍ତେ କ୍ରୋଧେ କୃଷ୍ଣକର ବଳା
ରଥରୁ ଡେଇଁଣ କରେ ଘେନି ଖଡ୍‌ଗଫଳା ।
ପ୍ରବେଶ ହୋଇଣେ ବଳଦେବଙ୍କ ଛାମୁରେ
ବାହାନାଦ କରି ବୀର ରେରେକାର କରେ ।
ରୁକ୍ମଣ ଆସନ୍ତେ ଦୂରୁ ଦେଖି ହଳପାଣି
ବାବଲ ନାରାଚ ଗୁଣେ ବସାଇଲେ ଆଣି ।
ମନ୍ତ୍ରିଣ ପେଷନ୍ତେ ବାଣ ଅନ୍ତରୀକ୍ଷେ ଗଲା
ରୁକ୍ମଣ ହସ୍ତରୁ ଖଡ୍‌ଗଫଳା କାଟିଦେଲା ।

ଖଡ୍‌ଗଫଳା ଭଗ୍ନହେବା ଦେଖି ସେ ରୁକ୍ମଣ
ଯୁଦ୍ଧ ଛାଡ଼ି ପଳାଇଲା ନିରସ୍ତ୍ର ହୋଇଣ ।
ରୁକ୍ମଣ ପଳାଇଯାନ୍ତେ ମୃଗସେନ ଦେଖି
ବଳରାମ ଆଗେ ଉଭାହେଲା ରଥ ଟେକି ।
ଷାଠିଏ ସହସ୍ର ବଳ ଧନୁ ଧରି କରେ
ମହା ମେଘ ପରାୟେ ସେ ଗର୍ଜିଲା କ୍ରୋଧରେ ।
ତା ସଙ୍ଗେ ମିଳିଲା ଆସି କଳିଙ୍ଗ ରାଜନ
ନବଲକ୍ଷ ମତ୍ତଗଜ ସଙ୍ଗେ ଘେନାଇଣ ।
ଦୁଇ ରାଜା ମିଶି ରୁକ୍ମଣକୁ ଆବୋରିଲେ
ଅନେକ ଭୂପ୍ପଁ । ଭୂପାଳ ଛନ୍ତି ତାଙ୍କ ଭୁଲେ ।
ଯେ ଯାହାର ଅସ୍ତ୍ରଶସ୍ତ୍ର ଧରି ନିଜକରେ
କ୍ରୋଧହୋଇ ପ୍ରହାରିଲେ ରାମଙ୍କ ଉପରେ ।
ବିଶ୍ୱରୂପ ଧରିଛନ୍ତି ପ୍ରଭୁ କାମପାଳ
ତେଜ ବିରାଜଇ ଯେସନେ ପ୍ରଳୟ ଅନଳ ।
ଯେତେ ଶସ୍ତ୍ର ପ୍ରହାରିଲେ ପ୍ରଭୁ ଅଙ୍ଗେ ପଡ଼ି
ପର୍ବତେ ସୋରିଷ ପ୍ରାୟେ ବାଜ ପଡ଼େ ଝଡ଼ି ।
ଦଣ୍ଡେ ପର୍ଯ୍ୟନ୍ତେ ସବେ କଲେ ଶରବୃଷ୍ଟି
ଗୁଣନାଦ ଶବଦରେ କମ୍ପେ ନବସୃଷ୍ଟି ।
ଦଳ ଦଳ ନବସୃଷ୍ଟି ବ୍ରହ୍ମାଣ୍ଡହିଁ ସାତ
ଯୁଗାନ୍ତ କାଳରେ ଯେସନେ ପଡ଼ଇ ନିଘାତ ।
ଏକା କାମପାଳ ସବେ ଛନ୍ଦୁଛନ୍ତି ବାଣ
ସଂଗ୍ରାମେ ବିଶ୍ରାମ ନାହିଁ ଭୁକ୍ତ ହେଲା ଚୂର୍ଣ ।
ଫୁଟିଣ ରହିଲେ ନୃପେ ମନେ ଲଜ୍ଜା ପାଇ
ପାଶୁପତ ଶର ସନ୍ଧି ରେବତୀର ସାଇଁ ।
ଅସ୍ତ୍ରକୁ ଡାଆରି କର୍ଣ୍ଣେ କହି ମନ୍ତ୍ର ଗୋଟି
ବୋଇଲେ ରାଜାମାନଙ୍କ ଶିର ଦିଅ କାଟି ।
ଆଜ୍ଞା ପରମାଣେ ପାଶୁପତ ଶରଗଲା
ଅନେକ ନୃପତି ଶିରେ ଛେଦ ପକାଇଲା ।
ରଥ ଗଜ ପଦାତିକ ମଲେ ଅପ୍ରମିତ
ଯେ ଆଗେ ପଡ଼ିଲା ତାର ଘେନିଲା ଜୀବିତ ।
ମହାଗୋଳ ଧନ୍ଦୋଳ ଯେ ହେଲା ଅପ୍ରମାଣ
ପର ଆପଣା ବୋଲିଣ ନୋହିଲା ବାରଣ ।
ମୃଗସେନ ଯେ କଳିଙ୍ଗସେନ ଦୁଇ ରାଜା
ଦେଖିଣ ଆଶ୍ଚର୍ଯ୍ୟ ହୋଇ ଅସ୍ତ୍ର କଲେତେଜ୍ୟା
ଶସ୍ତ୍ର ଛାଡ଼ି ଥୋକେ ସୈନ୍ୟ ଅପସରି ଗଲେ
ବଳରାମ ବାହୁଘାତେ ଥୋକେ ସୈନ୍ୟ ମଲେ

ସେନାଏ ହାଜଲେ ଯନ୍ତ୍ରେଁ ଅସ୍ତ୍ରଶସ୍ତ୍ର ଛାଡ଼ି
ପାଶୁପତ ଶର କ୍ଷୋଣେ ରହିଲା ବାହୁଡ଼ି ।
ଦେଖି ବଳରାମ ସ୍ୱାମୀ ହୋଇଣ ହରଷ
ବାହୁଡ଼ି ମିଳିଲେ ଯାଇ ଶ୍ରୀକୃଷ୍ଣଙ୍କ ପାଶ ।
ଗୋବିନ୍ଦସୁରଥ ଦୁହେଁ ଦେଖିଣ ଆନନ୍ଦେ
ନମସ୍କାର କଲେ ଉଠି ବଳରାମ ପାଦେ ।
ତିନିଭାଇ ଏକ ସ୍ଥାନେ ବସି ମନତୋଷେ
ଯେ ଯାହା ସମର କଥା କହନ୍ତି ହରଷେ ।
ହରିବଂଶ ପୁରାଣ ଏ ସୁଧାସାର ଗୀତ
ଧାଡ଼ି ଖଣ୍ଡରେ ପ୍ରଥମ ଅଧ୍ୟାୟ ଚରିତ ।
ଶ୍ରବଣେ ଶୁଣିଲେ ସର୍ବ ପାପ ହୁଏ ଧ୍ୱଂସ
ଅନାୟାସେ ଲଭ ହୁଏ ବଇକୁଣ୍ଠ ବାସ ।
ଅପୁତ୍ରିକ ପୁତ୍ର ପାଏ ଏ ପୁରାଣ ଶୁଣି
କହଇ ଅଚ୍ୟୁତ ଦାସ କବିଗୀତେ ଭଣି ।
ବିଷ୍ଣୁ କାମପାଳ ପାଦେ ସଦା ମୋର ସେବା
ଏ ହୀନଜନକୁ ପ୍ରଭୁ ଗତି ମୁକ୍ତି ଦେବା ।

—❋—

## ଜରାସନ୍ଧଙ୍କ ସହିତ ରାମକୃଷ୍ଣଙ୍କର ଦ୍ୱିତୀୟବାର ଯୁଦ୍ଧ ଓ ପଳାୟନ

ଶୁକ ବୋଲନ୍ତି ସେ ଶୁଣ ଅଭିମନ୍ୟୁ ସୁତ
ବଳରାମ ଭୟେ ରାଜା ପଳାଇଣ ଥାଇ ।
ଜରାସନ୍ଧ ନୃପତିର ଛାମୁରେ ମିଳିଲେ
ସଂଗ୍ରାମ ବାରତା ସବୁ ବୁଝାଇ କହିଲେ ।
ସାବଧାନ ହୋଇ ତୁମ୍ଭେ ଶୁଣ ନୃପନିଧି
ସମରେ ବିନାଶ ଗଲା ତୁମ୍ଭର ସମୃଦ୍ଧି ।
ଜମ୍ବୁଦ୍ୱୀପ ମଧ୍ୟେ ତୁମ୍ଭେ ରାଜଶିରୋମଣି
ଛୟାଣୋଇ ସସ୍ର ରାଜା ବନ୍ଦୀ କଲ ଜିଣି ।
ଯେ ତୁମ୍ଭର ବୈରୀ ସେହି ସମସ୍ତଙ୍କ ବାଧି
ତବ ଆଜ୍ଞା ପରମାଣେ ଗଲୁ ତାକୁ ସାଧି ।
ଅସଂଖ୍ୟ ସଇନ ଆମ୍ଭେ ଯେ ତିନିହେଁ ଏକା
ରଥ ଗଜ ସୈନ୍ୟ କେହି ନାହିଁ ସଙ୍ଗେ ସଖା
ତୁମ୍ଭର ପରାଏ ରାଜା ରଣରଙ୍ଗେ ଚଢ଼ି
କିନ୍ତୁ କାର୍ଯ୍ୟ ନ ପାଇଲା ଏତେ ସୈନ୍ୟ ନାଶି
ମୂଷିକ ବେଣ୍ଟକୁ ଗଜଦନ୍ତ ସାଜଆଣି
ହାନି ଲାଭ ଦୁଇ କଥା ନ ପାରିଲ ଜାଣି ।

ସବୁ ରାଜାଙ୍କର ଥିଲେ ଯେତେ ସୈନ୍ୟବଳ
ରଥ ଗଜ ଅଶ୍ୱ କରି ପଡ଼ିଲେ ସକଳ ।
ଲୋକେ ଅପବାଦ ପୁଣି ଆପଣାର ବ୍ୟଥା
କ୍ଷତ୍ରିୟ ନାଢବେ ହସ୍ତେ ଶୁଣିଲେ ଏ କଥା ।
ଚତୁରଙ୍ଗ ସେନା ରଥୀ ମହାରଥୀ ଥାଇ
ତିନିଜଣଙ୍କୁ ତ ଜିଣି ନ ପାରିଲ କେହି ।
ରାଜାମାନଙ୍କର ମୁଖୁଁ ଏ ବଚନ ଶୁଣି
କ୍ରୋଧ ହୋଇ ଜରାସନ୍ଧ ବୋଲେ ଶିର ଧୁଣି ।
ଦେଖ ମୋ ପ୍ରତିଜ୍ଞା ଆଜ କରି ଘୋର ରଣ
ଜାଦବେ ବାନ୍ଧିବି ଗଉଡ଼ଙ୍କୁ ଏହିକ୍ଷଣ ।
ତୁମ୍ଭେ ସକଳ ନୃପତି ଥାଅ ମୋର ପଛେ
କପଟ ମୋ କ୍ଷତ୍ରିପଣ ଦେଖିବ ପ୍ରତ୍ୟକ୍ଷେ ।
ଏତେ ବୋଲି ଗରଜିଣ କୋପେ ମହାବଳୀ
ବୋଲେ ସେ ତିନିଙ୍କି ଆଜ ଦେବ ବଶାବଳ
ମୋ ଛାମୁରେ ଯେବେ ଯାଇ ନଥାନ୍ତା ପଳାଇ
ଏତେବେଳ ଯାଏ କମ୍ପା ରହିଥାନ୍ତେ ଖାଇ ।
ଗର୍ବିତ ପଣରେ ଆସି ଯୁଦ୍ଧ କରୁଥିଲ
ବ୍ରହ୍ମଶକ୍ତି ଦେଖି ଭୟେ ପିଠି ଦେଇ ଗଲ ।
ଅମୋଘ ସେ ବ୍ରହ୍ମଅସ୍ତ୍ର ଧର୍ମି ନ ଛାଡ଼ଇ
ପିଠିଦେଇ ଗଲେ ଆପେ ବାହୁଡ଼ି ଆସଇ ।
ତେଣୁ ବେଳେ ପଳାଇଲ ମୋ ଆଗରୁ ଫିଟି
ଆଉବେଳେ ଦେଖାଦେଲେ ନ ଯିବ ଲେଉଟି
ଏତେ କହି ଜରାସନ୍ଧ ଧୂଆଁଇଲା ଯାନ
କରେ ଧରି ନଭସ୍ପର୍ଶ ବଳ ଶରାସନ ।
ପବନ ସମାନ ରଥ ଚଳାଇ ପ୍ରକ୍ଷରେ
ଶାଣଦିଆ କାଣ୍ଡ ବାଛି ଧରିଅଛି କରେ ।
ଅସଂଖ୍ୟ ସୈନ୍ୟ ଗୋଡ଼ାଇଛନ୍ତି ତାର ପଛ
ସବୁରି ଆଗରେ ଚଳେ ସଙ୍କୋଚନ ବହୁ ।
ବେନିପାର୍ଶ୍ୱେ ଅଙ୍ଗବଳ ଧଡ଼ାଇଣ କ୍ଷୌଣୀ
ଶୁକ ବୋଲନ୍ତି ସେ ଶୁଣ ପରୀକ୍ଷ ନୃମଣି ।
ଥୋକେ ଦୂରେ ବଳରାମ ଶ୍ରୀକୃଷ୍ଣ ସୁରଥ
ଶସ୍ତ୍ର ଧରି ରହିଛନ୍ତି ଚଢ଼ି ଯେଝା ରଥ
ମହାଘୋର ସଂଗ୍ରାମକୁ ନାହିଁ ତାଙ୍କ ଭୀତ
ଏ ସମୟେ ଆସି ଜରାସନ୍ଧ ନରପତି ।
ଯେ ଯହିଁ ଅଛନ୍ତି ତହିଁ ପୁଆଇଲା ରଥ
ହସ୍ତ ଟେକି ଗୋବିନ୍ଦଙ୍କୁ ଦେଖାନ୍ତି ସୁରଥ ।

ମତ୍ତକଣ୍ଠ ଧାଇଁଛନ୍ତି ଚତୁରଙ୍ଗ ବଳ
ବନ୍ଧ ଭଗ୍ନ ହେଲେ ଯେହ୍ନେ ମାଡ଼ିଆସେ ଜଳ
ତେସନ ପ୍ରକାରେ ସୈନ୍ୟ ଆସୁଛନ୍ତି ମାଡ଼ି
ଅନେକ ଦୂର ପର୍ଯ୍ୟନ୍ତ ଲାଗିଅଛି ଧାଡ଼ି ।
ଖଣ୍ଡେଦୂର ଗୋବିନ୍ଦଙ୍କୁ ଦେଖି ଜରାସନ୍ଧ
ବୋଲେ ଆରେ ଗଉଡ଼ ତୁ ଅଟୁ ବଡ଼ମନ୍ଦ ।
ସାମାନ୍ୟଗଣ୍ଡୁ ବୋଲି ମୁଁ ଦୟାକଲି ତୋତେ
ତେଣୁ ସିନା ଏତେ ସରିକଲୁରେ ତୁ ମୋତେ ।
ଏହ୍ନେ ବଡ଼ଥାଟ ନାଶଗଲା ତୋର ଯୋଗେ
ଏତେ ବୋଲି ଶତେବାଣ ବିନ୍ଧିଲା ସେ ରାଗେ ।
ରାଜାମାନଙ୍କୁ ବୋଇଲା ସର୍ବେ ଧନୁର୍ଦ୍ଧର
ବ୍ରହ୍ମାସ୍ତ୍ର ଏହାଙ୍କୁ ପେଷ କରୁଛି ନବସ୍ତର ।
ଏ ତିନି ଏଠାରୁ ଯେହ୍ନେ ନ ଯିବେ ବରତ୍ତ
ତେମନ୍ତ ପ୍ରକାରେ ମାର ବେଢ଼ି ଚଉକଣ୍ଠ ।
ଏତେ ବୋଲି ଜରାସନ୍ଧ ଝିଙ୍କି ଶରାସନ
ବଳରାମ ଉପରେକୁ ବିନ୍ଧିଲା ମାର୍ଗଣ ।
ସାତକାରେ ସହସ୍ରେକ ନାରାଚ ପୂରାଇ
ସୁରଥକୁ ବିନ୍ଧିଲା ସେ କୋପମୁଖ ହୋଇ ।
ନାରାଚ ଆସନ୍ତେ ଦୂରୁ ଦେଖି ଚକ୍ରପାଣି
କାଟି ଖଣ୍ଡ ଖଣ୍ଡ କଲେ ଶାର୍ଙ୍ଗଧନୁ ଟାଣି ।
ଦେଖି ଜରାସନ୍ଧ କ୍ରୋଧେ ବଢ଼ାଇ ଦ୍ୱିଗୁଣ
ନିମିଷକେ ବରଷିଲା ତିନିଶତ ବାଣ ।
ପୁଣି ସହସ୍ରେକ ବାଣ ଧନୁରେ ପୂରାଇ
ବୃହୁଁ ବୃହୁଁ ବିନ୍ଧିଲା ସେ କୋପମୂର୍ତ୍ତି ହୋଇ
ସେ କାଳେ ତା ଅଙ୍ଗ ତେଜ ଦିଶିଲା କରାଳ
ପ୍ରଳୟ କାଳରେ ଯେହ୍ନେ ଘୋଟଇ ଅନଳ ।
ଜରାସନ୍ଧ କୋପ ଦେଖି ସକଳ ସଇନ
ନିର୍ଭୟରେ ପ୍ରହାରିଲେ ନାନାଶସ୍ତ୍ର ଘେନ ।
ରଥ ଗଜ ପଦାତି ଯେ ଅଶ୍ୱ ଅପ୍ରମାଣ
ଏକମୁଖ ହୋଇସର୍ବେ କଲେ ଘୋରରଣ ।
ଜଣେକ ସହସ୍ର ଶତ ଏଣ ବଂଶ ବିନ୍ଧ
ସେ ତିନି ଭାଇଙ୍କ ରଥ ଗତି ଦେଲେ ରୁନ୍ଧି ।
ବୀରଙ୍କ ଚରଣାଘାତେ ପୃଥ୍ୱୀ ଟଳମଳ
ବାଣେବାଣେ ଘଷି ହୋଇ ଉଠିଲା ଅନଳ ।
ମାର ମାର ଧର ଧର ଶବଦ ପ୍ରଚଣ୍ଡ
ବୀରଙ୍କର ସିଂହନାଦେ କମ୍ପିଲା ବ୍ରହ୍ମାଣ୍ଡ ।

ମାଗି ରଥୀ ମହାରଥୀ ପଦାତି ସହିତେ
ବିନ୍ଧନ୍ତି ଯେ ଯାହା ବାଣ ଘେନ ଅବିରତେ ।
ଆକାଶରେ ପୂର୍ଣ୍ଣ ହେଲା ଶର କୋଟି କୋଟି
ଦିବସେ ଅନ୍ଧାରମୟ ନ ଦିଶଇ ସୃଷ୍ଟି ।
ମହାଘୋର ମେଘ ଯେହ୍ନେ ବରଷଇ ପାଣି
ଅସ୍ତ ହେଲା ପ୍ରାଏ ଲୀନ ହେଲେ ଦିନମଣି ।
ଘୋରନିଶା ପ୍ରାୟେ ସୃଷ୍ଟି ଦିଶଇ ଅନ୍ଧାର
କାହାର ନେତ୍ରକୁ କିଛି ନୋହିଲା ଗୋଚର ।
ବଳରାମ ନଜାଣିଲେ ସୁରଥର ଗତି
ସୁରଥ ବୋଇଲା ଅବା ଶ୍ରୀକୃଷ୍ଣ ନାହାନ୍ତି ।
ରଥୀଙ୍କର ନୟନକୁ ସାରଥି ନ ଦିଶେ
ସାରଥି ବସୁରେ ରଥେ ନାହାନ୍ତିକ ଅଶ୍ୱେ ।
କେବଳ ଶୁଭଇ ମୁଖରଡ଼ ଗୁଣଘୋଷ
ନିର୍ଘାତ ପରାଏ ବାଣ ପଡ଼େ ଚଉପାଶ ।
ଛୟାଣୋଇ ସହସ୍ର ରାଜା ଏକମୁଖ ହୋଇ
ରାମକୃଷ୍ଣ ସୁରଥକୁ ବିନ୍ଧନ୍ତି ଜୁହାଇ ।
ଶୁକ ବୋଲନ୍ତି ଶୁଣ ହେ ପରୀକ୍ଷ ନୃପତି
ଅନେକ ସଂଗ୍ରାମ କରେ ମଗଧାଧିପତି ।
ହସ୍ତୀଙ୍କର ଗରଜନ ରଥଘୋଷ ରଡ଼ି
ପଦାତିଙ୍କ ପାଦଧ୍ୱନି ଅଶ୍ୱ ତଡ଼ବଡ଼ି ।
ଭଟଙ୍କର ଶସ୍ତ୍ରପାତ ମୁଖରାବ ଗୋଳ
ବୀରଙ୍କର ସିଂହନାଦେ କମ୍ପେ ଭୂମଣ୍ଡଳ ।
ଜରାସନ୍ଧ ଆଦିକରି ଯେତେକ ନୃପତି
ଯେ ଯାହାର ମତେ ଧାଇଁଆସି ଶୀଘ୍ର ଗତି ।
ରାମକୃଷ୍ଣ ସୁରଥକୁ ଧରିବା ମାନସେ
ବେଢ଼ିଲେ ସହସ୍ର ପୁର କରି ଚଉପାଶେ ।
ଏକ ଯୋଗେ ବେଢ଼ନ୍ତେ ସେ ଚତୁରଙ୍ଗ ଥାଟ
ସୂଚିମୁନ ଭେଦିବାକୁ ନ ରହିଲା ବାଟ ।
ବୃରଞ୍ଜଣୋ ଲକ୍ଷେ ରାଜା ଅସଂଖ୍ୟ ସଇନ
ପ୍ରହାର କରନ୍ତି କୋପେ ନାନାଶସ୍ତ୍ର ଘେନ ।
ଏସନ କଠାଳ ଯୁଦ୍ଧ କଲା ଜରାସନ୍ଧ
ସୁଦର୍ଶନ ଚକ୍ର କରେ ଧଇଲେ ଗୋବିନ୍ଦ ।
କୋଟିଏ ସୂର୍ଯ୍ୟର ତେଜ ଯେ ଅଙ୍ଗେ ବହଇ
କ୍ଷଣକରେ ଚରାଚର ସୃଷ୍ଟି ପାରେ ଦହି ।
ସେ ଚକ୍ର ଧଇଲେ ଯହୁଁ ଦେବ ନାରାୟଣ
ହଳ ମୁଷଳ ବୋଇଲେ ଦେଖି ସଙ୍କର୍ଷଣ ।

ସୁରଥ ହସ୍ତେ ଧଇଲା ଲୋହସାର ଧନୁ
ଦେଖିଣ ସଙ୍କିତ ହେଲେ ସ୍ୱର୍ଗେ ଶତମନୁ ।
ମହାବସ୍ତ୍ର ଭୂତ ଧରିଛନ୍ତି ଲକ୍ଷ୍ମୀନାହା
ସୁର ସିଦ୍ଧ ମୁନିମାନେ ଗାଉଛନ୍ତି ଯାହା ।
ଜାଜ୍ୱଲ୍ୟମାନ ମୂରତି ତେଜ ବିକରାଳ
ଯେଉଁ ରୂପ ଦେଖି ମରେ ଅସୁରଙ୍କ କାଳ
ଚକ୍ରକୁ ବୁଲାନ୍ତି କରେ ଧରି ଚକ୍ରପାଣି
ଅବଲୀଳେ ଆକାଶରୁ ଶୁଭିଲାକ ବାଣୀ ।
ହେ ଦେବ ଶ୍ରୀନାରାୟଣ ସର୍ବ ଅନ୍ତର୍ଯ୍ୟାମୀ ।
ସମସ୍ତେ ଏହାକୁ ରକ୍ଷାକର ଦେବସ୍ୱାମୀ ।
ତୁମ୍ଭେ ଦେଖିଅଛ ପଣ୍ଡୁ ରାଜାଙ୍କର କଷ୍ଟ
ରାଜସୂୟ କରାଇବେ ପାଣ୍ଡବଙ୍କ ଶ୍ରେଷ୍ଠ ।
ଲକ୍ଷେ ନୃପ ମିଳି ତହିଁ ଦେବେ କରଭାଗ
ସେ ଯଜ୍ଞ ଭାରତଯୁଦ୍ଧ ହୋଇବ ଉଦ୍‌ଯୋଗ ।
ଏଣୁ ଏ ରାଜାଙ୍କୁ ଏବେ ଜୀବନେ ନମାର
କପଟ କରିଣ ଏଥୁ ଯାଅ ଅପସରି ।
ତୁମ୍ଭେ କି ନ ଜାଣ ପ୍ରଭୁ ଏ କଥା ସକଳ
ଏହିରୂପେ ଧାଡ଼ି ଦେବ ଅଷ୍ଟାଦଶ ବେଳ ।
ତା ସବୁ ସହିବ ତୁମ୍ଭେ ଦେବକାର୍ଯ୍ୟ ପାଇ
ନୋହିଲେ ଧରଣୀ ଭାର ଉଶ୍ୱାସ ନୁହଇ ।
ଏ କଥା ବିଚାର କର ପ୍ରଭୁ ହୃଦଗତେ
ମହତ ବିବେକ ତୁମ୍ଭେ ଠାକୁର ଜଗତେ ।
ଭକ୍ତକୁ ତାରିବା ପାଇଁ ତୁମ୍ଭ ଅବତାର
କାର୍ଯ୍ୟ ନାଶଯିବ ଏହା ନକଲେ ବିଚାର ।
ଆବର ଏହାକୁ କିଛି କଠୋର ନ କର
ଉପହାସ ହେଉ ପଛେ ଯାଅ ଅପସର ।
ଏମନ୍ତ ଆକାଶବାଣୀ ଶୁଣି କର୍ମପଥେ
ସୁଦର୍ଶନ ଚକ୍ର ସହାରିଲେ ଜଗନ୍ନାଥେ ।
ବଳଦେବ ସହାରିଲେ ଆପଣା ଆୟୁଧ
ସାରଥିକୁ କହିଁ ଆଜ୍ଞାଦେଲେ ଚକ୍ରାୟୁଧ ।
ରଥ ଲେଉଟାଇ ଏଥୁ ନିଅ ବେଗେ ବାହି
ସମର ନ କରି ଆମ୍ଭେ ଯିବା ପିଠି ଦେଇ ।
ଶୁଣି ତା ସାରଥୀ ରଥ ଘାଲଟାଇ ବହେ
ଦେବକାର୍ଯ୍ୟେ ପିଠି ଦେଇଗଲେ ସେ ବିନହେ
ପଛେ ବଳଦେବ ସ୍ୱାମୀ ଆଗେ ଜଗନ୍ନାଥ
ମଧ୍ୟେ ବଳେ ରଥ ଚଢ଼ି ଚଳଇ ସୁରଥ ।

ସଇନ ଭିତରେ ପଶିଗଲେ ହାଂଶଙ୍କରେ
ଦେଖଣାହାରିଏ ଦେଖୁଛନ୍ତି ସେ ଯାହାରେ ।
ସବୁକୁ ଭେଳକ ଲଗାଇଲେ ଦେବହରି
ଚାଟକା ହୋଇଣ ସର୍ବେ ରହିଁଛନ୍ତି ହେରି ।
ଗଲ ଗଲ ବୋଲି ଶୁଭେ ମୁଖରାବଗୋଳ
ଚମତ୍କାର କରି ସର୍ବେ କଲେ କୋଳାହଳ ।
କେ ବୋଲଇ ଏତେଲୋକ ଥାଉ କାହିଁଗଲା
କେ ବୋଲଇ ଜରାସନ୍ଧ ଭୟେ ପଳାଇଲା ।
ସବୁରାଜାମାନେ ଛନ୍ତି ସେହି ସୁଖେ ଜଗି
ହାତୀ ଘୋଡ଼ା ରଥ ରଥୀ ଦେବେ ହେବଲାଗି
କେଣେ ପଳାଇଲେ କେହି ନପାରିଲେ ଦେଖି
ଜଣେକରେ ବନ୍ଦୀ ହେଲା ସମସ୍ତଙ୍କ ଆଖି
ଏବେହେ ଖୋଜିବାରିଲ ଗଲ କେଉଁବାଟେ
ଥୋକାଏ ବୋଲନ୍ତି ଲୁଚିଥିଲେ ଏହିଥାଟେ ।
ତେତେକ ଯୋଜନ ମାଡ଼ି ଅଛନ୍ତି ସଇନ
ଏଥୁ କେମନ୍ତେ ପଳାଇ ଯିବେ ପ୍ରାଣ ଘେନ
ଜରାସନ୍ଧ ବୋଲେ ନୃପଗଣଙ୍କୁ ଅନାଇଁ
ପଥ ଅନୁସରି ଚାଲ ମାରିବା ଗୋଡ଼ାଇ ।
ନସତ ହେଲେଣ ଫିଟିଯିବ କେତେ ଦୂର
ଗୋଡ଼ାଇଲେ ନଷ୍ଟେ ଆଗେ ପଡ଼ିବ ଆମ୍ଭର
ଏମନ୍ତ ବୋଲିଣ ସର୍ବେ ରହିଁ ଚଉଦିଗେ ।
ଦେଖିଲେ ସେ ବିନରଥ ଯାଉଅଛି ଆଗେ ।
ସହସ୍ର ଆଦିତ୍ୟ ଅବା ଉଦୟ ହୋଇଛି
ଧ୍ୱଜରେ ବାନର ବସି ଶୋଭାପାଉଅଛି ।
ଆଗେଯାନ୍ତି ବଳରାମ ମଧ୍ୟରେ ସୁରଥ
ସବୁ ପଛେ ଲୀଳା ବଳେ ପ୍ରଭୁ ଜଗନ୍ନାଥ ।
ଏମନ୍ତ ଦେଖିଣ କୋପେ ମଗଧ ନୃପତ
ଗୋଡ଼ାଇଲେ ସୈନ୍ୟ ସଖା ଘେନି ପଛକତ ।
ପିଠି ଦେଇ ତିନ ରଥ ଯାଉଅଛି ଆଗେ
ପଛେ ପଛେ ଜରାସନ୍ଧ ଗୋଡ଼ାଇଲା ରାଗେ ।
ଆଡ଼ ତିହାଡ଼ ସେ ବନ୍ଧ ହୋଇଣ ଚଳନ୍ତି
ଥୋକେଦୂରେଲୁଚି ଥୋକେଦୂରେଦେଖାଦ୍ୟନ୍ତି
ଖଣ୍ଡେ ଦୂର ଦେଖି ଧରି ନପାରନ୍ତି କେହି
ପୁଣି ଆଗସର ଯାନ୍ତି ଏକମୁଖ ହୋଇ ।
ଧରିହେଲା ପ୍ରାୟେ ଖଣ୍ଡେଦୂର ରହିଥାନ୍ତି
ସଇନ ଗୋଡ଼ାଇଯାନ୍ତେ ପୁଣି ସେ ପଳାନ୍ତି ।

ରଥୀ ମହାରଥୀ କେହି ନ ପାରିଲେ ଧରି
ସମସ୍ତଙ୍କୁ ଅତିକ୍ରମି ଗଲେ ଦେବହରି ।
ଘାଏ ଘୁମାଇଲେ ଥୋକେ ସେନା ମଧ୍ୟଲୋଟି
ଥୋକେ ଚଳ ନ ପାରିଣ ରହିଲେ ପାଳଟି ।
ଥୋକେ ସେନା ହୋଇଲେକ ଧାଇଁ ତୃଷାରେ ଆକୁଳ
ଶ୍ରାନ୍ତ ହୋଇ ଥୋକେ ଆଶ୍ରାକଲେ ବୃକ୍ଷମୂଳ
ଶସ୍ତ୍ରାଘାତେ ଅଙ୍ଗମାନ ଯାଇଥିଲା ଛିଣ୍ଡି
ବାଣ ପୀଡ଼ା ହେତୁ ଥୋକେ ମଲେ ବାଟେପଡ଼ି
ଥୋକାଏ ରହିଲେ ଆଗେ ନ ଦିଶନ୍ତେ ବାଟ
ପ୍ରାଣ ସଙ୍କଟରେ ଥୋକେ ହେଲେ ଛଟପଟ ।
ଏମନ୍ତେ ପନ୍ଦର ଘଡ଼ି ହୋଇଲାକ ବେଳ
ଦିନକର ଦେବ ଆରୋହିଲେ ଅସ୍ତାଚଳ ।
ଧୂମ୍ର ଧୂମ୍ର ପରବେଶ ହୋଇଲା ରଜନୀ
ପ୍ରଦୀପ ସନ୍ଧ୍ୟାଡ଼ି ହେଲା ଲଗାନ୍ତି ସଇନି ।
ଅନ୍ଧାର ନିଶାରେ ଚଳ ଥୋକେ ଦୂର ଗଲେ
ଗନ୍ଧର୍ବୀ ନଦୀର ତୀରେ ପ୍ରବେଶ ହୋଇଲେ ।
ଗନ୍ଧର୍ବ ପର୍ବତେ ମଲ୍ଲ ନାମେ ଅଛି ପଦା
ମଳୟ ନାମରେ ତହିଁ ଅଛି ଏକ ଗଦା ।
ଯେ ଗନ୍ଧର୍ବ ଗିରି ଅଟେ ଅତ୍ୟନ୍ତ ସୁସଞ୍ଚ
ଛନଯୋଜନ ବିସ୍ତାର ପାଞ୍ଚଯୁଣ ଉଚ ।
ସୁସ୍ୱାଦୁ ଶୀତଳ ଜଳ ଦେଖି ସେ ନଦୀରେ
ସ୍ନାନପାନ କଲେ ସର୍ବେ ମିଳି ଯେ ଯାହାରେ
ପଥଶ୍ରମେ ପୀଡ଼ା ପାଇ ହାତୀ ଘୋଡ଼ା ରଥୀ
ପଦାତିକ ଆଦି କେହି ଚଳ ନ ପାରନ୍ତି ।
ଜରାସନ୍ଧ ବୋଲେ ଆଜ ରହିବା ଏଠାରେ
ପରଭୂମି ରାତ୍ରକାଳେ ପଥ ନ ଦିଶଇ ।
ଖୋଜ ନ ପାଇବା ଆଉ ଅନ୍ଧାର ନିଶାରେ
କାହିଁ ଗଲା ଜଣାଯିବ କାଲି ପ୍ରଭାତରେ ।
ଏସନକ ଆଜ୍ଞା ଯହୁଁ ଦେଲା ସେ ରାଜନ
ଠଣାମାଡ ବସା କଲେ ସକଳ ସଇନ
ଶୁଣ ପରୀକ୍ଷ ବଦନ୍ତି ଶୁକ ମହାମୁନି
ଇତିଶିରି ଭାଗବତ ପୁଣ୍ୟମୟ ଧ୍ୱନି ।
ପବିତ୍ର ଗଙ୍ଗାଜଳ ଏ ଗ୍ରନ୍ଥ ପୁଣ୍ୟମୟେ
ଧାଡ଼ି ଖଣ୍ଡର ପ୍ରଥମ ଅଧ୍ୟା ଶେଷ ହୁଏ ।
ଅଚ୍ୟୁତ କହଇ କର୍ଣ୍ଣେ ଶ୍ରୀହରି ଚରିତ
ଶୁଣି ସାଧୁଜନେ ହୁଅ ସଂସାରୁ ମୁକତ ।

## ଜରାସନ୍ଧର ଦ୍ୱିତୀୟ ବାର ଧାଡ଼ି

ଜୟ ଜୟ ନାରାୟଣ ଅନନ୍ତ ସ୍ୱରୂପୀ
ସପତ ସମୁଦ୍ର ମଧ୍ୟେ ଯେଉଁ ଦେହ ବ୍ୟାପୀ ।
ଚୌରାଶୀ କୋଟି ରାଶିର ଯେଉଁ ମହାଜଳ
କାରୁଣ୍ୟ ବାରିନିଧି ସେ ଅକଳିତ କୂଳ ।
ସେ ଜଳ ଲିତରେ ତବ ଶରୀର ଅକ୍ଷୟେ
ପୂରି ଉଛୁଳିଲା ଜଳ ଶୂନ୍ୟ ପଥଯାଏ ।
ଶଙ୍ଖାସୁର ନାମେ ମହାଦୁଷ୍ଟ ଦୈତ୍ୟ ଥିଲା
ବ୍ରହ୍ମାଙ୍କର ବେଦପୋଥି ଘେନିଗଲା ।
କାନ୍ଦଣ ଦକଲେ ବ୍ରହ୍ମା କଲେକ ଗୁହାରି
ତହିଁର ଅନନ୍ତେ ଜଳେ ମତ୍ସ୍ୟରୂପ ଧରି ।
ବେଦ ଉଦ୍ଧରିଲ ବଳେ ଦୈତ୍ୟ କରି ହତ
ତେଣୁ ରକ୍ଷା ହେଲା ଚରାଚର ଏ ଜଗତ
ଆଦ୍ୟରୁ ଶ୍ରୀଭୁଜେ ଶଙ୍ଖ ଚକ୍ର ଅଛି ବହି
ନିରାକାର ପୁରୁଷ ତୋ ରୂପ ରେଖ ନାହିଁ ।
ସ୍ୱାମୀ ପୃଥ୍ୱୀ ଭାରଭର ନିବାରିବା ଅର୍ଥେ
ଦିବ୍ୟଦେହେ ଅବତାର ତୁମ୍ଭେ ପୁଣ୍ୟ ପଥେ ।
ତୁମ୍ଭର ସର୍ଜିଲା ସିନା ସର୍ବ ବସୁନ୍ଧରା
ଶୁଭାଶୁଭ କର୍ମ ତୁମ୍ଭେ ପାର ଆନକରି ।
ଦକ୍ଷିଣ ସମୁଦ୍ର ତୀରେ ନୀଳ ପରବତ
ଚତୁର୍ଦ୍ଧା ରୂପରେ ତହିଁ ବିଜେ ଜଗନ୍ନାଥ ।
ଅବିକାର ପରଂଜ୍ୟୋତି ପ୍ରତ୍ୟକ୍ଷେ ଉଦୟ
ଦର୍ଶନମାତ୍ରକେ କୋଟି ପାପ ଯାଏ କ୍ଷୟ ।
ଅପାର ମହିମା ଦେବ କେ ପାରିବ କହି
ଭକତଜନବାନ୍ଧବ ଲକ୍ଷ୍ମୀ ଦେଖି ସାଇଁ ।
ଶ୍ରୀଜଗନ୍ନାଥ ଦେବଙ୍କ ଚରଣେ ପ୍ରଣମି
ଅଚ୍ୟୁତ ଦାସ କହିକ ଉଦ୍ଧରିବା ସ୍ୱାମୀ ।
ଏଥୁଅନ୍ତେ ପରୀକ୍ଷିତ ନାମେ ମହାରାଜା
ଶୁକମୁନି ଚରଣରେ କଲେ ଦିବ୍ୟ ପୂଜା ।
ଲକ୍ଷେକ ସୁବର୍ଣ୍ଣ ଦେଇ ପାଦତଳେ ପଡ଼ି
ପୁଣି ପଚାରଇ ରାଜା ଶିରେ କରଯୋଡ଼ି ।
ହେ ସ୍ୱାମି ଜରାସନ୍ଧର ଆଦ୍ୟ ଧାଡ଼ି ବାଣୀ
ପାପାଦି ପାତକ ମନ କ୍ଷୟ କଲି ଶୁଣି ।
ତଦନ୍ତରେ ଆନ କଥାହେଲା ପୁଣ କିସ
ବିସ୍ତାରି କହିବା ମୋତେ ବେଦବ୍ୟାସ ଶିଷ୍ୟ ।

ଏହା ଶୁଣି ବୋଲନ୍ତି ଯେ ଶୁକ ମହାଯତି
ଶୁଣ ହେ ପରୀକ୍ଷ ରାଜା ପଣ୍ଡୁ ବଂଶନାଥ ।
ସକଳ ରାଜାଙ୍କ ସୈନ୍ୟ ପରିଶ୍ରମ ପାଇ
ବାସରେ ଶୁଇଲେ ଯେ ଯାହାର ନିଦ୍ରା ଯାଇ
ମୁହୂର୍ତ୍ତେ ସହିତେ ବଳଦେବ ବନମାଳୀ
ଯାଦୁକା ମନ୍ତ୍ର ମୁଖେ ଧାଇଁକାରେ ଚଳି ।
ଭିନ୍ନ ରଥରେ ଭିନ୍ନେ ଆରୋହଣ ବେଗେ
ତହୁଁ ସେ ମିଳିଲେ ଆସି ମଥୁରାରେ ଲାଗେ ।
ସିଂହଦ୍ୱାରେ ରଥ ରଖି ଭିତରକୁ ଗଲେ
ଉଗ୍ରସେନ ନୃପତିର ଛାମୁରେ ମିଳିଲେ ।
ଭିନ୍ନ ନାଭି ରାଜାମଧେ କରନ୍ତି ବନ୍ଦନ
ଆସନ ତେଜିଲେ ତାଙ୍କୁ ଦେଖି ଉଗ୍ରସେନ
ଆନନ୍ଦରେ ଗଦ ଗଦ ପୁଲକିତ ଗାତ୍ର
ଧରି ଧିରୁ ହକାରିଲେ ଅମାତ୍ୟ ପାତ୍ର ।
ସିଂହାସନେ ବିଜେ କଲେ ରାମକୃଷ୍ଣ ଧିର
ସଂଗ୍ରାମ ବାରତା ତାଙ୍କୁ କହିଲେ ଶ୍ରୀହରି ।
ସମସ୍ତ ଯାଦବ ଶୁଣି ହରଷ ହୋଇଲେ
ସର୍ବେ ଭଙ୍ଗ କରି ଯେଝା ପୁରେ ଚଳିଗଲେ ।
ବସୁଦେବ ନବରକୁ ରାମକୃଷ୍ଣ ବେନି
ବିଜେକଲେ ସୁରଥକୁ ସଙ୍ଗତରେ ଘେନି ।
ସ୍ନାହାନ ଭୋଜନ ସାରି ସୁଖେ ବେନି ଭାଇ
ଅମୂଲ୍ୟ ରତ୍ନ ପଲଙ୍କେ ପହୁଡ଼ିଲେ ଯାଇ ।
ପାଦ ମଞ୍ଜାଳଇ ବସି ସୁରଥ କୁମର
ନିଦ୍ରାବଶେ ଅଚେତନ ରାମ ଚକ୍ରଧର ।
ଏଥୁଅନ୍ତେ ଜରାସନ୍ଧ ନିଶି ଅବସାନେ
ଉଠିଣି ସାମନ୍ତ ଘେନି ଉଦବେଗ ମନେ ।
ଚର ବେଗେ ଚଉଲକ୍ଷ ଉଗର ବରଗି
ଆଜ୍ଞା ଦେଲା ରାମକୃଷ୍ଣ ବାନ୍ଧି ଆଣ ବେଗି ।
ହେଳା ନ କରିଣ ବୁଲି ସର୍ବରେ ଖୋଜିବ
ଲକ୍ଷ ହାନ ବାନ୍ଧି ଦେଲ ଚର ପେଶୁଥିବ ।
ଗାଉଡ଼ିଆ ଆଉଡ଼ିଆ ଯୋଡ଼ ଯୋଡ଼ ଥିବେ
ଦେଶାନ୍ତର କଥା ଆଣି ଛାମୁରେ କହିବେ ।
ଶତ୍ରୁ ନ ପାଇଲେ ଆମ୍ଭେ ଲେଉଟି ନ ଯିବୁ
ଖୋଜି ଆସିବା ପର୍ଯ୍ୟନ୍ତେ ଏହୁଠାରେ ଥିବୁ
ଯେ ଆସି ଖୋଜିଣ ମୋତେ ବାନ୍ଧି ଆଣିଦେବ
ମୋ ରାଜ୍ୟରେ ଅର୍ଦ୍ଧେ ସେହି ଅମାତ୍ୟ ହେବ
ଏତେ ବୋଲି ଜରାସନ୍ଧ ଶାଢ଼ୀମାଳା ଦେଇ
ଆଜ୍ଞା ଦେଲା ରାମକୃଷ୍ଣ ଖୋଜ ଆସ ଯାଇ ।
ଶୁଣିଣ ଭଟରମାନେ ଧାଇଁକାରେ ଚଳି
ନଅବକାଶେ ଖୋଜିଲେ ନାନାଦେଶ ମିଳି ।
ଏସନ ପ୍ରକାରେ ତହିଁ କେତେ ଦିନ ଗଲା
ମଥୁରା ନଗରୁ ଚର ଆସି ଜଣାଇଲା ।
ହେ ମଣିମା ସାବଧାନେ ଶୁଣ ନୃପମଣି
ରଣ ଭଙ୍ଗ ହୋଇଗଲେ ରାମ ଚକ୍ରପାଣି ।
ମଥୁରା କଟକେ ଯାଇ ପ୍ରବେଶ ହୋଇଲେ
ଉଗ୍ରସେନ ଆଗେ ଯୁଦ୍ଧ ବାରତା କହିଲେ ।
ଯାଦବେ ପାଇଲେ ଶୁଣି ମନେ ଘୋର ବ୍ୟଥା
କାହାକୁ ନ ରୁଚେ ରାମକୃଷ୍ଣଙ୍କର କଥା ।
ଅଦ୍ୟପି ସେ ଭିନ୍ନଜଣ ଅଛନ୍ତି ସେ ଦେଶେ
ଗୁପତ ସମ୍ବାଦ ଆମ୍ଭେ ବୁଝିଲୁ ବିଶ୍ୱାସେ
ଏହାଶୁଣି ଜରାସନ୍ଧ କ୍ରୋଧଭରେ କମ୍ପି
ନୟନ ତରାଟି ଗୁହେଁ ଦନ୍ତେ ଦନ୍ତ ଚାପି ।
ବିକରାଳ ମୂର୍ତ୍ତି ରଟ ମଟ ଦନ୍ତ ପାଟି
ପ୍ରଖର ନିଃଶ୍ୱାସ ବହେ ନୟନ ତରାଟି ।
ରୋମ ପୁଲକଇ ଆର ଛୁଟେ ସିଂହ ରଡ଼ି
ଯୁଗାନ୍ତ କାଳରେ ଯେସନ୍ତେ ମେଘ ଘଡ଼ଘଡ଼ି ।
ବାସ୍ତର ଭାର ଗଦା ସେ ଊର୍ଦ୍ଧ୍ୱରେ ବୁଲାଇ
ସିଂହାସନୁ ଡେଇଁ ତଳେ ଡିଆ ଦେଲା ଯାଇ
ପାଦଭରେ କମ୍ପୁଅଛୁ ପୃଥ୍ୱୀ ନବଖଣ୍ଡ
କୋପେ ଆଜ୍ଞା ଦେଲା ବେଗେ ସାଜ ସମଦଣ୍ଡ
ଶୁଣିଣ ସାଜିଲେ ନୃପେ ଯେ ଯାହାର ବଳ
ହାଥି ରଥୀମହାରଥୀ ପଦାତି ସକଳ ।
ଚଉରଙ୍ଗଣା ଲକ୍ଷେ ରାଜା ଅନର୍ଯ୍ୟାପ୍ତ ଆଠ
ବନ ଗିରି ମାଡ଼ିଗଲେ ସମତୁଲ ବାଟ ।
ଚଉହାଣ ନୃପତି ବାଟେ କଢ଼ାଉଛି ଆଗେ
ସୈନ୍ୟଘେନି ଜରାସନ୍ଧ ଚଳେ ଅତି ରାଗେ ।
ଶୁକ ବୋଲନ୍ତି ଯେ ଶୁଣ ପରୀକ୍ଷ ନୃପତି
ହରିବଂଶ ପୁରାଣ ଏ ପଦ୍ୟ ଭାରତୀ ।
ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ତିଥି ଶୁକ୍ରବାର
ରେବତୀ ନାମେ ନକ୍ଷତ୍ର ଅଟେ ସେ ଦିନର ।
ବାଣିଜ୍ୟ ନାମେ କରଣ ଇନ୍ଦ୍ର ନାମେ ଯୋଗ
ମେଷ ସଂକ୍ରାନ୍ତିରୁ ସପ୍ତବିଂଶ ଦିନ ଭୋଗ ।

ସେ ଦିନ ବସନ୍ତଯାତ୍ରା ସମାପତ କରି
ଦ୍ଵାରକେ ବାଦ୍ୟଭାଣ୍ଡ ବଜେ କଲେ ରାମହରି ।
ଉତ୍ସବେନ ଆଦିକରି ସକଳ ଯାଦବେ
ଚନ୍ଦନ ଲଗାଇ ଯାତ୍ରା କରନ୍ତି ସରବେ ।
ବଳଦେବ ସହିତରେ ସୁରଥକୁ ଘେନି
ପଞ୍ଚୁଆଣି ଥାଟେ ବିଜେ କଲେ ଚକ୍ରପାଣି ।
ଯତନରେ ପୃଷ୍ଠ ରକ୍ଷା କଲେ ଲକ୍ଷ୍ମୀସାଳି
ଜାଣନ୍ତି ସେ ଜରାସନ୍ଧ ଆସୁଅଛି ବାହି ।
ଚୌଷଠୀ କୋଟି ଯାଦବେ କରନ୍ତେ ଆଗୋରଣି
ଜରାସନ୍ଧ ନୃପତିକ ନ ପାରିଲେ ଜାଣି ।
ଏ ଯାଦବେ ପରାଭବ ପାଇବେ କମତେଁ
ଆମ୍ଭେ ପଲେଖିବା ଯୁଦ୍ଧ କରୁ ଆମ୍ଭ ସାଥେ ।
ଏମନ୍ତ ବିଚାରି ପ୍ରଭୁ ପଛଥାଟେ ରହି
ଲୀଳାରେ ଗମନ କଲେ କାହାକୁ ନ କହି ।
ଏଥୁ ଅନନ୍ତରେ ଯହୁଁ ପାହିଲା ରଜନୀ
ସମସ୍ତ ଦେବତା ଆଳେ ଶୁଭେ ଶଙ୍ଖଧ୍ୱନି ।
ଦଣ୍ଡୁଆସିମାନେ ଠଣା ଛାଡ଼ି ଗୃହେ ଗଲେ
ଦ୍ୱିଜଗଣ ସ୍ନାନସାରି ସନ୍ଧ୍ୟା ସୁମରିଲେ ।
ପଥିକ ଚାଲିଲେ ଉଠେ ରାବ ଦେଲା କାକ
ବୃକ୍ଷ କୋରଡ଼ରେ ପଶି ଲୁଚିଲା ପେଚକ ।
ଜମ୍ବୁକ ଶଶକ ମୃଗଆଦି ବନଚରେ
ସଭୟେ ଲୁଚିଲେ ପଶି ଅଗମ୍ୟ ବନରେ ।
ପ୍ରଭାତ ହୁଅନ୍ତେ ସର୍ବେ ଫିଟାଇ କବାଟ
ଛେରାପାଣି ପକାଇଣ ପହଁରନ୍ତି ବାଟ ।
ଛାଟି ପେଡ଼ିଣ ପସରା ବାଡ଼ିଲେ ବେପାରି
ଘଟପୋଏ ପଡ଼ିଗଲେ ହାତେ ଖଡ଼ ଧରି ।
ଦେବତା ପୂଜିଲେ ଦ୍ୱିଜେ ଧୂପଦୀପ ଦେଇ
ଗୋଆଳେ ଦୋହନ ସାରି ଫିଟାଇଲେ ଗାଈ ।
ଯେ ଯାହାର ନିତ୍ୟକର୍ମ ସାରି ସର୍ବଲୋକେ
ଆପଣା ନାୟିକାମାନ ଅରଜିଲେ ଥୋକେ ।
ଚକ୍ରବାକ ଚକ୍ରବାକୀ ବିଚ୍ଛେଦରେ ଥିଲେ
ସନ୍ତାପ ଛାଡ଼ିଣ ଏକ ଆସନେ ବସିଲେ ।
କୁମୁଦ ମୁଦ୍ରିତ ହେଲା ଫୁଟିଲା କମଳ
ଆଦିତ୍ୟ କିରଣେ ଦିଗ ଦିଶେ ପରିମଳ ।
ଏମନ୍ତ ସମୟେ ବେଳେ ହେଲା ସୁର ପାହି
ଜରାସନ୍ଧ ନୃପ ଆସେ ସମଦଣ୍ଡ ବାହି ।
ଘୁମତରେ ଜଗିଥିଲା ଆସିଣ ଆଗହୁଁ
ମଥୁରାପୁରକୁ ଧାଡ଼ିଦେଲା ବ୍ୟୁହୁଁ ବ୍ୟୁହୁଁ ।
ପାଦଗତି କରି ବିଜେ ରାମକୃଷ୍ଣ ବେନି
ଏମନ୍ତ ସମୟେ ମାଡ଼ି ପଡ଼ିଲେ ସଇନ ।
ଜରାସନ୍ଧ ଦେଖି ବୋଲେ ଆରେରେ ଗଉଡ଼
ନ ଜାଣି ମୋ ସଙ୍ଗେ ଦ୍ରୋହ ଅରଜିଲୁ ମୂଢ଼ ।
କପଟେ ମାଇଲୁ ମୋର ଅନେକ ସଇନ
ଏହି ଗଦାଘାତେ ତୋର ନେବଇ ଜୀବନ ।
ବାରେକ ଭଣ୍ଡାଇ ଗଲୁ କପାଳ ସୁଯୋଗେ
ଆଜ କାଳ ପୂର୍ଣ୍ଣ ହେଲା ପଡ଼ିଲୁ ମୋ ଆଗେ ।
ଏଠାରୁ ବରତି ଯାଇ ନ ପାରିବୁ ଆଜ
ତୋତେ ସଂହାରିଲେ ମୋର ସିଦ୍ଧ ହେବ କାର୍ଯ୍ୟ
ରଥେ ଥାଇ ଜରାସନ୍ଧ କହେ କ୍ରୋଧ କରି
ତଳେ ଉଭା ହୋଇଛନ୍ତି ରାମ ଚକ୍ରଧାରୀ ।
ଏକା ଛନ୍ତି ରାମକୃଷ୍ଣ କରେ ଶସ୍ତ୍ର ନାହିଁ
ଶତପୁର କରି ସୈନ୍ୟ ରହିଲେ ବେଢ଼ାଇ
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ରମାର କାନ୍ତି
ପଦ୍ମବନରେ ମରାଳେ ଯେହ୍ନେ ଶୋଭାପାନ୍ତି ।
ଶୃଗାଳ ଯୂଥରେ ଯେହ୍ନେ ସିଂହ ପାଏ ଶୋଭା
କାଚମଣି ସଙ୍ଗେ ଯଥା ମାଣିକ୍ୟର ପ୍ରଭା ।
ଛାଗଳ ଦଳରେ ଦିଶେ ଶାର୍ଦ୍ଦୁଳ ଯେସନ
ତେମନ୍ତ ଦିଶନ୍ତି ତହିଁ ରାମ ଭଗବାନ ।
ସୈନ୍ୟକୁ ଚାହିଁଣ ଆଜ୍ଞା ଦେଲା ଜରାସନ୍ଧ
ଜୀଅନ୍ତା ଧରିଣ ଯାଙ୍କୁ ନ ମାରିଣ ବାନ୍ଧ ।
ଆପୁରେ ପଡ଼ିଛୁ କାହିଁ ପଳାଇବ ଆଜ
ଏ ଭାନ୍ତି ସଫଳ ନିଶ୍ଚେଁ ହେଲା ମୋର କାର୍ଯ୍ୟ
ଏମନ୍ତ କହିଣ ରଥ ଧୂଆଇଲା ବେଗେ
ରାମକୃଷ୍ଣଙ୍କୁ ଧରିବା ପାଇଁ ଅନୁରାଗେ ।
ଏହା ଦେଖି ରାମକୃଷ୍ଣ ବିଶ୍ୱରୂପ ଧରି
ସୈନ୍ୟ ମଧ୍ୟେ ପଶିଗଲେ ପାଦଗତି କରି ।
ଦେଖିଣ ସକଳ ନୃପେ ଧରନ୍ତି ଗୋଡ଼ାଇ
ହାତେ ହାତ ଧରୁ ଧରୁ ଗଲେ ସେ ଫେଡ଼ାଇ
ସଇନ ଭିତରେ ପଶି ଖେପିଣ ପଳାନ୍ତି
ଦେଖି ଚମତ୍କାର ହେଲେ ସକଳ ନୃପତି ।
ଜରାସନ୍ଧ ଗୋଡ଼ାଇଛି ତାଙ୍କ ପୃଷ୍ଠ ଲାଗେ
ତେଇଶି ଅକ୍ଷୌହିଣୀ ବଳ ଅଛନ୍ତି ତା ସଙ୍ଗେ ।

ଆବର ଅନେକ ରାଜା ଚତୁରଙ୍ଗ ଥାଟ
ନାନାଶସ୍ତ୍ର ଧରି ଯତ୍ନେ ଜଗିଛନ୍ତି ବାଟ ।
ସମସ୍ତଙ୍କୁ ପିଠି ଦେଇ ରାମବନମାଳୀ
ସତ୍ୱରେ ପଳାନ୍ତି କେହି ନ ପାରି ଓଗାଳି ।
ଗଲା ଗଲା ବୋଲି ଡାକ ଶତ୍ରୁଭେ ଚଉକତି
ମୂଷଳସବ ଶବଦରେ କମ୍ପାଇ ଧରଣୀ ।
ସ୍ଥଗଳ ପଲରେ ଯେସନ୍ତେ ଶାର୍ଦ୍ଦୂଳ ପଶଇ
ତେସନ ପ୍ରକାରେ ପଶିଗଲେ ବେନଭାଇ ।
ଆଗେ ବଳରାମ ସ୍ୱାମୀ ପଛେ ଶିରିପତି
ଦେବକାର୍ଯ୍ୟ ନିମନ୍ତେ ସେ ପିଠି ଦେଇଯାନ୍ତି ।
ସାହସ ଦେଖାଇ ଭଣ୍ଡି ଗଲେ କେତେ ଥାଟ
ବେନି ଧାଡ଼ି ପଛୁଆର ତଳେ ନାହିଁ ବାଟ ।
ପବନହୁଁ ବେଗେ ହୋଇ ଗଲେ ନନ୍ଦବଂଶେ
ସତେଯୂଣ ମାଡ଼ ସେନା ଗୋଡ଼ାଇଲେ ପଛେ
ଶୁକ ବୋଲନ୍ତି ଯେ ଶୁଣ ପରୀକ୍ଷ ନୃମଣି
ସମରୁ ବାହାର ହୋଇଗଲେ ଭାଇ ବେନି ।
ଅନେକ ନର୍ଝର ବନ ଶାଳଶିଳ ଗିରି
ନିମିଷ ମାତ୍ରକେ ଗଲେ ଅତିକ୍ରମ କରି ।
ମାୟାରେ ପଳାନ୍ତି ବେନି ମାୟାଧର ଆଗେ
ଜରାସନ୍ଧ ଗୋଡ଼ାଇଛୁ ହାତେ ହାତେ ଲଗେ ।
କଞ୍ଚଣ ନାମରେ ଏକ ପର୍ବତ ସୁସଞ୍ଚ
ଯୋଜନେ ବିସ୍ତାରସ୍ଥଳୀ ଦଶଯୂଣ ଉଚ୍ଚ ।
ବତିଶ ଯୋଜନେ ଘର୍ଷ ନବଯୂଣ ପ୍ରତି
ସମସ୍ତ ପାଷାଣ ତହିଁ ଦିଶେ ଏକ ଜାତି ।
ସେ ଗିରି ଦକ୍ଷିଣଭାଗେ ନରମଦା ନଦୀ
ବେନିକୋଶ ମାଡ଼ ବହେ ଉତ୍ତରକୁ ଭେଦି ।
ସେଠାରେ ପ୍ରବେଶ ହୋଇ କୃଷ୍ଣ କାମପାଳ
ଦେଖିଲେ ଅତ୍ୟନ୍ତ ବେଗେ ବହୁଅଛୁ ଜଳ ।
ନାବ ନ ଦେଖିଲେ ନଦୀ ପାର ହେବା ପାଇଁ
ତେଣୁ ସେ କୂଳରେ ଉଭା ହେଲେ ବେନିଭାଇ
ପଛେ ଜରାସନ୍ଧ ସୈନ୍ୟ ପଡ଼ୁଅଛୁ ମାଡ଼
ସୁରଜଣା ଲକ୍ଷେରାଜା ଦେଇଛନ୍ତି ଧାଡ଼ ।
ରାମକୃଷ୍ଣ ଉଭା ହୋଇଥିଲେ ନଦୀ ତଟେ
ଚତୁରଙ୍ଗ ସେନା ଆସି ମିଳିଲେ ନିକଟେ ।
ଅତ୍ୟନ୍ତ କଟାଳ ସହୁଁ କଲେ ଆସି କୋହେ
ନଦୀ ଭିତରକୁ ଡେଇଁ ପଡିଲେ ସେ ଦୁହେଁ ।

ଅକାତ ଜଳରେ ପଡ଼ି ପହଁରିଣ ଗଲେ
ନିଃଶ୍ୱାସ ମାତ୍ରକେ ଆରକୂଳରେ ଲଗିଲେ ।
ମଗର କୁମ୍ଭୀର ସୁସୁମର ଭେଳା ଭେଳା
ତ୍ରଗିର ଲହରୀ ନଠେ ସ୍ରୋତ ଅନର୍ଗଳା ।
ଆତଙ୍କେ ମଡ଼ିଲେ ତହିଁ କାହ୍ନୁ ସଙ୍କର୍ଷଣ
କୂଳେ ଆଇ ଦେଖୁଥାନ୍ତି ସବୁ ନୃପଗଣ ।
ବେନିଭାଇ ନଦୀପାର ହୋଇ ଚଳିଗଲେ ।
ମଗଧ ଦେଶରେ ଯାଇ ପ୍ରବେଶ ହୋଇଲେ ।
ଥୋକାଏ ଦୂରେ ଦେଖିଲେ ନଗ୍ରେକ ଉତ୍ତମ
ବିଷ୍ଣୁପୁର ପାଟଣା ଯେ ଅଟେ ତାର ନାମ ।
ଷାଠିଏ ସହସ୍ର ଘର ବସଇ ତହିଁରେ
କୁବେର ସମାନ ଛନ୍ତି ଧର୍ମବନ୍ତ ନରେ ।
ମେଡ଼ ମଣ୍ଡପ ଦେଉଳ ଅଟ୍ଟାଳିକା ଜଗତୀ
ସ୍ୱର୍ଣ୍ଣବର୍ଣ୍ଣ ଲୋକେ ତହିଁ ବାସ କରିଛନ୍ତି ।
ସେ ନଗ୍ରେ ବିଶ୍ରାମ ଯାଇ କଲେ ଭାଇବେନି
ଶୁଣ ପରୀକ୍ଷ କହନ୍ତି ଶୁକ ମହାମୁନି ।
ସୈନ୍ୟ ଘେନି ଜରାସନ୍ଧ ନଦୀକୂଳେ ଥିଲା
ଏଠାରେ ବିଶ୍ରାମକର ବୋଲି ଆଜ୍ଞାଦେଲା ।
ଜରାସନ୍ଧ ନୃପତିର ଆଜ୍ଞା ଶିରେ ଘେନି
ଶାଢ଼ୀଘର ବାନ୍ଧି ବସା ପାଡ଼ିଲେ ସଇନି ।
ଯେ ଯାହା ନିତ୍ୟକର୍ମ ସାରି ନଦୀଜଳେ
ଭୋଜନ କରିଣ ନିଦ୍ରା ଗଲେ ନିଶାକାଳେ ।
ଜଳପାନ କରି ଅଶ୍ୱ ଗଜ ସୁସ୍ଥ ହୋଇ
ଯେ ଯାହା ସ୍ଥାନରେ ନିଦ୍ରାଗଲେ ଶ୍ରମପାଇ ।
ବିଷ୍ଣୁପୁର ପାଟଣାରେ ରାମକୃଷ୍ଣ ବେନି
ମଣ୍ଡପରେ ନିଦ୍ରାକରି ବଞ୍ଚିଲେ ରଜନୀ ।
ଧ୍ୟାନରେ ଜାଣିଲେ ତାହା ଦୁର୍ବାସା ମହର୍ଷି
ଜଗବନ୍ଧୁନାଥ ଆଗେ ପ୍ରବେଶିଲେ ଆସି ।
କର୍ଣ୍ଣରେ ତମ୍ବା କୁଣ୍ଡଳ ଶିରେ ଦିବ୍ୟଜଟା
କଟୀତଟେ କଉପୀନ ଦେହ ଅତି ମୋଟା ।
ଶଙ୍ଖ ଗୋଷୀତ ଦେହସ୍ତ ବିରାଜଇ ତନୁ
କଳ୍ପ ଆଦି ପୁରୁଷ ସେ ଯୁଗକଳ୍ପ ମନୁ ।
ହସ୍ତେ ଶୋଭେ ବ୍ରହ୍ମଦଣ୍ଡ ଦଣ୍ଡମୁଦ୍ରା ବାନ୍ଧି
କଟେ ଉତ୍ତରୀ ପଇତା ଦିବ୍ୟଛନ୍ଦେ ଛନ୍ତି ।
ଗଳେ ତୁଳସୀ ରୁଦ୍ରାକ୍ଷ ସ୍ଫଟିକର ମାଳ
ଲମ୍ବିତ ଜଟୂଡ଼ା ପାଟଳ ଦାଢ଼ି ଅଧେ ଧଳ ।

ଭସ୍ମ ବିଲେପନ ଗୋପୀଚନ୍ଦନ ଯେ ଚିତା
କରେ ଶୋଭେ ଜପାମାଳ ପରସ୍ତୁଁଛୁ ଦେଖି ।
ଓଢ଼ଣୀ ବସ୍ତ୍ର କଟିରେ ଅଛନ୍ତି ସେ ଭିଡ଼ି
ଯୋଗ ଆସନରେ ମୁଦ୍ରି ଚକ୍ଷୁ ଧାତେ ଘୁଞ୍ଚି ।
ବେଦପୋଥି କୁଶାଦ୍ଭ ପ୍ରୋକ୍ଷଣୀ ଏ ତିନି
ଜଳପାତ୍ର ବେଦକାଣ୍ଡି ସନ୍ନିତରେ ଯେନି ।
ଆସନ ନିମନ୍ତେ ମୃଷ୍ଟେ ବାନ୍ଧି କୃଷ୍ଣାଜିନ
ଏମନ୍ତ ବେଶେ ମିଳିଲେ ଆସି ତପୋଧନ ।
ବୃନ୍ଦାଧାମ ଗାସ୍ତନ ସେ ମୁନିମୁଖୁ ଶୁଣି
ସାଷ୍ଟାଙ୍ଗେ ପ୍ରଣାମ କଲେ ମନି ଚକ୍ରପାଣି ।
କମଣ୍ଡଳୁ ଜଳେ ମୁନି ଚରଣ ପଖାଳି
ବେନିଭାଇ ସେ ପାଦୁକ ଅଙ୍ଗେ ଦେଲେ ବୋଳି
କେବଳ ଚରଣ କାଣିଅଙ୍ଗୁଳି କୋଣରେ
ନ ଲଗି ରହିଲ ଛିଦ୍ର ଶ୍ରୀକୃଷ୍ଣ ଅଙ୍ଗରେ ।
ଅଚ୍ଛିଦ୍ର ହୋଇ ଲାଗିଲେ ବଳରାମ ଦେହେ
ତିଳେହେଁ ଛିଦ୍ର ହୋଇଣ ନୋହିଲା କେବେହେଁ
ଏତେମାତ୍ର କୃଷ୍ଣଙ୍କର ଅନ୍ତର୍ଦ୍ଧଶା ଭୋଗ
ଜରା ଶବରର ବାଣ ହେବ ତହିଁ ଯୋଗ ।
ଯୋଗବଳେ ମୁନିବର କଲେ ଏହି ଚିନ୍ତା
ଅନ୍ତର୍ଯ୍ୟାମୀ ନାରାୟଣ ଜାଣନ୍ତି ସେ କଥା ।
ଜଗନ୍ନାଥ ପ୍ରଭୁଙ୍କର ଗୁପ୍ତକଥା ଏହି
ବଳରାମ ଆଦିକରି ନ ଜାଣନ୍ତି କେହି ।
ଦୁର୍ବାସା ଜାଣନ୍ତି ମୃତ୍ୟୁଭେଦ କୃଷ୍ଣଙ୍କର
ଦେବ ଦାନବ ମାନବେ ଅଟେ ଅଗୋଚର ।
ମୁନିଙ୍କୁ ଅନେକ ସେବା କଲେ ରାମ ହରି
ଦେଖିଣ ପରମ ତୋଷ ହେଲେ ତପଋଷି ।
କାମଧେନୁ ଗାଇ ଆଜ୍ଞା ଦେଲେ ତପୀମଣି
ଏକପୁର ନିର୍ମାଣ ତୁ କର ଏହିକ୍ଷଣି ।
ଇଚ୍ଛାସୁଖେ ରାମକୃଷ୍ଣ ଲୋଡ଼ୁଥିବେ ଯାହା
ପରିବାରଗଣେ ଆଣି ଯୋଗାଇବେ ତାହା ।
ଧରଣୀର ଭାରଭର ନିବାରିବା ପାଇଁ
କଳା ଧଳା ବେନି ଲୋମ ଜନ୍ମିଛନ୍ତି ଏହି
ଜରାସନ୍ଧ ଭୟେ ଯାନ୍ତି ସଙ୍ଗେ ନାହିଁ ସଖା
ସେବାକାରୀ ଗଣ ତୋର ଏତେବେଳେ ଦେଖା
ପୁଣି କାମଧେନୁ ମନେ ସୁମରଣା କଲି
ତକ୍ଷଣେ ଅପୂର୍ବ ପୁର ନିର୍ମାଣ ହୋଇଲି ।

ମୁଗୁନି ପାଷାଣ ବାଡ଼ ବିଚିତ୍ର ମନ୍ଦିର
ଦାଣ୍ଡାରେ ବୃକ୍ଷାଳି ଖଣ୍ଡ କୋଶେକ ଓସାର ।
ତହିଁ ଭିତରେ ନବର ଦିଶେ ଜ୍ୟୋତିର୍ମୟ
କୋଟିଚନ୍ଦ୍ର ସୂର୍ଯ୍ୟ କିବା ହୋଇଛନ୍ତି ଉଦୟ ।
କୁବେର ଅଳକା ଅବା ଇନ୍ଦ୍ର ବାରସ୍ୱନ୍ତି
ଯଶୋବନ୍ତୀ ପୁର କି ସେ ବ୍ରହ୍ମାଙ୍କ ବସତି ।
ଅପୂର୍ବ ଭୁବନ ଶୋଭା ଦିଶଇ ସୁସଞ୍ଜ
ନାନା ପଟାନ୍ତର ସ୍ୱର୍ଗ ପାତାଳ ଯେ ମଞ୍ଜ ।
ବେନି ସହସ୍ର ବଖରା ସବୁ ସ୍ୱର୍ଣ୍ଣମୟ
ଶୁକ୍ଳାମ୍ବର ଜ୍ୟୋତି କିବା ହୋଇଛି ଉଦୟ ।
ପାଞ୍ଚନଳ ଆୟତନ ବଖରା ଆରମ୍ଭ
ନବରତ୍ନ ଯୋଗକରି ଗଢ଼ିଅଛି ଖମ୍ବ ।
ସୁବର୍ଣ୍ଣ କଳସ ପରେ ବିତପନ ଜଡ଼େ
ନୀଳମେଘରୁ ବିଜୁଳି ଯେସନେ ଖସି ପଡ଼େ ।
ଝିଙ୍କର ଗୁଏଣି ସ୍ଥଳ ଦିଶେ ଶୁକ୍ଳଜ୍ୟୋତି
ବଖରା ମୁଣ୍ଡେ ମଣ୍ଡପ ବେଢ଼ା ପନ୍ତି ପନ୍ତି ।
ପାଟିଆ ଶେଣି ଉପରେ ଗଜଦନ୍ତ ଖମ୍ବେ
ନନ୍ଦାବର୍ତ୍ତ କମଳ ଲେ ମୋତିମାଳ ଲମ୍ବେ ।
ହିଙ୍ଗୁଳ ହରିତାଳରେ ଚିତ୍ରଲେଖା ଘର
ନିର୍ମଳ କାଚର ବାଡ଼ ନାନା ପରକାର ।
ଦ୍ୱିଖିପ୍ତ ପ୍ରାଙ୍ଗଣ ପଦ୍ମପୀଢ଼ ଯେ ସୁସଞ୍ଜ
ତାଳକ ଉପରେ ତାହା ଅଧିକରେ ଉଚ୍ଚ ।
ସ୍ଫଟିକ ପାଚକ୍ଷ ତହିଁ ଦିଶେ ଦିବ୍ୟଜ୍ୟୋତି
ଗଜଦନ୍ତ ପୈତୁଳିକାମାନେ ଶୋଭାପାନ୍ତି ।
ଝଲକ ପାଣ୍ଡିଆ ପାନପତ୍ର ଶୁଦ୍ଧହେମ
ହିଙ୍ଗୁଳ ପଗଡ଼ିକାଠି ନାନାରତ୍ନେ କମ ।
କର୍ପୂର ଚମ୍ପାର ଧୂପ ନାନାଜାତି ଫୁଲ
ଅପୂର୍ବ ମଣ୍ଡଣି ପୁର ନାହିଁ ସମତୁଲ ।
ମଧ୍ୟେ ହେମ ଗଜଦନ୍ତ ପଲଙ୍କ ସୁଷମ
ଅଷ୍ଟରତ୍ନରେ ନିର୍ମାଣ ପିତୁଳିକା ଜମ ।
ମୟୂରକଣ୍ଠ ସୁପାତି ହଂସତୂଳି ଯେ ତୁଳୀ
ପାରୁଶରେ ହଂସାବଳି ଚିତ୍ରିଆ ମୁଚୁଳି ।
ସେବତୀ ମଲ୍ଲୀ ପାଖୁଡ଼ାମାନ ତହିଁ ସିଞ୍ଚି
ଚମ୍ପାର ପାଣି କର୍ପୂରଗୁଣ୍ଡି ତହିଁ ଖଞ୍ଜି ।
କୁସୁମ ବିଞ୍ଚଣି ବାତାପାଶେ ଧୂପକାଠି
ସେବତୀ ମାଳତୀ ଧଣ୍ଡା ଲମ୍ବେ କୋଟି କୋଟି ।

ଇନ୍ଦ୍ର ଗୋବନ୍ଦ ବୃନ୍ଦ ଆ ସୁରକମ ପନ୍ତ
ମୁକୁତାଝରା ସୁବର୍ଣ୍ଣ ଦର୍ପଣ ଶୋଭନ୍ତି ।
ପୁର ଦେଖି ଜଗନ୍ନାଥେ ମୁନିଙ୍କୁ ପ୍ରଣମି
ବୋଇଲେ ସକଳ ଗୁଣେ ଧନ୍ୟ ତୁମ୍ଭେ ଋଷି
ତୁମ୍ଭେ ମହାଜ୍ଞାତା ମୁନି ବନେ ବାସ କର
କାହୁଁ ଆଣି ଭିଆଇଲ ଏ ବଡ଼ଅ ପୁର ।
ଦୁର୍ବାସା ବୋଇଲେ ତୁମ୍ଭେ ଶୁଣ ଆଦିମୂଳ
ଏ ସୁରଭି ପ୍ରସାଦରୁ ମିଳଇ ସକଳ ।
ଲକ୍ଷ୍ମୀର ବଲ୍ଲଭ ତୁମ୍ଭେ ନ ମିଳଇ କସ
ତୁମ୍ଭେ ଯହିଁ ଥିବ ତହିଁ ନ ମିଳଇ କସ ।
ଅଶେଷ ବ୍ରହ୍ମାଣ୍ଡ ତୁମ୍ଭେ ଗର୍ଭେ ଅଛ ବହି
ଆଉର କଥାଏ ଏବେ ଶୁଣ ଭବଗ୍ରାହି ।
ଦେବମାତା କପିଳାର ସହସ୍ରେକ ବତ୍ସା
ବତ୍ସାକରେ ଚଉଦ୍ଦଂଶ ସହସ୍ର ହେଲେ ବତ୍ସା ।
ନନ୍ଦମାନେ ଜାତ ଦଶସହସ୍ର ସୁରଭି
ସୁରଭିକେ ଚଉଦ୍ଦଂଶେ ସହସ୍ର ଯେ ଗାଈ ।
ବ୍ରହ୍ମଲୋକ ଜିଣି ସର୍ବେ ଗୋଲକରେ ଥାନ୍ତି
ବାଞ୍ଛାବଟ ତଳେ ଶୋଇ ସୁଖେ ବିହରନ୍ତି ।
କଳ୍ପନାରୁ କାମଧେନୁ ନାମ ସେ ବୋଲାଇ
ତପସିଦ୍ଧ ହେଲେ ମୁନି ଏକ ଧେନୁ ପାଇ ।
ଶ୍ରୀମନ୍ତ ପୁରୁଷ ତୁମ୍ଭେ ପ୍ରଭୁ ଚକ୍ରପାଣି
କୋଟିପାଦେ ଖଟିଛନ୍ତି ଦେଖ କମଳଜ୍ଞ ।
ଏତେ କହି ଅନ୍ତର୍ଦ୍ଧାନ ହେଲେ ମହାମତି
ଶୁକ ବୋଲନ୍ତି ଯେ ଶୁଣ ପରୀକ୍ଷ ନୃପତି ।
ଏଥୁଅନ୍ତେ ଆପଣାର ନିତ୍ୟକର୍ମ ସାରି
କୋମଳ ଶଯ୍ୟାରେ ଶଯ୍ନ କଲେ ରାମ ହରି ।
କୃଷ୍ଣର ଅଶେଷ ମାୟା କେ ପାରିବ ଜାଣି
ଶୁଭାଶୁଭ କର୍ମଦାତା ସେହି ଚକ୍ରପାଣି ।
କାଳକ୍ରମେ ଶୁଭ ଶୁଭ ଭୋଗକର ହେଲେ
ନିଷ୍ଠେ ଦୋଷ ନ ଲାଗଇ ସଂହରଇ କାଳେ ।
ଥୋକାଏ ପୃଥ୍ୱୀରେ ରଖି ସଂହରଇ ଶେଷେ
କାଳପାଶ ଲଗି ପ୍ରାଣୀ ପଡ଼େ ନିଜ ଦୋଷେ ।
ସେ ମାୟାଧର ପୁରୁଷ ପାଦେ ମୋର ସେବା
ଅଚ୍ୟୁତ ଦାସ ହରିକୁ ଶରଣ୍ୟ ହେବା ।

—❋—

## ଜରାସନ୍ଧର ତୃତୀୟବାର ଧାଡ଼

ଏଥୁ ଅନ୍ତେ ଜରାସନ୍ଧ ନୃପତିର ଅଗ୍ରେ
ଚରେ ଯାଇ ବାରତା ଜଣାଇଲ ବେଗେ ।
ଯେ ମଥୁରା ଯାଦବମାନେ ଛାଡ଼ି ନୃପପାଇଁ
ବସୁଧୂର ପାଟଣରେ ରାମକୃଷ୍ଣ ଭାଇ ।
ଅପୂର୍ବ ନଗର ତହିଁ ଥିଲା କେ ନିର୍ମିଣ
ନିଷ୍ଠୁରେ ରହିଲେ ସେହି ପୁରେ ଭାଇ ବେନି
ଅଦ୍ୟାପି ଅଛନ୍ତି ସେହିଠାରେ ରାମ ହରି
ଏ କଥା ନିଶ୍ଚୟ ଅଟେ ଜାଣ ଦଣ୍ଡଧାରୀ ।
ଏମା ଶୁଣି ଜରାସନ୍ଧ କ୍ରୋଧ ପୁଲକଇ
ନିଶେ ହସ୍ତଭରା ଗାର କୋପେ ଗରଜଇ ।
ସାଜରେ ସଇନ ବୋଲି ଆଜ୍ଞା ଦେଲା ବେଗେ
ଶୁଣି ନୃପତିଏ ସୈନ୍ୟ ସଜାଇଲେ ବେଗେ
ଗଜ ଅଶ୍ୱ ପଦାତିଣ ଗଲେ ନଦୀ କୂଳେ
ଗଜ ଲଗାଇ ମାହୁନ୍ତେ ରଥ ପାରି କଲେ ।
ଅଶ୍ୱ ଉପରେ ସବାରେ ଅସ୍ତ୍ରଶସ୍ତ୍ର ଧରି
ପଦାତି ପାରି ହୋଇଲେ ଜଳରେ ପହଁରି ।
ଥୋକେ ସୈନ୍ୟ ପାରିହେଲେ ଗଜଉଷ୍ଟ୍ରେବସି
ଥୋକେକାଷ୍ଠଭେଳାକଲେ ଥୋକେଗଲେ ପଶି
ଏସନକ ପାରି ହେଲେ ଚତୁରଙ୍ଗ ଥାଟ
ଆଗରେ ଜଗର ଥାଇ କଡ଼ାଇଲା ବାଟ ।
ନଦୀ ପାରି ହୋଇ ସୈନ୍ୟ ଥୋକେଦୂରଗଲେ
ପର୍ବତ ଉପର ଘାଟେ ପ୍ରବେଶ ହୋଇଲେ ।
ବସୁପୁରେ ଭେଟାଇଲା ନେଇ ପଡ଼ିହାରୀ
ଲାଗ ଥାଉଁ ବେଢ଼ିଲେ ସେ ଲକ୍ଷେପୁର କରି ।
ବନ୍ଦୁଡ଼ି ଜାଳି ଖୋଜନ୍ତି ଘରେ ଘରେ ପଶି
ଚହଳ ପଡ଼ନ୍ତେ ଲୋକେ ନିଦ୍ରା ତେଜି ଆସି ।
ଗୋଟି ଗୋଟିକରି ସବୁ ସଞ୍ଜୋଳି ଧଇଲେ
ରଜନୀ ପାହିଲେ ତହିଁ ଗୁଡ଼ିବା ବୋଇଲେ
ନଗର ଭିତରେ ରାମକୃଷ୍ଣ ଛନ୍ତି ଶୋଇ
ପାଟେଶ୍ୱ ଭେଇଁ ପଶିଲେ ନିଶୁଣି ଲଗାଇ ।
ଭିତରେ ପଶି କବାଟ ଭାଙ୍ଗି ଅତିବେଗେ
ଛାଡ଼ଛାଡ଼େ ଦ୍ୱାରବନ୍ଧ ଉପାଡ଼ିଲେ ରାଗେ ।
କବାଟ ପିଞ୍ଜରମାନ କାଢ଼ି ଦୂରେ ଫିଙ୍ଗି
କୋଳଆ ଦୁଆର କାନ୍ଥ ପକାଇଲେ ଭାଙ୍ଗି ।

ସେ ଯାହା ମନ୍ଦିରେ ପଶି ଅପ୍ରମାଣ ଥାଟ
ତଳେ ଛିଦ୍ର ନ ରଖିଣ ରୋଧ କଲେ ବାଟ ।
ଯେବଣ ମନ୍ଦିରେ ରାମକୃଷ୍ଣ ଥିଲେ ଶୋଇ
ଜଗତ୍ର ଶହ୍ଲାଇ ଦେଲା ଆଗେ ଆଗେ ଯାଇ ।
ରାଜ ପାଣ୍ଡବାଙ୍କୁ ଆଜ୍ଞ ଅର୍ଦ୍ଧଘଡ଼ି ଅଛୁ
କ୍ରମେ ନିଦ୍ରା ଯାଇଛନ୍ତି ନନ୍ଦ ନେନବନ୍ଧୁ ।
ପ୍ରତାପ ବିଦୁର୍ଦ୍ଦ ହୁଳା ଜାଳି ନିରନ୍ତର
ନିବନ୍ଧେ ଜଗିଲେ ଶତେପୁର ବେଢ଼ି ଦ୍ୱାର ।
ଏମନ୍ତ ପ୍ରକାରେ ଦ୍ୱାର ନିରୋଧନ୍ତେ ଯାଇ ।
ଜରାସନ୍ଧ ବୋଲେ ପଶ କବାଟ ଫିଟାଇ ।
ଜୀବ ଥାଉଁ ଧରି ଆଣ ଦୁହିଁଙ୍କୁ ମୋହର
ଅନଳେ ଆହୁତି ଦେବି ମାଂସକାଟି ତାର ।
ସାମାନ୍ୟ ଶତ୍ରୁ ନୁହନ୍ତି ସେ ଗଉଡ଼ ବେନି
କପଟେ ମାଇଲେ ମୋର ଅସଂଖ୍ୟ ସଇନି ।
ଯତ୍ନବନ୍ତ ହୋଇ ସବେ ବାନ୍ଧିଆଣ ଯାଇ
ହସ୍ତରୁ ଫିଟିଲେ ନ ପାରିବଟି ଗୋଡ଼ାଇ ।
ପୁଣି ପଚାରିଲା ପାତ୍ର ସାମନ୍ତଙ୍କୁ ଚାହିଁ
ତୁମ୍ଭେମାନେ ଦେଖ ନିଶ୍ଚେ ଅଛନ୍ତି କି ସେହି ।
ଶୁଣି ପାତ୍ର ଅମାତ୍ୟେ ତତକ୍ଷଣେ ଥିଲେ
ଗବାକ୍ଷ ମାର୍ଗରେ ହୁଳା ଲଗାଇ ଚାହିଁଲେ ।
ଦେଖିଲେ ପଲଙ୍କ ପରେ ରାମକୃଷ୍ଣ ଦୁଇ
ସୁଖେ ନିଦ୍ରା କରିଛନ୍ତି ଦେହେ ଜ୍ଞାନ ନାହିଁ ।
ନୀଳେନ୍ଦୀବର ପରାୟେ ବିରାଜଇ ତନୁ
ନିର୍ମଳ ମେଘରେ ଯେହ୍ନେ ଉଦେ ଇନ୍ଦ୍ରଧନୁ ।
ଅମୂଲ୍ୟ ମନ୍ଦିରେ ରତ୍ନଖଟେ ଛନ୍ତି ଶୋଇ
ଆପେ ଜରାସନ୍ଧ ଦେଖେ କବାଟ ଫିଟାଇ ।
ମନ୍ଦିର ଦେଖି ଅନେକ ପ୍ରଶଂସା ସେ କଲା
ଧନ୍ୟରେ ଗଉଡ଼ ତୋର ମହିମା ବୋଇଲା ।
ଏଡ଼େକ ସମ୍ପଦ ଏଥେ ସମ୍ଭାଳିଲୁ କାହୁଁ
କେ ବୋଲନ୍ତି ଏ ମନ୍ଦିର ଥିଲାକ ଆଗହୁଁ ।
ଏସନକ ଉଚ୍ଚବାଚ ହୁଅନ୍ତେ ସକଳେ
ଅନ୍ତର୍ଗତେ ଜାଣିଲେ ତା କୃଷ୍ଣ କାମପାଳେ ।
ବେନିଭାଇ ତତକ୍ଷଣେ ନିଦ୍ରା ତେଜି ଉଠି
ଦେଖିଲେ ଚୌଦିଗେ ସୈନ୍ୟ ରହିଛନ୍ତିଘୋଟି
ଆପେ ଜରାସନ୍ଧ ରାଜା ଧନୁ ଧରି କରେ
ନାରାଚ ପୂରାଇ ଜଗ ହୋଇଛି ଆଗରେ ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଆଦିକରି
ପୂର୍ବ ପରାକ୍ରମମାନ ହୃଦେ ଛନ୍ତି ଧରି ।
ଯେଝା ଅନୁରୂପେ ସର୍ବେ କରି ପ୍ରାଣପଣ
ନାରାଚ ପୂରାଇ ଟାଣି ଧରିଛନ୍ତି ଗୁଣ ।
ରାମ ବୋଲନ୍ତି ସେ ହେଲା ବିଷମ ସମୟ
ଅଯୋଗେ ବେଢ଼ିଲେ ଆମ୍ଭି ସବୁ ନରରାୟ
ସମୁଦ୍ର ଲହରୀ ପ୍ରାୟ ଦିଶୁଅଛି ଥାଟ
ତଳେ ଛିଦ୍ର ନାହିଁ ସୂଚୀ ଭେଦିବାକୁ ବାଟ
ଏମନ୍ତ ଭାଳି ଉଠିଲେ ହଳୀ ଚକ୍ରପାଣି
ଜରାସନ୍ଧ ଡାକଦେଲା ସେ ଉଠିବା ଜାଣି ।
କରେ ଅସ୍ତ୍ର ଶସ୍ତ୍ର ଧରି ଜଗ ଯେଝା ପଥେ
ଏକ୍ଷଣି ଭୁଲାଇ ଏଥୁ ଯିବେ ହାତେ ହାତେ ।
ପୁଣି ଆଜ୍ଞାଦେଲା ଦଶସହସ୍ର ମାଲ ରାଇ
ମନ୍ଦିର ଭିତରେ ପଶି ଧରି ବେଗେ ଯାଇ ।
ସେ ଯେଉଁ ଉପାୟ ଜାଣ ତା କର ସତ୍ୱରେ
ନୋହିଲେ ପଳାଇ ଯିବେ କ୍ଷଣକ ଭିତରେ ।
ଶୁଣିଣ ଧାମନ୍ତି ସର୍ବେ ଘୋର ନାଦକରି
ମନ୍ଦିରୁ ବାହାର ହେଲେ ରାମ ଚକ୍ରଧାରୀ ।
ଦ୍ୱାର ଜିଣି ବାହାରକୁ ଯାନ୍ତେ ଭାଇ ବେନି
ମାଲେ ଧଇଲେ ବନ୍ଧାଣଯନ୍ତ୍ର କରେ ଘେନି ।
ଜଉଣ ଜାଉଣ ଭିଡ଼ାଭିଡ଼ି ସେ ଉଞ୍ଚାଣ
ଚେଚ୍ଛଣ ବୃଟଣ ଆଉ ଧୁଞ୍ଚାଣ ପଞ୍ଚାଣ ।
ଲୋଟଣ ଯୋଟଣ ବନ୍ଧ ନିବନ୍ଧ ଫିଟାଣ
ଆଉଣ ଚାଉନ ଆଦି ଯେତେକ ବନ୍ଧାଣ ।
ବିଧା ଗୁରୁଦା କହୁଣୀ ମାଡ଼ ଗଣ୍ଡା ଗଡ଼
ପାଦେ ପାଦ ଛନ୍ଦ ଭୁଜେ ଭୁଜ ଭିଡ଼ାଭିଡ଼ ।
ଅଙ୍ଗେ ଅଙ୍ଗ ପରିତାଳ ମୁଣ୍ଡେ ମୁଣ୍ଡ ବଜା
ଚଉଦ ବନ୍ଧାଣ ଯୁଦ୍ଧ କଲେ ଦେବରାଜା ।
ସମସ୍ତ ମାଲେ ଧରନ୍ତେ ସେ ଦୁହିଁଙ୍କୁ ଯାଇ
ଶ୍ରୀଅଙ୍ଗ ଛୁଆଁଉ ଦୁହେଁ ଦେଲେ ଫୋପଡ଼ାଇ
ତତକ୍ଷଣେ ସେ ମାଲମାନେ ଅନ୍ତରୀକ୍ଷେ ଉଡ଼ି
ଅନେକ ଦୂରେ ପଡ଼ିଲେ ପ୍ରିୟପ୍ରାଣ ଛାଡ଼ି ।
ମାଲେ ଉଡ଼ିଯିବା ଦେଖି ମାଣ୍ଡଳିକ ଦୁଷ୍ଟେ
ଆବୋରିଲେ ସେ ଯାହାର ଶସ୍ତ୍ର ଧରି ଆଣ୍ଟେ ।
ମାରନ୍ତେ ଶସ୍ତ୍ର ବଞ୍ଚାଇ ରାମ ଯଦୁସାଇଁ
ନିମିଷ ମାତ୍ରକେ ଫିଟିଗଲେ ପିଚ୍ଛିଦେଇ ।

ଗଲ୍ ରେ ଗଲ୍ ରେ ବୋଲି ପଡ଼ିଲା ଚହଳ
ଛଦ୍ମରେ ପଳାଇ ଯାନ୍ତି କୃଷ୍ଣ କାମପାଳ ।
ତଳେ ଛୁଦ୍ର ନାହିଁ ବେଢ଼ି ରହିଛନ୍ତି ଥାଟ
ମଧ୍ୟେ ମଣିପାନ୍ତି ଦୃଢ଼େ ଲଗାଇ କବାଟ ।
ତାହା ଦେଖି ରାଜାମାନେ ହୋଇଲେ ଚାଟକା
ବଳରାମାଚ୍ୟୁତ ହୋଇ ଜାତ ହେଲା ଶଙ୍କା ।
ମହିମା ସାଗର କୃଷ୍ଣ ବଳରାମ ସ୍ୱାମୀ
ହାତେ ହାତେ ଫୋଡ଼ାଇଣ ଗଲେ ଅନ୍ତର୍ଯାମୀ
ଅସଂଖ୍ୟ ସୈନ୍ୟ ଭିତରୁ ହୋଇଲେ ବାହାର
ସକଳ ନୃପତି ଦେଖି ହେଲେ ଚମତ୍କାର ।
ଏକ ଆଗରେ ଆରେକ କହନ୍ତି ବାରତା
ବିସ୍ମିତ ବୋଇଲେ ଏ ତ ଅସମ୍ଭବ କଥା ।
ଏତେ ରାଜା ଶସ୍ତ୍ର ଧରି ଜଗିଛନ୍ତି ଦୃଢ଼େ
ସମସ୍ତଙ୍କୁ ଭୁଲାଇ ସେ ଗଲେ କେଉଁଆଡ଼େ ।
ଗଗନରୁ ଛୁଟି ତାରା ପଡ଼େ ଯେହ୍ନେ ଖସି
ସେହିମତ କେଉଁଆଡ଼େ ଗଲେ ଥାଟ ପଶି ।
ପଛଧାଇ ନାନାଶସ୍ତ୍ର ପ୍ରହାରିଲେ ରାଗେ
ତା ସବୁ ବଞ୍ଚାଇ ଗଲେ ନ ଭେଦିଲା ଅଙ୍ଗେ ।
ଏହିକ୍ଷଣି ଯାଉଛନ୍ତି କେତେଦୂର ଯିବେ
ପାଦ ଶ୍ରମପାଇ ବନେ ଲୁଚିଣ ରହିବେ ।
ବିଳମ୍ବ ନ କର ଚାଲ ଏକମୁଖେ ଯିବା
ପଛେ ପଛେ ଗୋଡ଼ାଇଲେ ଅବଶ୍ୟ ଭେଟିବା ।
ଏତେବୋଲି ରଥ ଚଳାଇଲେ ଶୀଘ୍ର ଗତି
ପଛରେ ଗୋଡ଼ାଇ ଯାନ୍ତି ଅନେକ ନୃପତି ।
ବାଜଇ ବିବିଧ ବାଜା ଢମକ ନିଶାଣ
ନିର୍ଘାତ ଶବଦ ଜାଣି ପଡ଼ୁଅଛି ବାଣ ।
ମର୍ଦ୍ଦଳ କାହାଳି ଶଙ୍ଖ ମୃଦଙ୍ଗ ମହୁରି
ଢୋଲ ଦମା ବଜଘୋଷ ବାରତୂର ଭେରୀ ।
ଏମନ୍ତେ ଅନେକ ବାଦ୍ୟ ବାଜେ ନାନାଛନ୍ଦେ
ସମୁଦ୍ର ଉଚ୍ଛୁଳ ପୃଥ୍ୱୀ କମ୍ପେ ଘୋରନାଦେ ।
ରଥ ଗଜ ପଦାତି ଯେ ଅଶ୍ୱ ଅପ୍ରମିତ
ସୈନ୍ୟ ଘେନ ନୃପଗଣେ ଖୋଜିଲେ ବହୁତ
ରାମକୃଷ୍ଣ ନ ଦେଖିଣ ମନେ ଲଜ୍ଜାପାଇ
ବାହୁଡ଼ି କହିଲେ ଜରାସନ୍ଧ ଆଗେ ଯାଇ ।
ଶୁଣିଣ ମଗଧେଶ୍ୱର ମନେ ପାଇ ବ୍ୟଥା
କିଛି ନ କହିଣ ଲାଜେ ପୋତିଦେଲେ ମଥା ।

ପୃଥ୍ୱୀଭାର ନିବାରଣେ କୃଷ୍ଣ ଅବତାର
ଯାର ମାୟା ନ ଜାଣନ୍ତି ଇନ୍ଦ୍ର ବ୍ରହ୍ମା ହର ।
ସନକାଦି ସିଦ୍ଧ ଗଣ ଯୋଗଧ୍ୟାନେ ବସି
ଯେଉଁ ରୂପ ଚିନ୍ତା କରୁଥାନ୍ତି ଅହର୍ନିଶି ।
ଏ ରୂପର ନୃପଗଣ ପାଇବେ ତା କାହିଁ
କ୍ଷଣକରେ ଅନ୍ତର୍ହିତ ହେଲେ ଦୁହେଁ ଦୁହେଁ ।
ଭକତ ବାନ୍ଧବ ପ୍ରଭୁ କରୁଣା ସାଗର
ଅଚ୍ୟୁତ ନାମକ ଗଣ୍ଡ ଦର୍ପ ଚନ୍ଦ୍ରହାର ।
ସୁଦୟା କରଣେ ମୋତେ ଏହି ଆଜ୍ଞା ଦେବା
ଜନ୍ମେ ଜନ୍ମେ ଚିତ୍ତ ମୋର ତବ ପାଦେସେବା ।



## ଜରାସନ୍ଧର ଚତୁର୍ଥବାର ଧାଡ଼ି

ଏଥୁ ଅନନ୍ତରେ ପୁଣି ଶୁକ ତପୋଧନ
ବୋଇଲେ କହିବା ଶୁଣ ପରୀକ୍ଷ ରାଜନ ।
ଅପମାନ ପାଇ କୋପେ ମଗଧ ନୃପତି
ସ୍ୱରଦରେ ଡଗରାଙ୍କୁ ପେଷିଲା ଝଟତି ।
ଆଜ୍ଞାଦେଇ ବୋଲେ ସର୍ବେ ବେଗହୋଇ ଯାଅ
ରାମକୃଷ୍ଣ ବାନ୍ଧି ଆଣି ସତ୍ୱରେ ଜଣାଅ ।
ଅନେକ ଲଜ୍ଜା ଆମ୍ଭଙ୍କୁ ସେ ଦେଲେ ସମରେ
ରଥ ଗଜ ଅଶ୍ୱ ମାରି ଲୁଚିଛନ୍ତି ଦୂରେ ।
ସକଳ ଦେଶରେ କହ ଏ ବାରତା ଯାଇ
ରାମକୃଷ୍ଣ ସମ୍ଭାଳିଲେ ହେବେ ରାଜଦ୍ରୋହୀ ।
ଅଷ୍ଟଲୋକପାଳଙ୍କୁ ମୁଁ କରୁଅଛି ସାକ୍ଷୀ
ରାମକୃଷ୍ଣ ସମ୍ଭାଳିବ ଯେ ମୋର ଉପେକ୍ଷି ।
ଏ ମୋର ଆଜ୍ଞା ଲଙ୍ଘନ ଯେ କରିବ ଜାଣି
ତା ବଂଶ ନାଶିବି ମୁହିଁ ଖଡ଼୍ଗରେ ହାଣି ।
ଯେବଣ ଦେଶକୁ ଯିବେ ନନ୍ଦ ବେନ ବହି
ଅନ୍ନ ପାଣି ଆଦି ତାଙ୍କୁ ନ ଦେବଟି କିଛି ।
ଶୁଣି ଚରଗଣେ ତହୁଁ ଅଲକ୍ଷ୍ୟେ ଗଲେ
ସକଳ ଦେଶରେ ବୁଲି ଆଜ୍ଞାପତ୍ର ଦେଲେ ।
ଢମକ ବଜାଇ ପୁଣି ଗ୍ରାମେ ଗ୍ରାମେ ପଶି
ବୋଲନ୍ତି ଗଉଡ଼େ ଜରାସନ୍ଧଠାରେ ଦୋଷୀ ।
ରାମକୃଷ୍ଣ ବୋଲି ନାମ ବହନ୍ତି ସେ ଦୁହେଁ
ତାଙ୍କୁ ଅନ୍ନପାଣି କେହି ନ ଦେବ କେବେହେଁ
ବାସସ୍ଥାନ ନ ଦେବ କେ ନ କହିବ କଥା
ଆଜ୍ଞା ଲଂଘିବେ ନୃପତି କଟାଇବେ ମଥା ।

ମନରେ ଚେତ ସମସ୍ତେ ଥିବ ଆଜ୍ଞା ମାନି
ବେନି ଭାଇଙ୍କୁ ଗ୍ରାମରେ ଦେବ ବାନ୍ଧି ଆଣି ।
ଗୌରବ ପାଇଣ ନେବ ଶାଢ଼ୀ ସୁନାବଳା
ନୃପତ ଆଜ୍ଞାରେ କେହି ନ କରିବ ହେଳା ।
ଏମନ୍ତେ ଭଗରମାନେ ଝମକ ବଜାଇ
ଘୋଷଣା ଦିଅନ୍ତି ଦେଶ ଦେଶାନ୍ତରେ କହି ।
ଏଥୁ ଅନନ୍ତରେ ବଳରାମ ଚକ୍ରଧର
ଅବନେକେ ମଡ଼ୁଆରୁ ହୋଇଲେ ବାହାର
ଅଗମ୍ୟ ବନରେ ଥୋକେ ଦୂର ଚଳଗଲେ
ଭାନୁମତୀ ନଦୀକୂଳେ ପ୍ରବେଶ ହୋଇଲେ ।
ଜରାସନ୍ଧ ଥିବାଠାରୁ ପାଞ୍ଚଯୁଣ ଘୋଡ଼
ନିତ୍ୟକର୍ମ ସାରି ଦୁହେଁ ରହି ବେନିଯୋଡ଼ ।
ସେଠାରେ ଦେଖିଲେ ଶିବ ନାମେ ପରବତ
ଯୋଜନେ ଉଚ୍ଚର୍ଗ ପାଞ୍ଚ ଯୋଜନ ବିସ୍ତୃତ ।
ନଦୀର ଉତ୍ତର କୂଳେ ଅତି ରମ୍ୟସ୍ଥାନ
ପୂର୍ବେ ତହିଁ ଥିଲେ ବାଲ୍ମୀକି ତପୋଧନ ।
ସଦାଶିବ ନାମେ ତହିଁ ଛନ୍ତି ଲିଙ୍ଗରାଜା
ମାନ୍ଧାତା ନୃପନ୍ତି ପୂର୍ବେ କରିଥିଲେ ପୂଜା ।
ଶତେକର ଆୟତନ ମଣ୍ଡପ ଦେଉଳ
ଅଗ୍ରଭାଗେ ପୁଷ୍କରଣୀ ଦିଶେ ପରିମଳ ।
ମହାରଣ୍ୟ ଭିତରେ ସେ ଏକ ରମ୍ୟସ୍ଥାନ
ଜଳଜନ୍ତୁରେ ଅଗମ୍ୟ ଅତ୍ୟନ୍ତ ଗୋପନ ।
ଦୁଇଭାଇ ନଦୀଘାଟରେ ନିତ୍ୟକର୍ମ ସାରି
ଦେଉଳେ ପଶି ଦର୍ଶନ କଲେ ତ୍ରିପୁରାରି ।
ଅରଖ ଦୁଦୁରା ଫୁଲ ବିଲ୍ୱପତ୍ର ଦେଇ
କରଯୋଡ଼ି ସ୍ତୁତିପାଠ କଲେ ବେନି ଭାଇ ।
କଇଁଥ କମଳା କେନ୍ଦୁ ଗୁଆ ବରକୋଳି
ନଇବେଦ୍ୟ କଲେ ନାନା ବନ୍ୟଫଳ ତୋଳି
ପାଞ୍ଚଅକ୍ଷର ମନ୍ତ୍ର ଜପ କରନ୍ତେ କେଶବ
ପ୍ରସନ୍ନ ହୋଇଣ ବିଜେ କଲେ ସଦାଶିବ ।
ପଞ୍ଚମୁଖ ତ୍ରିନୟନ ଶିରେ ଗଙ୍ଗାଜଳ
ଜଟାମୂଳେ ଖଣ୍ଡଇନ୍ଦୁ ଦିଶେ ପରିମଳ ।
ଶ୍ରୀଭୁଜେ ପିନାକ ଧନୁ କପାଳେ କୁଠାର
ବିଭୂତି ଭୂଷଣ ଜଟାଧାରୀ ଦିଗମ୍ବର ।
ଡ଼ିମ୍ବଡିମ୍ବ ଡମ୍ବରୁ ଯେ ବାଜେ ନବକୋଟି
ବାମ ଡାହାଣେ ଅଛନ୍ତି ନନ୍ଦୀ ଯେ ଭୃକୁଟୀ ।

କୋଳେ ବ୍ୟମବସ୍ତ୍ର ସୁତା ଆରୋହି ବୃଷଭ
ରାମକୃଷ୍ଣ ଆଗେ ଉଭା ହେଲେ ମହାଦେବ ।
ଦେଖି ବେନିଭାଇ ଶିରେ କରପଦ୍ମ ଯୋଡ଼ି
ତ୍ରିଦିବ ଦେବତାଙ୍କୁ ସ୍ତୁତି କଲେ ପାଦେ ପଡ଼ି ।
ହସିଣ ବୋଲନ୍ତି ଶିବ ତୁମ୍ଭେ ଦେବରାଜା
ବ୍ରହ୍ମା ଇନ୍ଦ୍ର ଯେତେ ଆମ୍ଭେ କରୁ ପାଦପୂଜା ।
ପୃଥ୍ୱୀଭାର ନିବାରଣ କରିବାର ପାଇଁ
କଳିଭୁକେ ଜନ୍ମ ଅଛ ନରତନୁ ବହି ।
ଦେବଙ୍କ ଉପରେ ତୁମ୍ଭେ ଦେବ ଶିରୋମଣି
ଶୁଭାଶୁଭ କର୍ମ ତୁମ୍ଭେ ଆନ କର ପୁଣି ।
ତୁମ୍ଭେ ପ୍ରଭୁ ମାୟାଧର ଭକ୍ତ ଭାବଗ୍ରାହୀ
ଶରଣାପଞ୍ଜରବାନା ଆପେ ଅଛ ବହି ।
ନାମ ସୁମରନ୍ତେ ସବୁ ଦୁଃଖ ହୁଏ ପାର
ଅନାହାର ଖାହି ତୁମ୍ଭେ ଶରଣ ସୋଦର ।
ଅଜ୍ଞାନ ସେ ଜରାସନ୍ଧ ନ ଜାଣଇ କିଛି
ଧର୍ମ ଅର୍ଥ ନାଶ କରି ଗୋଡ଼ାଇଣ ଅଛି ।
କାହାର ବଳ ତୁମ୍ଭର ହୋଇପାରେ କସ
ତୁମ୍ଭେ ଆଜ୍ଞାଦେଲେ ହେବେ ସମୂଳରେ ନାଶ
କ୍ଷମାଶୀଳ ହେତୁ ତୁମ୍ଭ ହୃଦେ କୋପ ନାହିଁ
ଦେବକାର୍ଯ୍ୟେ ଜନ୍ମି ଅଛ ନରତନୁ ବହି ।
ଜଗତ କରତା ତୁମ୍ଭେ ପ୍ରଭୁ ଆଦିକନ୍ଦ
ମନ କଲେ ଜିଣି ପାର ଲକ୍ଷେ ଜରାସନ୍ଧ ।
ଏତେ କହି ପାଶୁପତ ବାଣ କରେ ଧରି
କୃଷ୍ଣ ହସ୍ତେ ସମର୍ପଣ କଲେ ତ୍ରିପୁରାରି ।
ବୋଇଲେ ସମ୍ଭାଳ ଯତ୍ନେ ରଖ ଚକ୍ରପାଣି
ଏ ବାଣରେ ତ୍ରିଭୁବନ ପାର ତୁମେ ଜିଣି ।
ଆଉର କଥାଏ ଶୁଣ ଲକ୍ଷ୍ମୀଦେବୀ ସାଇଁ
ଏଠାକୁ ଜରାସନ୍ଧ ଆସିବ ଯେ ବାହି ।
ପୂର୍ବରୁ ଏ କଥା ଅଛି ତୁମ୍ଭଙ୍କୁ ଗୋଚର
ଅବଶ୍ୟ ସେ ଧାଡ଼ିଦେବ ଅଷ୍ଟାଦଶ ବାର ।
ଏତେ କହି ବ୍ୟୋମକେଶ ହେଲେ ଅନ୍ତର୍ଦ୍ଧାନ
ମଣ୍ଡପରେ ବସିଛନ୍ତି ରାମ ଭଗବାନ ।
ସେଠାରୁ ସନ୍ଦେଶ ପାଇ ଦେଶାଙ୍କର ବେଗେ
ବାହୁଡ଼ିଣ ଜଣାଇଲ ଜରାସନ୍ଧ ଆଗେ ।
ଶ୍ରୀ ମହିମା ସାବଧାନେ ଶୁଣ ନୃପମଣି
ରାମକୃଷ୍ଣ ଦେଖି ଆମ୍ଭେ ଆଇଲୁ ଏକ୍ଷଣି ।

ଭାନୁମତୀ ନଦୀତୀରେ ଶିବ ପର୍ବତ
ସଦାଶିବ ନାମେ ଶମ୍ଭୁ ତହିଁ ପ୍ରତିଷ୍ଠିତ ।
ଯେବାଙ୍କ ପ୍ରତ୍ୟକ୍ଷ ଶମ୍ଭୁ ଜ୍ୟୋତିର୍ମୟ ଲିଙ୍ଗ
ଦରଶନେ ମହାପାପ ନ ରହଇ ଅଙ୍ଗ ।
ସେ ଶିବଙ୍କୁ ଦରଶନ କରି ବେଦଜାତ
ମଣ୍ଡପରେ ବସିଛନ୍ତି ସଙ୍ଗେ କେହି ନାହିଁ ।
ଏହି ଅନୁକୂଳେ ଚାଲ ଥାଟ ଘେନିଯିବା
କହୁଁ ସନ୍ଦେହ ନାହିଁ ଏକ୍ଷଣି ଭେଟିବା ।
ଶତ୍ରୁକୁ ମାରିବ ତୁମ୍ଭେ ଛୁଟିବ ଅରିଷ୍ଟି
ବାଟ ନିକଟ ତା ପାଞ୍ଚ ଯୋଜନ ଯେଣ୍ଟି ।
ଶୁଣି ଜରାସନ୍ଧ ରାଜା ହେଲେ ହସ ହସ
ଚଢ଼ିଧାଇ ଆଗେ ରଥ ବାହେ ଦମଘୋଷ ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଯେ ରୁକ୍ମଣ
ପ୍ରତିଜ୍ଞା କରନ୍ତି କୋପେ ଉଠି ପୁଣି ପୁଣି ।
ଦମଘୋଷ ବୋଲେ ବାବୁଏ ଲାଗିଲା ମୋତେ
କନ୍ଦରେ ଉଗ୍ର କାହିଁ ଛନ୍ତି ନନ୍ଦସୁତେ ।
ଉଗ୍ର ବୋଲଇ ଏହି ପର୍ବତ ତଳେ
ଦୁହେଁ ବସିଛନ୍ତି ଭାନୁମତୀ ନଦୀକୂଳେ ।
ମହାଘୋର ଅରଣ୍ୟ ଏ ଜନଜନ୍ତୁ ନାହିଁ
ଧାଡ଼କାରେ ଚାଲ ଯିବା ନିଃଶବ୍ଦ ହୋଇ ।
ଏହା ଶୁଣି ବୋଲେ ଜରାସନ୍ଧ ନୃପବର
ହସ୍ତୀକଟମାନଙ୍କରୁ ଘଣ୍ଟା ଢୋଲ ଧର ।
ଢୋଲ ଟମକ ନିଶାଣ ଆଦି ବାଦ୍ୟ ଯେତେ
ନ ବଜାଇ ଯତନରେ ଧରି ଯେଝା ହସ୍ତେ ।
ନିଃଶବ୍ଦେ ଚାଲ କେହି ନ କହିବ କଥା
କହୁଁ ଶବଦ ଜାତ ନୋହିବ ସର୍ବଥା ।
ଘାଇଲେ ଅଶ୍ୱରୁ ଥୋଇ ଦିଅନ୍ତୁ ଘାଗୁଡ଼ି
ଘୋଡ଼ାଙ୍କ ବେକରୁ ଘଣ୍ଟି ଯତ୍ନେ ରଖ କାଢ଼ି
ଚତୁରଙ୍ଗ କରି ସୈନ୍ୟ ରଖ ପରମାଣି
ଏସନକ ଧାଡ଼ ଦେଲେ ଭେଟିବା ଏକ୍ଷଣି ।
ଏମନ୍ତ ଆଜ୍ଞା ଦିଅନ୍ତେ ମଗଧ ନୃପତି
ଦମଘୋଷ ବୋଲେ ମୋର ସେନାପୂର୍ବକତି ।
ଶିଶୁପାଳ ବୋଲେ ଥିବ ମୁଁ ଉତ୍ତର ଦିଗେ
ପଶ୍ଚିମେ ହୋଇଲ ଶାଲ୍ୱ ଦନ୍ତବକ୍ର ସାଗେ ।
ଏହା ଶୁଣି ବୋଲେ ଜରାସନ୍ଧ ନରପତି
ସମସ୍ତ ଘେନିଥିବ ମୁଁ ଦକ୍ଷିଣ କତି ।

ଏମନ୍ତ ପ୍ରକାରେ ସାଜ ଚତୁରଙ୍ଗ ସୈନ୍ୟ
ହସ୍ତୀଙ୍କ ବେକରୁ କାଢ଼ି ନେଲେ ଘଣ୍ଟି ମାନ ।
ଅଶ୍ୱଙ୍କ ବେକରୁ ଘଣ୍ଟି ଘାଗୁଡ଼ି ଫେଡ଼ିଲେ
ମାହୁନ୍ତମାନେ ଅଶ୍ୱାରୁ ଘଣ୍ଟି ଫିଟାଇଲେ ।
ଢୋଲ ଦମାଲୁ ଟମକ ନିଶାଣ ଛୁଡ଼ାଇ
ଧୀରେ ଧୀରେ ଚଳାଇଲେ ସବେ ମୌନହୋଇ
କହୁଁ କହୁଁ ମିଳିଲେକ ଶିବଗିରି ନଗେ
ଉଗ୍ର ବାଟ କଢ଼ାଇ ଯାଏ ଆଗେ ଆଗେ ।
ଏଥିରେ ଗୋଡ଼ାଇଛନ୍ତି ଅସଂଖ୍ୟ ସଇନ
ସ୍ୱର ଶବ୍ଦ ନାହିଁ ସବେ ହୋଇଛନ୍ତି ତୁନି ।
ଯେବଣ ମଣ୍ଡପେ ରାମ କୃଷ୍ଣ ଥିବେ ବସି
ଲକ୍ଷେପୁର କରି ତାକୁ ବେଢ଼ିଗଲେ ଆସି ।
ଜରାସନ୍ଧ ଆଜ୍ଞା ଦେଲା ସଇନ୍ୟଙ୍କୁ ଚାହିଁ
ଯେ ଯାହାରେ ଜଗି ଥାଅ ନ ଯାନ୍ତୁ ପଳାଇ ।
ଦନ୍ତବକ୍ର ବୋଲେ ଆଜ ପଡ଼ିଛି ଅଖଣ୍ଡେ
ଏଠାରୁ ବାହାରି ଆଜ ଯିବ କେଉଁଆଡ଼େ ।
ଜାଲରେ ଭିତରୁ କାହିଁ ଜବୁରିବ ଶଶା
ଜନ୍ତାରେ ପଡ଼ିଲେ ଯାଇ ପାରଇ କି ମୂଷା ।
ଧାଉଡ଼ିରେ ପଶି କାହିଁ ବର୍ତ୍ତି ଅଛି ମୀନ
ବ୍ୟାଘ୍ରର ମୁଖରୁ ଛେଳି ନ ପାଏ ଜୀବନ ।
ଇନ୍ଦୁର ପଡ଼ିଛି କାଳ ଭୁଜଙ୍ଗର ଆଗେ
ଶାର୍ଦ୍ଦୁଳ ମୁଖରୁ ମୃଗ ମିବ କେଉଁ ବାଟେ ।
କୃତାନ୍ତ ପୋଟ୍ଟଳି ଆଜି ଏ ଦୁହିଁଙ୍କ ପାଞ୍ଜି
ସପତାଙ୍ଗେ ନାଶଯିବେ ହୋଇଣ ଏ ରାଞ୍ଜି ।
ଏତେ ବୋଲି ଆପଣାର ଶସ୍ତ୍ର ଧରି କରେ
ଗରଜ ପ୍ରହାର କଲା ଶ୍ରୀକୃଷ୍ଣ ଉପରେ ।
ଛେଲ ଟଙ୍କ ଲୋହଯଷ୍ଟି କୁନ୍ତ କାଣ୍ଡ ଗଣ୍ଡା
ଚଢ଼ିଧାଇ ନାନାଶସ୍ତ୍ର ମାରନ୍ତି ପ୍ରଚଣ୍ଡା ।
ଆଦାନ ସନ୍ଧାନ ଗୁଣନାଦ ମୁଖଧ୍ୱନି
ଦଳ ଦଳ ହୋଇ କର୍ମି ଉଠେ ପୁରଜନ ।
ଶ୍ରାବଣ ବରଷା ପ୍ରାପ୍ତ କଲେ ବାଣବୃଷ୍ଟି
ଦିବସେ ଅନ୍ଧାର ହୋଇ ନଦିଶିଲା ସୃଷ୍ଟି ।
ଦୁଃସହ କଠୋଳ ଶବ୍ଦ କଲା ଜରାସନ୍ଧ
ଉଠିଲେ ଆସନ ଛାଡ଼ି ରାମ ଆଦିକନ୍ଦ ।
ଦୁର୍ବାସାଙ୍କ ପାଦୋଦକ ଲେପିଛନ୍ତି ଦେହେ
ଶ୍ରୀଅଙ୍ଗରେ ଶସ୍ତ୍ର ଘାତ ନୁହଇ କେବେହେଁ ।

ଦୁହିଁଙ୍କ ଅଙ୍ଗରେ ସବୁ ଅସ୍ତ୍ରଶସ୍ତ୍ର ବାଜ
ତଳେ ନ ଭେଦଣ ତଳେ ପଡ଼ୁଥାନ୍ତି ଭାଜ ।
ଅକ୍ଷୟ ଅଜରାମର ପ୍ରଭୁ ଜଗଦୀଶ
ମାନବ ମାତ୍ରକେ ତାଙ୍କୁ କରିବଟି କସ ।
ଅଭେଦ୍ୟ କବଚ ଯାର ନାମ ବଜ୍ର ସେଦ୍ଧା
ଯା ଅଙ୍ଗରେ ବାଜ ମେରୁ ଗିରି ହେବ ଚୂନା
ଘୃତଭଣ୍ଡା ଲକ୍ଷେ ରାଜା କେତେକ ସଇନା
ଅନୁକ୍ଷଣେ ପ୍ରହାରିଲେ ନାନାଶସ୍ତ୍ର ଘେନ ।
ଏସନ କଟକ ଯହୁଁ ଦେଖିଲେ ଶ୍ରୀହରି
ରାମଙ୍କୁ ବୋଇଲେ ଭଲ ଯିବା ଅପସରି ।
ଶୁଣି ବଳରାମ ଖେପିଗଲେ ଶୂନ୍ୟମାର୍ଗେ
ତ୍ରିଦଶ ଦେବତା ଦେଖୁଛନ୍ତି ଥାଇ ସ୍ୱର୍ଗେ
ଆଗେ ବଳରାମ ପଛେ ଜଗତର ସାଇଁ
ଅସଂଖ୍ୟ ସୈନ୍ୟ ଭିତରୁ ଗଲେ ପିଠିଦେଇ ।
ମତ୍ତ ମାତଙ୍ଗ ଯୂଥରେ ଯେସନେ କେଶରୀ
ତେସନ ଗମନ୍ତି ତହିଁ ରାମ ଚକ୍ରଧାରୀ ।
କ୍ଷଣକେ ଦିଶନ୍ତି କ୍ଷଣେ ଅଦୃଶ୍ୟ ହୁଅନ୍ତି
ଖଣ୍ଡେ ଦୂର ଯାଇ ପୁଣି ଲେଉଟି ରହନ୍ତି ।
ଦେଖିଣ ମଗଧେଶ୍ୱର କୋପଭର ହୋଇ
ସଇନଙ୍କୁ ଆଜ୍ଞା ଦେଲା ମାର ବେଗେ ଧାଇଁ
ହାତୀ ରଥୀ ମହାରଥୀ ସର୍ବ ଅଛ ମିଳ
ଦୁଇଜଣ ପଳାଇଲେ ସମସ୍ତଙ୍କୁ ବଳ ।
ଧନୁର୍ଦ୍ଧର ଚୂଡ଼ାମଣି ସର୍ବେ ଅଗ୍ର ଲେଖା
ତ୍ରିଭୁବନ ଜୟ କରି ପାର ଏକା ଏକା ।
ଗଉଡ଼ ମାନଙ୍କ ହୋଇ ଦେଲା ଏଡ଼େ ଲାଜ
ତୁମ୍ଭ ବଳେ ହେବ ଆଜ କହ କେଉଁ କାର୍ଯ୍ୟ
ଧିକ ତୁମ କ୍ଷତ୍ରି ପଣ ଧିକ ତୁମ ବଳ
ଅକାରଣେ ଏତେ ଯତ୍ନ ହୋଇଲା ନିଷ୍ଫଳ ।
ଗଉଡ ଯୋଡ଼ାକୁ ଆମେ ନ ପାରିଲୁ ଜିଣି
କ ବୋଲିବେ ଜଗତରେ ଏ କଥାକୁ ଶୁଣି ।
ଶୁଣି ମନେ ଲଜ୍ଜା ପାଇ ସବୁ ନୃପବର
ପବନହୁଁ ବେଗେ ଧାଆଇଲେ ରଥବର ।
ରାଉତ ମାହୁନ୍ତେ ଅଶ୍ୱ ଗଜ ପୃଷ୍ଠେ ବସି
ସତ୍ୱରେ ଧାଇଁଲେ ଢାଲ ଖଣ୍ଡା କରେ କସି ।
କୋଟି କୋଟି ପଦାତିକ ଅପ୍ରମିତ ବଳ
କରେ ନାନା ଶସ୍ତ୍ର ଧରି ଧାଆନ୍ତି ସକଳ ।

ମାର ମାର ହାଣ ହାଣ ଧର ଧର ଡାକ
ଭୟଙ୍କର ନାଦେ କମ୍ପେ ତ୍ରିପୁର ଯାକ ।
ଏକକୁ ଚଉ ଜଣ ଆରେକ ଧାଆନ୍ତି
ପଥିକ ଦେଖିଲେ ବାଟେ ବାରତା ପୁଚ୍ଛନ୍ତି ।
ଆପେ ଜରାସନ୍ଧ ରାଜା ଆଗୁଆଣି ଥାଟେ
କଟକ କରୁଛି ରାମ କୃଷ୍ଣଙ୍କ ନିକଟେ ।
ପାଦଘାତେ ଶାଳ ଶିଳ ବୃକ୍ଷ ଅକଳନା
ଅରଣ୍ୟ ପର୍ବତ ଭାଙ୍ଗି ହୋଇଛନ୍ତି ଚୂନା ।
ଆଗେ ଆଗେ ରାମକୃଷ୍ଣ ଯାନ୍ତି ପିଠିଦେଇ
ପଛେ ଚତୁରଙ୍ଗ ସେନା ଅଛନ୍ତି ଗୋଡ଼ାଇ
ଏମନ୍ତେ ଅନେକ ଦୂର ଯହୁଁ ଗୋଡ଼ାଇଲେ
ସମସ୍ତଙ୍କୁ ମାୟାଧର ସ୍ୱାମୀ ଭୁଲାଇଲେ ।
କ୍ଷଣକେ ଦିଶନ୍ତି କ୍ଷଣେ ଅନ୍ତର୍ଦ୍ଧାନ ହୋଇ
କ୍ରୌଞ୍ଚ ପର୍ବତର ଶିରେ ଉଠିଲେ ସେ ଧାଇ ।
ବତିଶ ଯୋଜନ ଆୟତନ ଗିରିବର
ତିନଯୋଜନ ଉଚ୍ଚର୍ଗ ଯୋଜନେ ବିସ୍ତାର ।
ଆନ ପର୍ବତ ତହିଁକି ପଟାନ୍ତର ନାହିଁ
ଅଙ୍ଗିରା ନାମରେ ଋଷି ପୂର୍ବେ ଥିଲେ ତହିଁ ।
କାର୍ତ୍ତିକେୟ ପଦ ଅଛି ସେ ପର୍ବତ ତଳେ
କାର୍ତ୍ତିକେୟ ଜନ୍ମିଥିଲେ ତହିଁ ପୂର୍ବକାଳେ
ଅଠର ଯୁଣ ବିସ୍ତୃତ ସେ ପଦା ଅଟଇ
ଅତି ଯତ୍ନେ ସଞ୍ଚିଥିଲେ ଅଙ୍ଗିରା ଗୋସାଇଁ ।
ସେ ପଦା ମଧ୍ୟ ମାନସ ନାମେ ଅଛି କୁଣ୍ଡ
ଅଙ୍ଗିରା ମହର୍ଷି ତହିଁ ପୋତିଥିଲେ ଦଣ୍ଡ ।
ଶତେ ନଳ ଆୟତନ କୁଣ୍ଡ ଦୀର୍ଘ ପ୍ରସ୍ଥ
ତହିଁରେ ମଜ୍ଜିଲେ ପ୍ରାଣୀ ଲଭେ ମୋକ୍ଷଗତି ।
ସେ ଗିରି ଶିଖରେ ଯାନ୍ତେ କୃଷ୍ଣ କାମପାଳ
ତଳରେ ମିଳିଲେ ଯାଇଁ ନୃପତି ସକଳ ।
ସମସ୍ତଙ୍କୁ ବଣା କରାଇଲେ ଦେବହରି
କେଉଁ ବାଟେ ଗଲେ କେହି ନ ପାରନ୍ତି ବାରି
ପଥ ଅନୁସରି ଲୋକେ ଦୂରଯାଏ ଗଲେ
ସଠା ଶବଦ ସେ ଖୋଜି ଖୋଜି ନ ପାଇଲେ
ଜରାସନ୍ଧ ବୋଇଲେ ଦମଘୋଷକୁ ଅନାଇଁ
ସୈନ୍ୟ ଫୁଟିଲେଣି ଏଥେଁ ରହିବା ନ ଯାଇ
ଆଜକ ବିଶ୍ରାମ କରି ଏଠାରେ ରହିବା
କାଲି ପ୍ରଭାତରୁ ଉଠି ଦଣ୍ଡ ଚଳାଇବା ।

ଏମନ୍ତ ବସ୍ତୁର କରି ସେ ପର୍ବତ ତଳେ
ଜରାସନ୍ଧ ଆବେଢ଼ି କରି ରହିଲେ ସକଳେ ।
ଲୁଗା ଟାଣି ଗଲେ ବସା ମଣ୍ଡପ ନିର୍ମାଣ
ନବର ବାହାରେ ଆବୋରିଲେ ନୃପଗଣ ।
ଖାଟୁଆ ବାଟୁଆ ତେଲ ଚମ୍ପ ବଣିଜାର
ମସଗନ୍ଧ ବାଡ଼ି କଲେ ଯେ ଯାହା ବେପାର
ନିତ୍ୟକର୍ମ ବଢ଼ାଇଣ ସକଳ ସାଇନ
ରନ୍ଧନ ଭୋଜନ କରି ବଞ୍ଚିଲେ ରଜନୀ ।
ଶୁଣ ହେ ପରୀକ୍ଷ ରାଜା ଶୁକ ସେ ବଦନ୍ତି
ଇତ ଶିଶୁ ଭାଗବତ ପୁଣ୍ୟମନ୍ତ୍ର କାହିଁ ।
ପବିତ୍ର ଗଙ୍ଗାଜଳ ଏ ଗ୍ରନ୍ଥ ପୁଣ୍ୟମନ୍ତ୍ର
ଶ୍ରବଣେ ଶୁଣିଲେ ମହାପାପ ହୁଏ ନାଶ ।
ରାଜପୀଡ଼ା ଚୋରପୀଡ଼ା ବିବିଧ ଉତ୍ପାତ
ଆଧି ବ୍ୟାଧି ଅପମୃତ୍ୟୁ ନ ରହେ କିଞ୍ଚିତ ।
ଅପୁତ୍ରିକ ଶୁଣି ପାଏ ବରଷକେ
ଅନ୍ତକାଳେ ବାସ ମିଳେ ବଇକୁଣ୍ଠ ଲୋକେ
ହରିନାମ ଉଚ୍ଚାରି ଯେ ପଢ଼େ ହରିବଂଶ
ମୁକତି ହୁଅନ୍ତି ତାର ଚଉଦ ପୁରୁଷ ।
ରାମ କୃଷ୍ଣ ପାଦେ ମୋର ସଦା ରହୁ ସେବା
ଅଚ୍ୟୁତ ଦାସ କହଇ ଗତି ମୁକ୍ତି ଦେବା ।

—*—

## ଜରାସନ୍ଧ ପଞ୍ଚମବାର ଧାଡ଼ି

ଏଥୁଅନନ୍ତରେ ପୁଣି ଶୁକ ମହାସନ୍ତ
ବୋଇଲେ କହିବା ଶୁଣ ପରୀକ୍ଷ ନୃପତ ।
ପର୍ବତ ଉପରେ ଛନ୍ତି ରାମକୃଷ୍ଣ ବେନି
ତଳରେ ରହିଲେ ସବୁ ନୃପେ ସୈନ୍ୟଘେନି ।
ଏସନ ବାରତା କେହି ନ ଜାଣନ୍ତି ଆନ
କନ୍ଦମୂଳ ଫଳ ଭକ୍ଷ ରାମ ଭଗବାନ ।
ଲବଙ୍ଗ ଲତାର ତଳେ କୋମଳ ପତ୍ରରେ
ସୁଖେ ନିଦ୍ରା ଗଲେ ଶ୍ରମ ପାଇ ସେ ବନିରେ
ଏଥୁ ଅନନ୍ତରେ ପୁଣ ପାହିଲା ରଜନୀ
ପୂର୍ବ ଅଞ୍ଚଳରେ ଉଦେ ହେଲେ ଦିନମଣି ।
ପର୍ବତ ଉପରୁ ରାମ କୃଷ୍ଣ ଦୁହେଁ ଆସି
ସ୍ନାନ କଲେ ଯେ ମାନସ କୁଣ୍ଡଜଳେ ପଶି ।
ଜରାସନ୍ଧ ଭୂରେ ଚଢ଼ି ଗୁପତରେ ଥିଲେ
ସ୍ନାନକଲା କାଳେ ରାମକୃଷ୍ଣଙ୍କୁ ଦେଖିଲେ ।
ସନ୍ଦେଶ ବାରତା ଘେନି ବାହୁଡ଼ିଣ ବେଗେ
ତକ୍ଷଣେ କହିଲେ ଯାଇ ଜରାସନ୍ଧ ଆଗେ ।
ହେ ଦେବ ତୁ ସାବଧାନେ ଶୁଣ ନୃପସାଇଁ
ବାରତା ଘେନିଣ ଆମ୍ଭେ ଆସୁଅଛୁ ଧାଇଁ ।
କାଲି କେଉଁ ନାମେ ମଧ୍ୟ ଏ ଗିରି ଉପରେ
ମାନସ ବୋଲିଣ କୁଣ୍ଡ ଅଛଇ ସେଠାରେ ।
ସେ କୁଣ୍ଡ ଭିତରେ ପଶି କୃଷ୍ଣ କାମପାଳ
ନିତ୍ୟକର୍ମ କରୁଛନ୍ତି ସେ ଦୁଇ ଗୋପାଳ ।
ସେଠାରେ ଭେଟିବା ଆମ୍ଭେ ଏହିକ୍ଷଣି ଗଲେ
କାର୍ଯ୍ୟ ସାଧି ଦେବ ହସ୍ତେ ଧଳମ୍ବ ହୋଇଲେ
ଏହା ଶୁଣି ମହାରାଜା ସନ୍ତୋଷ ହୋଇଲା
ସମଦଣ୍ଡ ସାଜ ବୋଲି ଉଠି ଆଜ୍ଞା ଦେଲା ।
ଆଜ୍ଞା ପରମାଣେ ସବୁ ନୃପେ ହେଲେ ସଜ
ରଥୀ ମହାରଥୀ ପଦାତିକ ଅଶ୍ୱ ଗଜ ।
ଧାମନ୍ତ ଆୟୁଧ ଘେନି ଗୁଡ଼ ସିଂହରଡ଼ି
ଜୁଆର ଟେକିଲେ ଯେହ୍ନେ ସିନ୍ଧୁ ଆସେ ମାଡ଼ି
ଚର୍ଚ୍ଚନ୍ତି ଗର୍ଜନ୍ତି ବୀରେ କରନ୍ତି ପ୍ରତିଜ
କେ ବୋଲେ କରିବା ଗୁଲ ଆଜି ରାଜକାର୍ଯ୍ୟ
ରାମକୃଷ୍ଣ ବାନ୍ଧି ଆଣି ଶ୍ରୀଗୁରୁରେ ଦେବା
ନୋହିଲେ ଜୀବନେ ମାରି ଶ୍ରମ ପାସୋରିବା ।
କେହୁ ଯେ ବୋଲନ୍ତି ତୁମ୍ଭେ ନ କର ବଡ଼ିମା
ସାମାନ୍ୟ ନୁହନ୍ତି ସେହି ହରି ବଳରାମା ।
ଦେଖିଲତ ଯାହା କଲେ ସେ ପ୍ରଥମ ରଣେ
ଲକ୍ଷେ ରାଜା ଦର୍ପ ଭଙ୍ଗି ଗଲେ ତତକ୍ଷଣେ ।
ଆଉ ଯେତେ ଥର ବେଢ଼ ମଧ୍ୟରେ ପଡ଼ନ୍ତି
ଦେଖୁଆଇ ହାତେ ହାତେ ପେଡ଼ାଇଣ ଯାନ୍ତି
ଅଷ୍ଟମଲ୍ଲ ସହିତରେ କଂସ କଲେ ନାଶ
ତାଙ୍କ ସଙ୍ଗେ ଯୁଦ୍ଧ କଲେ ନ ପାଇବା ଯଶ ।
ଜାଣୁ ଜାଣୁ ମୂର୍ଖପଣ କଲେ ହେବ ଲାଜ
କଥାହିଁ ରହିବ ଶେଷେ ନ ପାଇବା କାର୍ଯ୍ୟ ।
ଥୋକାଏ ବୀର ପ୍ରତିଜ୍ଞା କଲେ ଏହା ଶୁଣି
ରାମ କୃଷ୍ଣଙ୍କର ବଳ ଜାଣିମା ଏକ୍ଷଣି ।
ସମ୍ମୁଖରେ ଆଇ ଯେବେ କରିବେ ସେ ରଣ
ତେବେ ଜଣାଯିବ ତାଙ୍କ ବୀର ଶୂରପଣ ।
ପ୍ରତିଥର ଏହିରୂପେ ବଡ଼ପଣ କହି
ସମସ୍ତ ପଡ଼ିଲେ ଭୟେ ଯାନ୍ତି ପିଠିଦେଇ ।

ବୀର ବିମର୍ଦ୍ଦନ ବାନା ଜରାସନ୍ଧ ରାଏ
ତା ଆଗେ ରହି ଯୁଝି ଭୁ ବଳଥିଲେ କାଏ
ଦୁରୁ ନଷ୍ଟ ରାଜାମାନେ ଏମନ୍ତ ବିଚାରି
ଆଗଭର ହେଲେ କରେ ନାନା ଶସ୍ତ୍ର ଧରି ।
ଜରାସନ୍ଧ ଆଦିକରି ସକଳ ନୃପତି
ଯେ ଯାହା ବଡ଼ିମା ଚଢ଼ିଗଲେ ଶୀଘ୍ର ଗତି ।
କେ ରଥେ ବସିଲେ କେତେ ଆରୋହିଲେ ଗଜ
ରାଉତେ ଅଶ୍ୱ ପିଠିରେ ବସି ହେଲେ ସଜ ।
ଯେ ଯାହାର ଶସ୍ତ୍ରମାନ କରେ ଛନ୍ତି ଧରି
ଆଗରେ ଧାମନ୍ତି ଥୋକେ ଗରଜନ କରି ।
ଏମନ୍ତ ପ୍ରକାରେ କେତେଦୂର ଚଳିଗଲେ
କାର୍ତ୍ତିକ ପଦାରେ ଯାଇ ପ୍ରବେଶ ହୋଇଲେ
ଅତ୍ୟନ୍ତ ନିର୍ମଳ ଭୂମି ହୋଇଛି ସେ ସ୍ଥାନ
ଦେଖିଣ ଆନନ୍ଦ ହେଲେ ସକଳ ସଇନ ।
ମଧ୍ୟରେ ମାନସ କୁଣ୍ଡ ଦିଶେ ଅତି ଶୋଭା
ନିତ୍ୟକର୍ମ ସାରି ରାମକୃଷ୍ଣ ତହିଁ ଉଭା ।
ଜରାସନ୍ଧ ଆସୁଅଛି ସଇନ ଚଳାଇ
ଶ୍ରୀକୃଷ୍ଣ ଦେଖିଲେ ତାହା ଖଣ୍ଡେଦୂରେ ଥାଇ ।
ଢୋଲ ଦମାଲୁ ଟମକ ବୀରତୂର ଧ୍ୱନି
ଶବଦରେ କମ୍ପୁଅଛି ସମଗ୍ର ମେଦିନୀ ।
ରଥଧ୍ୱଜମାନଙ୍କରେ ବିଚିତ୍ର ପତାକ
ସମୁଦ୍ର ଲହରି ପ୍ରାଏ ଦିଶଇ ଉଲ୍ଲୋଳ
ପରିଘାଇ ଜରାସନ୍ଧ ଦେଇଅଛି ଧାଡ଼ି
ବୃହି ବୃହି ସୈନ୍ୟ ଆସି ପଡ଼ୁଛନ୍ତି ମାଡ଼ି ।
ବଳରାମଙ୍କୁ ଚାହିଁଣ ବୋଲନ୍ତି ଶ୍ରୀହରି
ଯୁଝିବା କି ପଳାଇବା ଏଥୁ ଅବସର ।
ଶ୍ରୀକୃଷ୍ଣ ବଚନ ଶୁଣି ପ୍ରଭୁ କାମପାଳ
ବୋଲନ୍ତି ଏ ପାଦଗୋଟି ଅତି ପରିମଳ ।
ପାଷାଣ କଣ୍ଟକ ବୃକ୍ଷ ଖୁଣ୍ଟା ଲତା ନାହିଁ
ଏସ୍ତା ସମାନେ ଭୂମି ଆଉ ନ ପାଇବା କାହିଁ
ଏହିଠାରେ ଥାଇ ଆମ୍ଭେ ସମର କରିବା
ଦୁଷ୍ଟରାଜାମାନଙ୍କର ଗରବ ଗଞ୍ଜିବା ।
ଏସନ କହିଲେ ଯହୁଁ ଦେବ ହଳପାଣି
ଶ୍ରୀଜଗନ୍ନାଥ ସନ୍ତୋଷ ହେଲେ ତାହା ଶୁଣି ।
ଶଙ୍ଖ ଚକ୍ର ଆୟୁଧ ଯେ ନନ୍ଦଘୋଷ ରଥ
ତତକ୍ଷଣେ ସୁମରଣା କଲେ ଲକ୍ଷ୍ମୀକାନ୍ତ ।

ତାଳଧ୍ୱଜ ସୁମରିଲେ ପ୍ରଭୁ କାମପାଳ
ଆପଣା ଆୟୁଧ ବଜ୍ର ଲଙ୍ଗଳ ମୂଷଳ ।
ଗନ୍ଧମାର୍ଦ୍ଦନ ପର୍ବତେ ଥିଲେ ରଥବେନି
ଦେବଦୂତ ରାଇ ଆଜ୍ଞା ଦେଲେ ସଜ୍ଜ ଯୋନି ।
ଇନ୍ଦ୍ର ବୋଇଲେ ମାତଳି ଶୁଣ ମୋର ବାଣୀ
ରାମକୃଷ୍ଣଙ୍କ ଛାମୁକୁ ଯିବ ଏହିକ୍ଷଣି ।
ଗନ୍ଧମାଦନ ପର୍ବତେ ଅଛି ଦୁଇ ରଥ
କାର୍ତ୍ତିକ ପଦାରେ ଛନ୍ତି ରାମ ଗୋପୀନାଥ ।
ଲଙ୍ଗଳ ମୂଷଳ ଚକ୍ର ସାରଙ୍ଗ ସହିତେ
ସମର୍ପଣ କରି ନେଇ ତାହାଙ୍କ ଅଗ୍ରତେ ।
ଜରାସନ୍ଧ ଧାଡ଼ିଦେଇ କରୁଛି କଟାଳ
ନିରାୟୁଧ ହୋଇଛନ୍ତି କୃଷ୍ଣ କାମପାଳ ।
ବିଳମ୍ବ ନ କରି ତୁମ୍ଭେ ଏହିକ୍ଷଣି ଯାଅ
ବେନିରଥ ନେଇ ରାମକୃଷ୍ଣ ପାଶେ ଦିଅ ।
ଇନ୍ଦ୍ର ଆଜ୍ଞା ପରମାଣେ ଚଳିଲେ ମାତଳି
ଗନ୍ଧମାଦନ ପର୍ବତେ ତତକ୍ଷଣେ ମିଳି ।
ସକଳ ଆୟୁଧ ଦୁଇ ରଥରେ ମଜାଇ
ଗଗନ ମାର୍ଗରେ ଗଲେ ଅତିବେଗେ ବାହି ।
କାର୍ତ୍ତିକ ପଦାରେ ଥିଲେ ରାମ ଜଗନ୍ନାଥ
ଦୁହିଁଙ୍କ ଗୋଚରେ ନେଇ ଦେଲେ ଦୁଇ ରଥ
ଦେଖିଣ ଆନନ୍ଦ ମନେ ଲକ୍ଷ୍ମୀଦେବୀ ସାଇଁ
ପ୍ରଦକ୍ଷିଣ କରି ରଥ ଆରୋହିଲେ ଯାଇ ।
ସିଂହାସନ ମାଡ଼ି ସ୍ୱାମୀ ବସିଲେ ନିର୍ଭରେ
ଲଙ୍ଗଳ ମୂଷଳ ଚକ୍ର ଗଦା ଧରି କରେ ।
ନନ୍ଦିଘୋଷରେ ସାରଥି ହୋଇଲେ ମାତଳି
ତାଳଧ୍ୱଜରେ ଦାରୁକ ନାମେ ମହାବଳୀ ।
ଏକଯୋଗେ ବେନିରଥ ହୋଇଅଛି ଉଭା
ନିଦାଘ କାଳରେ ଯେହ୍ନେ ଦିନକର ପ୍ରଭା ।
ଉପରେ କପି କେତନ ଉଡ଼େ ଫରଫର
ଯାହାକୁ ଦେଖିଲେ ଶତ୍ରୁ ହୁଅନ୍ତି କାତର ।
ତାଳଧ୍ୱଜେ ଅଛି ଶ୍ୱେତନାଗ ଯେ ପତାକ
ଅସୁରଧ୍ୱଂସନ ବାନା ଅତି ଝକରାଳ
ମାଣିକ୍ୟ ପ୍ରବାଳ ହୀରା ନୀଳା ମଣି ଜ୍ୟୋତି
ମାରଗ ବୈଢ଼ୂର୍ଯ୍ୟ ମରକତ ଗଜମୋତି
ରସାଣିଲ ପାନପତ୍ର ଷାଠବାଙ୍କ ସୁନା
ଜାଈ ଯୁଈ ପାରିଜାତ ପୁଷ୍ପ ଅଳଙ୍କନା ।

ନେତ ପଟମା ସିନ୍ଧୁଆ ଧବଳ ମାଞ୍ଜିଷ୍ଟ
ବସନ୍ତ ସୁପୀତ ନୀଳ ନାନା ବର୍ଣ୍ଣେ ପାଟ ।
ଆପେ ବିଶ୍ୱକର୍ମା ମଣ୍ଡିଅଛୁ ବେନି ରଥ
ଆନନ୍ଦରେ ବିଜେ କଲେ ରାମ ଜଗନ୍ନାଥ ।
ଜରାସନ୍ଧ ସହିତରେ ସର୍ବ ନୃପବର
ସେ ବେନି ରଥକୁ ଦେଖି ହୋଇଲେ କାତର
ଏକକୁ ଆରେକ ଚାହିଁ ପୁଚ୍ଛନ୍ତି ବାରତା
କେଉଁମାନେ ବୋଲନ୍ତି ଏ ଅସମ୍ଭବ କଥା ।
ଏଥିର ତଦନ୍ତ ଆମ୍ଭେ ଜାଣିବା କେମନ୍ତେ
କେବଣ ଦେବତା ଅବା ଆସିଛୁ ଗୁପତେ ।
ମାନବ ରଥ ନୁହଇ ଏତ ଦେବଯାନ
ଆଦିତ୍ୟ ମଣ୍ଡଳ ପ୍ରାୟେ ଦିଶେ ତେଜସ୍ଥାନ ।
ବାସବର ବରୁଣ ଯମ କିବା ନଇଋତ
କୁବେର ବିମାନ କିବା ସୂର୍ଯ୍ୟଦେବ ରଥ ।
କି ଅବା ଗନ୍ଧର୍ବ ଯକ୍ଷ ବାୟୁ ବୈଶ୍ୱାନର
ନୋହିଲେ ବା ବ୍ରହ୍ମା ଏହି ଅନାଦି ଈଶ୍ୱର ।
କେବଣ ଦେବତା ଏହା ଜାଣିମା କେମନ୍ତେ
କାହିଁପାଇଁ ଏ ସ୍ଥାନକୁ ଅଇଲେ ଅଦ୍ଭୁତେ ।
ଏ ବଚନ ଶୁଣି ବୋଲେ ଦନ୍ତବକ୍ରରାଏ
ଏ ଦୁହେଁ ଦିଶନ୍ତି ମୋତେ ଯୁଦ୍ଧ କଲା ପ୍ରାଏ ।
କରେ ଶସ୍ତ୍ର ଧରି ପୁଣି ବୀରବେଶ ହୋଇ
ନିର୍ଭୟରେ ରହିଛନ୍ତି ମନେ ଶଙ୍କା ନାହିଁ ।
ମୋ ବିଚାରେ ଜାଣୁଅଛୁ ମୁହିଁ ତଥ୍ୟ କରି
ନିଶ୍ଚୟେ ଅଟନ୍ତି ଦୁହେଁ ରାମଚକ୍ରଧାରୀ ।
ଜରାସନ୍ଧ ବୋଲେ ମୋର ଏଡ଼େ ଭାଗ୍ୟକାହିଁ
ସମର କରିବେ ରାମକୃଷ୍ଣ ଆଗେ ରହି ।
ଜଆଁଇ ମରଣ ଶୋକ ଝିଅଙ୍କ ବିକଳ
ନାତର ମରଣ ପାସୋରିବି ମୁଁ ସକଳ ।
ଗୃହବେଳ ମୋ ଆଗରୁ ପଳାଇଲେ ଡରେ
ସେ ଏବେ ଯୁଝିବେ ରହି କେଉଁ ଭରସାରେ
ଏମନ୍ତ ସମୟେ ଆସି କହିଲା ଡଗର
ସାବଧାନ ହୋଇ ଶୁଣ ମଗଧ ଈଶ୍ୱର ।
ରାମକୃଷ୍ଣ ଦୁଇଭାଇ ରଥେ ରଥେ ଚଢ଼ି
ସଂଗ୍ରାମ କରିବେ ବୋଲି ଆସୁଛନ୍ତି ବଢ଼ି ।
ଏହା ଶୁଣି ଜରାସନ୍ଧ ମନେ ହାଉ ହେଲା
ଯାହା ଲୋଡ଼ୁଥିଲି ତାହା ପାଇଲି ବୋଇଲା ।

ଦଣ୍ଡୁ ଆସି ଅଗ୍ରତରେ ପଡ଼ୁଅଛୁ ଶ୍ୱେର
ଛାଗଳ ମିଳିଲା ଆସି ଶାର୍ଦ୍ଦୁଳ ଛାମୁର ।
ମାର୍ଜାର ଦାଢ଼ରେ ଆସି ପଡ଼ୁଅଛୁ ମୂଷା
ଲୁବ୍ଧକ ଜାଲରେ ଆପେ ପଶିଲାକ ଶଶା ।
କୈବର୍ତ୍ତ ଆଗରେ ଆସି ପଡ଼ୁଅଛୁ ମୀନ
ଏତେକାଳେ ଦେଖାଗଲା ମୋର ପୂର୍ବ ପୁଣ୍ୟେ
ଏତେ ବୋଲି ଆପଣାର ରଥକୁ ଧୂଆଇଁ
ସଇନ୍ୟକୁ ଆଜ୍ଞା ଦେଲା ବେଢ଼ ବେଗେ ଯାଇଁ
ଜାଣିଥାଅ ରାମକୃଷ୍ଣ ଦେବ ଯେହୁ ଜଣି
ଆଜଠାରୁ ମୋ ରାଜ୍ୟରେ ସେ ହେବ ତରଣି
ଧନ ରତ୍ନ ଦେଇ ଆପେ ହେବ ତାର ଭୃତ୍ୟ
ମାନ ଜଗାଇବ ନଷ୍ଟେ କରି ଏହି କୃତ୍ୟ ।
ଜରାସନ୍ଧ ମୁଖୁଁ ଏହା ଶୁଣି ନୃପଗଣ
ରେରେକାର କରି ସର୍ବେ ଧାଇଁଲେ ତକ୍ଷଣ ।
ଯେବଣ ରଥରେ ଥିଲେ ରାମ ଯଦୁନାଥ
ଲକ୍ଷେ ପୁର କରି ତହିଁ ବେଢ଼ିଲେ ସେ ରଥ
ଧାମନ୍ତି ସକଳ ବେଗେ ଘୋଟିଣ ସଇନ
ସମୁଦ୍ର ଗର୍ଜ୍ଜନ ପ୍ରାୟେ ଶୁଭେ ମହାଧ୍ୱନ ।
କରେ ଶଙ୍ଖ ଧରି ବୀରେ କରନ୍ତି ପହ୍ନଜ
ବୋଲନ୍ତି ଗଉଡ଼ ଆରେ କାହିଁ ଯିବୁ ଆଜ
ଭଣ୍ଡି ଯାଉଥିଲୁ ଆଜ ପଡ଼ିଅଛୁ ଭେଟ
ଏଥାନ୍ତି ଜାଣିବା ତୋର ଦେହ କେତେ ଆଣ୍ଟ
କୃତାନ୍ତ ଦେବତା ଆଜ ପୋଛିଲା ତୋ ପାଞ୍ଜି
ଏହିକ୍ଷଣି ଭୁଜା ପ୍ରାୟେ ଦେବୁ ତୋତେ ପିଞ୍ଜି
ଏତେ ବୋଲି ଜରାସନ୍ଧ ଧାଇଁ ଅତି ବେଗେ
ରଥ ଟେକାଇଲା ନେଇ ବଳରାମ ଆଗେ ।
ବାମକରେ ଧନୁ ଧରି ନାରାଚ ସନ୍ଧାଣ
କର୍ଣ୍ଣଯାଏ ଟିଙ୍କି ଆଣି ଛନ୍ଦେ ପୁଣ ପୁଣ ।
ବାବନ ନାରାଚ ଗୁଣେ ସନ୍ଧି ସେ ଭୂପତି
ବଳରାମ ଉପରକୁ ମାରେ ଶୀଘ୍ର ଗତି ।
କଙ୍କପକ୍ଷ ତୀକ୍ଷ୍ଣ ମୁନା ସହସ୍ରେକ ବାଣ
ହସ୍ତ ବ୍ୟଗ୍ରେ ବନ୍ଧିଲା ସେ ମନ୍ତ୍ର ସୁମରଣ ।
ନାରାଚ ଆସନ୍ତେ ଦୂରୁ ଦେଖି ନୀଳାମ୍ବର
ମୂଷଳ ଥୋଇଣ ଧନୁ ଧଇଲେ ସତ୍ୱର ।
କଟୁଆ ନାରାଚ ଶତେ ଧନୁରେ ପୁରାଇ
ରେରେକାର କରି କୋପେ ବନ୍ଧିଲେ ନଠାଇ

ଯେ ନାରାଚମାନ ଯୁଦ୍ଧପ୍ରାଙ୍ଗଣରେ ଘୋଟି
ଜରାସନ୍ଧ ବାଣମାନ ପକାଇଲେ କାଟି ।
ଦେଖିଣ ମଗଧେଶ୍ୱର କୋପେ କୋପାନଳ
କାଳସର୍ପ ପ୍ରାୟେ ଗରଜଇ ଅନ୍ତରାଳ ।
ଅର୍ଦ୍ଧଚନ୍ଦ୍ର ବାଣ ଶତେ ଭରଣୀରୁ ଆଣି
ଆକର୍ଷି ବନ୍ଧିଲା କର୍ଣ୍ଣ ଯାଏ ଗୁଣ ଟାଣି ।
ବାହେଲ ବାଣେକ ଧରି ରାମ ଦେଲେ ଛାଡ଼ି
ଜରାସନ୍ଧ ବାଣ ଗଲା ଅନ୍ତରୀକ୍ଷେ ଉଡ଼ି ।
ଦେଖି ମନେ ଖେଦପାଇ ସଙ୍କୋଚନ ବହି
ଶାଣଦିଆ ଶତେବାଣ ପୂରାଇଲା ବାହି ।
ଧନୁର୍ବେଦ ସୁମରଣ ପେଷିଦେଲା ବେଗେ
ଗର୍ଜିଣ ଧାଇଁଲେ ବାଣ ଅନ୍ତରୀକ୍ଷ ମାର୍ଗେ ।
ପୁଣିହିଁ ସହସ୍ର ବାଣ ତୂଣୀରରୁ କାଢ଼ି
ସମ୍ଭାଳ ଗଜଡ଼େ ବୋଲି କୋପେ ଦେଲା ଛାଡ଼ି
ଧନୁର୍ଗୁଣ ଶବଦରେ କମ୍ପଇ ବ୍ରହ୍ମାଣ୍ଡ
ନିମିଷକେ ବରଗିଲା ଲକ୍ଷେ ଲକ୍ଷେ କାଣ୍ଡ ।
ପନ୍ଦର ସହସ୍ର ବାଣ ପୂରାଇଣ ଗୁଣେ
ବଳଦେବ ଉପରକୁ ବିନ୍ଧିଲା ତକ୍ଷଣେ ।
ଚଳିଲେ ସେ ବାଣମାନ ଦଶଦିଗେ ଘୋଟି
ଦିବସେ ଅନ୍ଧାର ହୋଇ ନ ଦିଶିଲା ସୃଷ୍ଟି ।
ନାରାଚ ଆସନ୍ତେ ଦେଖି ବଳରାମ ସ୍ୱାମୀ
ଚନ୍ଦ୍ରମୁନ ପାଞ୍ଚଶସ୍ତ୍ର ପେଷି ଅନ୍ତର୍ଯ୍ୟାମୀ ।
ଜରାସନ୍ଧ ବାଣମାନ ଆସୁଥିଲେ ଉଡ଼ି
ପାଞ୍ଚ ପାଞ୍ଚ ଖଣ୍ଡ ହୋଇ ମଧ୍ୟେଗଲେ ଛୁଡ଼ି ।
ବାଣ ହତ ଦେଖି ଜରା କୋପେ ପରଜ୍ୱଳି
ଗୁଣେ ବସାଇଲା ଆଣି ଶର ଆର୍ଦ୍ରବଳି ।
ବେଦମନ୍ତ୍ରେ ମନ୍ତ୍ରି ତାହା ବିନ୍ଧିଲା ସତ୍ୱର
ସେ ଅମୋଘ ବାଣ ଦୁରୁ ଦେଖି ହଳଧର ।
କାଳାନ୍ତକ ନାମେ ଏକ ମହାବାଣ କାଢ଼ି
ମନ୍ତ୍ରପୂତ କରି ତାକୁ ବେଗେ ଦେଲେ ଛାଡ଼ି
ଦୁଇବାଣ ଗଗନରେ ବାଜି ସମତାଳ
ଉଠିଲା ବହ୍ନିର ଶିଖା ଜ୍ୟୋତି ଅନ୍ତରାଳ ।
ଦେଖି ମହାକୋପ କରି ମଗଧ ନୃପତି
କୁହୁକ ବାଣକୁ କରେ ଘେନିଣ ଝଟତି ।
ମହାମନ୍ତ୍ରେ ମନ୍ତ୍ରି ତାକୁ ପେଷିଦେଲା ସେଏ
ଦିଶିଲା ସକଳ ସୃଷ୍ଟି ଅନ୍ଧକାର ମୟେ ।

ଘଡ଼ ଘଡ଼ ହୋଇ ଶବ୍ଦ ଶୁଭେ ଭୟଙ୍କର
ଘୋଟିଲା ଅକାଳ ନିଶା ନିବିଡ଼ ଅନ୍ଧାର ।
ଏକକୁ ଆରେକ ବଣା ନଦିଶଇ ବାଟ
ଯେ ଯାହାରେ ସମ୍ମୀଭୂତ ହେଲେ ସର୍ବଥାଟ ।
ତତକ୍ଷଣେ ସୂର୍ଯ୍ୟ ଅସ୍ତ୍ର କଲେ ହଳଧର
ଆଦିତ୍ୟ ତେଜରେ ଲୀନ ହୋଇଲା ଅନ୍ଧାର
ପନ୍ନଗାସ୍ତ୍ର କଲା ପୁଣି ଜରାସନ୍ଧ କୋପେ
ଗରୁଡ଼ାସ୍ତ୍ରେ ସଂହାରିଲେ ବଳରାମ ଆପେ
କୋପେକୋପାନଳ ତାହା ଦେଖି ଦୈତ୍ୟମଣି
ଦଶସସ୍ର ପର୍ବତାସ୍ତ୍ର ବନ୍ଧେ ଗୁଣ ଟାଣି ।
ସେ ପର୍ବତେ ପକ୍ଷବନ୍ତ ପକ୍ଷୀ ପ୍ରାୟେ ଉଡ଼ି
ମନ୍ତ୍ରବଳେ ଆସୁଥିଲେ ଶୂନ୍ୟପଥ ମାଡ଼ି ।
ବଳବନ୍ତା ସ୍ୱାମୀ ଦେଖି ନ କରି ଶୋଚନା
ବଜ୍ରାସ୍ତ୍ର ବିନ୍ଧଣ ସବୁ ଗିରି କଲେ ଚୂନା ।
ବେଳକୁଁ ବେଳ ବଢ଼ିଲା ଯେ ରଣ ମହାଘୋର
ଅନ୍ୟୋନ୍ୟରେ ଦୁହେଁ ମହାକ୍ଷତ୍ରୀ ଅନର୍ଗଳ ।
ଧାତକାରେ ଜରାସନ୍ଧ ମେଘାସ୍ତ୍ର କାଟିଲା
ବଳରାମ ଉପରକୁ ମନ୍ତ୍ରି ଛାଡ଼ିଦେଲା ।
ମହାଭୟଙ୍କର ରୂପେ ମେଘମାଳ ଘୋଟି
ଉଲ୍କାପାତ ହେଲାପ୍ରାୟେ ଦିଶେ ନବସୃଷ୍ଟି ।
ଘଡ଼ ଘଡ଼ ଗରଜନ ବଜ୍ର ସମ ଧ୍ୱନି
ନିର୍ଘାତ ଶବଦେ କମ୍ପିଗଲା ପୁର ଜନ ।
ମାରଇ ବିଜୁଳି ଅନ୍ତରୀକ୍ଷେ ଘନ ଘନ
ଘୋର ବରଷାରେ ଦିଗ ହୋଇଲା ଆଚ୍ଛନ୍ନ ।
ପବନାସ୍ତ୍ର ପେଶିଲେ ତା ଦେଖି କାମପାଳ
ଛିନ୍ନ ଛିନ୍ନ ହୋଇ ଉଡ଼ିଗଲେ ମେଘପାଳ ।
ଦେଖି ମନେ ଲଜ୍ଜା ପାଇ ଜରାସନ୍ଧ ରାଣ
ଗରଜି ଧଇଲା ବୀର କରେ ଅଗ୍ନି ବାଣ ।
ମନ୍ତ୍ରପଢ଼ି କର୍ଣ୍ଣଯାଏ ଉଚ୍ଚାରଣ ରାଗେ
ବଳରାମ ଉପରକୁ ବିନ୍ଧିଲା ତା ବେଗେ ।
ପ୍ରଚଣ୍ଡ ଅନଳଶିଖା ଅନ୍ତରୀକ୍ଷେ ଉଠି
ହୁହୁଁ ହୁହୁଁ ମାଡ଼ିଆସେ ଦଶଦିଗ ଘୋଟି ।
ଗୋପନ ହୋଇବ ଅଗ୍ନି ଜଳେ ଅନ୍ତରାଳ
ଚରାଚର ପ୍ରାଣୀ ଦେଖି ହୋଇଲେ ଆକୁଳ ।
ପୃଥ୍ୱୀଠାରୁ ଘୋଟିଅଛି ଧ୍ରୁବଲୋକ ଯାଏ
ଦେଖି ଭୟେ କମ୍ପମାନ ହେଲେ ଦେବତାଏ ।

ବଳରାମ ଜଳଧାରା ବାଣ କରେ ଘେନି
ମାରନ୍ତେ ଘୋଟିଲା ବାଣ ଆକାଶ ମେଦିନୀ ।
ମୂଷଳ ଧାର ପ୍ରମାଣେ ବୃଷ୍ଟି ହୋଇ ଜଳ
ତତକ୍ଷଣେ ଲିଭିଗଲା ପ୍ରଚଣ୍ଡ ଅନଳ ।
ଦେଖି ଜରାସନ୍ଧର ଯେ ନ ସ୍ଫୁରଇ କିଛି
ଅନେକ ଲଜ୍ଜା ପାଇଲା ସଙ୍କୋଚନ ବହି ।
ଛୟାଣୋଇସସ୍ର ରାଜା ଦେଖୁଛନ୍ତି ଚାହିଁ
ଧର୍ମସଙ୍ଗେ ଜରାସନ୍ଧ ସମର କରଇ ।
ସହସ୍ର ଲକ୍ଷ ଯେ କୋଟି ଅର୍ବୁଦ ଖର୍ବ
ଦିବ୍ୟଶସ୍ତ୍ର ଆଦିକରି ପ୍ରହାରିଲେ ସର୍ବ ।
ଖଣ୍ଡ ଖଣ୍ଡ ବଳହାନି ହେଲା ନ ପରାଣେ
ରାମ ଅଙ୍ଗେ ନ ଭେଦିଲା ଝୁଣ୍ଟା ହେଲା ତୃଣ ।
ମନେ ମନେ ବିଚାରଇ ଜରାସନ୍ଧ ରାୟେ
ଏହାକୁ ଜିଣିବି ଆଜ କେବଣ ଉପାୟେ ।
ଧନୁର୍ଦ୍ଧର ସର ସହୁଁ ନ ପାରିଲ ଜିଣି
ମନେ ମନେ ମହାଲଜ୍ଜା ପାଇ ନୃପମଣି ।
ଅମୋଘ ବାସ୍ତବୀ ଭାର ଗଦା ଘେନି କରେ
ରଥୁଁ ଡେଇଁ ଚଳେ ଉଗ୍ର ହୋଇ କୋପଭରେ
ଧାଇଁଲେ ବନମସିଂହ ପ୍ରାୟେ ଦେଇ ରଡ
ଯେତେ କିବା ମେରୁଗିରି ପଡ଼ୁଅଛି ଝଡ଼ି ।
ଗଦା ବୁଲାଇଣ ବୀର କରନ୍ତେ ସହଜ
ପ୍ରଚଣ୍ଡ ପବନେ ଉଡ଼ିଗଲେ ରଥ ଗଜ ।
ପାଦଘାତେ ଦଲଦଲ କମ୍ପଇ ଧରଣୀ
ଟଳଟଳ ହୋଇଲା ଯେ ବାସୁକୀର ଫଣୀ ।
ବୀରଦର୍ପ ଗଞ୍ଜନ ସେ ସଂଗ୍ରାମେ ଅଜୟ
ସୁରାସୁର ମାନବକୁ ନାହିଁ ତାର ଭୟ
ମର୍ତ୍ତ୍ୟ ମଣ୍ଡଳରେ ସେହି ବୀର ଶିରୋମଣି
ଯତନେ ସନ୍ଧିଛୁ ତାକୁ ଜରା ରାକ୍ଷସୁଣୀ ।
ଛୟାଣୋଇସସ୍ର ରାଜା ଜଣିଲେ ସେ ବଳେ
ତା ସମାନେ ବଳବନ୍ତ ନାହିଁ ରବିତଳେ ।
ନବଦ୍ୱୀପ ସାତସିନ୍ଧୁ ହେଲେ କଲି ସାଧ
ବସୁଦେବ ସୁତ ହସ୍ତେନୁହିଁଇ ସେ ବଧ ।
ପବନହୁଁ ଖରେ ବୀର ଧାଇଁ ଅତିବେଗେ
ପ୍ରବେଶ ହୋଇଲା ଯାଇ ବଳରାମ ଆଗେ ।
ବାହନାଦ କରି ଗଦା ଊର୍ଦ୍ଧ୍ୱରେ ବୁଲାଇ
ତାଳଧ୍ୱଜ ରଥପରେ ପିଟିଲାକ ନେଇ ।

ତା ଦେଖି ସାରଥି ରଥ ଘୁଞ୍ଚାଇଲା କାଢ଼ି
ଅସମ୍ଭାଳ ହୋଇ ରାଜାପଟେ ମୂହଁ ମାଡ଼ି ।
ଦେଖି ଅଟ୍ଟହାସ କଲେ ସଇନ୍ୟ ସକଳ
ଦମଘୋଷ ଦନ୍ତବକ୍ର ଶାଳ୍ୱ ଶିଶୁପାଳ ।
ରୁକ୍ମଣୀଙ୍କୁ ଆଦିକରି ଥିଲେ ଯେତେ ରାଜା
ହସନ୍ତେ ତା ଦେଖି ଜରାସନ୍ଧ ପାଇ ଲଜ୍ଜା ।
ସତ୍ୱରେ ଧାଇଁଲା ପୁଣି ଗଦାବର ତୋଳି
କାଳସର୍ପ ପ୍ରାୟେ ଗରଜଇ ମହାବଳୀ ।
ରେରେକାର କରି ଗଦା ବୁଲାଇ ପ୍ରଖରେ
ଉଞ୍ଚାଇ ପିଟିଲା ବଳଦେବଙ୍କ ରଥରେ ।
ଗଦାଦେଖି ବଳରାମ କୋପମୁଖ ହୋଇ
ବିନ୍ଧିଲେକ ତୃଣୀବାଣ ଧନୁରେ ପୂରାଇ ।
ସେ ବାଣ ଗଗନ ମାର୍ଗେ ଚଳି ଅନ୍ତରୀକ୍ଷେ
ଗଦା କାଟି ବେନିଖଣ୍ଡ କଲା ରଣଦାଣ୍ଡେ ।
ଗଦା ଭଗ୍ନ ହେବା ଦେଖି ମଗଧ ଈଶ୍ୱର
ପୁଣି ଆନ ଗଦା କରେ ଧଇଲା ସତ୍ୱର ।
ଊର୍ଦ୍ଧ୍ୱକୁ ବୁଲାଇ ତାହା ପିଟନ୍ତେଣ ତୋଳି
ପାଞ୍ଚକୋଟି ଅର୍ଦ୍ଧଚନ୍ଦ୍ର ବିନ୍ଧିଲେ ମୁଷଳି ।
ପାଞ୍ଚଖଣ୍ଡ ହୋଇ ଗଦା ପଡ଼ିଲା ଭୂତଳେ
ଦେଖିଣ ମଗଧେଶ୍ୱର କ୍ରୋଧାଗ୍ନିରେ ଜଳେ
ମାନଭଙ୍ଗ ହୋଇଣ ସେ କ୍ଷତ୍ରିୟ ପ୍ରଚଣ୍ଡ
ଆକ୍ରୋଶି ଧଇଲା କରେ ଢେକ ଫର ଖଣ୍ଡା ।
କୃପାଣ ବୁଲାଇ ରାଜା ଧାମେ ଅନ୍ତରାଳ
ବାବଲ ଶର ପେଶିଲେ ଦେଖି କାମପାଳ ।
ସେ ବାଣରେ ବେନିଖଣ୍ଡ ହୋଇ ଅସିବର
ଖଣ୍ଡେ ହସ୍ତେ ରହି ଖଣ୍ଡେ ପଡ଼ିଲା ଭୂମିର ।
ସମରେ ନିଃଶସ୍ତ୍ର ହୋଇ ନ ଦେଇ ସେ ପିଠି
ମାଲ ବିଜ୍ଞାଣ ଗତିରେ ଧାଇଁଲା ପାଲଟି ।
ଠାଣିମାଣି କରି ବୀର ବାହାସ୍ଫୋଟ ମାରେ
ହାଟବୋଡ଼ା ବାଣେକ ରାମ ପେଷିଲେ ସତ୍ୱରେ
ବକ୍ଷରେ ବାଜିଲା ବାଣ ବଜ୍ର ପ୍ରାୟେ ଘୋଟି
ମୂର୍ଚ୍ଛାଗତ ହୋଇ ଜାଣ ପଡ଼େ ମହୀ ଲୋଟି ।
ଦମଘୋଷ ଆଦି ଯେତେ ନରପତି ଥିଲେ
ପ୍ରାଣପଣ କରି ତାକୁ ଆବୋରି ରହିଲେ ।
ଚନ୍ଦନ କର୍ପୂର ଗୋଳା ପାଣି ମୁଖେ ସିଞ୍ଚି
କୋଳକରି ବସାଇଲେ ଆଲଟରେ ବଞ୍ଚି ।

କତୁକ୍ଷଣେ ଜରାସନ୍ଧ ଅଙ୍ଗେ ଚେତାପାଇ
ସୈନ୍ୟ ଭିତରେ ରହିଲା ରଥେକ ଆରୋହି
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଯେ ରୁକ୍ମଣ
ଜଗନ୍ନାଥଙ୍କର ତୁଲେ ଆରମ୍ଭିଲେ ରଣ ।
ହାତୀ ରଥୀ ମହାରଥୀ ସୈନ୍ୟ ଅପ୍ରମିତ
ଏକକୁ ଆରେକ ଯୋଦ୍ଧା ହେଲେ ସୁସଜ୍ଜିତ ।
କରେ ନାନା ଶସ୍ତ୍ରଧରି ଏକମୁଖ ହୋଇ
ଗୋବିନ୍ଦ ଉପରେ ମାଡ଼ି ପଡ଼ିଲେକ ଯାଇ ।
ଚଉରେକାର କରି ସର୍ବେ ଧରିଣ ଆୟୁଧ
ଏକାବେଳେ ପ୍ରହାରନ୍ତି ନରଖି ଉପ୍ରୋଧ ।
ଟେଛଲ ଛଳ କୁନ୍ତ ଆସି ନାରାଚ ମୁଦ୍‌ଗର
ପରିଘ ଶାବେଳ ଗଦା ଗୁରୁଜ ତୋମର ।
କଟୁରି ନାରାଚ ଯମଦାଢ଼ ତୀକ୍ଷ୍ଣମୁନା
ପରଶୁ କୃପାଣ ଭଲ୍ଲ କାଣ୍ଡ ଅକଳନା ।
ଅକଳିତ ଶସ୍ତ୍ର ଯେନ କରନ୍ତି ପ୍ରହାର
ଦଶଦିଗ ପୂରିହେଲା ଦିବସ ଅନ୍ଧାର ।
ଅବଚ୍ଛିନେ ଶୂନ୍ୟ ଘୋଟି ପଡ଼ୁଅଛୁ ବାଣ
ଶ୍ରାବଣ ମାସରେ ଯେହ୍ନେ ବରଷଇ ଘନ ।
ସମୁଦ୍ର ଗର୍ଜନ ପ୍ରାୟେ ଶୁଭେ ଶଙ୍ଖଧ୍ୱନି
ଏକା ରଥକୁ ବେଢ଼ିଲେ ସକଳ ସଇନ ।
ନନ୍ଦିଘୋଷ ସ୍ୟନ୍ଦନରେ ବିଜେ ଚକ୍ରଧର
ସାରଙ୍ଗ ଧନୁକୁ ଧରିଛନ୍ତି ବାମକର ।
କୋଟି କୋଟି ଅସ୍ତ୍ର ଶସ୍ତ୍ର ଦେଖି ଚକ୍ରପାଣି
ମନଭେଦୀ ବାଣ ଗୁଣେ ବସାଇଲେ ଆଣି ।
ଯେବଣ ଯୋଦ୍ଧାଏ ଯେତେ ଶସ୍ତ୍ର ପେଶିଥିଲେ
ଏକା ପ୍ରହାରକେ ତାହା ସବୁ ଛେଦିଦେଲେ
ପୁଣି ପାଞ୍ଚଶତ ତୀକ୍ଷ୍ଣ ମୁନା କାଣ୍ଡ ସନ୍ଧି
ସୈନ୍ୟ ଉପରକୁ ଲକ୍ଷ୍ୟ କରିଦେଲେ ବିନ୍ଧି ।
ବୃହତ ବୃହତ ସହସ୍ରେକ ଅର୍ଦ୍ଧଚନ୍ଦ୍ର ବାଣ
ମନ୍ତ୍ରପଢ଼ି ନିମିଷକେ ବରଷିଲେ ପୁଣ ।
ପୁନରପି ନିଜହସ୍ତ ଲାଘବ ଦେଖାଇ
ଶତ ଶତ କ୍ଷୁର କାଣ୍ଡ ବିନ୍ଧିଲେ ଛୁହାଇ ।
ସେକାଳେ ମଣ୍ଡଳାକାର ହେଲା ଶରାସନ
କେହି ଦେଖି ନପାରିଲେ ଆଦାନ ସନ୍ଧାନ ।
ସେ ନାରାଚେ ପକ୍ଷୀ ପ୍ରାୟେ ଶୂନ୍ୟପଥ ଭେଦି
ଚଉଦିଗେ ଛୁଟି ଶତ୍ରୁ ସୈନ୍ୟ ଦେଲେ ଛେଦି

ଯହିଁକି ଚାହିଁଲେ ତହିଁ କୁଢ଼ କୁଢ଼ ମଣ୍ଡା
ତେଡ଼େବଡ଼ ପଦା ଗୋଟା ଦିଶେନାହିଁ ଛଡ଼ା ।
ନାରାଚ ବାଜନ୍ତେ ହାତୀ ଘୋଡ଼ା ମୁଣ୍ଡ ଛିଡ଼ି
ବୃକ୍ଷୁ ତାଳ ଫଳପ୍ରାୟେ ତଳେ ପଡ଼େ ଝଡ଼ି ।
ସାରଥି ଅଶ୍ୱ ସହିତେ ରଥ ହେଲା ଚୂନା
କେତେ ମହାରଥି ମଲେ ନ ଗଲା କଳନା ।
ବହିଲା ରକତ ନଦୀ ଖାଲ ଖାଲ ହୋଇ
ଶୁଷ୍କକାଠ ଭେଳା ପ୍ରାୟେ ମଣ୍ଡାକୁ ଭସାଇ ।
ମଗର କଚ୍ଛପ ହେଲେ ତହିଁ ମୁଣ୍ଡ ମାଳ
ଧଣ୍ଡସାପ ପ୍ରାୟେ ତହିଁ ଭସେ କର ବାଳ ।
ନାଚନ୍ତି କବନ୍ଧେ ଉଠି ଯୁଦ୍ଧେ ଲମ୍ଫ ଦେଇ
ଭୟାକ୍ରାନ୍ତ ଶସ୍ତ୍ର ଧରି ନପାରିଲେ ରହି ।
ଜମ୍ବୁକ ବାୟସ ବୃକ ଶ୍ୱାନ ଗୃଧ୍ର ପକ୍ଷୀ
ଆନନ୍ଦରେ ନୃତ୍ୟ କଲେ ରକ୍ତ ମାଂସ ଭକ୍ଷି
କଙ୍କାଳୀ ବେତାଳୀ ଚଣ୍ଡୀ ଚାମୁଣ୍ଡା ଡାକିନୀ
ମେଦମେଦା ଖାଇ କଲେ କଳକଳା ଧ୍ୱନି ।
ଅବଚ୍ଛିନ୍ନେ ବିନ୍ଧୁଛନ୍ତି ପ୍ରଭୁ ନାରାୟଣ
ଯହିଁକି ଚାହିଁଲେ ତହିଁ ପଡ଼ୁଅଛି ବାଣ ।
ଅଠର ଯୋଜନ ଦୀର୍ଘ ପ୍ରସ୍ଥରେ ସେ ପଦା
ତାଳେକ ଉଚ୍ଚରେ ମଣ୍ଡା ପଡ଼ି ହେଲେ ଗଦା
ଶୁକ ବୋଲନ୍ତି ଯେ ଶୁଣ ପରୀକ୍ଷ ନୃମଣି
ଅନେକ ସୈନ୍ୟ ମାଇଲେ କୋପେ ଚକ୍ରପାଣି ।
ଜରାସନ୍ଧ ଆଦିକରି ସକଳ ନୃପତି
ଘୋରଯୁଦ୍ଧ ଦେଖି ମନେ କଲେ ମହାଭୀତି ।
ଦମଘୋଷ ବୋଲେ ଶୁଣ ମଗଧ ଈଶ୍ୱର
ଆଜର ସଂଗ୍ରାମ ହେଲା ଅତି ଗୁରୁତର ।
ପଡ଼ିଲେ ଅସଂଖ୍ୟ ହାତୀ ରଥୀ ସୈନ୍ୟବଳ
ଲକ୍ଷେ ରାଜାଙ୍କର ସୈନ୍ୟ ମଲେଣି ସକଳ ।
ଏକେକେ ସେ ଦୁଇ ଭାଇ ଏଡ଼େ କୃତ୍ୟ କଲେ
ଇଷ୍ଟବନ୍ଧୁ ସହୋଦର ସର୍ବେ ନାଶ ଗଲେ ।
ଏତେବୋଲି ସଇନ୍ୟକୁ ଦୁହେଁ ଦେଲେ ଚାହିଁ
ଅକ୍ଷତ ହୋଇଣ ଯୋଦ୍ଧା ଜଣେ କେହି ନାହିଁ
ଚାରିଆଡ଼େ କୁଢ଼ କୁଢ଼ ଦିଶୁଛନ୍ତି ମଣ୍ଡା
ପ୍ରାଣଥିବା ଲୋକେ ହୋଇ ନପାରନ୍ତି ଛଡ଼ା ।
କର ଚରଣ କାହାର ଯାଇଅଛି ଛିଡ଼ି
ଜାନୁ ଭଗ୍ନ ହୋଇ ଥୋକେ ରହିଛନ୍ତି ପଡ଼ି ।

ସବୁରି ଶରୀରେ କ୍ଷତ ଶସ୍ତ୍ର ଆଘାତରୁ
ମନ୍ଦାର କୁସୁମ ପ୍ରାୟେ ଦିଶୁଅଛୁ ଦୂରୁ ।
ଜରାସନ୍ଧ ବୋଲେ କେହି ନ କର ଶୋଚନା
ମାରିବା ମରିବା ବୃତ୍ତି କ୍ଷତ୍ରିୟର ଏନା ।
ଯେବଣ କାଳକୁ ଯୋଗଥାଏ ଯେଉଁ କଥା
ଅବଶ୍ୟ ଘଟଇ କେବେଁ ନୁହଇ ଅନ୍ୟଥା ।
ଏଥିକୁ ଶୋଚନା କଲେ ହେବ ଆମ୍ଭ ଅଯଶ
କ୍ଷତ୍ରିୟ ବିଦ୍ୟାରେ ମୁଖ୍ୟ ଅଟଇ ସାହସ ।
ଏକଥାକୁ ଡରି ଆମ୍ଭେ ଯୁଦ୍ଧକଲେ ତ୍ୟଜା
ଲୋକେ ଅପଖ୍ୟାତି ହେବ ଉପୁଜିବ ଲଜ୍ଜା ।
ଦୁଇଜଣ ଯୁଦ୍ଧକଲେ ଜଣେ ନଷ୍ଟେ ହାରେ
ଛିଦ୍ର ଜଗିଥିଲେ ଶତ୍ରୁ ପଡ଼େ ଆୟତରେ ।
ସବୁକାଳରେ ପ୍ରାଣୀର ନଥାଇଟି ଦୁଃଖ
ସମୟେକ ଦୁଃଖ ପାଇ ଭୋଗକରେ ସୁଖ ।
ଲାଭହାନି ଶୁଭାଶୁଭ ଜନ୍ମମୃତ୍ୟୁ ଭୟ
ସଙ୍ଗେ ଘେନି ପ୍ରାଣୀମାନେ ହୁଅନ୍ତି ଉଦୟ ।
ଯେବଣ କାଳକୁ ଯେଉଁ କଥା ଥାଏ ଯୋଗ
ସେକ୍ଷଣେ ନ ଯାଇ ନଷ୍ଟେଁ ହୁଅଇ ତା ଭୋଗ ।
ଏକଥା ବିଚାରି କେହି କାହୁଁହିଁ ନ ଡର
ଏକ ମଖ ହୋଇ ଚାଲ କରିବା ସମର ।
ସଂସାରେ ଅଜରାମର ନୁହେଁ କାହା ଦେହ
ସାହସକୁ ଲକ୍ଷ୍ମୀ ବୋଲି ଶାସ୍ତ୍ରେ ଅଛି କହି
ନନ୍ଦ ଗଉଡ଼ର ପୋଏ ଆମ୍ଭ ସଙ୍ଗେ ସରି ।
ହେଲେ କମ୍ପା ଚାରିବେଳ ଯାଇଆନ୍ତେ ହାରି
ଆଜ ସଂଗ୍ରାମରେ ତାଙ୍କୁ ଥିଲା ଏତେ ଯଶ
ଆମ୍ଭଙ୍କୁ ନ ପାରି ଆମ୍ଭ ସୈନ୍ୟ କଲେ ନାଶ ।
ଏହି ଥର ଜଣାଯିବ ଥିଲେ ବୀରପଣ
ସମସ୍ତେ ବେଢ଼ି ଘେନିବା ଚାଲ ତାଙ୍କ ପ୍ରାଣ ।
ଏମନ୍ତ ବିଚାରି ସର୍ବେ ବାହାରିଲେ ବେଗେ
ରଥ ଚଢ଼ି ଜରାସନ୍ଧ ଧାଏଁ ଆଗେ ଆଗେ ।
ତା ପଛରେ ଗୋଡାଇଲେ ସକଳ ନୃପତି
ଯେ ଯାହାର ଦଣ୍ଡ ସାଜ ସଜ୍ଜରେ ଚଳନ୍ତି ।
ଢୋଲ ଦମାଲୁ ଟମକ ବୀରଭୂର ଧ୍ୱନି
ପାଦଘାତେ କମ୍ପମାନ ହୋଇଲା ମେଦିନୀ ।
ସମସ୍ତେ ଧନୁରେ ସନ୍ଧି ଧରିଛନ୍ତି ବାଣ
ତର୍ଜନ୍ତି ଗର୍ଜନ୍ତି ସାରେ କହି ଯେଝା ଟାଣ ।

ସିଂହନାଦ କରି ବାହାସ୍ଫୋଟ କେ ମାରଇ
କେ କାହାକୁ ପଛ କରି ଆଗକୁ ଠେଲଇ ।
ଊର୍ଦ୍ଧ୍ୱବାହୁ ହୋଇ କେହି ଶାସ୍ତ୍ର ଫୋପାଡ଼ନ୍ତି
ବିଟପ ଗଣ୍ଡରେ ଥୋକେ ଢେଇଁଣ ଧରନ୍ତି ।
ଥୋକେ ଆଡ଼ଚରା ମାରି କରନ୍ତି ପଦ୍ୱଜ
ମାଲ ସନ୍ଧାଣରେ ଥୋକେ ଯୋଦ୍ଧା ହସ୍ତସଜ
କଳକଳା ରବ ଦେଇ ଧାମନ୍ତି ସକଳେ
ଭମ୍ଭୁଙ୍କର ଶବଦରେ କୁରୁମ ଉଛୁଳେ ।
ମାର ମାର ହାଣ ହାଣ ଧର ଧର ଧ୍ୱନି
ପାଦ ଭରେ ଥରହର କମ୍ପଇ ମେଦିନୀ ।
ଶୁକମୁନି କହୁଛନ୍ତି ପରୀକ୍ଷିତ ଆଗେ
ଏମନ୍ତେ ଅସଂଖ୍ୟ ସୈନ୍ୟ ମାଡ଼ିଯାନ୍ତେ ରାଗେ
ଶ୍ରୀକୃଷ୍ଣ କହିଲେ ବଳରାମଙ୍କୁ ଦେଖାଇ
ଜରାସନ୍ଧ ଆସୁଅଛି ଦେଖ ଆହେ ଭାଇ ।
ପ୍ରତିଜ୍ଞା କରିଅଛଇ ସୈନ୍ୟର ବଳେ
ଅନେକ ଯୁଦ୍ଧ କରିବ ଆଜ ଅଙ୍ଗିଛଳେ ।
ବଳରାମ କହିଲେ ମୁଁ ତୋତେଁ କରେ ଭୟ
ମାରିବୁ କି ନମାରିବୁ କହ ତା ନିଶ୍ଚୟ ।
ବୃରଉଣା ଲକ୍ଷେ ରାଜା ହୋଇଛନ୍ତି ମେଳ
ମୋ ଆଗରୁ ଜଣେ କେହି ନ ଯିବେ ଉବୁରି
ସମସ୍ତଙ୍କୁ ସଂହାରିବି ମୂଷଳରେ ଆଜ
ପୃଥ୍ୱୀଭାର ନାଶଯାଇ ହେବ ଦେବ କାର୍ଯ୍ୟ ।
ରାମଙ୍କ ମୁଖରୁ ଏହା ଶୁଣି ଚକ୍ରପାଣି
ବିନୟରେ ଜଣାଇଲେ ଯୋଡ଼ି ବେନିପାଣି ।
ମୋ ବଚନ ଘେନି ସ୍ୱାମୀ କୋପ ନ କରିବା
ଦେବକାର୍ଯ୍ୟ ପାଇଁ ଏଥୁ ଅପସରି ଯିବା ।
ପଣ୍ଡୁରାଜା ହୋଇଛନ୍ତି ଯମପୁର କଷ୍ଟୀ
ତାଙ୍କପାଇଁ ରାଜସୂୟ କରିବେ ଯୁଧିଷ୍ଠି ।
ଅତି ବଳୟାର ଜରାସନ୍ଧ ଦଣ୍ଡଧାରୀ
ଛୟାଣୋଇ ସସ୍ର ରାଜା ଅଛି ବନ୍ଦୀ କରି ।
ସମୟରେ ଜରାସନ୍ଧ କରି ମହାରଣ
ଏକାବେଳେ ନେବୁ ସବୁ ରାଜାଙ୍କର ପ୍ରାଣ ।
ଥୋକାଏ ଦୁଷ୍ଟଙ୍କ ପ୍ରାଣ କରିବ ଏ ନାଶ
ମହାଭାରତ ଯୁଦ୍ଧକୁ ହୋଇବ ଉଷ୍ଣାସ ।
ସବୁ ରାଜା ଭୁଣ୍ଡ କରିହେବ ଏହି ଜସ
ଅସୁରଙ୍କୁ ନାଶି ଆମ୍ଭେ ଖଣ୍ଡିବା ଭୂଭାର ।

ଏବେ ତ ଅନେକ ସୈନ୍ୟ ହୋଇଲେଣି ନାଶ
ପିଠିଦେଇ ଗଲେ ଆମ୍ଭେ ନାହିଁ ଅପଯଶ ।
ଏଥିରୁ ପୌରୁଷ ପାଇ ସବୁ ନୃପମଣି
ଲେଉଟି ଆସିବେ ସମଦଣ୍ଡ ସାଜି ପୁଣି ।
ଏସନକ ଆଜ୍ଞା ଧର୍ତ୍ତୁଁ ହେଲେ ଜଗନ୍ନାଥ
ସନ୍ତୋଷ ହୋଇଲେ ଶୁଣି ରେବତୀର କାନ୍ତ ।
ଏମନ୍ତ ବିଚାରି ରାମକୃଷ୍ଣ ବେନିଭାଇ
ସ୍ଥିର କଲେ ସଂଗ୍ରାମରୁ ପିଠି ଦେବାପାଇଁ ।
ସମୁଦ୍ର ମଧ୍ୟରୁ ଯେହ୍ନେ ଉଠଇ ଲହରି
ତେସନ ପ୍ରକାରେ ସୈନ୍ୟ ଆସୁଛନ୍ତି ଘେରି ।
ସାରଥିଙ୍କୁ ଆଜ୍ଞା ଦେଲେ ଲକ୍ଷ୍ମୀଦେବୀ ନାହା
ପିଠିଦେଇ ଯିବା ରଥ ଲେଉଟାଇ ବାହା ।
ଆଜ୍ଞା ପ୍ରମାଣେ ସାରଥି ଫେରାଇଲା ଯାନ
ସଂଗ୍ରାମରେ ପିଠିଦେଲେ ରାମ ଭଗବାନ ।
ଅଶ୍ୱବାଗ ଧରି ସୂତ ବାହେ ଅତିବେଗେ
ପବନଠୁଁ ଖରେ ଯାନ ଗଲା ଶୂନ୍ୟମାର୍ଗେ ।
ରାମକୃଷ୍ଣ ପିଠି ଦ୍ୟନ୍ତେ ହସି ଜରାସନ୍ଧ
ସୈନ୍ୟଙ୍କୁ ବୋଇଲା ଦେଖ ଏ ଗଉଡ଼ ମନ୍ଦ
ଉଣାବଣା ସୈନ୍ୟ ଦେଖି ମରୁଥିଲେ ରହି
ଆନ୍ତ ଆକଟ ପଡ଼ନ୍ତେ ଗଲେ ପିଠିଦେଇ ।
କେଶରୀ ଆଗରେ କାହୁଁ ରହିବ ଶୃଗାଳ
ମାର୍ଜ୍ଜାର ସଙ୍ଗତେ ମୂଷା କରିବ କି ଗୋଳ ।
ମଣ୍ଡୁକ ବଳେ କି ଜିଣିପାରେ କାଳସର୍ପ
ହରଣ କରିବ କାହୁଁ ଶାର୍ଦ୍ଦୁଳର ଦର୍ପ ।
ପର୍ବତ ସମାନେ ଯେବେ ହୋଇବ ତୂଳାରାଶି
କଞ୍ଚିତ ଅନଳ ତାକୁ ପାରିବ କି ଧ୍ୱଂସି ।
ମିଛେହିଁ ପ୍ରତିଜ୍ଞା କରି କହୁଥିଲ କଥା
କାର୍ଯ୍ୟକାଳେ ତାହା ସବୁ ହୋଇଲା ଅନ୍ୟଥା
ଏତେ ବୋଲି ସଇନ୍ୟଙ୍କୁ ଆଜ୍ଞାଦେଲେ ଦୃଢ଼େ
ପଛରୁ ଗୋଡ଼ାଇ ମାର ପଳାନ୍ତି ଗଉଡ଼େ ।
ଶାଲ୍ୱରଜା ବୋଇଲା ସେ ଏହିମନ୍ତ ହୋଇ
ପାଞ୍ଚବେଳ ପରଯନ୍ତେ ଗଲେଣି ପଳାଇ ।
ହାତେ ହାତେ ଧରୁ ଧରୁ ଫେଡ଼ାଇଣ ଯାନ୍ତି
ଆଉ କି ଲୋଡ଼ିଲେ ଧରି ପାରିବା ଏ ଘାନ୍ତ ।
ପାଦେ ପାଦେ ଲାଗିଥାଏ ନ ପାରନ୍ତି କେହି
ସେ ଏବେ ଅଛନ୍ତି ବେନି ରଥରେ ଆରୋହି ।
ଦେବ ଆସନ ପରାୟେ ଦଶଇ ସେ ଯାନ
ପବନ ବେଗରେ ଶୂନ୍ୟେ କରୁଛି ଗମନ ।
ଅନିମିତ୍ତେ ଗର୍ଜ୍ଜି ହେବା କପାଁ ଆମ୍ଭେ ଆଉ
ଏ ଘାନ୍ତ ଯାଇ ସେ ଥୋକେଦିନ ବଞ୍ଚିଥାଉ ।
ଶାଲ୍ୱର ବଚନେ ଜରାସନ୍ଧ ହେଲା ତୁନି
ଦମଘୋଷ ବୋଲେ ଆଜ ରୁହାଅ ସଇନି ।
କାଲି ଜଣାଯିବ ରାମକୃଷ୍ଣ ଥିବେ ଯହିଁ
ଦେଶାଉର ବୋଲେ ଯିବା ସମଦଣ୍ଡ ବାହି ।
ଏକଥା ଶୁଣି ଚୂହାନ ବେଗହୋଇ ଗଲା
ଆଗୁଆଣି ଥାଟ ଯାଉଥିଲେ ରୁହାଇଲା ।
ନୈଋଗିର ତଳଭାଗେ ଥୋକେ ଦୂରଗଲେ
କାବେରୀ ତଟିନୀ ତୀରେ ପ୍ରବେଶ ହୋଇଲେ ।
କୁଣ୍ଡଳୀ ନାମରେ ତହିଁ ଏକ ଗିରିବର
ପଚିଶ ଯୋଜନ ଉର୍ଦ୍ଧ ଯୋଜନେ ଓସାର ।
ସେ କୁଣ୍ଡଳୀ ଗିରିତଳେ ବସ୍ତ୍ରଘର ଟାଣି
ଭଗ୍ନବଳ ହୋଇ ବସା କଲେ ନୃପମଣି ।
କେତେବେଳେ ପଡ଼ିଲେ ତା ଆଦିଅନ୍ତ ନାହିଁ
ଯେ ଯାହାର ଅନୁରୂପେ ଛନ୍ତି ପୀଡ଼ା ପାଇ ।
କାହାର ପିତା ପଡ଼ିଲା ପଡ଼ିଲା କା ପୁତ୍ର
କାହାର ମଉଳା ମଲା କାର ଭ୍ରାତ ।
ଇଷ୍ଟବନ୍ଧୁ ସହୋଦର ପ୍ରିୟ ପୁତ୍ର ସଖା
କାହାର ବଂଶ ପଡ଼ିଲେ ଜଣେ ଥିଲେ ଏକା ।
ଆର୍ତ୍ତନାଦେ ଯେ ଯାହାର ନାମମାନଧରି
ବିକଳେ କାନ୍ଦିଲେ ବନ୍ଧୁବାନ୍ଧବଙ୍କୁ ସ୍ମରି ।
ଖୁଡ଼ୁତା ପୁତୁରା ଭାଇ ତନୟ ସ୍ୱଜନ
ଗୁଣ ବାହୁନି କରନ୍ତି ବିକଳେ ରୋଦନ ।
ନିରନ୍ତର ଥାଟମଧ୍ୟେ ପଡ଼ିଲା ଦୋବାଳି
ସମସ୍ତେ ସନ୍ତୋଷ ଚିତ୍ତେ କଲେ ହାଲିହୋଳି
ମନର ବେଦନା ଜାଣି ମନେ ଦୁଃଖ ହୋଇ
ଏକକୁ ଆରେକ ବୋଧି କରୁଛନ୍ତି ତୁନି ।
ଏମନ୍ତ ସମୟେ ଅସ୍ତ ହେଲେ ଗ୍ରହପତି
କହୁଁ କହୁଁ ପରବେଶ ହେଲା ରାତି ।
ଜରାସନ୍ଧ ଆଦି ନୃପେ ହୋଇ ଯେତେ ସୈନ୍ୟ
ନିତ୍ୟକର୍ମ ସାରି ସର୍ବେ କଲେକ ଭୋଜନ
ଜଳପାନ କରି ହାତି ଘୋଡ଼ା ସୁସ୍ଥହେଲେ
କାବେରୀ ନଦୀର ତୀରେ ନିଶାରେ ଶୋଇଲେ ।

ସ୍ୱଭାବ ଗ୍ରୀଷମ ଋତୁ ପୁଣି ଜ୍ୟେଷ୍ଠମାସ
ପ୍ରଚଣ୍ଡ ପବନ ନାହିଁ ସୂର୍ଯ୍ୟର ତରାସ ।
ଆବର ସବୁରି ଅଙ୍ଗେ ଗନ୍ଧ ଅଛି ଘୂଷି
ଚନ୍ଦ୍ର ଆହ୍ଲାଦରେ ନିଦ୍ରାଗଲେ ଭୂମି ଲୋଟି ।
ଶୁଣ ହୋ ଶ୍ରେଷ୍ଠ ରାଜା ବଦନ୍ତି ସେ ମୁନି
ଇତି ଶ୍ରୀପୁଣ୍ୟପୁରାଣ ହରିବଂଶ ଧ୍ୱନି ।
ଏଥୁଅନନ୍ତରେ ବଳଦେବ ଜଗନ୍ନାଥ
ଥୋକେ ଦୂର ଯାଏ ବାହୁଗଲେ ଯେଣୁରଥ ।
ଜରାସନ୍ଧ ସୈନ୍ୟ କ୍ଷୟକରି ଦେବସ୍ୱାମୀ
ପାଦୁକା ମନ୍ତ୍ର ସ୍ମରଣ କଲେ ଅନ୍ତର୍ଯ୍ୟାମୀ ।
ସାରଥି ଗୋଚରରେ ଦୁହେଁ ଦୁଇରଥ ଦେଇ
ବୋଇଲେ ଗନ୍ଧମାର୍ଦ୍ଦନେ ଥୁଅ ଏଥୁ ନେଇ
ଏତେ ବୋଲି ରଥୁ ଓହ୍ଲାଇଲେ ଭାଇବେନି
ଆଜ୍ଞା ପ୍ରମାଣେ ସାରଥି ଗଲେ ରଥ ଘେନି ।
ଗନ୍ଧମାର୍ଦ୍ଦନ ପର୍ବତେ ଥୋଇଲେ ସେ ଯାନ
ଶ୍ରୀପଦ୍ମରେ ବିଜେ କଲେ ରାମ ଭଗବାନ ।
ଶଙ୍ଖ ଚକ୍ର ଗଦା ହଳ ମୁଷଳାଦି ଥୋଇ
ଶୂନ୍ୟହସ୍ତ ହେଲେ ରାମକୃଷ୍ଣ ବେନି ଭାଇ ।
ପାଦୁକା ମନ୍ତ୍ର ସୁମରି ଯାଇ ଅତିବେଗେ
ତକ୍ଷଣେ ପ୍ରବେଶ ହେଲେ ମଧୁପୁର ଲଗେ ।
ସମସ୍ତ ଯାଦବମାନେ ଥିଲେ ବାଟ ଚାହିଁ
ଦୁଇଭାଇ ଦରଶନ କଲେ ବେଗେ ଯାଇ ।
ଉଗ୍ରସେନଙ୍କୁ ଦେଖିଣ ରାମଚକ୍ରଧାରୀ
ପାଦରେ ଶୁତିଲେ ଆଗେ ନିଜଗ୍ଲାନି କରି ।
ବସୁଦେବ ପାଦେ ନମି ଭିତରକୁ ଗଲେ
ଇନ୍ଦୁମତୀ ଦେବକୀ ଏ ଦୁହିଙ୍କୁ ବନ୍ଦିଲେ ।
ସଭାରେ କହିଲେ ପୁଣି ଯୁଦ୍ଧର ବାରତା
ଶୁଣି ଶଙ୍କାକଲେ ଉଗ୍ରସେନ ମହାରଥୀ ।
ଅନ୍ତଃପୁର ମଧ୍ୟେ ଯାଇ ନିତ୍ୟକର୍ମ ସାରି
ରାତ୍ର ପ୍ରହରେ ମଣୋହି କଲେ ରାମହରି ।
ଆପେ ଇନ୍ଦୁମତୀ ରାଣୀ ପରଷନ୍ତି ଅନ୍ନ
କ୍ଷୁଧା ଆରତେ ଭୁଞ୍ଜିଲେ ରାମ ଭଗବାନ ।
ନାନାଦି ବ୍ୟଞ୍ଜନ ସୂପ ଶାଳିଅନ୍ନ ଘୃତ
ଦଧି ଦୁଗ୍ଧ ଛେନା କ୍ଷିରି କ୍ଷିରିଷା ନବାତ
ଇକ୍ଷୁ ପଇଡ଼ର ଜଳ ଖଣ୍ଡ ବାସପାଣି
ନାନାଦି ପ୍ରକାରେ ପିଠା ପରଷନ୍ତି ରାଣୀ ।

ଲକ୍ଷ୍ମୀବଲ୍ଲଭ ମଣୋହି କରୁଛନ୍ତି ଯହିଁ
କେଉଣ ପଦାର୍ଥ ଅବା ନ ମିଳିବ ତହିଁ ।
ଚଉରାଶୀ ମଣ୍ଡପୁଳି ଯୋଗାଡ଼ ସେ ପ୍ରତି
ସମତୁଲ କରି ପରଷିଲେ ଇନ୍ଦୁମତୀ ।
ଦେବକୀ ଦେଖି ଆଲଟ ଘେନିଣ ଶ୍ରୀକରେ
ବସିଲେ ସନ୍ନିଧେ ଉଲ୍ଲାସହୋଇ ଧୀରେ ଧୀରେ
ଭୋଜନେ ସନ୍ତୋଷ ହୋଇ ଉଠି ଭାଇବେନି
ଆଚମନ କଲେ ଦୁହେଁ ବାସଜଳ ଘେନି ।
ଶ୍ରୀମୁଖ ପୋଛିଣ ପୁଣି ତାମ୍ବୁଳ ଭୁଞ୍ଜିଲେ
ପରିଶ୍ରମ ପାଇ ରତ୍ନଖଟେ ନିଦ୍ରାଗଲେ ।
ଇତି ଶ୍ରୀଭାଗବତ ପୁରାଣ ପୁଣ୍ୟମସ୍ତେ
ଇଦଂ ଦ୍ୱିତୀୟ ଅଧ୍ୟାୟ ସମାପତ ହୁଏ ।
ଜୟ ଦିନକର ନାଥ ଜୟ ଜ୍ୟୋତିର୍ମୟ
ଅକ୍ଷୟ ଅବିନାଶ ତୁ ଅବିଶ୍ରାମ କାୟ ।
ତିମିର ବିଦାରଣ ତୁ ଛାୟାଦେବୀ ସାଇଁ
କଳ୍ପାଦି ପୁରୁଷ ତୋର ଜନ୍ମ ମୃତ୍ୟୁ ନାହିଁ ।
କାଳାନ୍ତକ ଯୁଗାନ୍ତକ ଲୟାନ୍ତକ ମୂର୍ତ୍ତି
ନିହନ୍ତା ବିହନ୍ତା ତୁ ହେ ଅଗତିର ଗତି ।
ତାରି ବାର ନକ୍ଷତ୍ର ଯେ ଗ୍ରହ ଅତିଥିଆଦି
ଆଦି ଅନ୍ତ ମଧ୍ୟେ ତୋର ଜ୍ୟୋତି ଶୂନ୍ୟଭେଦି
ପୃଥିବୀ ସଲିଳ ତେଜ ବାୟୁବ ଆକାଶ
ଏ ପଞ୍ଚ ମହାଭୂତ ତୋ ଶରୀରୁ ପ୍ରକାଶ ।
ଭୂତ ଭବିଷ୍ୟତ ବର୍ତ୍ତମାନ କାଳକର୍ତ୍ତା
ସର୍ବଭୂତ ଅନ୍ତର୍ଯ୍ୟାମୀ ଆଦିତ୍ୟ ଦେବତା ।
କାର୍ଯ୍ୟ କାରଣ କରତା ତ୍ରୈଲୋକ୍ୟର ଚକ୍ଷୁ
ଅନୁବ୍ରତେ ଜଗତର ହାନିଲାଭ ଦେଖୁ
ଚାରିବେଦ ଷଡ଼ଶାସ୍ତ୍ର ଅଠର ପୁରାଣ
ଏ ତୁମ୍ଭ ଶରୀରୁ ସ୍ୱାମୀ ହୋଇଛି ନିର୍ମାଣ ।
ଚଣ୍ଡ ପ୍ରଚଣ୍ଡ ବିଚଣ୍ଡ ପୁଣି ମହାମାଳ
ବହଳ ଚଞ୍ଚଳ ଉଚ୍ଚୈଃଶ୍ରବା ମହାବଳ ।
ଏମନ୍ତେ ସପତ ଅଶ୍ୱ ରଥେ ଅଛୁ ଯୋଚି
ଜନ୍ମ ମରଣ ଏହାଙ୍କୁ ନ ବାଧଇ କିଛି ।
ଏ ଅଶ୍ୱ ଅଟନ୍ତି ଉଚ୍ଚ ବତିଶ ଯୋଜନ
ଅପ୍ରମୟ ପୁରୁଷ ତୁ ସ୍ୱୟଂ ଭଗବାନ ।
ଏକଗୋଟି ଚକ୍ର ଶୋଭାପାଏ ତୋର ରଥେ
ତିଳେହେଁ ବିଶ୍ରାମ ନାହିଁ ଗମେ ଶୂନ୍ୟପଥେ ।

କଶ୍ୟପ ନନ୍ଦନ ନାଥ ନାମ ଦିବାକର
ଦିନ ମେରୁ ପ୍ରଦକ୍ଷିଣ କରେ ରଥ ଯାର ।
ପଞ୍ଚଭୂତ ପଞ୍ଚତତ୍ତ୍ୱ ପଚିଶ ପ୍ରକୃତି
ଅନ୍ତର୍ଯାମୀ ପୁରୁଷ ତୁ ସର୍ବଭୂତେ ସ୍ଥିତି ।
ତୁ ଉଦେ ହୁଅନ୍ତେ ସୃଷ୍ଟି ହୁଅଇ ପ୍ରକାଶ
ସ୍ୱାମୀ ତୋ ଅଭାବେ ପୁଣି ସୃଷ୍ଟି ଯାଏ ନାଶ
ତୁମ୍ଭେ ଦେବ ଆଦିଅନ୍ତ ତୁମ୍ଭେ ସେ ଅନାଦି
ତୁମ୍ଭେ ଜଳ ସ୍ଥଳ ବାୟୁ ଅଗ୍ନି ଶୂନ୍ୟଭେଦି ।
ଅଶେଷ ମହିମା ଯାର ଆଦିଅନ୍ତ ନାହିଁ
ମୁଁ କିସ ବର୍ଣ୍ଣିବି ଅବା ନରଦେହ ବହି ।
ଶ୍ରୀବିରଞ୍ଚି ନାରାୟଣ ପାଦେ ମୋର ସେବା
ଅଚ୍ୟୁତ ଦାସ କବିକୁ ଗତି ମୁକ୍ତି ଦେବା ।

—*—

## ଜରାସନ୍ଧର ଷଷ୍ଠବାର ଧାଡ଼ି

ଏଥୁଅନ୍ତେ ପରୀକ୍ଷିତ ନାମେ ମହାରାଜା
ଶୁକମୁନି ଚରଣରେ କଲେ ଦିବ୍ୟପୂଜା ।
ଗନ୍ଧ ପୁଷ୍ପ ଧୂପ ଦୀପ ଦେଇ ଆନନ୍ଦରେ
ପୁଣି ପଚାରଇ ରାଜା କରଯୋଡ଼ି ଶିରେ ।
ହେ ମୁନିକହିବା ମୋତେ ଶ୍ରୀହରି ଚରିତ
ତବ ମୁଖୁ ଶୁଣିଲେ ମୁଁ ହୋଇବି ମୁକତ ।
ଶୁଣିଲି ପଞ୍ଚମ ଧାଡ଼ି ଜରାସନ୍ଧ ରଣ
ତଦନ୍ତରେ ଆନକଥା ହେଲା କିସ ପୁଣ ।
ତା ମୋତେ ବିସ୍ତାରି କରି କହ ମହାମୁନି
ଶରୀର ପବିତ୍ର ହେବ ଶୁଣି ହରିଧ୍ୱନି ।
ରାଜା ବାକ୍ୟେ ବୋଲନ୍ତି ସେ ଶୁକ ମହାଯତି
ସାବଧାନ ହୋଇ ଶୁଣ ପଣ୍ଡୁ ପଣନାତି ।
କାବେରୀ ନଗର ପୁରେ ଜରାସନ୍ଧ ଥିଲା
ରାତ୍ରି ପ୍ରହରେକ ଥାଉଁ ଶଯ୍ୟାରୁ ଉଠିଲା ।
ପାତ୍ର ମନ୍ତ୍ରୀମାନଙ୍କୁ ସେ ଡକାଇଣ କତି
ସବୁରି ମୁଖକୁ ଚାହିଁ ବୋଲେ ସେ ନୃପତି ।
କାଲି କଥାମାନ ମନେ ଅଛି କି ଚିତାଇ
ଆମ୍ଭ ପୁରୁ ଗଉଡ଼େ ଗଲେ ପିଠିଦେଇ ।
କାହିଁ ସେ ବିଶ୍ରାମ କଲେ ରହି ନିଶାଭାଗେ
ଏସନ ବାରତା ଖୋଜିଆସ ଧାଇ ବେଗେ ।
ଶତ୍ରୁଙ୍କର ଛିଦ୍ରକୁ ଜାଣ ସନ୍ଧାନ ନ କଲେ
କାର୍ଯ୍ୟହାନି ହୁଅଇଟି ବିଳମ୍ବ ହୋଇଲେ ।

ସେ ଦୁହିଙ୍କ ଯୋଗୁଁ ମୋର ହେଲା ସବୁ କ୍ଷତି
ଜୁଆଇଁକୁ ମାରି ନାଶ କଲେ ଦୁଇନାତି ।
ହେଣ୍ଟା ପ୍ରହେଣ୍ଟା ମୋହର ଶରଚନ୍ଦ୍ର ମୁଖୀ
ତାହାଙ୍କ ଯୋଗରୁ ଦୁହେଁ ହେଲେ ନିରମାଖୀ
ଆବର ଏବେ ସେ ମୋର ସୈନ୍ୟ କଲେନାଶ
ଜନମୁଖେ ଉପହାସ ହୋଇଲା ପ୍ରକାଶ ।
ଘୋର ଗଉଡ଼ର ପୁଣି ଏତେକ ଭରସା
ଶୋଇଲା ସିଂହକୁ ଆସି କଟାକ୍ଷନ୍ତି ଶଶା ।
ମୋ ନାମ ଶୁଣିଲେ ସ୍ୱର୍ଗେ କମ୍ପେ ପୁରନ୍ଦର
ବୀରବୋଲି କାହାକୁ ମୁଁ ନ କରେ ନଜର ।
ଛୟାଣୋଇସହସ୍ର ରାଜା ଅସଂଖ୍ୟ ସଇନ୍ୟ
ଚତୁରଙ୍ଗ ବଳସାଜି ସଙ୍ଗେ ଅଛି ଘେନ ।
ଉତ୍ସାହ ନ ଛାଡ଼ି ଯୁଦ୍ଧ କର ତୁମ୍ଭେ ଯହୁଁ
ହାତେ ହାତେ ଫେଡ଼ାଇ ସେ ଯାଏ ତୁମତହୁଁ
କି ଉପାୟ କଲେ ଏବେ ତୁଟିବ ସନ୍ଦେହ
ସକଳ ନୃପତିମାନେ ବିଚାରିଣ କହ ।
ଜରାସନ୍ଧ ରାଜାମୁଖୁ ଏ ବଚନ ଶୁଣି
କରଯୋଡ଼ି ବୋଲେ ଦମଘୋଷ ନୃପମଣି ।
ହେ ଦେବ ତୁ ସାବଧାନେ ଶୁଣ ନୃପନାହା
ତୁ କିସ ନ ଜାଣୁ ଆମେ କହିବୁ ସେ ତାହା
ବଳବନ୍ତ ବୁଦ୍ଧିମନ୍ତ ଗୁଣବନ୍ତ ଶକ୍ତା ।
ଭାଗ୍ୟବନ୍ତ ଜ୍ଞାନବନ୍ତ ମଣ୍ଡିତ ବକ୍ତା ।
ଆମ୍ଭେ ସବୁନୃପ ଅନ୍ଧ ତୁମ୍ଭେ ଦିବ୍ୟଚକ୍ଷୁ
ଆପଣା ବଳର ଛାଡ଼ି ଆମ୍ଭଙ୍କୁ କି ପୁଚ୍ଛୁ ।
ତୁମେ ଏକା ରଖୁଆଳ ଆମେମାନେ ଗୋରୁ
ଆମେମାନେ କ୍ଷୁଦ୍ରଗିରି ତୁମେ ମହାମେରୁ ।
ତୁମେ ମହାର୍ଣ୍ଣବ ଆମେମାନେ କ୍ଷୁଦ୍ର ନଦୀ
ତୁମେ ସୁପଣ୍ଡିତ ଆମେ ଅଟୁ କ୍ଷୁଦ୍ର ବୁଦ୍ଧି
ତୁମେ ମହାକଳ୍ପତରୁ ଆମେମାନେ ପତ୍ର
ତୁମେ ଜୀବଆତ୍ମା ଆମେମାନେ ଦେହ ମାତ୍ର ।
ତୁମେ କଇବର୍ତ୍ତ ଆମେମାନେ ଅଟୁ ମୀନ
ତୁମେ ମହାରାଜା ଆମେ ତୁମର ଅଧୀନ ।
ତୁମେ ସୁବିଚାର କରି ଯାହା ଦେବ ଆଜ୍ଞା
ମାନବ କେହି କି ତାହା କରିବ ଅବଜ୍ଞା
ବୀରାଧିବର ମର୍ଦ୍ଦନ ଅଟେ ତୁମ୍ଭ ବାନା
ଘୋର ଗଉଡ଼ଙ୍କ ପାଇଁ ଏତେକ ଶୋଚନା ।

କାହିଁ ଲୁଚି ରହିବେ ସେ ତୁମ୍ଭ ଶତ୍ରୁ ହୋଇ
ସପ୍ତସାଗର ପୃଥ୍ୱୀରେ ନ ରହିବେ କେହି ।
ସ୍ୱର୍ଗ ଅବା ପାତାଳରେ ଲୁଚିବେ ସେ ଯଦି
ଧରି ପାଇଲେ ଯୁଦ୍ଧରେ ଦେବୁ ନଷ୍ଟେ ବାନ୍ଧି
ଏଥିପାଇଁ ମନେ କିଛି ନ କରଣ ଭୟେ
ସ୍ଥିରହୋଇ ଥାଅ ରାତ୍ର ଶେଷହେବା ଯାଏ ।
ଏ କଥାରେ ଅଣୁମାନ ନ ବଳୁର ମନ
ଶୁଣିଣ ସନ୍ତୋଷ ହେଲେ ମଗଧ ରାଜନ ।
ଏଥୁଅନ୍ତେ ନିଶି ପାହି ପ୍ରଭାତ ହୁଅନ୍ତେ
ଦିନନାଥ ବିଜେ କଲେ ଉଦୟ ପର୍ବତେ ।
ଆପଣାର ନିତ୍ୟକର୍ମ ସାରି ସେ ଯାହାରେ
ରାଜାମାନେ ଆସି ବିଜେ କଲେ ଆସ୍ଥାନରେ
ଚର ଆସିବାକୁ ସର୍ବେ ରହିଛନ୍ତି ଚାହିଁ
ବିଚାରନ୍ତି ରାମକୃଷ୍ଣ ଦୁହେଁ ଗଲେ କାହିଁ ।
ଏମନ୍ତ ସମୟେ ଆସି ମିଳିଲେ ଡଗର
କରପତ୍ର ଯୋଡ଼ି ବୋଲେ ଶୁଣ ନୃପବର ।
ରାମ କୃଷ୍ଣଙ୍କ ବାରତା ପାଇଁ ଆମ୍ଭେମାନେ
ଆସିଛୁ କହିବୁ ତାହା ଶୁଣ ଏକମନେ ।
କାଲି ପିଠି ଦେଇ ଗଲେ ଦୁହେଁ ପ୍ରାଣଘେନି
ଯାଉ ଯାଉ ବେଳ ଦଣ୍ଡେ ହୋଇଲା ରଜନୀ ।
ଥୋକେ ଦୂରେ ରଥ ଛାଡ଼ି ପାଦଗାମୀ ହୋଇ
ରାତ୍ର ପ୍ରହରେ ମିଳିଲେ ମଥୁରାରେ ଯାଇ ।
ନଗରେ ପଶିବା ଯାଏ ସଙ୍ଗେ ଆମ୍ଭେ ଥିଲୁଁ
ସନ୍ଦେଶ ଘେନିଣ ତହୁଁ ସତ୍ୱରେ ଆଇଲୁ ।
ଶୁଣି ଜରାସନ୍ଧ ରାଜେ ସନ୍ତୋଷ ହୋଇଲା
ସାଜରେ ସଇନ୍ୟ ବୋଲି ଉଠି ଆଜ୍ଞା ଦେଲା
ବିଷମ ସମରେ ଆଜ ମାରିବି ବଳରି
ଭାଙ୍ଗିବି ମଥୁରାପୁର ଧୂଳିସମ କରି ।
ଚୌରାଶୀ କୋଟି ଯାଦବ ନ ରଖିବି ଲେଶ
ଉଗ୍ରସେନ ସହିତରେ କରିବଇଁ ନାଶ ।
ଅପରାଧ କରଣ ସବୁକଥା ଥିଲି ମୁଁ କ୍ଷମି
ମାନହାନି କାଳେ ଆଉ କାର୍ଯ୍ୟ ନାହିଁ କିଛି ।
ଜାଣିଥିଲି ମୁହିଁ ରାମକୃଷ୍ଣ ମୋର ବାଳ
ଏବେ ଜଣାଗଲା ଯାଦବଙ୍କ ଦୁଷ୍ଟବୁଦ୍ଧି ।
ନାଶିବି ଯାଦବବଂଶ ନ ରଖିବି ତିଳେ
ଯୁଗ ଯୁଗାନ୍ତରେ କଥା ଥିବ ରବିତଳେ ।

ଏତେ ବୋଲି ରାଜା ତିନିବାର ସତ୍ୟ କଲା
କାନ୍ଧରୁ ପଇତା କାଢ଼ି ହସ୍ତରେ ବାନ୍ଧିଲା ।
କାଳସର୍ପ ପ୍ରାୟେ ଘୋର ଗର୍ଜି କୋପଭରେ
ଆକର୍ଷିଣ ବେନି ଗଦା ବୁଲାଇଲା କରେ ।
ଅତି କୋପେ କୋପାନଳ ମଗଧ ନୃପତି
ରଥରେ ଉଠିଲା ସିଂହ ପ୍ରାୟେ କରି ଗତି ।
ସଇନ୍ୟଙ୍କୁ ଆଜ୍ଞାଦେଲା ବେଗେ ହୁଅ ସଜ
ଆଜ୍ଞାମାତ୍ରେ ସଜାଇଲେ ରଥ ଅଶ୍ୱ ଗଜ ।
ଆପଣାର ଅଙ୍ଗବଳ ତେଇଶ ଷଉଣୀ
ସଙ୍ଗେ ଘେନି ମହାରାଜା ହେଲା ଆଗୁଆଣି ।
ପଛରେ ଗୋଡ଼ାଇଛନ୍ତି ଲକ୍ଷେ ନରପତି
ଅର୍ଦ୍ଧ ଆକାଶରେ ଦେବେ ରହିଣ ଦେଖନ୍ତି ।
ବତିଶ ଯୋଜନ ମାଡ଼ି ଚଳେ ସମଦଣ୍ଡ
ପାଦଘାତେ କମ୍ପ ଅଛି ପୃଥ୍ୱୀ ନବଖଣ୍ଡ ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଯେ ରୁକ୍ମଣ
ଦମଘୋଷ ଆଦିକରି ସବୁ ରାଜାଗଣ ।
ମଇଁଷି ଶାର୍ଦ୍ଦୂଳ ଓଟ ଗଧ ସିଂହ ହସ୍ତୀ
ବାଘ ଭାଲୁଆଦି ଯାନ ଚଢ଼ିଣ ଚଳନ୍ତି ।
ଅକଳିତ ଅସଂଖ୍ୟ ଯେ ଜରାସନ୍ଧ ଠାଟ
ଶାଳଶିଳ ବନଭୂମି ମାଡ଼ି କଲେ ବାଟ ।
ଅନେକ ସମ୍ଭାର ବାଦ୍ୟ ବାଜେ ଅପ୍ରମାଣ
ଢୋଲ ଦମାଲୁ ଟମକ ମର୍ଦ୍ଦଳ ନିଶାଣ ।
ଶଙ୍ଖ ଭେରୀ ହୁଳହୁଳି ଘରତୂର ଧ୍ୱନି
ଭୟଙ୍କର ବାଦ୍ୟନାଦେ କମ୍ପିଲା ଅବନୀ ।
ବିଚିତ୍ର ଚାମର ଉର୍ଦ୍ଧ୍ୱେ ଉଡ଼େ ପନ୍ତି ପନ୍ତି
ମେଘାଡ଼ମ୍ବର ଧବଳ ଛତ୍ର ଶୋଭା ପାନ୍ତି ।
ରାଉତ ମାହୁନ୍ତ ରଥୀ ପଦାତିଙ୍କ ମୁଖେ
ଗଗନ ଉଚ୍ଛୁଳି ପଡ଼େ କଳକଳା ଡାକେ
ଶୁଣ ହୋ ପରୀକ୍ଷିତ ରାଜା ଶୁକ ଯେ କହନ୍ତି
ବଢ଼ାଇ ସମ୍ଭାର ଚଳେ ମଗଧ ନୃପତି ।
ଗୁରିଉଣା ଲକ୍ଷେ ରାଜା ଅସଂଖ୍ୟ ସଇନ୍ୟ
ପ୍ରତିଜ୍ଞା କରନ୍ତି କରେ ନାନାଶସ୍ତ୍ର ଘେନି ।
ପବନଠୁଁ ବେଗେ ଠାଟ ଚଳି ପଥ ବାହି
ମଧୁବନ ତୋଟା ଲଗେ ମିଳିଲେ ସେ ଯାଇ
ଚତୁରଙ୍ଗ ବଳ ଘେନି ସର୍ବ ଦଣ୍ଡଧାରୀ
ବେଢ଼ିଲେ ମଥୁରାପୁର ଶତେପୁର କରି ।

ମାର ମାର ଧର ଧର ଶୁଭଇ ଶବଦ
କଳାକଳା ଧ୍ୱନି ଉଠେ ଭୟଙ୍କର ନାଦ ।
ଦ୍ୱାରପାଳମାନେ ଦେଖି ହୋଇଲେ ଉଚ୍ଚାଟ
ଗୃହଦ୍ୱାର ରୁନ୍ଧି ବେଗେ କଳିଲେ କବାଟ ।
ଯାଦବ ସଭାରେ ଯାଇ ଗୃହ ଜଣାଇଲେ
ଦଣ୍ଡ ସାଜି ଜରାସନ୍ଧ ରାଜ୍ୟକୁ ବାହ୍ନିଲା ।
ଅପ୍ରମିତ ରଥବର ଅସଂଖ୍ୟ ପଦାତି
ବାହାରଆଡ଼ ଆବୋରି ଛନ୍ତି ଚଉକତି ।
ତିଳେ ଛିଦ୍ର ନ ଦିଶଇ ପୂରିଛନ୍ତି ଥାଟ
ପେଲି ଆସୁଥିଲେ ଆମ୍ଭେ କଳିଲୁ କବାଟ ।
ବିଗ୍ରହ କରିବା କାଳ ନାହିଁ ଆଉ ଏବେ
ଏକ୍ଷଣି କବାଟ ଭାଙ୍ଗି ଭିତରେ ପଶିବେ ।
ଶୁଣି ସକଳ ଯାଦବେ ପାଇ ମହାଭିତି
ବୋଇଲେ ମଥୁରା ନାଶ ଗଲା ସେ ଏ ଯାନ୍ତି ।
ଆମ୍ଭେମାନେ ଜରାସନ୍ଧ ସଙ୍ଗେ ନୋହୁ ସରି
ଆଗୁଁ ଜାଣିଥିଲେ ଯାଇଥାନ୍ତୁ ଅପସରି ।
ଗୃହ ଉଣା ଲକ୍ଷେ ରାଜା ବର୍ଗୀ ତାହାଘରେ
କି ଯୁଦ୍ଧ କରିବୁ ଆମ୍ଭେ ରହିତା ଗୁମୁରେ ।
ଉଗ୍ରସେନ ରାଜା ବୋଲେ ଯାଦବଙ୍କୁ ଚାହିଁ
ଅନମିତ୍ତେ ଏଡ଼େ ଭୟ କରୁଛ କମ୍ପାଇଁ ।
ଆରତଭଞ୍ଜନ ବାନା ବହେ ଲକ୍ଷ୍ମୀପତି
ରାମକୃଷ୍ଣ ଥାନ୍ତେ ଭୟ କର କାହାପ୍ରତି ।
ଶୁଭାଶୁଭ କର୍ମ କରି ପାରନ୍ତି ଯେ ଆନ
ଦେବାଧିଦେବଙ୍କ ମୁଖ୍ୟ ଯେଉଁ ଭଗବାନ ।
ଯା ନାମ ଧରନ୍ତେ ଯମ ଦଣ୍ଡି ନ ପାରଇ
ସେ ଥାନ୍ତେ ଶତ୍ରୁକୁ ଭୟ କରୁଛ କମ୍ପାଇଁ ।
ଉଗ୍ରସେନ କଥା ଶୁଣି ଯାଦବେ ସନ୍ତୋଷ
କୃଷ୍ଣଙ୍କୁ ବୋଇଲେ ଏବେ କରିବା ଯେ କସ ।
ଛୟାଣୋଇ ସହସ୍ର ରାଜା ଅପ୍ରମିତ ବଳ
ସଙ୍ଗେ ଘେନି ବେଢ଼ିଅଛି ମଗଧ ଭୂପାଳ ।
ସଂଗ୍ରାମେ ତାହାକୁ ଆମେ କେହି ନୋହୁ ସରି
ପାରିଲେ ଆମ୍ଭଙ୍କୁ ରକ୍ଷା କର ଆହେ ହରି ।
ଯାଦବ ଆକୁଳ ହେବା ଦେଖି ଦେବରାୟ
ହସିଣ ବୋଇଲେ ତୁମେ ଗୁଡ଼ ମନୁ ଭୟ ।
କୋଟି ଜରାସନ୍ଧ ଯେବେ ଆସୁଥିବେ ବାହି
ଅବଶ୍ୟ ଏଠାରୁ ଯିବେ ପରାଭବ ପାଇ ।

ଏସନ କହିଣ ଆଜ୍ଞା ଦେଲେ ଦେବରାଜ
ସହସ୍ର ଯାଦବ ତୁମେ ବେଗେ ହୁଅ ସଜ ।
ପ୍ରାଣ ପଣ କରି ଦ୍ୱାରଦ୍ୱାରେ ଲାଗି ଜଗ
ଚତୁରଙ୍ଗ ସେନା ବାନ୍ଧି କର ଗୃହଭାଗ ।
ପାଞ୍ଚସହସ୍ର ରଥ ଏକ ମଣ୍ଡିତ ଯେ ହସ୍ତୀ
ପନ୍ଦର ଅଯୁତ ଅଶ୍ୱ ଖର୍ବେକ ପଦାତି ।
ଉଗ୍ରସେନର ଗୋଚରେ ଏତେ ସୈନ୍ୟ ଦେଇ
ବୋଇଲେ ଦକ୍ଷିଣ ଦ୍ୱାର ବେଗେ ଜଗ ଯାଇ
ଉଦ୍ଧବ ଅନାଧୃଷ୍ଟ ଏ ଥିବେ ତୁମ୍ଭ ସଙ୍ଗେ
ହରିଘାତ ଅଙ୍ଗଛନ୍ତେ ରଣକର ରଙ୍ଗେ ।
ଷାଠିଏ ସହସ୍ର ରଥ ନବଖର୍ବ ହସ୍ତୀ
ଚଉତ ମେବକ୍ଷ ଅଶ୍ୱ ଦ୍ୱିଖର୍ବ ପଦାତି ।
ସାତ୍ୟକି ସହସ୍ରାଜିତ କୃତବର୍ମା ତିନି
ସୁରଥକୁ ବୋଇଲେ ତୁ ଚଳ ଏହା ଘେନି ।
ଶ୍ରୀଭୁଜରେ ଭିଡ଼ି କୋଳ କରି ଜଗନ୍ନାଥେ
ବୋଇଲେ ପଶ୍ଚିମଦ୍ୱାର ଲାଗେ ବାବୁ ତୋତେ
ବଳରାମଙ୍କୁ ବୋଇଲେ ପୁଣି ଲକ୍ଷ୍ମୀସାଇଁ
ଉତ୍ତର ଦ୍ୱାର ଆବୋରି ରଖ ତୁମେ ଯାଇ ।
ସତୁରି ସହସ୍ର ରଥ ଅଯୁତେକ ହସ୍ତୀ
ବତିଶ ସହସ୍ର ଅଶ୍ୱ ନିଖର୍ବ ପଦାତି ।
ଏତେକ ସଇନ୍ୟ ବଳ ତୁମ ସଙ୍ଗେ ଥିବେ
କାଳକୁ ବିଗ୍ରହ କାର୍ଯ୍ୟ କରିବା ହୋଇବେ ।
ଚାଳିଶ ସହସ୍ର ରଥ ଲକ୍ଷେ ମତ୍ତହସ୍ତୀ
ଅଠାଶୀ ସହସ୍ର ଅଶ୍ୱ ବୃନ୍ଦେକ ପଦାତି ।
ଲକ୍ଷେକ ଉଦ୍ଦଣ୍ଡ ବେନି ଲକ୍ଷ୍ୟ ବାଦ୍ୟକାର
ଏତେ ସୈନ୍ୟ ନିଜ ସଙ୍ଗେ ଘେନି ଦାମୋଦର
ପୂର୍ବଦ୍ୱାର ଆବୋରିଲେ ଆପେ ଦେବରାଜ
ସମସ୍ତ ଯାଦବେ ଅସ୍ତ୍ର ଧରି ହେଲେ ସଜ ।
ମରିବୁ ମାରିବୁ ବୋଲି ଗୁଡ଼ନ୍ତି ସେ ରଡ଼ି
କୁଟୁମ୍ବ ସହିତେ ଯେଣୁ ବେଢ଼ିଛନ୍ତି ପଡ଼ି ।
ଯୁବକତେ କଂସ ନୃପତି ଅଜ କୋଟିନିଧି
ଅନେକ ସମ୍ପଦ ପୁରେ ରଖିଛି ସମ୍ପାଦି ।
ଦେବ ଭଣ୍ଡାରରୁ ରତ୍ନ ଆଣିଥିଲା ବାଛି
ଅଚଳା ଲକ୍ଷ୍ମୀ ମଥୁରା ପୁରେ ରହିଅଛି ।
ଏକୁ ଆରେକ ଯାଦବେ କୁବେର ସମାନ
ସଭୁରି ଭଣ୍ଡାରେ ପୂରିଅଛି ରତ୍ନ ଧନ ।

ବଳବନ୍ତ ବିଦ୍ୟାବନ୍ତ ରୂପବନ୍ତ ସର୍ବେ
ଚଉଦଭୁବନ ମଧ୍ୟେ ବିଖ୍ୟାତ ଯାଦବେ ।
ନାରାୟଣ ସ୍ୱାମୀ ରୂପ ଦେଖନ୍ତି ନୟନେ
ଆନ ଲୋକ ହେବ କାହୁଁ ତାଙ୍କର ସମାନେ
ଦ୍ୱାପର ଯୁଗରେ ଭାର ନିବାରିବା ପାଇଁ
ଗୁପତେ ଅଛନ୍ତି ଦେବେ ନରଦେହ ବହି ।
ଚୌରାଶୀ କୋଟି ଯାଦବେ ରଥ ଗଜ ଅଶ୍ୱ
ଆବେଷ୍ଟି ଜଗିଲେ ଯାଇଁ ଦ୍ୱାର ଚଉପାଶ ।
ଯେ ଯାହାର ଖଞ୍ଜାମୂଳେ ରହିଲେ ଆବୋରି
ସହାୟ ହୋଇଲେ ହରେ କରେ ଶସ୍ତ୍ର ଧରି ।
ବଜ୍ର ବାଣ ଛୁଟିକିଣୀ ଫାଶ ବାରକେନା
ପରିଘ ଶାବେଳୀ ଛୁରା କାଣ୍ଡ ତିକ୍ଷ୍ଣ ମୁନା ।
ଏସନ ଦ୍ୱାଦଶ ଜାତି ବାଣ ପରମାଣି
ଯେ ଯାହା ସ୍ଥାନରେ ମାଡ ରହିଲେ ଗୁଉଣୀ
ଅରଖ ଅଙ୍ଗାର ଖାର ଗନ୍ଧକ ମିଶାଇ
ଟିକ୍କଣେ ବାରୁଦ ବାଟି ନଳରେ ପୂରାଇ ।
ସୂତ୍ରରେ ଯନ୍ତ୍ରକୁ ଚୂଳ ଅଗ୍ନି ଢେନ କରେ
ବାଣୁଆ ଜଗିଲେ ବସି କାଙ୍ଗୁର ଉପରେ ।
ପାଞ୍ଚ ବଖରା ମନ୍ଦିର ଅନ୍ତେ ବାନ୍ଧ ମୁହିଁ
ଯତନରେ ଦାରୁଘରେ ସଜାଡ଼ିଲେ ତହିଁ ।
ଫାଶ ଆଡ଼ଣ ଦାଉଣ୍ଡି ଫଳାମୂନ ଝଳ
ଢ଼ାଲ ଢ଼ାଙ୍କଣ ଶତଘ୍ନୀ ଗୁ ରୁଜ ଶାବେଳୀ ।
ଲେଣ୍ଡି ପଥର ବାଟୁଳି ଗଦା ପର୍ଶୁ ତେଣ୍ଟା
ଗଡ଼ ଗୃହପାଖେ ଆଣି ପକାଇଲେ କଣ୍ଟା ।
ଛେଲ ଚକ୍ର କାଣ୍ଡ ଆଦି ନାନା ଶସ୍ତ୍ର ଧରି
ଯାଦବେ ରହିଲେ ଗୃହ ଦ୍ୱାରକୁ ଆବୋରି ।
ଜରାସନ୍ଧ ଆଗେ ଯାଇ କହିଲା ଡ଼ଗର
ହେ ମହିମା ସାବଧାନେ ଶୁଣ ନୃପବର ।
ଗଡ଼ ଗୃହଦ୍ୱାରେ କଳ ଯାରିଲେ କବାଟ
ପ୍ରାଣ ପଣରେ ଯାଦବେ ଜଗିଛନ୍ତି ବାଟ ।
ବଜ୍ର ବାଣ ଛୁଟିକିଣୀ କୁନ୍ତ ବାରକେନା
ନିରନ୍ତରେ ମାରୁଛନ୍ତି ଅସ୍ତ୍ର ଅକଳନା ।
ସକଳ ସୈନ୍ୟ ତୁମ୍ଭର ଶସ୍ତ୍ରପାତ ଭୟେ
କେହି ପଶି ନ ପାରନ୍ତି ଗଡ଼ଦ୍ୱାର ଯାଏ ।
ଗଉଡ଼ ସାଙ୍ଗେଣୀ ଦେଖି ସକଳେ ବୋଲନ୍ତି
ପଶି ନ ପାରିଣ ଲଜ୍ଜା ପାଇବା ଏଯାନ୍ତି ।

ଶୁଣି ମନେ ଶଙ୍କା ପାଇ ସଙ୍କୋଚନ କାଳ
ନେତ୍ର ବୁଲାଇଲା ଚକ ପ୍ରାୟେ ଅନ୍ତରାଳ ।
ପ୍ରଖର ନିଶ୍ୱାସ ବହେ ଘୋର ବାତ ଜାଣି
ବାହା ମୋଡ଼ି ପ୍ରତିଜ୍ଞା ଯେ କଲା ପୁଣି ପୁଣି ।
ରେରେକାର କରି ଉଠେ ଘ୍ରାଣେ ସିଂହରଡ
ଶରଦ କାଳରେ ଯେହ୍ନେ ମେଘ ଘଡ଼ଘଡ ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଯେ ରୁକ୍ମଣ
ଦମଘୋଷ ଆଦିକରି ଯେତେ ନରଗଣ ।
ସମସ୍ତଙ୍କୁ ବସାଇଣ ବୋଲେ ନୃପନାହା
ଶୁଣିଲଟିକ ଡ଼ଗରେ କହୁଛନ୍ତି ଯାହା ।
ଗଡ଼ ସଜାଡ଼ି ଯାଦବେ ଜଗି ରହିଲେଣି ।
ତୁମ୍ଭେମାନେ ରଣେ ତାଙ୍କୁ ପାରିବ କି ଜିଣି ।
ମୁହିଁ ଯେ ପ୍ରତିଜ୍ଞା କରି ଦେଉଅଛି ଧାଡ଼ି
ରାମକୃଷ୍ଣ ନ ଜିଣିଲେ ନ ଯାଏ ବାହୁଡ଼ି ।
କ୍ଷତ୍ରିୟ ବଚନ ଅଟେ ପାଷାଣର ଗାର
ବାକ୍ୟଭ୍ରଷ୍ଟ ହେଲେ ନିନ୍ଦା ପାଇବ ଅପାର ।
ଦମଘୋଷ ବୋଲେ ତୁମ୍ଭେ ଅଟ ମହାରାୟ
ନବଦ୍ୱୀପ ସାତସିନ୍ଧୁ ରଣେ କଲ ଜୟ ।
ବୁଦ୍ଧିବନ୍ତ ବଳବନ୍ତ ବୀର ଶିରୋମଣି
ଦିଗପାଳ ଦେବତାଙ୍କୁ ହେଲ ପାର ଜିଣି ।
ଯାଦବ ମାନଙ୍କେ ତୋତେ କରିବେ ସେ କିସ
ଅଳପ କଥାକୁ କପାଁ କର ବହୁ ରୋଷ ।
ଏକ୍ଷଣି ମଥୁରାପୁର ଭାଙ୍ଗି ଧ୍ୱସ୍ତ କରି
ଯାଦବଙ୍କୁ ଆଣିଦେବ ଜୀବନ୍ତରେ ଧରି ।
ଏଥିକୁ ଯେ ମନେ ଭ୍ରାନ୍ତି ନକର ତୁ କିଛି
କାର୍ଯ୍ୟ କାରଣ ନୋହିଲେ ପଛେ ସିନା ବାଛି
ହେ ଦେବ ବଚନ ମୋର ପୁଣ ନରାଧାର
ଗୃହଭାଗ କରି ଥାଟ ବାଣ୍ଟି ସଜ କର ।
ଏକମୁଖ ହୋଇ ସର୍ବେ ଯୁଦ୍ଧକରି ଆଜ
ଅବହେଳେ ଜିଣିନେବା ଏ ମଥୁରା ରାଜ୍ୟ ।
ତୁମ୍ଭର କାର୍ଯ୍ୟରେ ଆମେ କରି ପ୍ରାଣ ଗାଡ଼
ଯାଦବଙ୍କୁ ସହାରିବୁ ବଳେ ଭାଙ୍ଗି ଗଡ଼ ।
ଦମଘୋଷ ମୁଖୁ ଜରାସନ୍ଧ ଏହା ଶୁଣି
ଗୃହ ଦୁଆରକୁ ଥାଟ ପେଷିଲା ସେକ୍ଷଣି ।
ଦମଘୋଷଙ୍କୁ ରୁକ୍ମିଣ ବୋଲେ ନୃପସାଇଁ
ଦକ୍ଷିଣ ଗଡ଼ ଦୁଆରେ ଲାଗ ତୁମେ ଯାଇ ।

ଚବିଶ ସହସ୍ର ନୃପ ଅଙ୍ଗବଳ ସୈନ
ସହଦେବ କୁମରଙ୍କୁ ସଙ୍ଗେ ଥିବ ଘେନ ।
ଶତସଂଖ୍ୟା ମହାରଥୀ ଥିଲେ ତୁମ୍ଭ ସଙ୍ଗେ
ଯାଦବଙ୍କ ତୁଲେ ରଣ କରି ଯାଇ ବେଗେ ।
ଏତେ ବୋଲି ଶ୍ରୀହସ୍ତରେ ଶାଢ଼ୀ ମାଳାଦେଇ
ବୋଲେ ଏହି ଅନୁକୂଳେ ଯାଅ ଶୀଘ୍ର ହୋଇ
ପୁଣି ଦନ୍ତବକ୍ରଙ୍କୁ ସେ ପାଖକୁ ହକାରି
ବୋଲେ ତୁମ୍ଭେ ପଞ୍ଚବିଂଶ ସହସ୍ର ନୃପ ଧରି
ପଶ୍ଚିମ ଦୁଆରେ ବେଢ଼ି କରି ଯାଇ ରଣ
ଯେ ଆଗେ ପଡ଼ିବ ତାର ଘେନିବ ପରାଣ ।
ପୁଣି ଆଜ୍ଞା ଦେଲା ରାଜା ରୁକ୍ମଣକୁ ଚାହିଁ
ପୂର୍ବ ଦୁଆରେ ସଂଗ୍ରାମ କରି ତୁମ୍ଭେ ଯାଇ ।
ଚବିଶ ସହସ୍ର ନୃପ ଥିବ ତୁମ ସଙ୍ଗେ
ଚତୁରଙ୍ଗ ସେନା ଘେନ ପଶ ରଣ ରଙ୍ଗେ ।
ସଂଗ୍ରାମେ ଶକତା ତୁମ୍ଭେ ଅଟ ମହାରଥୀ
ନିମିଷକେ ଜିଣିପାର ଚରାଚର ପୃଥ୍ୱୀ ।
ତୁମ୍ଭର ବାହାକୁ ବାବୁ କରିଛୁ ମୁଁ ଆଶ
ଯାଦବଙ୍କୁ ରଣେ ମାରି ଛଡ଼ାଅ ମୋ ତ୍ରାସ ।
ତୁମ୍ଭର ମଙ୍ଗଳ ହେଉ ଯାଅ ଆହେ ବୀର
ମୋ ପାଇଁରେ ଅଙ୍ଗିଛନ୍ତି କରିବ ସମର ।
ଶାଲ୍ୱ ଶିଶୁପାଳଙ୍କୁ ସେ ଚାହିଁଣ ବିଶ୍ୱାସେ
ବୋଲେ ତୁମ୍ଭେ ଦୁହେଁ ଜଗିଥିବ ମୋରପାଶେ
ତେଇଶ ସହସ୍ର ରାଜା ଅଙ୍ଗବଳ ସୈନ୍ୟ
ସଜକରି ଏମାନଙ୍କୁ ସଙ୍ଗତରେ ଘେନ ।
ଉତ୍ତର ଦ୍ୱାର ଆବୋରି ସଂଗ୍ରାମ କରିବା
ଯାଦବଙ୍କୁ ଜିଣି ରାମକୃଷ୍ଣଙ୍କୁ ମାରିବା ।
ଶୁଣ ହେ ପରୀକ୍ଷ ରାଜା ଶୁକ ଯେ ବଦନ୍ତି
ଏସନକ ଆଜ୍ଞା ଦେଇ ମଗଧ ନୃପତି ।
ଆପଣାର ଅଙ୍ଗବଳ ତେରଶ କ୍ଷଉଣି
ତେଇଶ ସହସ୍ର ନୃପ ସଙ୍ଗତରେ ଘେନ ।
ଅନେକ ପ୍ରତିଜ୍ଞା କରି ଧାମନ୍ତି ସେ ବୀରେ
ସମ୍ଭାରେ ଲାଗିଲେ ଯାଇ ଉତ୍ତର ଦୁଆରେ ।
ରାଜା ଆଗମନ ଦେଖି ସକଳ ସଇନ
ଆଗରେ ଧାଇଁଣ କଲେ ରେରେକାର ଧ୍ୱନ ।
ଯେ ଯାହାର କଣ୍ଠାମୂଳେ ଲାଗିଲେକ ଯାଇ
ଯେଝା ଅନୁରୂପେ ଅସ୍ତ୍ରଶସ୍ତ୍ର ଯେ ହାଣଇ ।

ଶିର ଅଙ୍ଗତ୍ରାଣ ଲୁହା ଟୋପରେ ସେ କାଟି
ଅକାଟ ଅଫୁଟ ସେନ୍ଥା ପଡ଼ଇ ଅନନ୍ତ ।
ବେଢ଼ିଲେ ସକଳ ନୃପେ ଗଡ଼ ଚତୁର୍ଦ୍ୱାରେ
ନିମ୍ନ ଉର୍ଦ୍ଧ୍ୱ ପରାୟେ ସୈନ୍ୟ ମାଡ଼ି ନିରନ୍ତରେ ।
ତ୍ରେତାଯୁଗେ ଯେହ୍ନେ ଦଶରଥସୁତ ବେନି
ଲଙ୍କାଗଡ଼ ବେଢ଼ିଥିଲେ ଋକ୍ଷ କପି ଘେନି ।
ତେସନେ ଦିଶିଲେ ତହିଁ ଜରାସନ୍ଧ ଥାଟ
ସ୍ୱର୍ଗେ ଥାଇ ଦେବଗଣ ପାଇଲେ ଉଚାଟ ।
ଏକମୁଖ ହୋଇ ସୈନ୍ୟ ପଡ଼ିଲେକ ଧାଇଁ
ପରିଘ ମୁଦ୍ଗର ଗଦା ମାରନ୍ତି ବୁଲାଇ ।
ଯେତେ ଯେତେ ଖାଲ ଖଣାଥିଲା ଯାହାପାଖେ
ସମତୁଲ କରି ତାହା ପୋତିଲେ କ୍ଷଣକେ ।
ଉପରେ ଯାଦବ ଥାଇଁ ବିନ୍ଧନ୍ତି ଶର
ଶକତି ପରିଘ ଗଦା ଶତଘ୍ନୀ ତୋମର ।
ଦଶବିଂଶ ପାଞ୍ଚଶତ ଶତଲକ୍ଷ କୋଟି
ଏକାବେଳକରେ ସୈନ୍ୟ ପଡ଼ୁଛନ୍ତି ଲୋଟି ।
ମଥୁରା ଦାଣ୍ଡର ଗୃହଆଡ଼େ ସୈନ୍ୟ ଛୁଟି
ମଡ଼ାର ଉପରେ ମଡ଼ା ପଡ଼ୁଛନ୍ତି ମାଡ଼ି ।
କୋଦଣ୍ଡ କମାଣ କାଣ୍ଡ ଖଣ୍ଡା କରେ ଘେନି
ଯାଦବେ ମାରନ୍ତେ ଲୋଟି ପଡ଼ିଲେ ସଇନ ।
ଅନନ୍ତ ମାୟାଧର ସେ ପ୍ରଭୁ ଦେବରାଜ
ସବୁ ଯାଦବଙ୍କୁ ଦେଲେ ଆପଣାର ତେଜ ।
ତେଣୁ ଯାଦବଙ୍କୁ କେହି ନ ପାରନ୍ତି ଜିଣି
ସଙ୍ଗେ ସଖା ହୋଇଛନ୍ତି ରାମ ଚକ୍ରପାଣି ।
ପଡ଼ିଲେ ଅନେକ ସେନା ରଣଭୂମି ମାଡ଼ି
କାହାର ଚରଣ କାର ଅଣ୍ଟା ଗଲା ଛିଡ଼ି ।
ରକତରେ ଜର ଜର ଦିଶେ କାହା କାୟେ
କାହାର ଶରୀର ଦିଶେ ରଙ୍ଗଫୁଲ ପ୍ରାୟେ ।
ବତିଶ ଯୋଜନ ବିସ୍ତାର ସେ ମଥୁରା ଗଡ଼
ବେନିତାଳ ଉଚ୍ଚେ ମଡ଼ା ପଡ଼ି ହେଲେ କୁଢ଼
ବହିଲା ରକତ ନଦୀ ପ୍ରଖର ସ୍ରୋତରେ
ଭୟାତୁରେ ଯୁଦ୍ଧଭୀରୁ ପଳାଇଲେ ଦୂରେ ।
ଅଶ୍ୱଙ୍କ ଉପରେ ଗଜ ପଡ଼ିଲେକ ମାଡ଼ି
ଗୃହଆଡ଼େ କୁଢ଼ ହେଲା ରଥଧ୍ୱଜ ଛିଡ଼ି ।
ରାଉତ ମାହୁନ୍ତ ରଥୀ ସୈନ୍ୟ ଅପ୍ରମିତ
ଯାଦବଙ୍କ ବାଣେ ମରି ପଡ଼ିଲେ ବହୁତ ।

ସାତସିନ୍ଧୁ ଶୁଖାଇବ ହସ୍ତରେ କେ ବାନ୍ଧି
ନକ୍ଷ ବାଲି ଗଣିବାକୁ ଶକ୍ତ ଅଛି କାହିଁ ।
ବାଲିବନ୍ଧେ ସାତସିନ୍ଧୁ ପାରିବ କେ ବାନ୍ଧି
ଅତ ଭାଗ୍ୟେ ଭାଗବତ ପୁରାଣପୟୋଧି ।
ଅଦୃଷ୍ଟି ଅଶ୍ରୁତି ଅସମ୍ଭବ ଏହି ବାଣୀ
ଅନେକ ଜନ୍ମର ପାପ ଧ୍ୱଂସ ହୁଏ ଶୁଣି ।
ଇଦଂ ପ୍ରତିବାକ୍ୟ କହନ୍ତ ଯେ ଶୁକ ଯତି
ଶୁଣ ଭୁପୋ ସାବଧାନେ ପଣ୍ଡୁ ପଣନାତି ।
ଦକ୍ଷିଣ ଦୁଆରେ ଥିଲେ ରାଜା ଉଗ୍ରସେନ
ଦମଘୋଷ ଆଗେ ମିଳି କଲେ ଆୟୋଧନ
ସୈନ୍ୟହତ ହବା ଦେଖି ଦମଘୋଷ କୋପେ
ରେରେକାର କରି ବାଣ ପୂରାଇଲେ ଚାପେ ।
କଙ୍କପକ୍ଷ ମୁନାବାଣ ସହସ୍ରେକ ଧରି
ଗଡ଼ଦ୍ୱାର କବାଟକୁ ବିନ୍ଧିଲ ଓଟାରି ।
ପୁଣିହିଁ ତିନସହସ୍ର ବଜ୍ରମୁନା ବାଣ
କର୍ଣ୍ଣ ପରିଯନ୍ତେ ଟାଣି ବିନ୍ଧିଲ ତକ୍ଷଣ ।
ଚଳିଗଲେ ଯେ ବାଣମାନ ଅନ୍ତରୀକ୍ଷ ମାର୍ଗେ
ସକଳ ଦେବତା ମିଳି ଦେଖୁଛନ୍ତି ସ୍ୱର୍ଗେ ।
ଚକ୍ଷୁ ପିଛୁଡ଼ାକେ ଯାଇ କବାଟରେ ବାଜି
ମସିଗୁଣ୍ଡା ହୋଇ ଦ୍ୱାର ପଡ଼ିଲାକ ଭାଜି ।
ବଜ୍ର କିଳଣୀ ସହିତେ ପଡ଼ନ୍ତେ ଉପୁଡ଼ି
ଦେଖି ଦମଘୋଷ ରାଜା କଲ ସିଂହରଡ଼ି ।
ଗଡ଼ଦ୍ୱାର ଭାଙ୍ଗି ତହୁଁ ହୋଇଲା ମୁକୁଳା
ଧସାଇ ପଶିଲେ ସୈନ୍ୟ କୋଟି ଅସଂଖଳା ।
ଦମଘୋଷ ଆଦି ସବୁ ରାଜାଙ୍କର ଥାଟ
ସମସ୍ତେ ପଶିଲେ ପେଲି ପାଇବାରୁ ବାଟ ।
ଉଗ୍ରସେନ ଅନାଧୃଷ୍ଟ ଉଦ୍ଧବ ଏ ଥିଲେ
ରହ ରହ ବୋଲି ଆଗେ ଆସି ଓଗାଳିଲେ ।
ବନ୍ଧ ବନ୍ଧାଇଲେ ଯେହ୍ନେ ସ୍ଥିର ହୁଏ ଜଳ
ସ୍ତମ୍ଭୀଭୂତ ହେଲେ ତେହ୍ନେ ଶତ୍ରୁ ସୈନ୍ୟଦଳ
ଚବଶ ସହସ୍ର ରାଜା ଏକମୁଖ ହୋଇ
ତିନ ରଥ ଉପରକୁ ପଡ଼ିଲେ ସେ ଧାଇଁ ।
ଉଗ୍ରସେନଙ୍କୁ ଆବୋରି ସହଦେବ ବୀର
ଅନାଧୃଷ୍ଟ ସଙ୍ଗେ ଦମଘୋଷର ସମର ।
ରଥୀର ଆଗରେ ରଥୀ କରନ୍ତ ପହଜ
ଗଜର ଆଗରେ ମିଳି ଯୁଦ୍ଧ କଲେ ଗଜ ।

ଅଶ୍ୱଙ୍କ ସହିତେ ଅଶ୍ୱେ ପରତାଳ ଦ୍ୟନ୍ତି
ମହାହତ ସଙ୍ଗେ ମିଳି ଯୁଝିଲେ ମହାହତ ।
ଏମନ୍ତ ପ୍ରକାରେ ହେଲା ରଣ ମହାଘୋର
ଯୁଗାନ୍ତ କାଳରେ ଯେହ୍ନେ ଘୋଟେ ସିନ୍ଧୁ ଜଳ
ଆଗଭର ହୋଇ ଯାନ୍ତି ନାନାଶସ୍ତ୍ର ଧରି
କାହାକୁ ମାରି କାହାକୁ ପକାନ୍ତି ସେ ଚିରି ।
ପଶ୍ଚିମ ଦ୍ୱାର ଆବୋରି ଦନ୍ତବକ୍ର ଥିଲ
ସୁରଥକୁ ଜିଣିବାକୁ ପ୍ରତିଜ୍ଞା ସେ କଲା ।
ଗୁଣ ଦଶ ଶବଦରେ ମେଦିନୀ କମ୍ପାଇ
ତର୍ଜନା କରଇ ବୀର ସିଂହରଡ଼ି ଦେଇ ।
ଦେଖିଣ ଯାଦବ ସୈନ୍ୟ ପାଇ ମନେ ଭୀତ
ତରସ୍ତ ହୋଇଣ ଶସ୍ତ୍ର ଧରି ନପାରନ୍ତି ।
ସାତ୍ୟକ ସହାସ୍ରଜିତ କୃତବର୍ମା ତିନି
ଭସ୍ମ ତେଜ ବାହାରିଲେ କରେ ଶସ୍ତ୍ରଘେନି ।
ହାବୋଡ଼ା ବାଣେକ ଘେନି ଦନ୍ତବକ୍ରମାରି
ସିଂହ ପ୍ରାୟେ ଗରଜିଲା ଗୁଣନାଦ କରି ।
ସେ ବାଣ ବାଜନ୍ତେ ଦ୍ୱାର ପଡ଼ିଲା ଉପୁଡ଼ି
ଭିତରେ ପଶିଲ ଦନ୍ତବକ୍ର ଦଳମୋଡ଼ି ।
ସକଳ ନୃପତି ଦେଖି ସାଧୁ ସାଧୁ କଲେ
ଦନ୍ତବକ୍ର ସଙ୍ଗେ ସର୍ବେ ଭିତରେ ପଶିଲେ ।
ଅନେକ ପ୍ରଶଂସା କଲେ ଗଡ଼ଗୋଟି ଦେଖି
ବୋଲେ ଅମର ବାରସ୍ଥଳୀ ପୁରି ଏ କି ।
କେବଳ ଦେବତା ଏହା ନିର୍ମାଣିଲ ଆସି
ଜରାସନ୍ଧ ବନାଆନ ନ ପାରନ୍ତା ପଶି ।
ଧନ୍ୟରେ ଯାଦବେ ତୁମ୍ଭେ ଜୀବନହିଁ ସାଧୁ
ଅଭେଦ୍ୟ ଗଡ଼ରେ ଥାଇ ବୋଲାଅ ବୀରଧୁ ।
ଏମନ୍ତ ବୋଲିଣ ସର୍ବେ କଲେ ଶରବୃଷ୍ଟି
ବୀରଙ୍କ ଗର୍ଜନ ଘାତେ କମ୍ପେ ନବବୃଷ୍ଟି ।
ଦେଖିଣ ଯାଦବ ବୀରେ ମନେ ବହି କ୍ରୋଧ
ଏକମୁଖ ହୋଇ ସର୍ବେ ପିଟିଲେ ଆୟୁଧ ।
ଯେ ଯାହାର ଅସ୍ତ୍ର ଶସ୍ତ୍ର ନିଜ କରେ ଧରି
ହେନବଳ ମିଶି ବାଟେ ହେଲେ ମରାମରି ।
ସଂଗ୍ରାମେ ଶକତା ଦୁଇ ବଳ ସମକକ୍ଷ
ଏକକୁ ଆରେକ ଯୁଦ୍ଧେ ନହିଅନ୍ତ ପକ୍ଷ ।
ମହାଘୋର ଯୁଦ୍ଧ ହେଲ ଦୁଇ ସେନାଙ୍କର
ଅଦୃଶ୍ୟ ହୋଇଲେ ସୂର୍ଯ୍ୟ ଦିବସେ ଅନ୍ଧାର ।

କନ୍ଦର୍ପ ମାସରେ ଯେହ୍ନେ ମେଘ କରେ ବୃଷ୍ଟି
ତେମନେ ପଡ଼ଇ ବାଣ ଶୂନ୍ୟପଥ ଘୋଟି ।
ଗଗନଚାରୀ ଯନ୍ତ୍ରମାନେ ଅଟନ୍ତି ଅଜେୟ
ଯାଦବଙ୍କୁ ପ୍ରମାଦରୁ ନାହିଁ ତାଙ୍କ ଭୟ ।
ଏଥୁ ଅନନ୍ତରେ ଜରାସନ୍ଧ ନୃପମଣି
ଆପଣାର ଅଙ୍ଗବଳ ତେଇଶ ଅକ୍ଷଉଣୀ ।
ତେଇଶ ସହସ୍ର ରାଜା ଚତୁରଙ୍ଗ ବଳ
ଘେନିଣ ଉତ୍ତର ଦ୍ୱାରେ କଲା ରଣଗୋଳ ।
ରଥ ଗଜ ପଦାତିକ ଅଶ୍ୱ ଅପ୍ରମିତ
ଏକଙ୍କୁ ଆରେକ ଯୋଦ୍ଧା ସର୍ବେ ବଳବନ୍ତ ।
ଆପେ ଜରାସନ୍ଧ ରାଜା ସମରେ ଦୁର୍ଜ୍ଜୟ
ଦେବ ଦୈତ୍ୟ ଗନ୍ଧର୍ବଙ୍କୁ ନ କରଇ ଭୟ ।
ଅନେକ ସଇନ୍ୟ ଛନ୍ତି ପଛରେ ଗୋଡ଼ାଇ
ଗଡର ଉତ୍ତର ଦ୍ୱାରେ ମିଳିଲା ସେ ଯାଇ
ବାସ୍ତରୀ ଭାର ଗଦାକୁ ବୁଲାଇଣ କରେ
ଆକର୍ଷି ପିଟିଲା ନେଇ କବାଟ ଉପରେ ।
ନିର୍ଘାତ ଶବଦ ଶୁଭେ ଘୋର ବିକରାଳ
ଉଠିଲା ବହ୍ନି ଶିଖା ଜ୍ୟୋତି ଅନ୍ତରାଳ ।
ବିଷମ ହୁଙ୍କାର ଧ୍ୱନି ପଦାଘାତ ପାଇ
କବାଟ ଭାଙ୍ଗି ପଡ଼ିଲା ଖଣ୍ଡ ଖଣ୍ଡ ହୋଇ ।
କବାଟ ଭାଙ୍ଗନ୍ତେ ଦ୍ୱାର ହୋଇଲା ମୁକୁଳା
ଧସାଇ ପଶିଲା ପୁରେ ସଙ୍ଗୋଚନ ବଳା ।
ତା ପଛରେ ଲାଗି ଆଉ ଯେତେ ନୃପଥିଲେ
ସମଦଣ୍ଡ ଘେନି ସର୍ବେ ଭିତରେ ପଶିଲେ ।
ପ୍ରଥମ ଦ୍ୱିତୀୟ ଦ୍ୱାର ଲଙ୍ଘି ବେଗେ ଯାଇ
ଭିତର ଗଡ଼େ ପ୍ରବେଶ ହେଲେ ପରଘାଇ ।
ଦୁଇହାତେ ଗଦା ଧରି ବୁଲାଇ ନୃପତି
ବଳଦେବଙ୍କ ସମ୍ମୁଖରେ ମିଳିଲା ତତ୍‌କ୍ଷଣ ।
ଅଧର ପୁଷ୍ଟ କରିଣ ବୋଲେ ମହୀପାଳ
ଆରେ ରେ ଗଉଡ଼ ଆଜି ପୂରିଲା ତୋ କାଳ
ଜାଣୁ ଜାଣୁ ମୋ ସଙ୍ଗରେ ହୋଇଲୁ ବିବାଦ
ନିଶ୍ଚୟ ମାରିବ ତୋର ବଂଶବର୍ଗ ଶୋଧି ।
ତୁମ୍ଭଙ୍କୁ ମାରିବା ଏହା ସଂଶୟ ଯେ ନାହିଁ
ସପତବଂଶ ଯାଦବେ ମଲେ ତୁମପାଇଁ ।
ପାଞ୍ଚବେଳ ପରଯନ୍ତେ ପଳାଇଲ ଆଗୁଁ
ଅସଂଖ୍ୟ ସଇନ୍ୟ ମୋର ମଲେ ତୁମଯୋଗୁଁ ।

ଏହି ପରକାରେ ତୁମେ ସବୁବେଳେ ଭଣ୍ଡ
ଆଜି ବିଶାଳକ ଦେହ କରି ଖଣ୍ଡ ଖଣ୍ଡ ।
କେଉଁ ଉରପାରେ କଲ ମୋ ସଙ୍ଗରେ କଷା
ହରି ବ୍ରହ୍ମା ଇନ୍ଦ୍ର ହେଲେ ନ କରିବେ ରକ୍ଷା
ଏତେ ବୋଲି ଅନ୍ତରୀକ୍ଷେ ଗଦାକୁ ବୁଲାଇ
କାମପାଳ ଉପରକୁ ପଡ଼ିଲା ସେ ଧାଇଁ ।
ବାହାନାଦକରି ଗଦା ପିଟି ମହାବଳ
ଦେଖି ବଳରାମ ସ୍ୱାମୀ ଆଡ଼ିଲେ ମୂଷଳ ।
ମୂଷଳରେ ଗଦା ବାଜି ପରିତାଳ ଘେନି
ଉଠିଲା ପ୍ରଚଣ୍ଡ ଶିଖା ଟେକଣ ବହ୍ନି ।
ନିର୍ଘାତ ଶବଦ ହେଲା ଯେହ୍ନେ ଘଡ଼ଘଡ଼ି
ଯଥେ କିବା ମେରୁଗିରି ପଡ଼ୁଅଛୁ ମାଡ଼ି ।
ବନ ଗିରି ଯହିଁତରେ କମ୍ପିଲା ଧରଣୀ
ତ୍ରସ୍ତ ହୋଇଲେ ଭୟ ପାଇ ସର୍ବପ୍ରାଣୀ ।
ପୁଣି ଜରାସନ୍ଧ ଗଦା ବୁଲାଇଣ ବେଗେ
ରାମଙ୍କ ଉପରେ ନେଇ ପ୍ରହାରିଲା ରାଗେ ।
ଶ୍ରୀଅଙ୍ଗେ ନ ବାଜୁ ଗଦା ଦେଖି କାମପାଳ
ଧାଡକାରେ ଆଡ଼ଦେଲେ ସୌନନ୍ଦ ମୂଷଳ
ତେଡ଼େ ବର୍ତ୍ତ ଗଦାଗୋଟା ମୂଷଳରେ ବାଜି
ବେନି ଖଣ୍ଡ ହୋଇ ତଳେ ପଡ଼ିଲାକ ଭାଜି ।
ଗଦା ଭଗ୍ନ ଦେଖି କୋପେ ମଗଧ ଈଶ୍ୱର
ଖଡ଼ଗ ଧଇଲା କରେ ଟେକଣ ସତ୍ୱର ।
ଖଣ୍ଡାହସ୍ତ ହୋଇ ରାଜା କୋପାନଳ ମୂର୍ତ୍ତି
ବିକ୍ରମ ସିଂହ ପରାଏ କଲା ପାଦଗତି ।
ବେଳୁଁ ବେଳ କୋପ ତାର ବଢ଼ିଲାକ ଯହୁଁ
ରାମଙ୍କୁ ଘୋଟିଲା ଯେହ୍ନେ ଚନ୍ଦ୍ରମାକୁ ରାହୁ
ତା ଦେଖି ରୋହଣୀସୁତ ଲଙ୍ଗଳ କଗୁଡ଼
ହାତେ ଧରିଥିବା ଖଣ୍ଡା ପକାଇଲେ ଝାଡ଼ ।
ନିଃଶସ୍ତ୍ର ହୁଅନ୍ତେ କ୍ରୋଧେ ମଗଧ ନୃପତି
ମଲ୍ଲ ବନ୍ଧାଣରେ ଠିଆ ହୋଇଲା ତତ୍‌କ୍ଷଣ ।
ଆଣୁଭରା ଦେଇ ତଳେ ବସି ମହାରାଜ
ବିଚକ୍ଷ ଗତିରେ ଉଠି କରଇ ପଇଜ ।
ବଜ୍ରମୁଷ୍ଟି ଟେକି ରାମ ଆଗେ ହେଲା ଉଭା
ପର୍ବତ ପରାଏ ଅଙ୍ଗ ଦିଶେ ତାର ଶୋଭା ।
ଚଉରାଶୀ ବନ୍ଧାଣରେ ଅପସର ଦେଇ
ଆଗରେ ଗଉଡ଼ ବୋଲି ଡାକେ ମୁଖ ଗୁହିଁ ।

ଶୁକ ବୋଲନ୍ତି ଯେ ଶୁଣ ପରୀକ୍ଷ ନୃପମଣି
ଦେଖି ମହାକୋପ କଲେ ପ୍ରଭୁ ହଳପାଣି ।
ବାମହସ୍ତେ ହଳଘେନି ଦୃଢ଼େ କରି ମୁଷ୍ଟି
ଜରାସନ୍ଧର ବେକରେ ପକାଇଲେ ଘୁଞ୍ଚି
କୃତାନ୍ତ ଦେବତା ଯେହ୍ନେ କାଳପାଶ ଘେନି ।
ନିମିଷରେ ସାଧିପାରେ ସକଳ ମେଦିନୀ ।
ତେସନ ଲାଙ୍ଗଳାଗ୍ରେ ରେବତୀର ସାଇଁ
ଝାଡ଼ିଦେଲେ ଜରାସନ୍ଧ ବେକରେ ଲଗାଇ ।
ସେ ଘାତରେ ଅସମ୍ଭାଳ ହୋଇ ମହାବଳୀ
ଅସାଷ୍ଟାମୀ ହୋଇ ତଳେ ପଡ଼ିଗଲା ଢଳି ।
ଜରାସନ୍ଧ ପଡ଼ିବାର ଦେଖି କାମପାଳ
ପ୍ରାଣ ନେବାପାଇଁ କ୍ରୋଧେ ଟେକିଲେ ମୁଷଳ
ଏମନ୍ତ ସମୟେ ତହିଁ ମିଳି ଦେବଦୂତ
କରଯୋଡ଼ି ସ୍ତୁତି କଲା ରାମଙ୍କୁ ବହୁତ ।
ନମସ୍ତେ ହେ କାମପାଳ କୃପାଜଳସିନ୍ଧୁ
ନମସ୍ତେ ରେବତୀ ନାଥ ଭକ୍ତଜନ ବନ୍ଧୁ ।
ନମସ୍ତେ ହେ କାମପାଳ ସଂସାର କରତା
ନମସ୍ତେ ହେ କାମପାଳ ଭକ୍ତିମୁକ୍ତିଦାତା ।
କାଦମ୍ବରୀ ପାନେ ସଦା ହେଳ ତୁମ ମତି
ଛପନ କୋଟି ଜୀବର ଅଟ ତୁମେ ଗତି ।
ମସ୍ତକ ଉପରେ ଶୋଭା ପାଏ ସପ୍ତଫେଣି
କୁଟିଳ କୁନ୍ତଳ ଦିଶେ ନବଘନ ଜିଣି ।
ବେନି କର୍ଣ୍ଣେ ବିରାଜଇ ମକର କୁଣ୍ଡଳ
ଶରୀରରେ ପୂରିଅଛି କୋଟି ସିଂହବଳ ।
ନୀଳ ଝୀନବାସେ ଶୋଭା ପାଏ ଦିବ୍ୟକଟି
ପାପାଧି ପାପ ଧ୍ୱଂସନ ତୁମ୍ଭ ନାମଗୋଟି ।
ସୁଢ଼ଳ ନୟନ ବେନି ରକ୍ତପଦ୍ମ ପ୍ରାୟ
ଆଜାନୁ ଲମ୍ବିତ ଭୁଜଦଣ୍ଡ ତେଜୋମୟ ।
ପ୍ରତ୍ୟକ୍ଷେ ପରମାନନ୍ଦ ଅବ୍ୟକ୍ତ ମୂରତି
କାଳାନ୍ତକ ଯୁଗାନ୍ତକ ଲୟାନ୍ତକ ଜ୍ୟୋତି ।
ପଞ୍ଚଭୂତ ପଞ୍ଚ ତତ୍ତ୍ୱ ପ୍ରକୃତି ପରଶ
ସୃଷ୍ଟି ସ୍ଥିତି ସଂହାରଣ କରତା ପୁରୁଷ ।
ତୁମର ସଞ୍ଚିତ ଏହି ସକଳ ଜଗତ
ଅକ୍ଷୟ ଅଜରାମର ତୁମେ ବିଶ୍ୱନାଥ ।
ଏକ ରୋମକରେ ଯାର କୋଟି ସିଂହବଳ
ନମସ୍ତେ ପନ୍ନଗ ନାରାୟଣ କାମପାଳ ।

ପୃଥ୍ୱୀଭାର ନିବାରଣ କରିବାର ପାଇଁ
ଜନ୍ତୁକେ ଜନ୍ମି ଅଛ ନରଦେହ ବହି ।
ସର୍ବଙ୍କ ପୁରୁଷ ତୁମେ ସର୍ବ ଗୁଣଗ୍ରାହୀ
ଆରତ ଭଞ୍ଜନ ନାଥ ବାରେ କର ସାହି ।
କଳିକଳୁଷଧ୍ୱଂସନେ ନିରପେକ୍ଷ ରୂପେ
ଚତୁର୍ଦ୍ଧା ମୂରତି ଧରି ବସିଅଛ ଆପେ ।
ଦକ୍ଷିଣ ସାଗର ତଟ ନୀଳ ଗିରିବରେ
ସଙ୍ଗେ ଭାଇ ଭଗ୍ନୀ ଘେନି ବିଜେ ଜଗନ୍ନାଥେ
ସୁଦର୍ଶନ ଚକ୍ର ଘେନି ଚତୁର୍ଦ୍ଧା ମୂରତି
ଦର୍ଶନ ମାତ୍ରକେ ପ୍ରାଣୀ ଲଭଇ ମୁକତି ।
ବଳଦେବ ଶ୍ରୀଚରଣେ ସଦା ମୋର ସେବା
ଅଚ୍ୟୁତ ଦାସକୁ ହରିବଂଶ କହିଦେବା ।
ଏସନକ ସ୍ତୁତି ଯହୁଁ କଲା ଦେବଦୂତ
ପ୍ରସନ୍ନ ହୋଇଲେ ଶୁଣି ରେବତୀର କାନ୍ତ ।
ପୁଣି ବିଚାରିଲେ ରାମ ଦେବଦୂତ ଠାଇଁ
ଏ କର୍ମା ଜୀବନେ ଥିବ କହ ତା ବୁଝାଇ ।
ଦେବଦୂତେ ବୋଲେ ତୁମେ ଜଗତର ନାହା
ମୁହିଁ କି କହିବି ତୁମେ ନ ଜାଣ କି ତାହା
ଏ ଜରାସନ୍ଧର ତୁମ ହସ୍ତେ ମୃତ୍ୟୁ ନାହିଁ
ଭୀମସେନ ହସ୍ତେ ମରିଇବେ ଲକ୍ଷ୍ମୀସାଇଁ ।
ଆବର ଏ ନୃପଠାରେ ଅଛି ଦେବକାର୍ଯ୍ୟ
ତେଣୁ ପେଷିଛନ୍ତି ମୋତେ କହି ଦେବରାଜ ।
ତୁମ ଶ୍ରୀଚରଣେ ହେଉଅଛି ପରଣାମି
ଏହାକୁ ସମୟେ ରକ୍ଷା କର ଅନ୍ତର୍ଯ୍ୟାମୀ ।
ସଂସାରେ ଅକୀର୍ତ୍ତି ପଛେ ରହୁ ଏଥିପାଇଁ
ଆଜ ସଂଗ୍ରାମରେ ତୁମେ ଯାଅ ପିଠିଦେଇ ।
ଏହାକୁ ନାଶିଲେ କାର୍ଯ୍ୟ ନ ପାଇବ କିଛି
ଅନେକ ପାପିଷ୍ଠ ଦୁଷ୍ଟ ମାରିବା ଏ ବାଛି ।
ଏ କଥା ବିଚାରି ଯେବେ ନ କରିବ ମନେ
ନିଷ୍ଟୟରେ ସୃଷ୍ଟି ନାଶଯିବ ଅଳ୍ପଦିନେ ।
ଦେବକାର୍ଯ୍ୟ ନ ହୋଇବ ସୃଷ୍ଟି ନୋହି ରକ୍ଷା
କର୍ମକରତା ପୁରୁଷ ଯେ ତୁମ୍ଭର ଇଚ୍ଛା ।
ଏତେ କହି ଅନ୍ତର୍ଦ୍ଧାନ ହେଲା ଦେବଦୂତ,
ବଳରାମ ଶୁଣି କୋପ ଛାଡ଼ି ହେଲେ ଶାନ୍ତ ।
ସଂଗ୍ରାମ ଉପେକ୍ଷି ତହୁଁ ଗଲେ ପିଠିଦେଇ
ଜଗନ୍ନାଥଙ୍କ ସନ୍ନିଧେ ପ୍ରବେଶିଲେ ଯାଇ ।

ଏକାନ୍ତରେ ଦେବଦୂତ କହିଗଲା ଯାହା।
ଗୋବିନ୍ଦ ଶ୍ରୀମୁଖରେ ରାମେ ଜଣାଇଲେ ତାହା ।
ଶୁଣିଣ ସନ୍ତୋଷ ହେଲେ କମଳା ବିଳାସ
ପରୀକ୍ଷ ଆଗେ କହନ୍ତି ବେଦବ୍ୟାସ ଶିଷ୍ୟ ।
ଏଥୁଅନନ୍ତରେ ରୁକ୍ମଣ ନାମେ ମହାବୀର
ସୈନ୍ୟ ଘେନିଣ ଆବୋରି ଥିଲା ମୂଦ୍ୱାର
ନାଗ ରଥୀ ମହାରଥୀ ପଦାତି ସହିତେ
ପଚାଶ ସହସ୍ର ରାଜା ଥିଲେ ତା ସଙ୍ଗତେ ।
ଏକ ମୁଖ ହୋଇ ସର୍ବେ ବଳ ପରଘାଳ
କବାଟ ଭାଙ୍ଗି ଗଡ଼ରେ ପଶିଲେ ଧସାଇ ।
ପୁରଦ୍ୱାର ଲଙ୍ଘି ଯାନ୍ତେ ଭିତରକୁ ପଶି
ଦେଖିଣ ଯାଦବଗଣ ଓଗାଳିଲେ ଆସି ।
ରଥୀଙ୍କ ସହିତେ ରଥୀ କରନ୍ତି ଆରେଣି
ମାହୁନ୍ତେ ଗଜକୁ ଗଜ ଭେଟାଇଲେ ଆଣି ।
ରାଉତ ସଙ୍ଗେ ରାଉତେ ସମର କରନ୍ତି
ପଦାତିମାନଙ୍କ ସଙ୍ଗେ ଯୁଝିଲେ ପଦାତି ।
ଧନୁର୍ବାଣ ବଜ୍ରବାଣ ଫାଶ ବାରକେନା
ଶାବେଳ ବାର୍ଙ୍କିଆ ଲୋହ କଳା ଝଷଣମୁନା
ଛେଲ ଚନ୍ଦ୍ରଶକ୍ତି ଗଦା ନାରାଚ ମୁଦଗର
କୋଦଣ୍ଡ କାଣ୍ଡ କମାଣ କୁନ୍ତ ଅସିବର ।
ଗୁରୁଜ କଟୁରୀ ଯମଦାଢ଼ ଲୋହବାଣ
କୁଠାର ପରଶୁ ତେଣ୍ଟା ଭଲ୍ଲ ଅପ୍ରମାଣ ।
ଲୋଷ୍ଟ୍ର ପଥର ଗୁଟେଣି ହାବେଳ ଶକତି
ଏସନ ପ୍ରକାରେ ନାନାଆୟୁଧ ମାରନ୍ତି ।
ଦଶବଂଶ ପଞ୍ଚଶତ ବାଣ କରେ ଧରି
ଏକ ଆରେକ ମାରନ୍ତି କୋଦଣ୍ଡ ଓଟାରି ।
ଅସଂଖ୍ୟ କବନ୍ଧ ରଣେ ନୃତ୍ୟ କଲେ ଉଠି
ଶସ୍ତ୍ର ଆତଯାତ ଶବ୍ଦେ କମ୍ପେ ନବସୃଷ୍ଟି ।
ରଣରଙ୍ଗ ମଣ୍ଡଳରେ ମିଳି ଭଦ୍ରକାଳୀ
ଯୋଗିନୀଗଣଙ୍କୁ ସଙ୍ଗେ ଧରି କଲେ କେଳି ।
ରକ୍ଷିଣୀ ଭକ୍ଷିଣୀ ଚଣ୍ଡୀ କୁଷ୍ମଣ୍ଡା ପିଶାଚୀ
ଡାକିନୀ ଶାକିନୀ ଭଇରବୀ ଊର୍ଦ୍ଧ୍ୱକେଶୀ
ତରୁଣୀ ତାରିଣୀ ଉଗ୍ରତାରା ସହସ୍ରାକ୍ଷୀ
ଆନନ୍ଦେ ନାଚବେ ମଧୁମାଂସ ରକ୍ତ ଭକ୍ଷ ।
କଳକଳା କୁହୁକୁହୁ ହୁଳହୁଳ ନାଦେ
ଭ୍ରମଣ କରନ୍ତି ବୁଲି ଅତ୍ୟନ୍ତ ପ୍ରମୋଦେ ।
ଶୃଗାଳ ବାୟସ ଶ୍ୱାନ ଗୃଧ୍ର ରୁଣ୍ଡ ହୋଇ
ଭୟଙ୍କର ଧ୍ୱନି କଲେ ମେଦମେଦା ଖାଇ ।
ମଥୁରା ନଗରେ ବେଢ଼ି ବେନିଯୁଣ ଯାଏ
ପୁରଆଡ଼େ କୁଡ଼କୁଡ଼ ହଣେ ମଡ଼ାମୟେ ।
ଗଜ ଅଶ୍ୱ ପଦାତିଙ୍କ ମଡ଼ା ଅପ୍ରମିତ
ଏତେ ତେତେ ବୋଲି ଗଣି କେ କରିବ ଅନ୍ତ
ପଡ଼ିଲେ ସଇନେ ଯାଦବଙ୍କ ଶସ୍ତ୍ରାଘାତେ
ଯେସନେ କଦଳୀବନ ଲୋଟେ ମହାବାତେ ।
ବହିଲା ରକତ ନଦୀ ରଣରଙ୍ଗ ସ୍ଥାନେ
କାଠପ୍ରାୟେ ଭାସିଯାନ୍ତି ମୃତ ଶବମାନେ ।
ଧରଣୀର ଭାରଭର ନିବାରିବା ପାଇଁ
ଯାଦବଙ୍କୁ ତେଜ ଦେଇଛନ୍ତି ଲକ୍ଷ୍ମୀସାଇଁ ।
ବେଳୁବେଳ ବୃଦ୍ଧି ହୋଇ ଲାଗିଲା ସମର
କୁତୂହଳେ ଦେଖୁଛନ୍ତି ରାମ ଚକ୍ରଧର ।
ସାତ୍ୟକି ସହସ୍ରାଜିତ ଅକ୍ରୂର ଉଦ୍ଧବ
ବଜସ୍ତୁ ସୁରଥ କୃତବର୍ମା ବସୁଦେବ ।
ଚୌରାଶୀ କୋଟି ଯାଦବ ଏମାନଙ୍କ ମୂଳେ
ଅବିଶ୍ରାମ ଯୁଦ୍ଧ କରୁଛନ୍ତି ଅଙ୍ଗଛଳେ ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଯେ ରୁକ୍ମଣ
ଦମଘୋଷ ଆଦି ଯେତେ ନରପତିଗଣ ।
ଚଉପାଶେ ରହି ଜରାସନ୍ଧର ସମୀପେ
ପରଘାଇ ଯୁଦ୍ଧ କରୁଛନ୍ତି ନାନାରୂପେ ।
ଏମନ୍ତ ଦ୍ୱାଦଶ ଘଡ଼ି ହେଲା ଆସି ବେଳ
ଯୁଦ୍ଧ ଶ୍ରମେ ସନ୍ତାପିତ ହେଲେ ଦୁଇବଳ ।
ରାମଙ୍କୁ କୃଷ୍ଣ ବୋଲନ୍ତି ଲକ୍ଷ୍ମୀଦେବୀ ନାହା
ଶୁଣିଛ ତ ଦେବ ଦୂତ କହିଗଲା ଯାହା ।
ଆମ୍ଭ ହସ୍ତେ ଜରାସନ୍ଧ ବେଗେ ନୁହେ ବଧ
କିପାଇଁ ବୃଥାରେ ଲାଗି କରୁଥିବା ଯୁଦ୍ଧ ।
ଅନେକ ସଇନ୍ୟ ତାର ହୋଇଲେଣି ନାଶ
ପିଠିଦେଇ ଅପସରି ଯିବା ଆମ୍ଭେ ଆସ ।
ରଣେ ହାରି ଜରାସନ୍ଧ ଲଜ୍ଜା ପାଇଅଛି
ଆମ୍ଭେ ପଳାଇଲେ ଫେରିଯିବ ମୁଁ ଜାଣୁଛି ।
ଜରାସନ୍ଧର ଯାଦବେ ନୁହନ୍ତି ବିବାଦୀ
ଆମେ ଦୁଇ ଭାଇ ଯିନା ତାହାର ବିରୋଧୀ ।
ଆମ୍ଭେ ଯେବେ ଯୁଦ୍ଧ ଛାଡ଼ିଯିବା ଆଡ଼ ହୋଇ
ଯାଦବଙ୍କ ସଙ୍ଗେ ରଣ କରିବ କିପାଇଁ ।

ଏମନ୍ତ ବଚନର କରି ରାମ ଚକ୍ରଧର
ତକ୍ଷଣେ ଗଡ଼ ଭିତରୁ ହୋଇଲେ ବାହାର ।
ବାହାର ଗଡ଼କୁ ଛାଡ଼ି ଥୋକେ ଦୂର ଯାନ୍ତେ
ଡଗର କହିଲା ଜରାସନ୍ଧର ଅଗ୍ରତେ ।
ଯେ ମହିମା ସାବଧାନେ ଶୁଣ ଦୂତବାଣୀ
ଗଡ଼ ଛାଡ଼ି ରାମକୃଷ୍ଣ ଗଲେ ଏହିକ୍ଷଣି ।
ଉଗ୍ରସେନ ଆଦି ତାଙ୍କ ସଙ୍ଗେ କେହି ନାହିଁ
ପ୍ରାଣର ଏକଲେ ଦୁହେଁ ଗଲେ ପିଠିଦେଇ ।
ଏହା ଶୁଣି ସ୍ତମ୍ଭିତ ହୋଇ ଦଣ୍ଡଧାରୀ
ବୋଇଲା ଗୋଡ଼ାଇ ଆଉ ନ ପାରିବା ଧରି ।
ପ୍ରତିଥର ଏହିରୂପେ ପଳାନ୍ତି ଭୁଲାଇ
ବିଳମ୍ବ ନକରି ଚାଲ ଧରିବା ଗୋଡ଼ାଇ ।
ଦମଘୋଷ ବୋଲେ ତୁମ୍ଭେ ଶୁଣ ଦଣ୍ଡଧର
କେଉଁଗୁଣେ ସେ ଗଡ଼ରେ ଆମ୍ଭ ସଙ୍ଗେ ସରି ।
ସମ ବଳବନ୍ତ ହେଲେ ସିନା ଥାନ୍ତେ ରହି
ନ ପାରିଲେ ଯହୁଁ ଭୟେ ଗଲେ ପିଠିଦେଇ ।
ଜନମୁଖେ ଅପବାଦ ହୋଇଲା ତାଙ୍କର
କ୍ଷତ୍ରିପୁତ୍ର କରନ୍ତା କି ଏସନ ବେଭାର ।
ଗଉଡ଼ ବାଉଁଡ଼ ଜାତି ବନପଶୁ ସମ
କ୍ଷତ୍ରିୟ ଧର୍ମରେ କାହୁଁ କରିବେ ସଂଗ୍ରାମ ।
ଭଲ ହେଲା ଯେବେ ଦୁହେଁ ପଳାଇଲେ ଆଜ
ସମସ୍ତେ କରିବା ଆମ୍ଭେ ବୁଝି ସବୁକାର୍ଯ୍ୟ ।
ଏହା ଶୁଣି ବୋଲେ ଜରାସନ୍ଧ ନରପତି
ତଦନ୍ତ କରିଣ ବୁଝି ଗଲେ କେଉଁ କତି ।
ପଥ ଅନୁସରି ଚାଲ ଗୋଡ଼ାଇଣ ଯିବା
ଭେଟ ନ ପାଇଲେ ପଛେ ଲେଉଟି ଆସିବା
ଏ ଯାଦବେ ଦୋଷକର ନାହାନ୍ତି ତ କିଛି
ଉଗ୍ରସେନେ ମାରି କସ ପ୍ରୟୋଜନ ଅଛି ।
ଆମ୍ଭର ବଇରୀ ନୁହେ ରାଜା ଉଗ୍ରସେନ
କିମ୍ପାଇଁ ହେନିବା ଆମ୍ଭେ ତାହାର ଜୀବନ ।
ଯେ ଆମର ଶତ୍ରୁ ସେ ତ ଗଲେଣି ପଳାଇ
ଏ ସ୍ଥାନେ ଆମର ଆଉ ପ୍ରୟୋଜନ ନାହିଁ ।
ଏମନ୍ତ କହିଣ କୋପେ ସଙ୍କୋଚନ ଘୃଷ୍ଟ
ଡଗରକୁ ବୋଲେ ଆଗେ କଢ଼ାଅରେ ବାଟ
ଯେଉଁ ବାଟେ ପଳାଇଲେ ରାମ ଚକ୍ରପାଣି
ସେହି ବାଟେ ନେଇ ଭେଟ କରି ଏହିକ୍ଷଣି ।

ଡଗର ବୋଇଲା ତୁ ଏହି ବାଟେ ଗଲେ
ଅବଶ୍ୟ ଦେଖିବ ତୁମ୍ଭେ ପଛେ ଗୋଡ଼ାଇଲେ
ଶୁଣିଣ ଧାଇଁଲା କୋପେ ମଗଧ ନୃପତି
ତାଙ୍କୁରଙ୍ଗ ଯେସନା ତାରା ପଛେ ଲାଗିଛନ୍ତି ।
ଧରଣୀ ପୃଷ୍ଠରେ ଯେସନେ ଧାମର କେଶରୀ
ତେସନେ ଧାମଇଁ ରାଜା ପାଦଗତି କରି ।
ସୀମନ୍ତିନୀ ଜଗଦ୍‌ବଳା ମୁକୁଟ କୁଣ୍ଡଳ
କେଶବାସ ଆଦି ସବୁ ହେଲା ଅସମ୍ଭାଳ ।
ଥୋକେ ଦୂର ଯାଇ ରାଜା ଡଗରକୁ ପୁଚ୍ଛି
ଡଗର ବୋଲଇ ଦେଖ ଆଗେ ଦିଶୁଅଛି ।
ଅଳ୍ପଦୂରେ ଛିଡ଼ା ହୋଇ ଯାଉଛନ୍ତି ଆଗେ
ଗୋଡ଼ାଇଗଲେ ଭେଟିବ ଯମୁନାର ଲାଗେ ।
ପୁଣି ଜରାସନ୍ଧ ଆଗେ ନଦେଖିଲା ଚାହିଁ
ଖଣ୍ଡେଦୂର ଦିଶୁଛନ୍ତି ରାମ କୃଷ୍ଣ ଦୁଇ ।
ସଇନ୍ୟଙ୍କୁ ଆଜ୍ଞାଦେଲା ବେଗେ ଧାଇଁଯାଅ
ପଳାଇ ନ ଯାନ୍ତୁ ଚଉପାଶେ ଘେରି ଦିଅ ।
ଆଜ୍ଞାପାଇ ଯୋଦ୍ଧାମାନେ ମଥୁରାକୁ ଛାଡ଼ି
ରଥ ଗଜ ପଦାତିଏ ଗଲେ ବେଗେ ମାଡ଼ି
ଆଗରେ ଦେଖିଲେ ରାମକୃଷ୍ଣ ଦୁହେଁ ଏକା
ପାଦେ ଚାଲି ଯାଉଛନ୍ତି ସଙ୍ଗେ ନାହିଁ ସଖା ।
ତ୍ରିରଉଣୀ ଲକ୍ଷେରାଜା ଅସଂଖ୍ୟ ସଇନ
ଯେ ଯାହାର ଶବ୍ଦମାନ କରେ ଛନ୍ତି ଘେନ ।
କେ ବୋଲଇ ଆଜନଷ୍ଟ ହେବ ରାଜକାର୍ଯ୍ୟ
କେହୁ ଯେ ବୋଲନ୍ତି ଧରା ପଡ଼ିଯିବ ଆଜ
କେ ବୋଲନ୍ତି ଏହି ଥରକାର ପ୍ରତିଘାନ୍ତ
ହାତେ ହାତେ ଧରୁ ଧରୁ ଫେଡ଼ାଇଣ ଯାନ୍ତି ।
ଅନନ୍ତ ମାୟାଧର ସେ ରାମକୃଷ୍ଣ ଦୁଇ
ଯାର ମାୟା ବ୍ରହ୍ମା ଶିବେ ଗୋଚର ନୁହଇ ।
ଏସନକ ରାଜ ସୈନ୍ୟ ଗୋଡ଼ାଇଲେ ପଛେ
ଆଗେ ଆଗେ ଯାଉଛନ୍ତି ନନ୍ଦ ବେନି ବତ୍ସେ ।
କ୍ଷଣେ ଦେଖାଦେଇ କ୍ଷଣେ ଅଦୃଶ୍ୟ ହୁଅନ୍ତି
ବଳେ ଧରୁ ଧରୁ ହାତ ଫେଡ଼ାଇ ପଳାନ୍ତି ।
ଥୋକେ ଦୂର ଏହିମତି ଭଣ୍ଡି ଭଣ୍ଡି ଗଲେ
ଜମୁନ୍ତ ପର୍ବତ ତଳେ ଅଦୃଶ୍ୟ ହୋଇଲେ ।
ବ୍ରହ୍ମା ଗଙ୍ଗାଧରେ ଯାର ଅଗୋଚର ମାୟା
ଉଲୁକ ମନ୍ତ୍ର ସୁମରି ଲୁଚିଲେ କାୟା ।

ଜରାସନ୍ଧ ଆଦି କରି ସର୍ବ ନୃପାନ୍ୱିତ
ତେଇ ଟଟେଭ ଚଉପାଶେ ବେଢ଼ିଲେ ତୁରିତ ।
ତ୍ରିଭାଗ ହୋଇ ସବୁ ନୃପଙ୍କର ଆଠ
ଅନେକ ପର୍ବତ ଜଗି ଓଗାଳିଲେ ବାଟ ।
ଏଥୁଅନ୍ତେ ପରବେଶ ହୁଅନ୍ତେ ସନ୍ଧ୍ୟାକାଳ
ଦିନନାଥ ଆରୋହଣ କଲେ ଅସ୍ତାଚଳ ।
ପର୍ବତ ବେଢ଼ିଲେ ଜରାସନ୍ଧର ସଇନ୍ୟ
ଦିନ ଅନ୍ତେ ପରବେଶ ହୋଇଲା ରଜନୀ ।
ରାମକୃଷ୍ଣ ଦୁହେଁ ଲୁଚି ଗୋପନରେ ଥିଲେ
ଲେଉଟି ମଥୁରାପୁରେ ପ୍ରବେଶ ହୋଇଲେ ।
ରାତ୍ର ବେଳଘଡ଼ି ସଙ୍ଗ ସଖା କେହି ନାହିଁ
ଉଗ୍ରସେନ ମନ୍ଦିରକୁ ଗଲେ ବେନିଭାଇ ।
ଦେଖି ଅଜା ଆଈ ଦୁହେଁ ସନ୍ତୋଷହୋଇଲେ
ମୁଖରେ ଚୁମ୍ବନ ଦେଇ କୋଳେ ବସାଇଲେ ।
ସକଳ ଯାଦବ ଦେଖି ମନେ ଲଭି ଶାନ୍ତ
ବୋଇଲେ ଅମ୍ଭର ଭୟ ଛୁଟିଲା ଏ ଯାନ୍ତ ।
ଯେ ଯାହାର ନିତ୍ୟକର୍ମ ଭୋଜନାଦି ସାରି
ବୋଲନ୍ତି କେବଣ କାର୍ଯ୍ୟ କରିବା ବିଚାରି ।
ଜରାସନ୍ଧର ଅନେକ ସୈନ୍ୟ ଯୁଦ୍ଧେ ମଲେ
ପୁଣ ପୁଣ ପରାଧାଇ ସମର ସେ କଲା ।
ଆଜ ସଂଗ୍ରାମରେ ତାର ହେଲା ପରାଜୟ
ଅସଂଖ୍ୟ ହାତୀ ରଥ ଅଶ୍ୱ ଗଲେ କ୍ଷୟ ।
ସବୁ ରାଜାମାନଙ୍କର ଅପ୍ରମିତ ବଳ
ରଥୀ ମହାରଥୀ ଆଦି ପଡ଼ିଲେ ସକଳ ।
ଅପମାନ ପାଇଅଛି ତେଢ଼େ ନୃପମଣି
ରଜନୀ ପାହିଲେ ବହି ଆସିବେ ସେ ପୁଣି ।
ଗଡ଼ ନରୋଧନ୍ତେ କୋପେ କଲୁ ସିନା ରଣ
ଆମ୍ଭ ହସ୍ତେ ନାହିଁ ଜରାସନ୍ଧର ମରଣ ।
ଉଗ୍ରସେନ କର୍ଣ୍ଣେ ଏହା କହି ନରହରି
ବୋଇଲେ ଗୁପତେ ତୁମ୍ଭେ ଯାଅ ଅପସରି ।
ଯାହାର ଗୃହରେ ଅଛି ଯେତେ ଧନଦ୍ରବ୍ୟ
ପୁତ୍ର ଦାରା ଆଦି ତାହା ଘେନଯାଅ ସର୍ବ ।
ଏହି ମୁହୂର୍ତ୍ତରେ ସର୍ବେ ଉଠି ଯେଝାମତେ
ଗୋମନ୍ତ ପର୍ବତେ ଯାଇ ରହିବ ଗୁପତେ ।
ସାତ୍ୟକି ସହସ୍ରାଜିତ ଉଦ୍ଧବ ଅକ୍ରୂର
କୃତବର୍ମା ଶତ୍ରାଜିତ ଅନାଧୃଷ୍ଟ ବୀର ।
ପୂରଅଛି ଆଦି ଯେତେ ବଳିଷ୍ଠ ଯାଦବେ
ଚତୁରଙ୍ଗ ସେନାଘେନ ଆମ୍ଭ ସଙ୍ଗେ ଥିବେ ।
ଆଉ ସମସ୍ତଙ୍କୁ ସଙ୍ଗେ ଘେନ ତୁମ୍ଭେ ଯାଅ
ଜରାସନ୍ଧ ଲେଉଟିବା ଯାଏ ତହିଁ ଥାଅ ।
ଶ୍ରୀକୃଷ୍ଣ ବଚନ ଶୁଣି ରାଜା ଉଗ୍ରସେନ
ସଙ୍ଗତେ ଘେନାଇଁ ବନ୍ଧୁ କୁଟୁମ୍ବ ସ୍ୱଜନ ।
ସମସ୍ତଙ୍କ ଧନଦ୍ରବ୍ୟ ଏକତ୍ରିତ କଲେ
ମଥୁରାକୁ ଛାଡ଼ିଯିବା ପାଇଁ ସଜ ହେଲେ ।
ଲାଗିଲା ଘଡଦହୁଡ଼ି ହୁଲା ନିରନ୍ତରେ
ବଣିକ ହାଟୁଆ ବାହାରିଲେ ଯେ ଯାହାରେ
ରାଣୀଏ ହାନ୍ଦୋଳା ଚଢ଼ି ହୋଇଲେ ବାହାର
ଦାସୀ ପରିବାର୍ଯ୍ୟ ସେବାକାରୀ ସୂପକାର ।
ନାନାବର୍ଣ୍ଣେ ଖଟଦୋଳା ସୁଆରୀ ପଲ୍ଲିଙ୍କ
ରଥଗଜ ଆରୋହଣ କଲେ ଥୋକେ ଲୋକ ।
ଯେ ଯାହାର ଧନଦ୍ରବ୍ୟ ସଙ୍ଗତେ ବୁହାଇ
ଗୃହଦ୍ୱାରେ ବାହାରିଲେ ଦିହୁଡ଼ି ଲଗାଇ ।
କେଉଁମାନେ ସଜାଡ଼ିଣ ନେଲେ ବୋଝଭାର
ଶଗଡ଼ ବଳଦେ ଲଦି ହୁଅନ୍ତି ବାହାର ।
ଛତିଶ ପାଟକ ଜାତି ଗୃହବର୍ଣ୍ଣ ମୂଳେ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ରାଦି ସକଳେ ।
ପୁତ୍ର କନ୍ୟା କାଖେ ଘେନି ଚଳିଲେ କାମିନୀ
ଗୃହସ୍ଥେ ବାହାର ହେଲେ ବଧୂ ସଙ୍ଗେ ଘେନ
ଚୌରାଶୀ କୋଟି ଯାଦବ ପୁରନାରୀ ଯେତେ
ଜଣ ଜଣ କରି ତାହା କହିବଇଁ କେତେ ।
ଆଗେ ଉଗ୍ରସେନ ରାଜା କୁଟୁମ୍ବ ଚଳାଇ
ପଛେ ପଛେ ବାହାରିଲେ ଅଶ୍ୱେକ ଆରୋହୀ
ସମସ୍ତ ଜନ ପରଜା ଧନକୋଷ ଘେନି
ଗୋମନ୍ତେ ଉଠନ୍ତେ ତିନି ପ୍ରହର ରଜନୀ ।
ନିର୍ଝର ଗିରି କନ୍ଦର ତରୁଲତା ମାଳ
ଅଗମ୍ୟ ବନ ଭିତରେ ଲୁଚିଲେ ସକଳ ।
ବଂଶ ଟେକି ଶାର୍ଙ୍ଗଧର ଗୁମୁଣ୍ଡିଆ ଟାଣି
ପର୍ବତେ ଲୁଚିଲେ ରାଜା ପରିବାର ଘେନି ।
ରଣଜିତା ଯାଦବଙ୍କୁ ଘେନିଣ ସଙ୍ଗତେ
ଗଡ଼ ଆବୋରି ରହିଲେ ରାମ ଜଗନ୍ନାଥେ ।
ରଥ ଗଜ ଅଶ୍ୱ ଆଉ ପଦାତି ସକଳ
ଚୌରାଶୀ କୋଟି ଯାଦବ ରଣଜିତା ବଳ ।

ଯାଦବେ ପ୍ରତ୍ୟକ୍ଷେ ଦେବଅଂଶୀ ଜଣେ ଜଣେ
ତ୍ରିଭୁବନ ସାଧିକରି ପାରନ୍ତି ସେ ରଣେ ।
ଶାସ୍ତ୍ର ଶାସ୍ତ୍ରରେ ସୁପଣ୍ଡିତ ସମରେ ଦୁର୍ଜ୍ଜୟ
ବିଶେଷରେ ବିଷ୍ଣୁ ତେଜ ଲାଗି ପୁଣ୍ୟମୟ ।
ସପତ ବଂଶ ଯାଦବ ଅସଂଖ୍ୟ ସଇନ
ଗଡ଼ଭିତରେ ରହିଲେ ରାମକୃଷ୍ଣ ବେନି ।
ସେ ବେନି ଭାଇଙ୍କ ପାଦେ ଲୁକ୍ତି ମୋରମାଥ
ଅଚ୍ୟୁତ ଦାସକୁ ରକ୍ଷାକର ଜଗନ୍ନାଥ ।

—❋—

## ଜରାସନ୍ଧର ସପ୍ତମ ବାର ଧାଡ଼ି

ଶୁକ ମୁନି ବୋଲନ୍ତି ଯେ ଶୁଣ ପରୀକ୍ଷିତ
କଳୁଷନାଶନ ବାଣୀ ଶ୍ରୀହରି ଚରିତ ।
ଏଥୁଅନନ୍ତରେ ପୁଣ ପାହିଲା ରଜନୀ
ଗଗନେ ଉଦୟ ହେଲେ ପ୍ରଭୁ ଦିନମଣି ।
ଫିଟିଲା ଅନ୍ଧ ପଟଳ ବିକଶିଲା ଜ୍ୟୋତି
ପରିମଳ ହୋଇ ଦିଗ ଦିଶେ ଚଉକତି ।
ଜୟନ୍ତ ପର୍ବତ ଥିଲା ଜରାସନ୍ଧ ବେଢ଼ି
ହରି ବଳରାମଙ୍କୁ ସେ ପାଇଲା ଲୋଡ଼ି ।
ଗଛେ ଗଛେ ପତ୍ରେ ପତ୍ରେ ଖୋଜିଣ ଉଗରେ
ବନସ୍ତ ଗହ୍ୱର ଲତା ଗୁଳ୍ମ ଅଭ୍ୟନ୍ତରେ ।
ଗିରି କନ୍ଦର ପାଷାଣ ଖେଳା ଗୁହା ଖାଲ
ନାନାମତେ ଖୋଜାଇଲା ଜରାସନ୍ଧ ମଲ୍ଲ ।
କୌଣସି ସ୍ଥାନରୁ କିଛି ନ ପାଇ ସନ୍ଦେଶ
ବୋଲେ ଏବେ କି କରିବା କହ ଦମଘୋଷ ।
ମୁଷା ସାରଥିଙ୍କ ରଥ ଗଜ ହୟ ଆଣି
ଚୁର ଉଗରଙ୍କ କଥା ନପାରିଲେ ଜାଣି ।
କାର୍ଯ୍ୟ ନପାଇଲେ ଭୁକ୍ତା ବାଇପ୍ରାପ୍ତ ହୋଇ
ଶତ୍ରୁ ରାଜାମାନେ ଶୁଣି କରିବେ ସେ ଠାହି ।
ସ୍ମରିଉଣା ଲକ୍ଷେରାଜା ଅଙ୍ଗବଳ ଘେନି
କାର୍ଯ୍ୟ ନ ପାଇଲେ ପୁଣି ହେଲା ଆମ୍ଭ ହାନି
ଏଡ଼େବଡ଼ ଯୋଦ୍ଧାମାନେ ଯୁଝି ଅଙ୍ଗଛଳେ
ଜୟକରି ନ ପାରିଣ ପଛଘୁଞ୍ଚା ଦେଲେ ।
ମୋରଭଳି ଲୋକ ଆସି ନ ପାଇଲା କାର୍ଯ୍ୟ
ନନ୍ଦ ଗଉଡ଼ର ପୋଏ କରାଇଲେ ଲାଜ ।
କାହାମୁଖ ଚାହିଁବି ମୁଁ ମହାରାଜା ହୋଇ
ପୋଡ଼ୁ ପୋଡ଼ୁ ଦେହମୋରେ ପ୍ରୟୋଜନ ନାହିଁ

ଛମ୍ପୁଟେଣାଇ ହସ୍ତ ହଜା ଟେଛ ମୋର ଭୁଲେ
ପ୍ରତ୍ୟକ୍ଷ କରିଣ କଥା ଜାଣିଲ କି ଛଳେ ।
ଯରିଲା ଓମା ବଳବୀର୍ଯ୍ୟ ଗଲା ଯଦବୁଦ୍ଧି
କେବଣ ଶତ୍ରୁକୁ ଆଉ ପାରିବ ମୁଁ ସାଧି ।
କା ଆଗେ କହିବି ଏହା କେ ଦେଖିବ ଭଲ
ନନ୍ଦ ଗଉଡ଼ର ପୋଏ ହେଲେ ମୋତେ ଶଲ
ସାମାନ୍ୟ ଶତ୍ରୁ ବୋଲିଣ ଭାବିଥିଲି ମୁହିଁ
ସମ୍ମୁଖରେ ଥାଇ ଯୁଦ୍ଧ ନ କରନ୍ତି ସେହି ।
ନିରନ୍ତର ପଳାନ୍ତି ସେ ପିଠି ଦେଇ ରଣେ
କେଉଁଠାରେ ଲୁଚିଯାନ୍ତି ନ ଦେଖନ୍ତି ଜଣେ ।
ବୁଡ଼ିଲେ ଯେ ପାଣିକୁଆ ଉଡ଼ିଲେ ଚକୁଆ
ଏ କଥା ଦେଖିଣ ମୁଁ ଯେ ହୋଇଲି କାବୁଆ
ଇନ୍ଦ୍ର ପ୍ରତି ବାକ୍ୟ ଶୁଣି ଦମଘୋଷ ପାଶେ
ଦୃଷ୍ଟାନ୍ତର ଦେଇ ରାଜା କହଇ ବିଶ୍ୱାସେ ।
କେବଣହିଁ ଦିନେ ଏକ କ୍ଷୁଦ୍ର ବେଙ୍ଗଗୋଟି
ଜଳଘାଟେ ବସିଥିଲା ସୂର୍ଯ୍ୟେ ଦେଇ ପିଠି ।
ଏକାଳେ ଆସନ୍ତେ ଏକ ସିଂହ ପାଣି ଖାଇ
ଦେଖିଲା ଜଳକୂଳରେ ଭେକ ଅଛି ଶୋଇ
ମାଡ଼ନ୍ତେ ଏ ମାରିଯିବ ବୋଲି ଦୟା କଲା
ବାଟ ଛାଡ଼ ପାଣି ପିଇଯିବି ମୁଁ ବୋଇଲା ।
ମଣ୍ଡୁକ ବୋଇଲା ତୋତେ କେତେବାଟ ନାହିଁ
ମୋତେ ଘୁଞ୍ଚାଇବୁ ବୋଲି ଆସିଅଛୁ ଧାଇଁ
ନ ଛାଡ଼ିବି ବାଟ ତୋତେ ନୁହଇ ମୁଁ ଭୁକ୍ତି
ବଳଥିଲେ ମୋ ଆଗରେ ଦେଖାଅ ପ୍ରତ୍ୟକ୍ଷ ।
ତୋହର ମୋହର ଆଜ କରିବା ସମର
ତୁ ମୋତେ ଜିଣିଲେ ଯିବୁ ପାନ କରି ନୀର ।
ପିଇବୁ ମୋତେ ଅବଜ୍ଞା କରି ଯେବା ଜଳ
ନିଶ୍ଚୟେ ପାଇବୁ ରକ୍ତ ପାନ କଲା ଫଳ ।
ସିଂହ ବିଚାରିଲା ମୋତେ ଲାଗୁଅଛି ତୃଷା
ଏ ପାମର ଥାଇ ମୋର ଖଣ୍ଡୁଅଛି ଆଶା ।
ପାଦେ ମାଡ଼ି ଚାଲିଗଲେ ମରିବ ଏକ୍ଷଣି
ଜଳକୁ ଆଶ୍ରୟ କରି ହେଉଅଛି ଠାଣି ।
ଏମନ୍ତ ବିଚାରି ସିଂହ ଧର୍ମ ନ ଲଙ୍ଘିଲା
ଉପରେ ଡେଇଁଣ ଜଳ ପିଇ ବାହୁଡ଼ିଲା ।
ଏବେ ଆମ୍ଭର ଚରିତ ତିହିଲା ସେହିମତି
ଏତେ କହି ଅହଂକାର କଲା ସେ ନୃପତି ।

ଧନ୍ୱନ୍ତ ବୋଲେ ଶୁଣ ରାଜାଧିରାଜ ଦେବା
ଲକ୍ଷେ ନୃପ କରୁଛନ୍ତି ତୋ ପାଦରେ ସେବା ।
ଅଳପ କଥାକୁ କିମ୍ପା କରୁଅଛ ଚିନ୍ତା
ତା ପରେ ଶ୍ରୀଗୋବିନ୍ଦ ଅଛି ବଳବନ୍ତା ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତୁ ହୋଇଲେ ପାରୁ ଜିଣି
ବୁଦ୍ଧିମନ୍ତ ବଳବନ୍ତ ବୀର ଶିରୋମଣି ।
କେତେକାଳ ପଳାଇଲେ ପଳାନ୍ତୁ ନ ଦେଖି
ଅଯୋଗରେ ଗୋଡ଼ାଇଲେ ଭେଟ ପଡ଼ଇକି
ଯିବାର କଥାକୁ ଆଉ ଶୋଚନା କିମ୍ପାଇଁ
ଆଗରେ ପଡ଼ିଲେ ନଷ୍ଟେ ଧରିବା ଗୋଡ଼ାଇ ।
ପୂର୍ବରୁ ଏକଥା ଆମ୍ଭେ ବିଚାର ନ କଲେ
ନ ଜାଣିବା ପଣେ ଏତେ ସୈନ୍ୟ ମରାଇଲେ
ପରାକ୍ରମ କଲେ ଯେବେ ଶତ୍ରୁ ନୋହେ ଜିଣି
ଉପାୟେ ଜିଣିମା ଏହା ରାଜନୀତି ଭଣି ।
ସାମ ଦାନ ଭେଦ ଦଣ୍ଡ ଚାରି ଉପାୟରେ
ଶତ୍ରୁକୁ ଜିଣିଣ ସାଧି କରିବ ବିଚାରେ ।
ଶ୍ରୀ ଦେବ ବରଷାକାଳ ହୋଉଛି ପ୍ରବେଶ
ପୂର୍ଣ୍ଣିମା ଦିନକୁ ଶେଷ ହେବ ଜ୍ୟେଷ୍ଠମାସ ।
ଆଷାଢ଼ ପ୍ରବେଶ ହେବ ବରଷାର କାଳ
ରାଜ୍ୟେ ଯାଇ ରାଜନୀତି କରିବା ସକଳ ।
ଚତୁର୍ମାସ୍ୟାରେ ବଞ୍ଚିବା ସର୍ବେ ସୁସ୍ଥହୋଇ
ଶରଦହେଲେ ଆସିବା ସମର୍ଦ୍ଦଣ୍ଡ ବାହି ।
ପଡ଼ିଲେ ଅନେକ ସୈନ୍ୟ ରଥ ଅଶ୍ୱ ଗଜ
ରାଜାମାନଙ୍କର ଭାଙ୍ଗି ଯାଇଅଛି ଓଜ ।
ଅନେକ ଧନ ଭଣ୍ଡାର ଦେଶ ଘୋଷ ଦେଇ
ଯେ ଯାହାର ଅମଙ୍ଗଳ ଭିଆଇବେ ଯାଇ ।
ବନପଲ୍ଲବଣ ନଦୀ ପୂର୍ଣ୍ଣହେବ ଜଳେ
ତରଣୀ ବନ୍ଧନେ ଥାଟ ମରିବେ ଆକୁଳେ ।
ଅଯୋଗରେ ଅଟକାଇ ସୈନ୍ୟହେବେ ଗଞ୍ଜି
ଯାହା ସଞ୍ଚିଆଇ ଯିବ ସପତାଙ୍ଗେ ଭାଜି ।
ଆଉ କିଛି ନ ବିଚାର ବାହୁଡ଼ିବା ଚାଲ
ସୁସ୍ଥ ହୋଇଣ ରହିବେ ଯେଝାଘରେ ବଳ ।
ଗୃପତେ ଚରଗ ପେଶି ତଦନ୍ତ ବୁଝିବା
ବର୍ଷାକାଳ ଶେଷ ହେଲେ ପୁଣି ଧାଡ଼ିଦେବା ।
ଦନ୍ତବକ୍ର ମୁଖୁଁ ଏହା ଜରାସନ୍ଧ ଶୁଣି
ବୋଇଲା ଆବର ଥରେ କହିବା ଚଳଣି ।
ତୁମ୍ଭେ ଯା କହିଲ ତାହା ମୋ ଚିତ୍ତରେ ରୁଚି
ଚତୁର୍ମାସ୍ୟା ଶେଷଯାଏ ଯିବା ଆମ୍ଭେ ଘୁଞ୍ଚି ।
ଏମନ୍ତ ବିଚାର ସର୍ବେ କରୁଥିଲେ ବସି
ସେ ସମୟେ ଦେଶାଉର ଜଣାଇଲା ଆସି ।
ଶ୍ରୀଦେବ ତୁ ସାବଧାନେ ଶୁଣ ନୃପନାହା
ସନ୍ଦେଶ ବାରତା ଆମ୍ଭେ ଆଣିଅଛୁ ଯାହା ।
ଗଡ଼ ଛାଡ଼ି ରାମକୃଷ୍ଣ ପଳାଇଣ ଥିଲେ
ନିଶରେ ବାହୁଡ଼ି ଆସି ମଥୁରା ରହିଲେ ।
ପ୍ରଭାତ ସମୟେ ଆମ୍ଭେ ଭେଟିଲୁ ନିର୍ଭରେ ।
ରଥରେ ଆରୋହି ଦୁହେଁ ଥିଲେ ସିଂହଦ୍ୱାରେ
ଗଡ଼ର ବାହାରେ ଆମ୍ଭେ ହେଲୁ ଭେଟାଭେଟି
ସନ୍ଦେଶ ବାରତା ଘେନି ଅଇଲୁ ଲେଉଟି ।
ଏହା ଶୁଣି ଜରାସନ୍ଧ ନିଶେ ହସ୍ତ ଦେଲା
ଯାଦବଙ୍କ କଥା ଆଜ ଜାଣିବା ବୋଇଲା ।
ରାମକୃଷ୍ଣ ଦୁହେଁ ଯେବେ ନଯାନ୍ତେ ପଳାଇ
ଏତେବେଳଯାଏ ଲୁଚି ରହିଥାନ୍ତେ କାହିଁ ।
କୁଟୁମ୍ବ ସମ୍ପଦ ତୁଲେ ଯାଦବଙ୍କୁ ମାରି
ଅଯାଦବ କରିବଇଁ ଆଜ ବସୁନ୍ଧରୀ ।
ମାରିବି ଯାଦବ ବଂଶ ସମୂଳେ ନିରୋଧି
ରାମକୃଷ୍ଣ ଭାଇ ବେନି ଜୀବନ୍ତରେ ବାନ୍ଧି ।
ଏତେକହି ଆଜ୍ଞାଦେଲା ସୈନ୍ୟବେଗେ ସାଜ
ସବୁ ନୃପଙ୍କର ଯେତେ ରଥ ଅଶ୍ୱ ଗଜ ।
ପଦାତି ସହିତେ ସର୍ବେ ସଜହୁଅ ବେଗେ
ମଥୁରାପୁରକୁ ଧାଡ଼ି ଦେବା ଏହିଲାଗେ ।
ଚତୁରଙ୍ଗ ସେନା ଥିଲେ ପର୍ବତକୁ ବେଢ଼ି
ଆଜ୍ଞାପାଇ ମଥୁରାକୁ ଅଇଲେ ବାହୁଡ଼ି ।
ଅଶ୍ୱ ଗଜକୁ ସଇନ୍ୟେ ଜଳ ତୃଣ ଦେଇ
ରନ୍ଧନ ଭୋଜନ କଲେ ଅଧବାଟେ ରହି ।
ଆଦିତ୍ୟ ଅସ୍ତ ହୁଅନ୍ତେ ଶେଷ ହେଲା ଦିନ
ରାତ୍ର ବେନି ଘଡ଼ିଠାରେ ଉଠିଲେ ଧାଇଁନ ।
ପବନ ସମାନେ ଥାଟ ଗଲେ ଅତି ବେଗେ
ଅର୍ଦ୍ଧରାତ୍ରମାନେ ମିଳି ମଥୁରାକୁ ଲାଗେ ।
ଗଡ଼କୁ ଘେରିଲେ ଶତେ ପୁର କରି ବାଣ୍ଟି
ଚନ୍ଦ୍ରମଣ୍ଡଳକୁ ଯେହ୍ନେ ରାହୁ ଥାଏ ଘୋଟି ।
ଯାଦବମାନଙ୍କୁ ସଙ୍ଗେ ଘେନି ନିର୍ଭୟରେ
ରାମକୃଷ୍ଣ ଦୁହେଁ ଛନ୍ତି ସେ ଗଡ଼ ଭିତରେ ।

ବାହାରେ ବେଢ଼ିଛନ୍ତି ଜରାସନ୍ଧ ସୈନ୍ୟ ଘେନି
ଗୃହ ଊଣା ଲକ୍ଷେ ରାଜା ଅସଂଖ୍ୟ ସଇନ ।
ଏଥୁଅନନ୍ତରେ ନିଶି ହୋଇଲା ଅବଶେଷ
ଯାଦବେ ଗୃହିଁଲେ ଉଠି ଗଡ଼ ଚଉପାଶ ।
ଦେଖିଲେ ଜରାସନ୍ଧର ସୈନ୍ୟ ଛନ୍ତି ବେଢ଼ି
ଅକଳିତ ଥାଟ ଯେହ୍ନେ ସମୁଦ୍ର ଲହଡ଼ି ।
ଥୋକାଏ ହରଷ ହୋଇଲେ ଥୋକେ କଲେ ଭୟ
କ୍ରୋଧାଗ୍ନିରେ ଜଳିଥୋକେ ହୋଇଲେ ଅଥୟ
ଯେ ଯାହା ସୁଖରେ ଉଠି ଅସ୍ତ୍ର ଶସ୍ତ୍ର ଧରି
ଅନେକ ସମର କଲେ ହାଉଳି ଆବୋରି ।
ଚୌରାଶୀ କୋଟି ଯାଦବ ଲକ୍ଷେ ରଜା ଥାଟ
ଘୋର ଯୁଦ୍ଧ କଲେ ଦୁଇ ବଳ ପଡ଼ି ଭେଟ ।
ହାତି ରଥୀ ମହାରଥୀ ପଦାତି ସହିତେ
ନାନା ବସ୍ତ୍ର ଧରି ଯୁଦ୍ଧ କଲେ କ୍ରୋଧଚିତ୍ତେ ।
କୃଷ୍ଣଙ୍କ ସହିତେ ରଣ କଲା ଜରାସନ୍ଧ
ଶିଶୁପାଳ ସଙ୍ଗେ ବଳଦେବ କଲେ ଦ୍ୱନ୍ଦ୍ୱ
ଦନ୍ତବକ୍ର ସଙ୍ଗେ ଯୁଦ୍ଧ କରଇ ସୁରଥ
ଶାଲ୍ୱକୁ ସମରେ ଆବୋରିଲେ ସତ୍ରାଜିତ ।
ଅକ୍ରୂର ଦମଘୋଷ ଏ ଭେଟାଭେଟି ହୋଇଲେ
ଜରାସନ୍ଧ ପୁତ୍ର ସଙ୍ଗେ ସାତ୍ୟକି ଯୁଝିଲେ ।
ଯାଦବ ମଧ୍ୟେ ପ୍ରସନ୍ନଜିତ ମହାବୀର
ଶ୍ରୀକାଳ ବାସୁଦେବର ସଙ୍ଗେ ଯୁଦ୍ଧ ତାର ।
କଳିଙ୍ଗସେନର ଅନାଧୃଷ୍ଟି ସଙ୍ଗେ ରଣ
ବୃହଧ୍ୱଜ ଆଗେ ମିଳି ଯୁଝିଲା ରୁକ୍ମଣ ।
ବଳିଷ୍ଠ ଯାଦବ ଯେତେ ଥିଲେ ଏହିପରି
ନୃପତିମାନଙ୍କ ସଙ୍ଗେ ଯୁଝିଲେ ଆବୋରି ।
ହାତିଙ୍କ ସଙ୍ଗତେ ହାତି ଭେଟାଭେଟି ହୁଅନ୍ତି
ପଦାତିଙ୍କ ସଙ୍ଗତରେ ଯୁଝିଲେ ପଦାତି ।
ଅଶ୍ୱାରୋହୀ ସଙ୍ଗତରେ ମିଳି ଅଶ୍ୱାରୋହୀ
ସମର କରନ୍ତି ନିଜ ବିକ୍ରମ ଦେଖାଇ ।
ଲକ୍ଷେ କୋଟିଏ ସହସେ ବାଣ କରେ ଧରି
କର୍ଣ୍ଣଯାଏ ଗୁଣ ଟାଣି ବିନ୍ଧନ୍ତି ହୁଙ୍କାରି ।
ଗୁରୁଜ ପରିଘ ଗଦା ଘେନି ଆଣ୍ଟେ ପିଟି
ପ୍ରହାର କରନ୍ତି ନାନା ଶସ୍ତ୍ର କୋଟି କୋଟି ।
ମାର ମାର ଧର ଧର ଶୁଭେ ଘୋର ଧ୍ୱନି
ରଣଗୋଳ ଶବ୍ଦରେ କମ୍ପିଲା ମେଦିନୀ ।

ଶ୍ରାବଣ ବରଷା ଜାଣି ପଡ଼ୁଅଛି ଶର
ନ ଦିଶିଲେ ଦିନମଣି ଦିବସେ ଅନ୍ଧାର ।
ଜଳୁ ଜଳୁଳା ଚୋକପ୍ରାୟ ଦିଶେ ବାଣାନଳ
ଅବଚ୍ଛିନ୍ନେ ପୂର୍ଣ୍ଣହେଲା ଆକାଶ ମଣ୍ଡଳ ।
ନିଘାତ ପଡ଼ିଲା ପ୍ରାୟେ ଶୁଭେ ଘୋରରଡ଼
ପ୍ରଳୟକାଳରେ ଯେହ୍ନେ ମେଘ ଘଡ଼ଘଡ଼
ରଣଘଣ ରଟମଟ ଧ୍ୱନି ବିକରାଳ
ଶଙ୍ଖରେ ଶଙ୍ଖ ବାଜନ୍ତେ ଉଠେ ପରିତାଳ ।
ଭୟଙ୍କର ଟଙ୍କାଇ ଜାତ ହେଲା ପ୍ରତିଧ୍ୱନି
ବନଗିରି ସହିତରେ କମ୍ପଇ ମେଦିନୀ ।
ଦିଶିଲା ସକଳ ସୃଷ୍ଟି ଉଲ୍‌କାପାତ ମଧ୍ୟେ
ଅର୍ଦ୍ଧଆକାଶେ ଦେଖନ୍ତି ରହି ଦେବତାଏ ।
ପଡ଼ିଲେ ସୈନ୍ୟ ଯାଦବଙ୍କ ଶରାଘାତେ
ଯେସନେ କଦଳୀବନ ପଡ଼େ ମହାବାତେ
ଲକ୍ଷେ ରାଜାଙ୍କର ଯେତେ ସୈନ୍ୟ ଅଙ୍ଗବଳ ।
ଛିନ୍ନ ମସ୍ତକ ହୋଇଣ ଲୋଟିଲେ ଭୂତଳ ।
ନାଚନ୍ତି କବନ୍ଧ ରଣେ ଲକ୍ଷ ଲକ୍ଷ ଉଠି
କେହୁ ଲମ୍ଫ ଧରି ନାଚେ କେ ପଡ଼େ ଲେଉଟି
ଏମନ୍ତେ ସଂଗ୍ରାମ ହେଲା ମହା ଭୟଙ୍କର
ଶୁକମୁନି ବୋଲନ୍ତି ଯେ ଶୁଣ ନୃପବର ।
ରାମଙ୍କୁ ଗୃହିଁଣ ଧୀରେ କହିଲେ ଶ୍ରୀଧର
ଜରାସନ୍ଧ ଜିଣୁ ଆମ୍ଭେ ଯିବା ଅପସର ।
ନ ଗଲେ ଦେବଙ୍କ କାର୍ଯ୍ୟ ନ ହୋଇବ କିଛି
ଆଜି ସଂଗ୍ରାମରୁ ଆମ୍ଭେ ପଳାଇବା ଘୁଞ୍ଚି ।
ରାମ ବୋଇଲେରେ ବାବୁ ଯେତୋହର ଇଚ୍ଛା
ତୁ ଯେ ସର୍ବଜ୍ଞପୁରୁଷ ପୂରୁତୋର ବାଞ୍ଛା ।
ତୁହି ବାବୁ ଜାଣୁ ସବୁ କାଳର ତଦନ୍ତ
ଯାଦବଙ୍କ ବଂଶରକ୍ଷା ହୁଅଇ ଯେମନ୍ତ ।
ଏମନ୍ତ ବଚନରେ ବଳଦେବ ଚକ୍ରଧର
ଯାଦବମାନଙ୍କୁ ଡାକି କହିଲେ ସ୍ଥିର ।
ଗଡ଼ର ଦକ୍ଷିଣ ଦ୍ୱାର କରାଇ ମୁକୁଳା
ଯାଦବଙ୍କୁ ସଙ୍ଗେ ଘେନି ଗଲେ ନନ୍ଦବଳା ।
ଯେ ଯାହାର ନିଜ ଅସ୍ତ୍ର କରେ ଛନ୍ତି ଧରି
ଧନୁରେ ଗୁଣ ଚଢ଼ାଇ ଆସ୍ଫାଳନ କରି ।
ଚଳିଲା କାଟନ୍ତେ ଯେହ୍ନେ ବନେ ଫିଟେ ବାଟ
ତେସନେ ବାହାରିହେଲେ ମାରି ଶତ୍ରୁଥାଟ ।

ଥୋକେ ମଲେ ଥୋକେ ପଳାଇଲେ ଭୟପାଇ
ଯାଦବ ବାହାବ ହେଲେ ଭେଳିକ ଦେଖାଇ
ଆଗେ ଯାନ୍ତି ବଳରାମ କରେ ଶସ୍ତ୍ର ଧରି
ମଧ୍ୟରେ ସୁରଥ ପଛେ କୃଷ୍ଣ ବଜେ କରି ।
ଦକ୍ଷିଣ ଭୁଜରେ ଗଦା ଚକ୍ର ପାଏ ଶୋଭା
ବାମକରେ ବିରାଜଇ ଶଙ୍ଖ ପଦ୍ମ ପ୍ରଭା ।
ଜାଜ୍ଵଲ୍ୟମାନ ମୂରତି ରାଜେ ବିଷ୍ଣୁ ତେଜ
ଶ୍ରୀମଧୁସୂଦନ ରୂପ ଧରି ଦେବରାଜ ।
ମାକେନ୍ଦୀଦଳ ପରାୟେ ଦିଶେ ଦିବ୍ୟକାୟ
କୋଟି କନ୍ଦର୍ପର କାନ୍ତି ହୋଇଛି ଉଦୟ ।
ସ୍ଵର୍ଗେ ଥାଇ ଦେବଗଣ ଦେଖି କଲେ ସ୍ତୁତି
ବୃହସ୍ପତି ଉଠି ଇନ୍ଦ୍ର ଆଗରେ କହନ୍ତି ।
ମୋ ବଚନେ ଇନ୍ଦ୍ର ତୁମ୍ଭେ ସାବଧାନ ହୋଇ
ମଥୁରାପୁରକୁ ଦେଖ ଦିବ୍ୟଦୃଷ୍ଟି ଦେଇ ।
ପଳାଇ ଅଛନ୍ତି ଜରାସନ୍ଧ ଭୟେ ହରି
ମାୟାରେ ମଧୁସୂଦନ ରୂପଗୋଟି ଧରି ।
କୋଟିଏ ଜରାସନ୍ଧକୁ ଯେ ପାରଇ ଜିଣି
ବିଶ୍ଵକୁଣ୍ଠ ମାୟା ପ୍ରଭୁ କରିଛନ୍ତି ପୁଣି ।
ସମସ୍ତ ଦେବତାମାନେ ସ୍ଵର୍ଗପୁରେ ଥାଇ
ଦେଖିଲେ ଯାଦବେ ଯାଉଛନ୍ତି ପିଠିଦେଇ ।
ବେନି ଯୋଜନ ଓସାରେ ବେଢ଼ିଛନ୍ତି ଥାଟ
ଏମୁଣ୍ଡ ସେ ମୁଣ୍ଡଯାଏ ଫିଟିଗଲା ବାଟ ।
ସୁର ସିଦ୍ଧ ସହିତରେ ସନକାଦି ମୁନି
କଲ୍ୟାଣ ବାଞ୍ଛିଲେ ମୁଖେକରି ବେଦଧ୍ଵନି ।
ବୃହତ ସାମ ଗାୟନ କଲେ ସୁର ଲୋକେ
ଅମର ଦୁନ୍ଦୁଭି ଘେନ ବଜାଇଲେ ଥୋକେ ।
ଅପସରା ନୃତ୍ୟ କରି କଲେ ପୁଷ୍ପବୃଷ୍ଟି
ଆକାଶ କୁସୁମେ ଶୋଭା ଦିଶେ ନବସୃଷ୍ଟି ।
ଏମନ୍ତ ସମୟେ ସ୍ଵାମୀ ହୋଇଲେ ବାହାର
ଚମତ୍କାର ଲଗାଇଣ ପ୍ରଭୁ ମାୟାଧର ।
ଆକାଶ ମଣ୍ଡଳୁଁ ଯେହ୍ନେ ଛୁଟେ ତାରା ପନ୍ତି
ତେସନ ସଜାଡ଼ ଦିଶେ ଯାଦବଙ୍କ ଜ୍ୟୋତି ।
ଅବ୍ୟକତ ବିଶ୍ଵରୂପେ କରେ ଶସ୍ତ୍ରଧରି
ପଛୁଆଣି ଥାଟେ ବଜେ ପାଦଗଡ଼ କରି ।
ଚକ୍ଷୁ ପିଛଡ଼ା ମାତ୍ରକେ ହୋଇଲେ ବାହାର
ଅବହେଳେ ଗୃହୁଁ ଗୃହୁଁ ଗଲେ ଗଦାଧର ।

ଥୋକାଏ ଦେଖିଲେ ଥୋକେ ନପାରିଲେଦେଖି
ମାୟାଧର ବନ୍ଦୀ କଲେ ସମସ୍ତଙ୍କ ଆଖି ।
ମଥୁରା ଦକ୍ଷିଣ ଭାଗେ ଗୋମତୀ ଯେ ନଦୀ
ଯମୁନାରୁ ଫୁଟି ଆସେ ଦକ୍ଷିଣକୁ ଭେଦି ।
ସେ ନଦୀକୁ ଜିଣି ଥୋକେ ଦୂରପଥ ଗଲେ
ମନ୍ଦର କାନନେ ଯାଇ ପ୍ରବେଶ ହୋଇଲେ ।
ପାଞ୍ଚଯୁଣ ଆୟତନ ସେହି ତୋଟାଗୋଟି
କଞ୍ଚନ ପର୍ବତଠାରୁ ନଦୀଯାଏ ଘୋଟି ।
ଅମୃତ ସମାନେ ସ୍ଵାଦୁ ଫଳମୂଳ ଜଳ
ସେ ତୋଟା ଭିତରେ ପୂରି ରହିଛି ସକଳ
ଫଳିତ ପୁଷ୍ପିତ ତରୁଲତା ଶୋଭାପାନ୍ତି
ସକଳ ସୁତଳ ଧାଡ଼ି ଧାଡ଼ି ପନ୍ତି ପନ୍ତି ।
ସେ ତୋଟା ମଧ୍ୟରେ ଯାଇ ମିଳିଲେ ଶ୍ରୀହରି
ସଙ୍ଗରେ ଯାଦବେ ଛନ୍ତି ରାମ ଆଦିକରି ।
ଦୁର୍ବାର ସମରେ ମହା ଘୋର ପୀଡ଼ା ପାଇ
ଜରାସନ୍ଧ ସୈନ୍ୟ ଥିଲେ ଥୋକେଦୂରେଁ ଯାଇ
ଡଗରେ ବାରତା ନେଇ ରାଜାଙ୍କୁ କହିଲେ
ଭୋଦେବ ଯାଦବେ ଗଡ଼ ଛାଡ଼ି ପଳାଇଲେ
ତାଙ୍କ ସଙ୍ଗେ ପଳାଇଲେ ରାମକୃଷ୍ଣ ବେନି
ସମରେ ପଡ଼ିଲେ ଆଜ ବହୁତ ସଇନ ।
ରାଜାମାନେ ପରିଧାଇ ଯୁଦ୍ଧ କରୁଥିଲେ
କପରି ସେ ଗଲେ କେହି ଜାଣି ନ ପାରିଲେ
ଶୁଣି ଜରାସନ୍ଧ କ୍ଷଣେ ହେଲା ସ୍ତମ୍ଭୀଭୂତ
ରାଜାଙ୍କୁ ଚାହିଁଣ ବୋଲେ ଏ କି ଆଚମ୍ବିତ ।
ଏତେ ପ୍ରକାରେ କେମନ୍ତେ ଭୁଲାଇ ସେ ଗଲା
କେ ବୋଇଲା ଜଳନ୍ଧର ବ୍ୟୂହ ଅବା କଲା ।
କୌଣସି ପ୍ରକାରେ ତାଙ୍କୁ ନ ପାରିଲେ ସାଧି
ଆବର ସେ ଗଉଡ଼ଙ୍କୁ ନାହିଁ ଆତ୍ମ ବୁଦ୍ଧି ।
କେଉଁବାଟେ ଗଲେ କାହିଁ ପଶିଲେ ସେ ଯାଇ
ଡଗରେ ବୁଲିଣ ବେଗେ ଖୋଜଆସ ଯାଇ.
ସେ ବେନି ଭାଇଙ୍କୁ ଯେବେ ନ ପାରିବ ମାରି
ଆପଣା ରାଜ୍ୟକୁ ଆଉ ଯିବା କମ୍ପା ଫେରି ।
ଜରାସନ୍ଧ ମୁଖୁଁ ଶୁଣି ଏସନ ଭାରତୀ
କରଯୋଡ଼ି ଜଣାଇଲା ଗୁଣମଣି ମନ୍ତ୍ରୀ ।
ଭୋଦେବ ଶୁଣିମା ସାବଧାନେ ମହାରାୟେ
ବଳିଷ୍ଠ ଶତ୍ରୁଙ୍କୁ ନୃପେ ଜିଣନ୍ତି ଉପାୟେ ।

ସାମାନ୍ୟ ଶତ୍ରୁ ନୁହନ୍ତି ହଳୀ ଚକ୍ରପାଣି
ଅଷ୍ଟମଲ୍ଲଙ୍କୁ ମାଇଲେ ଅବହେଳେ ଜିଣି ।
ଗୁରୁ ଦକ୍ଷିଣା ନିମନ୍ତେ ଯମପୁରେ ଗଲେ
ମଲ୍ଲୋକଙ୍କୁ ସେଠାରୁ ଘେନିଆଇଁ ଆଣିଲେ ।
ଅନନ୍ତ ମାୟାଧର ସେ ସ୍ୱୟଂ ବିଶ୍ୱବାସ
କାହାର ବଳରେ କେବେ ନୁହଇ ସେ ନାଶ ।
ଦେବାଧିଦେବଙ୍କ ରାଜା ପୁଣ୍ୟମୟ ଦେହି
ଏ ସେ ନାରାୟଣ ବୋଲି ଲୋକମୁଖେ କହି ।
ତା ସଙ୍ଗେ ବିବାଦ କଲେ ଯଶ ନାହିଁ କିଛି
ଥୋକେଦିନ ଅପସରି ରହିଲ ଯିବା ପୁଛି ।
ଦୁସ୍ତର କଟକାଭରେ ଷଞ୍ଜି ହେଲେ ଦଳ
କ୍ଷୁଧା ତୃଷାବଳେ ନ ପାଇଲେ ଅନ୍ନଜଳ ।
ଅଶ୍ୱ ଗଜ ଚରିବାକୁ ନ ମିଳଇ ଘାସ
ସବୁ ନୃପଙ୍କର ସୈନ୍ୟ ରଣେ ଗଲେ ନାଶ
ଅସଂଖ୍ୟ ସଇନ ମଲେ ଥୋକେ ଛନ୍ତି ରହି
ଯେ ଯାହାର ସୈନ୍ୟ ଘେନ ଯାନ୍ତୁ ଆଜ୍ଞାପାଇ
ଆକଟ କରଇ ତୁମ୍ଭେ ସମସ୍ତଙ୍କୁ ରୂଢ଼
ଯେ ଯାହାର ଅଙ୍ଗବଳ କରନ୍ତୁ ସେ ଦୃଢ଼ ।
ବର୍ଷାକାଳ ଶେଷ ହେଲେ ମାଜ ଯେଝାବଳ
ଯୁଦ୍ଧର ସାମଗ୍ରୀ ଘେନ ଆସି ହେବେ ଠୁଳ ।
ଏବେ ସେ ଯାଦବେ ଗଲେ ରଣେ ପିଠିଦେଇ
ଆବର ଲୋଡ଼ିଲେ ତାଙ୍କୁ ପାଇବା ନା କାହିଁ
ଭଲ ହେଲା ଯେବେ ରୂଢ଼ି ପଳାଇଲେ ଡରେ
ଆମ୍ଭେ କମ୍ପା ଗୋଡ଼ାଇବା ତାହାଙ୍କ ପଛରେ
କ୍ଷତ୍ରିୟ ବେଭାର ଏହୁ ନୁହଇ ରାଜନ
ମଲାଗଲା ଦୁଇଲୋକ ଅଟନ୍ତି ସମାନ ।
ରୂଢ଼ ସବୁ ପରିତାପ ହୁଅ ଦେହ ଶାନ୍ତ
ଯଶ ଘେନ ବାହୁଡ଼ିଣ ଯିବାକ ଏ ପାନ୍ଥ ।
ଗୁଣଭୂଷଣ ମନ୍ତ୍ରୀର ଏ ବଚନ ଶୁଣି
ସନ୍ତୋଷ ହୋଇଲା ଜରାସନ୍ଧ ନୃପମଣି ।
ନିଶରେ ହସ୍ତ ଦେଇଣ ବୋଲେ ଦଣ୍ଡଧାରୀ
ମଥୁରା ଗଉଡ଼ଙ୍କୁ ଭାଙ୍ଗ ନବନସ୍ତ କରି ।
ହାଟ ବାଟ ଚୂର କର ରାଜ୍ୟନ୍ତ ଉଜାଡ଼ି
ଘରେ ଘରେ ଅଗ୍ନିଜାଳ ସବୁ ଦିଅ ପୋଡ଼ି
ଯାହାକୁ ଦେଖିବ ଆଗେ ତାକୁ କର ବନ୍ଦୀ
ମୋ ଛାମୁକୁ ଆଣିଦିଅ ହାତ ଗୋଡ଼ ବାନ୍ଧି ।

ରାଜା ଆଜ୍ଞା ପରମାଣେ ଧାଇଁଲେ ସଇନ
କୁରାଢ଼ି ଶାବେଳ କାଙ୍କ କାତ୍ତ କୋଡ଼ି ଘେନ
ପ୍ରସାଦ ଅଟ୍ଟାଳ ଘରଦ୍ୱାର କାନ୍ଥବାଡ଼
ଦଣ୍ଡକ ମଧ୍ୟରେ ଭାଙ୍ଗି ଚୂର୍ଣ୍ଣ କଲେ ଘଡ଼ ।
ଦେଉଳ ମଣ୍ଡପ ମେଢ଼ ଜଗତି ପାଚେରି
ନବତାଳ ଉର୍ଦ୍ଧ୍ୱର୍ଗ ଯେ ଅଧାସ୍ୱର୍ଗ ସରି ।
ଦୁର୍ଜ୍ଜୟ କବାଟ ନାଟ୍ୟ ମନ୍ଦିର ଚାଟଣୀ
ପାଞ୍ଚତାଳ ଗମ୍ଭୀରରେ ଖୋଳି କଲେ କଣୀ ।
ସୁର୍ନା ରୂପା ଖମ୍ବ ବଜ୍ର ବାନ୍ଧଣି କବାଟ
ଧୂଳିସମ କଲେ ଭାଙ୍ଗି ଜରାସନ୍ଧ ଥାଟ
ଖଣ୍ଡ ଖଣ୍ଡକରି ନେଲେ ଯେ ଯାହାରେ ବହି
ଯମୁନା ନଦୀ ଜଳରେ ଭସାଇଲେ ନେଇ ।
ଇଟା ପଥର ମୁଗୁନି ସବୁ ଗଲା ନାଶ
ଭଣ୍ଡାର ଜୁରିଲେ ଯାହା ଥିଲା ଅବଶେଷ ।
ଅସଂଖ୍ୟ ଧନ ଭଣ୍ଡାର ସବୁ ବହିନେଇ
ଭଗ୍ନଗଡ଼ ପୋଡ଼ିଦେଲେ ଅନଳ ଲଗାଇ
ଉଠିଲା ପ୍ରଚଣ୍ଡ ଶିଖା ଦିଶିଲା ଆକାଶେ
ଧୂମ ଆବୃତେ ଅନ୍ଧାର ଦିଶେ ଦଶଦିଶେ ।
କ୍ଷଣକେ ମଥୁରାପୁର ଭସ୍ମ ହେଲା ପୋଡ଼ି
ଜୟଶଙ୍ଖ ବଜାଇଣ ଗଲେ ସେ ବାହୁଡ଼ି ।
ଛୟାଣୋଇସହସ୍ର ରାଜା ସଙ୍ଗେ ଜରାସନ୍ଧ
ଆପଣା ରାଜ୍ୟକୁ ଗଲା ଘେନ ସୈନ୍ୟବୃନ୍ଦ ।
ଇତିଶିରୀ ହରିବଂଶ ଗ୍ରନ୍ଥ ପୁଣ୍ୟମୟେ
ଇଦଂ ତୃତୀୟ ଅଧ୍ୟାୟ ସମାପତ ହୁଏ ।



## ଉଗ୍ରସେନ ସହିତ ଯାଦବଙ୍କୁ ଘେନି ରାମକୃଷ୍ଣଙ୍କର ମଥୁରା ପ୍ରବେଶ

ଏଥୁଅନନ୍ତରେ ପୁଣି ଶୁକବ୍ରହ୍ମା ଭଣି
ଶୁଣ ହୋ ପରୀକ୍ଷ ରାଜା ହରିବଂଶ ବାଣୀ ।
ହରିମାନ କୀର୍ତ୍ତନ ଏ ସୁଧାମୟ ରସ
ଶୁଣନ୍ତେ ପାପାଧିପାପ ଅଙ୍ଗୁ ହୁଏ ଧ୍ୱଂସ ।
ମଣିକର୍ଣ୍ଣିକାରେ ଶତେବାର ଝାସ ଦେଲେ
ସହସ୍ରେ ବରଷ ବିଶ୍ୱେଶ୍ୱରଙ୍କୁ ସେବିଲେ ।
ସହସ୍ରେ ବିପ୍ରଙ୍କୁ ଦେଲେ ସନ୍ତୋଷ ଭୋଜନ
ହରିବଂଶ ଶ୍ରବଣକୁ ନୁହଇ ସମାନ ।

ଜଳଦାନ ବସ୍ତ୍ରଦାନ ଅନ୍ନଦାନ ଆଦି
କାଯ୍ସାଙ୍କୁ ଦର୍ଶନ କରି ବ୍ରହ୍ମଜ୍ଞାନ ସାଧି
ନାନାତୀର୍ଥ ବ୍ରତ ତପସ୍ୟା ଆଦି କରି
ହରିବଂଶ ଶ୍ରବଣକୁ ନୁହନ୍ତି ଏ ସରି ।
ଏଥୁଅନ୍ତେ ସୈନ୍ୟ ଘେନି ଜରାସନ୍ଧ ରାଜା
ଆପଣା ରାଜ୍ୟକୁ ଗଲା ବଜାଇଣ ବାଜା ।
ସଙ୍ଗରେ ଅଛନ୍ତି ସବୁ ନରପତିମାନେ
ରାଜ୍ୟରେ ପଶିଲା ପଥ ବାହି ସାତଦିନେ ।
ପାତ୍ର ମନ୍ତ୍ରୀ ଅମାତ୍ୟ ବନ୍ଧୁ ଜନ ଯେତେ
ପାଛୋଟି ଅଇଲେ ଘେନି ଯୋଜନ ପର୍ଯ୍ୟନ୍ତେ
ନଗର ଭିତରେ ଯାଇ ହୋଇଲେ ପ୍ରବେଶ
ରାଜାଙ୍କୁ ବୋଇଲା ସର୍ବେ ଯାଅ ଯେଝାଦେଶ
ଧନବସ୍ତ୍ର ଆଭରଣ ପୁରସ୍କାର ଦେଲା
ଚତୁର୍ମାସ୍ୟ ଶେଷ ହେଲେ ଆସିବେ ବୋଇଲା
ପଦାତି ସାରଥି ରଥୀ ଅଶ୍ୱ ଗଜ ବଳ
ଦ୍ୱିଗୁଣ କରି ଭିଆଣ କରିବ ସକଳ ।
ସୂନ୍ଦରଙ୍କୁ ଶାଢ଼ୀ ଘର କଳା ତାଟି ବାଡ଼
କୁନ୍ତ ଲାଙ୍ଗିଆ ଗୁ ଭୁଜ ଛୁରୀ ଯମଦାଢ଼ ।
ପରଶୁ ପରିଘ ଗଦା ଶାବେଳ ମୁଦ୍ଗର
ଧନୁ କାଣ୍ଡ ଖଣ୍ଡାଢ଼ାଲ କବଚ ତୂଣୀର ।
ଏମାନଙ୍କୁ ଆଦି ଯେତେ ଅସ୍ତ୍ର ଶସ୍ତ୍ର ଅଛି
ବରଷା କାଳରେ ସବୁ ସମ୍ପାଦିବ ବାଛି ।
ନନ୍ଦ ଗଉଡ଼ର ପୁଅ ଦେଲା ଅପମାନ
ତୁମ୍ଭେ ସର୍ବେ ମୋକାର୍ଯ୍ୟରେ ହେବ ସାବଧାନ
ମୋ ଆଜ୍ଞା ନ ପାଳି ଯେବା କରିବ ଅନ୍ୟଥା
ରାଜ୍ୟ ଧ୍ୱଂସିବି ତାର କଟାଇବି ମଥା ।
ଜରାସନ୍ଧ ମୁଖୁଁ ଶୁଣି ଏସନ ଆଦେଶ
ସନମତ କରି ନୃପେ ଗଲେ ଯେଝା ଦେଶ ।
ଯେତେସୈନ୍ୟ ନେଇଥିଲେ ସକଳ ନୃପତି
ତିନିଭାଗ ମରି ଭାଗେ ବରତି ଅଛନ୍ତି ।
ଦୁର୍ବୁଦ୍ଧି ଦୁରାତ୍ମା ଦୁଷ୍ଟ ପାପିଷ୍ଠ ସକଳ ।
ଯାଦବଙ୍କ ହସ୍ତେ ମରି ଗଲେ ଯମଆଳ ।
ଶ୍ରୀକୃଷ୍ଣ ଭକତ ଯେତେ ଥିଲେ ପୁଣ୍ୟଦେହୀ
ମହାଘୋର ସଂଗ୍ରାମରୁ ବର୍ତ୍ତିଛନ୍ତି ସେହି ।
ପୃଥ୍ୱୀଭାର ନିବାରିବା ପାଇଁ ଦେବହରି
ଅନେକ ଦୁଷ୍ଟଙ୍କୁ ରଣେ ପକାଇଲେ ମାରି ।

ବରଷା ଆଗମ ଦେଖି ଜରାସନ୍ଧ ରାଜା
ଆପଣା ରାଜ୍ୟରେ ରହି ପାଳିଲା ପରଜା ।
ଶୁଣ ହେ ପରୀକ୍ଷ ରାଜା ଶୁକ ଯେ ବଦନ୍ତି
ଶ୍ରୀଭାଗବତ ପୁରାଣ ପୁଣ୍ୟମୟ କୀର୍ତ୍ତି ।
ଜରାସନ୍ଧ ଡରେ ରାମ କୃଷ୍ଣ ଭାଇ ବେନି
ମଥୁରାରୁ ପଳାଇଲେ ଯାଦବଙ୍କୁ ଘେନି ।
ଗୋମନ୍ତ ପର୍ବତେ ଲୁଚି ଉଗ୍ରସେନ ଥିଲେ
ସମସ୍ତେ ଯାଇଣ ତାଙ୍କ ପାଶରେ ମିଳିଲେ ।
ପୁତ୍ର ଭାର୍ଯ୍ୟା ଙ୍କଡ଼ ବନ୍ଧୁ ବାନ୍ଧବ ସୋଦର
ହାଟୁଆ ବାଟୁଆ ପ୍ରଜା ସମ୍ପଦ ଭଣ୍ଡାର ।
ଅଗମ୍ୟ ବନ ଭିତରେ ସର୍ବେ ଛନ୍ତି ରହି
ଯାଦବଙ୍କୁ ଘେନି କୃଷ୍ଣ ପ୍ରବେଶିଲେ ତହିଁ ।
ଉଗ୍ରସେନ ରାଜାଙ୍କୁ ସେ ନମସ୍କାର କଲେ
ସଂଗ୍ରାମ ବାରତା ସବୁ ସଂକ୍ଷେପି କହିଲେ ।
ଭୋ ତାତ ମଥୁରା ଗଡ଼ ଭାଙ୍ଗି ଜରାସନ୍ଧ
ଆପଣା ରାଜ୍ୟକୁ ଗଲା ଘେନି ସୈନ୍ୟବୃନ୍ଦ ।
ଗୃହଉଣା ଲକ୍ଷେରାଜା ତା ସଙ୍ଗରେ ଥିଲେ
ଯେ ଯାହାର କଟକକୁ ବିଜେକରି ଗଲେ ।
ଉଗ୍ରସେନ ଆଗେ ଏହା କହି ଦେବରାୟ
ବୋଇଲେ କରିବା ଆମ୍ଭେ କେବଣ ଉପାୟ
ଉଗ୍ରସେନ ବୋଲେ ତୁମ୍ଭେ ଅଟ ଦେବରାଜା
ବ୍ରହ୍ମା ଇନ୍ଦ୍ର ଗଙ୍ଗାଧର କରୁଛନ୍ତି ପୂଜା ।
ତୁମ୍ଭ ବିଚାରକୁ ବାବୁ ଆସଇ ଯେମନ୍ତ
ଲଭହାନ ବୁଝି ତାହା କର ପଦ୍ମନେତ୍ର ।
ଯାର ନାମ ସୁମରନ୍ତେ ଶତ୍ରୁ ହୁଏ କ୍ଷୟ
ତା ସଙ୍ଗତେ ଥିଲେ ଶତ୍ରୁଠାରୁ କିସ ଭୟ ।
ଶ୍ରୀକୃଷ୍ଣ ବୋଇଲେ ଚାଲ ମଥୁରାକୁ ଯିବା
ସମସ୍ତେ ବିଚାରି ଯାହା ହେବ ତା କରିବା ।
ଦୁସ୍ତର ବରଷାକାଳ ହେଲାଣି ପ୍ରବେଶ
ଆପଣା ରାଜ୍ୟେ ବଞ୍ଚିବା ରହି ଚାରିମାସ ।
ରାଜ୍ୟଯାକ ଧ୍ୱଂସିଅଛି ଜରାସନ୍ଧ ରାଜା
ଆମ୍ଭଙ୍କୁ ଦେଖିଲେ ସୁସ୍ଥ ହୋଇବେ ପରଜା ।
ଏମନ୍ତ ବିଚାରି ତହୁଁ ବାହାର ହୋଇଲେ
ମଥୁରା କଟକେ ଯାଇ ସମସ୍ତେ ମିଳିଲେ ।
ନବତାଳ ଉତ୍ସର୍ଗରେ ଯେବଣ ପାଚେରୀ
ଦେଖିଲେ ଭାଙ୍ଗିଛି ତାହା ଭୂମିସମ କରି ।

ପାଞ୍ଚତାଳ ଉଚ୍ଚର୍ଗରେ ମଡ଼ା ପଡ଼ିଛନ୍ତି
ଚେନି ଯୋଜନ ପର୍ଯ୍ୟନ୍ତେ ଗନ୍ଧାଏ ବିକୃତି ।
ଶ୍ୱାନ ଶୃଗାଳ ଶାଗୁଣା ବାଘ ଭାଲୁ ମୂଳେ
ମଡ଼ା ମାଂସ ଖାଇ କ୍ରୀଡ଼ା କରନ୍ତି ସକଳେ ।
ଗଡ଼ ଭିତରକୁ ପଶି ଯାଦବ ସଇନ
ଦେଖିଲେ ପୋଡ଼ୁଛି ଲାଗି ପ୍ରଚଣ୍ଡ ବହ୍ନିନ ।
ଜଉ ସଜଳସ ଗୁଆଘିଅ ଛଣପଟ
ଅନଳେ ପଡ଼ନ୍ତେ ଜଳି ଉଠେ ଝଟମଟ ।
ନନ୍ଦାବର୍ତ୍ତିକ ଝିଙ୍କର ସ୍ଥୁଏଣି ଯେ ଘର
ଧନକ ମଧ୍ୟେ ଭକ୍ଷିଲେ ସବୁ ବୈଶ୍ୱାନର ।
ଅନଳ ଜଳନ୍ତେ ଧୂମ ଉଠି ଜ୍ୱାଳାବଳ
ଦିବସ ଅନ୍ଧାର ଦିଶେ ଲୁଚି ଅଂଶୁମାଳୀ ।
ଥୋକାଏ ଯାଦବ ଗଡ଼ ଭିତରେ ପଶନ୍ତି
ପୋଡ଼ୁଥିବା ଗୃହେ ଜଳ ପକାଇ ଲିଭାନ୍ତି ।
ଥୋକାଏ ଯାଦବ ମନେ ପାଇ ଘୋରବ୍ୟଥା
ଏକକୁ ଆରେକ କହୁଛନ୍ତି ଦୁଃଖ କଥା ।
କେ ବୋଲନ୍ତି ଯେବେ କଂସରାଜା ଥାନ୍ତା ଜୀଇ
ଏସନକ ଉପଦ୍ରବ ହୁଅନ୍ତା କମ୍ପାଇଁ ।
ଏକା ରାମକୃଷ୍ଣ ଯୋଗୁ ହେଲା ଏତେ ମନ୍ଦ
ଜିଣିବା ବଳ ନଥାଏ କରନ୍ତି ସେ ଦ୍ୱନ୍ଦ୍ୱ ।
ପଚୁଆର ଯୁଦ୍ଧେ ଯେବେ ନୁହନ୍ତି ସେ ସର
ଆଗହୁଁ ଭେଟି ନ ଦେଲେ କମ୍ପା ସନ୍ଧିକର ।
ଆନକୁ କହିଲେ ହେବ ପ୍ରୟୋଜନ କିସ
ଉଗ୍ରସେନ ନୃପବର ଅଟେ ସବୁ ଦୋଷ ।
ଜରାସନ୍ଧ ପ୍ରାପ୍ୟ ବନ୍ଧୁ କେତେକ ପାଇବା
ଧନରତ୍ନ ଦେଇ କମ୍ପା ନକଲେ ତା ସେବା ।
ଅଚଳାଚଳ ସମ୍ପଦ ଅର୍ଜିଥିଲା କଂସ
ଏହାଙ୍କ ଅଯୋଗ୍ୟ ପଣେ ସବୁଗଲା ନାଶ ।
ମେଘଦଣ୍ଡ ପାଚେରି ଯେ ସୁନିର୍ମାଣ ଗଡ଼
ଅଠର ଯୋଜନ ସ୍ଥଳୀ ପାଷାଣେ ନିବାଡ଼ ।
ଖଣା ପୋଡି ଜରାସନ୍ଧ କରିଗଲା ଯାହା
ଏହାଙ୍କ ବଳେ କି ଆଉ ହୋଇପାରେ ତାହା
ମଥୁରା ଗଡ଼କୁ ସ୍ୱର୍ଗପୁର ନୋହେ ସମ
ନିଶ୍ଚୟ ଜାଣିଲୁ ଏଥୁ ନାଶଗଲା ଧର୍ମ ।
ଏସନକ ବିଚାରନ୍ତି ପୁରବାସୀ ଲୋକେ
ଆପଣା କର୍ମ ସୁମରି ଶାନ୍ତ ହେଲେ ଥୋକେ

ପ୍ରଜାଙ୍କ ବିକଳ ଦେଖି ଲକ୍ଷ୍ମୀଦେବୀ ସାଇଁ
ଧାତକାରେ ଆଜ୍ଞା ଦେଲେ ବିଶ୍ୱକର୍ମା ବାଇ ।
ନାରାୟଣ ବୋଇଲେ ହେ ବିଶ୍ୱକର୍ମା ଶୁଣ
ମଥୁରାକୁ ଧ୍ୱଂସିଗଲା ଜରାସନ୍ଧ ରାଣ ।
ସମସ୍ତ ଜନ ପରଜା ପାଉଛନ୍ତି ଦୁଃଖ
ଏକାଳେ ତାହାଙ୍କୁ ତୁମେ ସାହାହୋଇ ରଖ
ମଥୁରାଗଡ ପାଟଣା ତୁମ୍ଭେ ଅଛ ଜାଣି
ଚତୁର୍ଦ୍ଦଶ ଗୁଣ କରି ଭିଆଇବ ପୁଣି ।
ରାଜାଙ୍କ ନଗର ପାତ୍ର ମନ୍ତ୍ରୀଙ୍କ ଉଆସ
ଦେଉଳ ମଣ୍ଡପ ମେଡ଼ ପ୍ରଜାଙ୍କ ନିବାସ ।
ଯେଝା ଅନୁରୂପେ ବାସଗୃହ ପରିମାଣି
ପୂର୍ବ କଟକ ସ୍ଥାପନ କର ଏହିକ୍ଷଣି ।
ଏସନକ ଆଜ୍ଞା ଯହୁଁ ଦେଲେ ନାରାୟଣ
ବିଶ୍ୱକର୍ମା ଲାଗି କଲେ ନଗର ନିର୍ମାଣ ।
ମେଡ଼ ମଣ୍ଡପ ଉପରେ ଜଗତି ଅଟ୍ଟାଳୀ
ବିଚିତ୍ର ମନ୍ଦିରମାନ କଲେ ଭଲ ଭଲ ।
ଅପୂର୍ବ ପାଟଣା ଚେନି ଯୁଣ ଆୟତନ
ଝିଙ୍କର ସ୍ଥୁଏଣି ପିଡ଼ା ଉର୍ଦ୍ଧ୍ୱେ ବିତପନ ।
ସ୍ଫଟିକ ପାବଚ୍ଛ ଝଲମଲ କାଚବାଡ଼
ହିଙ୍ଗୁଳ ହରିତାଳରେ କାମ ରୁଚିର ଆଡ଼ ।
ରକତ ଚନ୍ଦନ କାଠ କାଣ୍ଡ ରୁଅ ଶେଣୀ
ନେତ ପତାଙ୍କ ସୁବର୍ଣ୍ଣ କଳସ ଖଞ୍ଜାଣୀ ।
ହୀରା ମାଳା ମୋତି ମଣି ମାଣିକ୍ୟରେ ଜଳ
ସୁବର୍ଣ୍ଣ ଖମ୍ବରେ ଗଜଦନ୍ତର ପିଣ୍ଡୁଳ ।
ରସାଣିଲା ପାନପତ୍ର ଝଲମଲ ଜ୍ୟୋତି
ଅମୂଲ୍ୟ ରତନ ଝରି ଶୋହେ ପନ୍ତି ପନ୍ତି ।
ରୁପିଲା ମର୍କତ ଖମ୍ବେ ନାନା ରତ୍ନ ହୋମ
ଇନ୍ଦ୍ର ଗୋବିନ୍ଦ ଗୃନ୍ଦୁଆ ମଧ୍ୟେ ସୂଚୀକାମ ।
ନେତ ପତନି ସିନ୍ଦୂରିଆ ଧବଳ ମାଞ୍ଜିଷ୍ଟ
ବସନ୍ତ ସୁପୀତ ନୀଳ ନାନା ବର୍ଣ୍ଣେ ପାଟ ।
ପାରୁଶରେ ଉଭା ହୋଇ କାଠର ମଣ୍ଡିଣି
ଗଣ୍ଡି ମୂଳେ ରଙ୍ଗପାଟ ରୁଚିର ଖଞ୍ଜଣୀ ।
ରାଜାଙ୍କ ଏକାନ୍ତ ପୁର ରାଣୀଙ୍କ ପାଟଣା
ଅମର ବାରସ୍ତମ୍ଭକୁ ଦିଶଇ ସେ ଜଣା ।
ସିଂହଦ୍ୱାର ପୂର୍ବଦ୍ୱାର ପଶ୍ଚିମ ଉତ୍ତର
ଭିତରେ ଭିତରେ ଦ୍ୱାର ରାଣୀହଂସ ପୁର ।

ବିଚିତ୍ର ସଭାରେ ସ୍ଥାପି ରତ୍ନ ସିଂହାସନ
ଏମନ୍ତେ ରାଜାଙ୍କ ପୁର କଲେ ସେ ନିର୍ମାଣ ।
ମଧ୍ୟ କକ୍ଷରେ ନିର୍ମାଣି ଦ୍ରବ୍ୟ ଗନ୍ଧାଘର
ତଦନ୍ତରେ ନିର୍ମାଣିଲେ ପାତ୍ର ମନ୍ତ୍ରୀପୁର ।
ଆଖଡ଼ା ମନ୍ଦିର ନାଟ୍ୟଶାଳା ହସ୍ତୀଶାଳ
ଘୋଡ଼ାଶାଳ ଓଟଶାଳ ଗୋରୁଙ୍କ ଗୁହାଳ
ନଗର ବାହାରେ ରଚି ରଖିଲେ ଏମାନ
ଦାଣ୍ଡ ହାଟ କୂପ ବାପୀ ପ୍ରଜାଙ୍କ ସଦନ ।
ଗଡ଼ୁଁ ଶତେଗୁଣ କରି ସୁନିର୍ମାଣ କଲେ
ଯେ ଯେତେ ଭଜନ ତାକୁ ତେତେଗୃହଦେଲେ
ଲେଙ୍କା ଲମତା ଖୁଣ୍ଟିଆ ହାରି ପଡ଼ିହାରି
ରଜକ ନାପିତ ବେଶକାର ଆଦିକରି ।
ହାଟୁଆ ବାଟୁଆ ବେଶ୍ୟା ଭାଟ ବଣିଜାରେ
ନିଶ୍ଚନ୍ତେ ରହିଲେ ଗୃହେ ଯାଇ ଯେଯାହାରେ
ଚୌରାଶୀକୋଟି ଯାଦବ ଇଷ୍ଟବନ୍ଧୁ ମୂଳେ
ସୁସ୍ଥ ହୋଇ ଯେଝାସ୍ଥାନେ ରହିଲେ ସକଳେ
ବାହାରେ ପାଚେରି ନବତାଳ ଉତ୍ସର୍ଗରେ
ପାଞ୍ଚତାଳ ମାନେଖଣା ଜଳ ତହିଁ ପରେ ।
ଗୃଙ୍ଗୁବାଙ୍ଗୁଲି କୋଳଆ ଘର ବାଘମୁହିଁ
ଅଜୟ ଗଡ଼କୁ ଆନ ପଟାନ୍ତର ନାହିଁ ।
ପାଞ୍ଚ ପାଞ୍ଚ ଆଙ୍କିଅଛି ଭିତରେ ବାହାରେ ।
ପୁଞ୍ଜା କାଳର ଅର୍ଗଳ ଯୋଡ଼ା କବାଟରେ
ନାନାଶସ୍ତ୍ର ଦାରୁ ଗୁଳି ନଳ ଛୁଟିକଣି
ବିଶ୍ୱକର୍ମାର ଘଟଣା ବିଚିତ୍ର ସାଜେଣି ।
ଯାଦବେ ଦେଖି ଅପୂର୍ବ ପ୍ରାୟେ ତାହା ମଣି
ବୋଲନ୍ତି କିମ୍ଭୁତ ମାୟା ନ ପାଇଲୁ ଜାଣି ।
ସୈନ୍ୟ ଘେନି ଜରାସନ୍ଧ ରାଇଜ ଉଜାଡ଼ି
ପ୍ରତ୍ୟକ୍ଷେ ଦେଖିଲୁ ଗଲା ଘରଦ୍ୱାର ପୋଡ଼ି ।
କାଲି ମଧ୍ୟାହ୍ନ ସମୟେ କିଛିହିଁ ନ ଥିଲା
ରାତ୍ରିକ ଭିତରେ କିଏ ଆସି ଭିଆଇଲା ।
କେ ବୋଲେ ବିଧାତା ଆସି ସରଜିଲା ଏହା
କେ ବୋଲଇ ମାୟା କଲେ ଲକ୍ଷ୍ମୀଦେବୀ ନାହା
ବଡ଼ଇ ଅପୂର୍ବ ଏହା କେବେ ଦେଖି ନାହୁଁ
ଏତେବେଳେ ଏତେ ଦ୍ରବ୍ୟ ହେଲା ଗୁଣ କାହୁଁ
ଯେବଣ କଟକେ ବାସ କରିଥିଲେ ପୂର୍ବେ
ତହିଁରୁ ଅଧିକ ଦେଖା ଯାଉଅଛି ଏବେ ।
କେ ବୋଲଇ ଯହିଁ ନାରାୟଣ ଆପେ ଅଛି
ତାହାଙ୍କୁ ଅପୂର୍ବ ଏହା ନୁହଇ ଯେ କିଛି ।
ଯାହାର ଆଜ୍ଞାରେ ସୃଷ୍ଟି ହୁଏ ଆତଯାତ
ଅବହେଳେ କରିପାରେ ଯେ ବ୍ରହ୍ମାଣ୍ଡ ସାତ ।
ଶୁଭାଶୁଭ କର୍ମକରି ପାରଇ ଯେ ଆନ
ଦେବଙ୍କ ଉପରେ ଦେବ ଯେଉଁ ଭଗବାନ
ତୁଳସୀବଲ୍ଲଭ ଲକ୍ଷ୍ମୀଦେବୀ ପ୍ରାଣବନ୍ଧୁ
ଭକତବତ୍ସଳ ପ୍ରଭୁ କୃପାଜଳ ସିନ୍ଧୁ ।
ପ୍ରତ୍ୟକ୍ଷେ ଦେଖିଲେ କୃଷ୍ଣ କଲେ ଯେଉଁ କୃତ୍ୟ
ବଞ୍ଚାଇ ଆଣିଲେ ଯମଘରୁ ଷଡପୁତ୍ର ।
ଅଷ୍ଟମଲ୍ଲ ତୁଲେ ଯେହୁ ବଧ କଲେ କଂସ
ସେ କୃଷ୍ଣଙ୍କ ବଳେ ହୋଇ ନ ପାରଇ କିସ ।
ମାଗଇ ଅଚ୍ୟୁତ ଦାସ କିବା ଏହି ବର
ଯେ ତୁମ୍ଭର ଇଚ୍ଛା ପ୍ରଭୁ ସେହି ଆଜ୍ଞା କର ।



## ବର୍ଷାଋତୁ ବର୍ଣ୍ଣନା ଓ କୃଷ୍ଣଙ୍କର ଗୋପଚିନ୍ତା

ଶୁକ ବୋଇଲେ ହୋ ଶୁଣ ପରୀକ୍ଷ ଭୂପାଳ
ଏସନ ବିହାର କଲେ ଯାଦବ ସକଳ ।
ଉଗ୍ରସେନ ନୃପ ନିଜ ନବରେ ରହିଲେ
ସମସ୍ତ ଯାଦବେ ଯେଝା ଭୁବନକୁ ଗଲେ ।
କୁଟୁମ୍ବ ବାନ୍ଧବ ଧନ ସମ୍ପଦ ସହିତେ
ପୂର୍ବପରକାରେ ସୁଖେ ରହିଲେ ସମସ୍ତେ ।
ହାଟ ପାଟଣା ନଗର ବିରାଜଇ ତେଜେ
ସହସ୍ର ପାଦରେ ଲକ୍ଷ୍ମୀ ଆସି କଲେ ବିଜେ
ଆଧି ବ୍ୟାଧି ରୋଗ ପୀଡ଼ା ନ ଜାଣିଲେ ପ୍ରାଣୀ
ଧର୍ମ ପଣରେ ଯାଦବେ କୁବେରଙ୍କୁ ଜିଣି ।
ରାମକୃଷ୍ଣ ଆହ୍ଲାଦରେ ଯାଦବେ ଦୁର୍ଜ୍ଜୟ
ଇନ୍ଦ୍ର ଚନ୍ଦ୍ର ହେଲେ ମନେ ନ କରନ୍ତି ଭୟ ।
ହରି ବଳରାମ ପାଦେ କରନ୍ତି ଭକତି
ଉଗ୍ରସେନ ରାଜଧର୍ମେ ପ୍ରଜାଙ୍କୁ ପାଳନ୍ତି ।
ଗର୍ଗଙ୍କ କନିଷ୍ଠ ଭ୍ରାତା ମହା ତପୋବନ୍ତ
ସାତବଂଶ ଯାଦବଙ୍କ କୁଳ ପୁରୋହିତ ।
ବସୁଦେବ ଅନାଧୃଷ୍ଟ ସାତ୍ୟକି ଅକ୍ରୂର
ଉଦ୍ଧବ ସହସ୍ରାଜିତ କୃତବର୍ମା ବୀର ।

ସୁରଥ ପ୍ରସନ୍ନାଜିତ ଜୟନ୍ତ ପୁଷ୍ପକ
ଏମାନଙ୍କୁ ଆଦିକରି ଯାଦବ ଯେତେକ ।
ଦେବକୀର ଷଡ଼ପୁତ୍ର ଆଣିଥିଲେ ହରି
ବିକ୍ରମ ବେଲ୍ଲଳ ବୀରସେନ ବୀର ଶୂର ।
ବୀରବାହୁ ଆଦିକରି କୁମାର ବୈନେତ୍ର
ରାମକୃଷ୍ଣ ମିଶି ଅଷ୍ଟ ଦେବକୀର ପୁତ୍ର ।
ସୁଭଦ୍ରା ନାମରେ ପୁଣି ଦେବକୀର ଜେମା
ଏ ଆଠ ଭାଇଙ୍କ ଭଗ୍ନୀ ଅଟେ ସେହି ବାମା ।
ଅନ୍ତସୁଖେ ରାଜ୍ୟ କରେ ଉଗ୍ରସେନ ରାଜା
ଐଶ୍ୱର୍ଯ୍ୟ ଭୋଗ କରନ୍ତି ରାଜ୍ୟେ ଜନପ୍ରଜା ।
ସମସ୍ତଙ୍କୁ ପାଳେ ରାଜା ପାତ୍ର ମନ୍ତ୍ରୀ ଧରି
ବେନଶତ ଯୋଜନରେ ଅଧିକାର କରି ।
ଯମୁନା ଦକ୍ଷିଣ କୂଳେ ମଥୁରା ନଗର
ଆଡ଼ପାର୍ଶ୍ୱେ ପାଞ୍ଚଯୁଣ ଅଟଇ ବିସ୍ତାର ।
ସପତ ବଂଶ ଯାଦବ ଚଉରାଶୀ କୋଟୀ
ରାମକୃଷ୍ଣ ପାଦେ ସର୍ବେ ରହିଥାନ୍ତି ଖଟି ।
ଉତ୍ତମ ସେବକ ମଧ୍ୟେ ସାତଜଣ ଲେଖା
ସବୁ ଅବତାରେ ସେହି କୃଷ୍ଣଙ୍କର ସଖା
ଉଗ୍ରସେନ ଅନାଧୃଷ୍ଟ ସାତ୍ୟକ ଅକ୍ରୂର
ଉଦ୍ଧବ ସୁରଥ ବସୁଦେବ ଯେ ଆବର ।
ବିଶ୍ୱାସ କରନ୍ତି କୃଷ୍ଣ ଏମାନଙ୍କ ଭୁଲେ
କିଛିକାର୍ଯ୍ୟ ନ କରନ୍ତି ତାଙ୍କୁ ନ କହିଲେ ।
ଯେ ଦିନ ଅଇଲେ ଗୋପ ଛାଡ଼ି ଦେବରାୟେ
ଦଶସହସ୍ର କନ୍ୟା ଆଣିଦେଲେ ଦେବତାଏ ।
ଏହାଙ୍କୁ ଯେନ ବିଳାସ କରନ୍ତି ଶ୍ରୀହରି
ଅପୂର୍ବ ସୁନ୍ଦରୀ ସର୍ବେ ବିଷ୍ଣୁ ମନୋହାରୀ ।
ସେ କନ୍ୟାଏ ଅବତାର ଲକ୍ଷ୍ମୀକଳା ଯେନ
ଭ୍ରୂଭଙ୍ଗୀରେ ମୋହି ପାରନ୍ତି ସେ ପୁର ଜନ ।
ବସୁଦେବ ପୁରେ ଥାଇ ସେ ସର୍ବ ଅଙ୍ଗନା
ଭକ୍ତିରେ ଶାଶୁଙ୍କ ପାଦେ କରନ୍ତି ମାନନା ।
ସର୍ବଗୁଣେ ସୁଲକ୍ଷଣୀ ସେ ସରଳା ନାରୀ
ସମୁଦ୍ର ମନ୍ଥନୁ ଜାତ ଲକ୍ଷ୍ମୀ ସହଚରୀ ।
ଆଜନ୍ମରୁ ବ୍ରହ୍ମଚାରୀ ବଳଦେବ ସ୍ୱାମୀ
କଟିଲେ ବଜ୍ର କାଛେଣି ପିନ୍ଧି ଅନ୍ତର୍ଯାମୀ ।
ଉଜାଣି ତୋଳନ୍ତି ବ୍ରହ୍ମରନ୍ଧ୍ରେ ବ୍ରହ୍ମରସ
ସୂର୍ଯ୍ୟମଣ୍ଡଳେ ଲଗାଇ ଚନ୍ଦ୍ରମାଙ୍କ ବାସ ।

ତେବେ ସେ ରହିଲ ବନ୍ଧ ଆଜାମର ହୋଇ
ରେବତୀ ବ୍ୟସନେ ଆନ ଅଙ୍ଗ ସଙ୍ଗ ନାହିଁ ।
ପରୀକ୍ଷ ଆଗେ କହନ୍ତି ଶୁକ ମହାମୁନି
ଇତି ଶ୍ରୀପୁରାଣ ହରିବଂଶ ପୁଣ୍ୟଧ୍ୱନି ।
ଏଥୁଅନନ୍ତରେ ପୁଣି କେତେଦିନ ଗଲା
ନିଦାଘ ଅନ୍ତେ ବରଷା ଋତୁ ପ୍ରବେଶିଲା ।
ବନ ପର୍ବତ କନ୍ଦରେ ଘୋଟି ମେଘମାଳ
ପବନ ଆଘାତେ ଉଠି ବରଷିଲେ ଜଳ ।
ଦୁସ୍ତର ବରଷା ଘଡ଼ଘଡ଼ ଚଡ଼ଚଡ଼
ଝଟକ ବିଜୁଳି ପଡ଼େ ଗଗନରୁ ଝଡ଼ ।
ବର୍ଷାଜଳରେ ପଙ୍କିଳ ହେଲା ମହୀସ୍ଥଳୀ
ମୟୂରେ ନାଚନ୍ତେ ନାନାରଙ୍ଗେ କରି କେଳି
ପଲ୍ଲବ ଉଠିଲେ ତରୁଲତା ଜଳପାଇଁ
କୁରଙ୍ଗେ ବୁଲନ୍ତି ରଙ୍ଗେ ନବତୃଣ ଖାଇ ।
ଧରଣୀରୁ ତାପ ଶାନ୍ତ ହେଲା ଦିନୁଁଦିନ
ଗୃତକେ ହରଷ ହେଲେ କେଳି କରି ମୀନ
ବରଷା ଜଳରେ ପରିପୂର୍ଣ୍ଣ ହେଲା ରସା
ଉତ୍ସାହରେ କୃଷିକର୍ମ ଆରମ୍ଭିଲେ ଚଷା ।
କୁଳଟା ପରାୟେ ଦୁଇକୂଳକୁ ବୁଡ଼ାଇ
ବିଷମ ସ୍ରୋତରେ ନଦୀମାନେ ଗଲେ ବହି ।
ବାପୀ କୂପ ପୁଷ୍କରିଣୀ ପୂର୍ଣ୍ଣ ହୋଇ ଜଳେ
କୁଳବତୀ ନଦୀପ୍ରାୟ ରହିଲେ ନିସ୍ତଳେ ।
ଫୁଟିଲେ ଶେଫାଳି କଇଁ କଦମ୍ବ ମାଳତୀ
କୂଟଜ କାଞ୍ଚନ ବଣମଲ୍ଲୀ ନଈ ଯୂଥୀ ।
ନାବିକେ ଜଗିଲେ ନାବ ରଖି ଘଟକୂଳେ
ଭେକଗଣ ମକମକ ହେଲେ ବର୍ଷା କାଳେ ।
ତା ଦେଖି ଭୁଜଙ୍ଗମାନେ ଗାତରୁ ବାହାରି
ଆନନ୍ଦେ ଗିଳିଲେ ତାଙ୍କୁ ଚଉପାଶେ ଘେରି ।
ନବୀନ ତୃଣରେ ପୂର୍ଣ୍ଣ ହେଲା ବସୁମତୀ
ଗାଈରୁ ହୋଇଲେ ଗ୍ରାସ ପାଇ ଦୁଗ୍ଧବତୀ ।
କ୍ରମେ କ୍ରମେ ଊଣା ହେଲା କୋକିଳର ଧ୍ୱନି
ବନକୁସୁମରେ ଶୋଭା ଦିଶଇ ମେଦିନୀ ।
ସାଧବ ସ୍ତ୍ରିୟାଏ ନିଜ ପତି ଯେନ ସଙ୍ଗେ
ହରଷ ମନରେ କ୍ରୀଡ଼ା କଲେ ନାନାରଙ୍ଗେ ।
ବିରହିଣୀ ସ୍ତ୍ରୀଗଣ ନିଜ ଭର୍ତ୍ତାଙ୍କୁ ସୁମରି
କହିଲେ ବିଷାଦମନେ ଶିରେ କର ମାରି ।

ପ୍ରବାସୀଏ ଗୃହେ ଯିବା ପାଇଁ କଲେ ମନ
ବଚନରେ ଆଜ୍ଞାକଲେ ବୃଷ୍ଣି ସ୍ୱନ ସ୍ଥାନ ।
ଦେବେ ଶୁଅନ୍ତେ ହୋଇଲା କାଳ ଯେ ଅଶୁଦ୍ଧ
ବିଚ୍ଛେଦୀ ନାୟକ ମନେ ଜାତ ହେଲା ଖେଦ ।
ଏମନ୍ତ ଦୁସ୍ତର ବର୍ଷା ହେଲା ପରବେଶ
ନିଅବକାଶରେ ବିଜେ ପ୍ରଭୁ ହୃଷୀକେଶ ।
ଗୋପୀଙ୍କ ସଙ୍ଗତେ କ୍ରୀଡ଼ା କରିଥିଲେ ଯେତେ
ସେ କଥା ସ୍ମରଣ କରି ନିଜ ଅନ୍ତର୍ଗତେ ।
ନନ୍ଦ ଯଶୋଦାଙ୍କ ସ୍ନେହ ପଡ଼ିଲାକ ମନ
ପବିତ୍ର କାଳନ୍ଦୀନଦୀ ପୁଣ କୁଞ୍ଜବନ ।
କଦମ୍ବ ତରୁ ମାଧବୀ ଲତା ପରିମଳ
ବୃନ୍ଦାବନ କେଳି ମନେ ଚିନ୍ତୋଇ ସକଳ ।
ଗାଈ ଗୋରୁ ବତ୍ସା ଗୋପୀ ଗୋପାଳଙ୍କ ସଙ୍ଗ
ବିରହ ବଂଶୀର ଗୁଣ ସୁମରି ଶ୍ରୀଅଙ୍ଗ ।
ରାଧିକା ଦୂତିକା ଆଦି ଯେତେ ଗୋପାଳୁଣୀ
ରାସକ୍ରୀଡ଼ା କେତେ ମନେ ଚିନ୍ତି ଚକ୍ରପାଣି ।
ଉଦ୍ଧବ ଅକ୍ରୂରଙ୍କୁ ସେ ଶ୍ରୀମୁଖୁ ହକାରି
ଏକାନ୍ତ ବିଶ୍ୱାସେ ତାଙ୍କୁ କହିଲେ ଶ୍ରୀହରି ।
ସବୁ ଅବତାରେ ତୁମ୍ଭେ ମୋର ସଙ୍ଗେ ଥାଅ
ମୁହିଁ ଯେଣେ ଯାଏ ତୁମ୍ଭେ ଦୁହେଁ ତହିଁ ଯାଅ
ବିଶ୍ୱାସ ବଚନ ମୋର ଶୁଣ ପରମାଣି
ଅକ୍ରୂର ବାରୁଣାବନ୍ତେ ଯାଉ ଏହିକ୍ଷଣି ।
ଶତଶୃଙ୍ଗ ପର୍ବତରେ ପଣ୍ଡୁ ନାଶ ଗଲେ
ତଦନ୍ତେ ପାଣ୍ଡବେ ତହିଁ ଥୋକେ ଦିନଥିଲେ ।
ଛେଉଣ୍ଡ ହୋଇଲେ ତହୁଁ ସେହି ପାଞ୍ଚଭାଇ
ଧୃତରାଷ୍ଟ୍ର ନେଲେ ତାଙ୍କୁ ଗୌରବ କରାଇ ।
ଭାଇ ଭାଗ ପ୍ରମାଣରେ ଅଧେ ରାଜ୍ୟ ଦେଲେ
ବାରୁଣାବନ୍ତ କଟକେ ତାଙ୍କୁ ରଖାଇଲେ ।
ଯୁଧିଷ୍ଠି ନକୁଳ ଭୀମାର୍ଜୁନ ସହଦେବ
ସୋମବଂଶକୁ ଧାରଣା ଏପଞ୍ଚ ପାଣ୍ଡବ ।
ସର୍ବଶୁଭେ ଅଛନ୍ତି ସେ ମୋର ପ୍ରାଣସଖା
ସେ ଯାଞ୍ଚେ ଅଟନ୍ତି ବୀରପଣେ ଅଗ୍ରଲେଖା ।
ପାଣ୍ଡବଙ୍କ ତହିଁ ମୋର ଅଛି ବହୁ କାର୍ଯ୍ୟ
ବାର୍ତ୍ତା ଦେଇଛନ୍ତି ତାଙ୍କ ପିତା ପଣ୍ଡୁରାଜ ।
ନଇଲେ ନ ଗଲେ ନିଷ୍ଟେ ବନ୍ଧୁ ହୁଏ ପର
ଅର୍ଜୁନଙ୍କୁ ସଙ୍ଗେ ଘେନି ଆସ ଧାଡିକାର ।

ଆମ୍ଭର କୁଶଳ ବାର୍ତ୍ତା ଯୁଧିଷ୍ଠିର ଆଗେ
କହି ତୋଷ କରାଇବ କଥା ଅନୁରାଗେ ।
ଅକ୍ରୂର ଆଗେ ଏମନ୍ତ କହି ଚକ୍ରପାଣି
ଦୂର୍ବାକ୍ଷତ କରିଦେଲେ ଶଙ୍ଖ କୃତ ମଣି ।
ବଚନରେ ମୁଁ କଲ୍ୟାଣ କରି ଦେବରାଜ
ବୋଇଲେ ଏକ୍ଷଣି ଯାଅ ହେବ ତୁମ୍ଭେ ସଜ
ସ୍ୱାମୀର ଶ୍ରୀମୁଖୁ ଆଜ୍ଞା ଘେନିଣ ଅକ୍ରୁର
ଅପୂର୍ବ ରଥରେ ବସି ଗଲେ ଧାଡିକାର ।
ବାରୁଣାବନ୍ତେ ପାଣ୍ଡବେ ରହିଛନ୍ତି ଯହିଁ
ଯହିଁକି ବୋଲି ଅକ୍ରୂର ଗଲେ ରଥ ବାହି
ଏଥୁଅନ୍ତେ ଉଦ୍ଧବଙ୍କୁ ଡାକି ଦେବରାଜ
ଆଜ୍ଞାଦେଲେ ଗୋପପୁରେ ଯିବ ତୁମ୍ଭେ ଆଜ
ଗୋପପୁରେ ଥିଲୁ ଆମ୍ଭେ ଲୁଚି କାଳେକାଳେ
ନାନାରୂପେ ବଢ଼ି ଗୋପୀ ଗୋପାଳଙ୍କମେଳେ
ସେମାନେ ଆମ୍ଭଙ୍କୁ ଏବେ ବୋଲୁଥିବେ କସ
ନନ୍ଦ ଯଶୋଦା ଏ ଦୁହେଁ କରିଥିବେ ଆଶା
ଗୋପର ନାୟିକାମାନେ ଆମ୍ଭ ଅର୍ଦ୍ଧ ଦେହ
ଆମ୍ଭଠାରେ ଅଛିଟିକି ତାଙ୍କ ସର୍ବ ସ୍ନେହ ।
ନିକୁଞ୍ଜ ବନର କୁଞ୍ଜ କାଳନ୍ଦୀର ଜଳ
ପୂର୍ବ ପ୍ରାଏ ଅଛିଟିକି ଦେଖିବ ସକଳ ।
କୋକିଳ ମୟୂର ଶୁକ ଆଦି ପକ୍ଷୀମାନେ
ପୂର୍ବ ପ୍ରାୟେ ଧ୍ୱନି କରନ୍ତି କି ବୃନ୍ଦାବନେ ।
ସେ ଗୋପ ପୁରରେ ରହି ଯେତେ ନାରୀଜନ
ଆମ୍ଭର ତହିଁ ତାଙ୍କର ଅଛିଟିକି ମନ ।
ଫଳିତ ପୁଷ୍ପିତ ବୃନ୍ଦାବନ ଲତା ତରୁ
ସର୍ବଶୁଭେ ପାଳନ୍ତିକି ଗୋପେ ବତ୍ସା ଗୋରୁ
ନନ୍ଦ ଯଶୋଦାଙ୍କୁ ସର୍ବ ଶୁଭବାର୍ତ୍ତା କହି
ସମସ୍ତଙ୍କୁ ପ୍ରବୋଧିବ ଥୋକେ ଦିନ ରହି ।
କଂସକୁ ମାରିଣ ଆମ୍ଭେ ଅଛୁ ମଥୁରାରେ
ଗୋପପୁର ଲୋଭ ମୋହ ନ ଛୁଡ଼େ ନିର୍ଭରେ ।
ଆମ୍ଭଙ୍କୁ ନ ଦେଖି ଗୋପୀ ପାଇଥିବେ ତ୍ରାସ
ପ୍ରବୋଧ ବଚନେ ତାଙ୍କୁ ତୃପ୍ତ କରି ଆସ ।
ସୁହୃଦପଣେ କହିବ ଆଶ୍ୱାସନା କଥା
ସବୁରି ମନରେ ଯେମନ୍ତେ ଦୂର ହେବ ବ୍ୟଥା
ଆମ୍ଭ ମାତା ଯଶୋବନ୍ତୀ ନନ୍ଦ ମନହାରୀ
ପୃଥ୍ୱୀ ହିତାକାରିଣୀ ସେ ଭାଗ୍ୟବନ୍ତି ନାରୀ ।

ପ୍ରତ୍ୟକ୍ଷେ ଦେଖା ସେହୁ ସେ ଅଟ ପୁଣ୍ୟଦେହୀ
ନୋହିଲେ ଆମ ଆର୍ଦୋଳି ପାରନ୍ତେକି ମହୀ
ନନ୍ଦ ମହାଖୁଣ୍ଡ ଗୁଣ କେ କହି ପାରିବ
ସେ ଅଟନ୍ତି ଆମ ପିତା ଗୁରୁ ଇଷ୍ଟଦେବ ।
ଆମଙ୍କୁ ପାଳିଲେ ଯତ୍ନେ କେତେ ଦୁଃଖ ପାଇ
ସେ ଋଣ ଶୁଝିବା ଆମେ କପ ଅବା ଦେଇ ।
ଗୋପୀଙ୍କର ସ୍ନେହଭାବ ଗୋପାଳଙ୍କ ଗୁଣ
ଜୀବ ଥିବାଯାଏ କାହିଁ ପାସୋରିବା ପୁଣ ।
ସେ କଥା ବହୁର ଆମ ଜୀବନ ବ୍ୟାକୁଳ
ବିଧାତା ଭିଆଇ ଅଛି ଏ କଥା ସକଳ ।
ଏତେ ସ୍ନେହ ଛାଡ଼ି ଆମେ ହେଲୁ ଭିନ୍ନାଭିନ୍ନ
ଭାବିଲେ ନ ସରେ ରାତ୍ର ନ ସରଇ ଦିନ ।
ଏବେ ସେ ଥୋକାଏ ଦିନ ଥାନ୍ତୁ ସ୍ଥିରହୋଇ
ଅବଶ୍ୟ ଗୋପରେ ଆମେ ବିହରିବୁ ଯାଇ ।
ଏଥିପାଇଁ ଗୋପଲୋକେ ନ କରନ୍ତୁ ଭ୍ରାନ୍ତ
ପ୍ରବୋଧ ବଚନ କହି କରାଇବ ଶାନ୍ତ ।
ପଣ୍ଡିତ ଧାର୍ମିକ ତୁମେ ଅଟ ଗୁଣମଣି
ସର୍ବ ଶୁଭ ଅନୁକୂଳେ ଚଳ ଏହିକ୍ଷଣି ।
ଏସନକ ଆଜ୍ଞା ତହୁଁ ଦେଲେ ଜଗନ୍ନାଥ
ତକ୍ଷଣେ ଉଦ୍ଧବ ଯାଇ ଆରୋହିଲେ ରଥ ।
ଜଗତ ସୋଦର କୃଷ୍ଣ ଦୀନଜନ ବନ୍ଧୁ
ଭକ୍ତ ମନ ଜାଣନ୍ତି ସେ ପ୍ରଭୁ କୃପାସିନ୍ଧୁ ।
ସେ କୃଷ୍ଣ ଅଭୟ ପାଦେ ରହୁ ମୋର ମନ
ଅଚ୍ୟୁତ ଦାସର ଗତି ଶ୍ରୀମଧୁସୂଦନ ।



## ଉଦ୍ଧବର ଗୋପପୁର ଯାତ୍ରା ଓ ବୃନ୍ଦାବନ ଶୋଭା ଦର୍ଶନ

ଶୁକ ମୁନି ବୋଇଲେ ହୋ ଶୁଣ ନୃପବର
ଉଦ୍ଧବ ବାହାର ହେଲେ ଚଢ଼ି ରଥବର ।
ମନ୍ଦର ପର୍ବତ ଜିଣି ଥୋକେ ଦୂର ଗଲେ
ଗୋଧିକା ଘାଟରେ ଯାଇ ପ୍ରବେଶ ହୋଇଲେ
ଯମୁନାରେ ସ୍ନାନ ସନ୍ଧ୍ୟା ନିତ୍ୟକର୍ମ ସାରି
ରଥରେ ବସିଲେ ପୁଣି ହରିବେଶ ଧରି ।
ମସ୍ତକେ ମୁକୁଟ ଶୋହେ କର୍ଣ୍ଣରେ କୁଣ୍ଡଳ
ପଦକ ଭୂଷିତ ହୃଦ ଗଳେ ରତ୍ନମାଳ ।
ତାଡ଼ ତୋଡ଼ରେ ବାହୁଟୀ ବଳୟ କଙ୍କଣ
ସୁବର୍ଣ୍ଣ ମୁଦ୍ରିକା ନାନା ରତ୍ନ ଆଭରଣ ।
ବାମେ ଯମଦାଢ଼ ଛୁରୀ ହରିନେତ ବାନ୍ଧି
ପୁରଙ୍କ ପତନୀ ବାଛି କଟୀତଟେ ପିନ୍ଧି ।
କବଚ ତୁଣୀରେ ଖଣ୍ଡା କାଣ୍ଡ ଶରାସନ
ଆୟୁଧମାନଙ୍କୁ ଧରି ଆରୋହିଲେ ଯାନ ।
ଦ୍ଵିତୀୟ ଇନ୍ଦ୍ର ପରାଏ ଶୋଭା ପରକାଶି
ରଥ ଦଣ୍ଡେ ଆଉଜିଲେ ସିଂହାସନେ ବସି ।
ଅନଙ୍ଗ ଦେବତା ପ୍ରାୟେ ବିରାଜଇ ତନୁ
ବାମ କରେ ଧରିଅଛି କିବା ପୁଷ୍ପଧନୁ ।
କୁସୁମ ସାୟକ ଶୋହେ କିବା ଦକ୍ଷକରେ
ସାରଥି ଚାଳଇ ଯାନ ବାହି ଧୀରେ ଧୀରେ ।
ଚନ୍ଦ୍ରମା ପରାଏ ଯାନ ଜ୍ୟୋତି ପରକାଶି
ଗଗନ ମଣ୍ଡଳୁ କିବା ପଡ଼ୁଅଛି ଖସି ।
ଥୋକେ ଦୂର ଚଳିଯାଇ କାଳିନ୍ଦୀର ତଟେ
ପ୍ରବେଶ ହୋଇଲେ କୁଞ୍ଜ କାନନ ନିକଟେ ।
ଦେଖିଲେ ଲବଙ୍ଗଲତା କଦମ୍ବର ତଳ
ଦେବତା ମନ୍ଦର ଲତା କୁଞ୍ଜ ପରିମଳ ।
ଗମ୍ଭୀର କାଳିନ୍ଦୀ ନଦୀ ବହଇ ପ୍ରଖର
ଦିଶନ୍ତି ଅପୂର୍ବ ତରୁମାନେ ମନୋହର ।
ବୃକ୍ଷ ଶିଖକୁ ଚାହିଁଲେ ଖସିପଡ଼େ ଗଭା
ନନ୍ଦନବନକୁ ନିନ୍ଦେ ସେ ବନର ଶୋଭା ।
ଫଳିତ ପୁଷ୍ପିତ ତରୁ ଲତିକା ଶୋଭନ୍ତି,
ସଳଖ ସୁନ୍ଦର ଧାଡ଼ି ଧାଡ଼ି ପନ୍ତି ପନ୍ତି ।
ଅଷ୍ଟରତ୍ନ ଚଉରା ସେ ବୃକ୍ଷଙ୍କର ମୂଳେ
ମନ୍ଦ ମନ୍ଦ ହୋଇ ବାତ ବହଇ ଶୀତଳେ ।
ଫଳଭରେ ବୃକ୍ଷ ଡାଳ ତଳେ ପଡ଼େ ଲୋଟି
ସୂର୍ଯ୍ୟତେଜ ନ ପଡ଼ଇ ତରୁ ଛାୟା ଘୋଟି ।
ଯେବଣ ଶୁଖିଲା ପତ୍ର ବୃକ୍ଷୁ ପଡ଼େ ଝଡ଼ି
ପବନ ଘାତରେ ଯାଏ ଅନ୍ତରୀକ୍ଷେ ଉଡ଼ି ।
ତଳରେ ସୁସଞ୍ଚ ବାଲି ଦିଶେ ଦିବ୍ୟ ଶୋଭା
କର୍ପୂର ମୁକୁତା ଚୂର ବିଞ୍ଚିଅଛି ଅବା ।
କୋକିଳର କଣ୍ଠ ସ୍ୱନ ଝିଙ୍କାରିଙ୍କ ଧ୍ୱନି
ଠାବେ ଠାବେ ପଢ଼ୁଛନ୍ତି ଶୁକ ଶାସ୍ତ୍ର ଘେନି ।
ଆମ୍ବ ପଣସ ଖଜୁରୀ ଗୁଆ ନଡ଼ିଆ ତାଳ
ଅସଂଖ୍ୟ ତମାଳ ତହିଁ କରମଙ୍ଗା ତାଳ ।

ଦାଉାଷ ପେଣ୍ଡୀ ଖଜୁରୀ କେନ୍ଦୁ ନରକୋଳି
ଭଇଞ୍ଚ ମହୁଲ ବେଲ ବେଣ୍ଟ ଖିରୀ କୋଳି ।
ସରଳ ଚନ୍ଦନ ନିମ୍ବ ଶାଳ ଦେବଦାରୁ
ଜେଉଟ ତନ୍ତୁଳ ଅଁଳା ପାଳଧୂଆ ତରୁ ।
କୋଚଲା କରଞ୍ଜ ନୀପ ଜମ୍ବୀଳ ପାଟଳୀ
ଭାଲିଆ ଗମ୍ଭାରୀ ଜାମୁ ବାହାଳା ଶିମିଳୀ ।
କେରୁଆଁ ପଲାଶ ନାନା ଜାତିର ହରିଡ଼ା
ସୁନାରୀ ବକୁଳ ତରୁ କୁମ୍ଭୀ ଯେ ବାହାଡ଼ା ।
ବୃକ୍ଷଙ୍କ ଉପରେ ବେଢ଼ିଛନ୍ତି ନାନାଲତା
ଜାଈ ଯୂଈ ମାଳତୀ ଯେ ଅପୂର୍ବ ଶୋଭିତା ।
ଟଗର ତଗଟ ମଲ୍ଲୀ ଚମ୍ପକ ଶେଫାଳି
ଅଶୋକ ପନ୍ନାଗ ଫୁଟି ଦିଶେ ଭଲି ଭଲି ।
କଦମ୍ବ ଆବର କିଆ ସେବତୀ ଦୟଣା
କାଞ୍ଚନ କନ୍ୟର କୁନ୍ଦ କୁରୁବେଲି ବେଣା ।
ଏମନ୍ତେ ଅନେକ ଫୁଲ ଫୁଟି ସେ ବନରେ
ସୁଗନ୍ଧ ଗନ୍ଧରେ ସର୍ବ ଜନମନ ହରେ ।
ହରିଣ ହରିଣୀ କଳ ବାହୁଟିଆ ଶଶା
ମୟୂର କୁକ୍କୁଟ ବାଘ ଭାଲୁ ବଣ୍ୟ ମୂଷା ।
ଗଣ୍ଡା ଗୟଳ ଖୁରାଣ୍ଟ ସିଂହ ଓଟ ହସ୍ତୀ
ଶୁକ ଶାରୀ ହଳଦିଆ ବସନ୍ତ କପୋତୀ ।
କୋକିଳ ଝିଙ୍କାରୀ ବଣିଆଦି ଜୀବ ମେଳେ
ବିହରନ୍ତି ନାନା ପଶୁ ପକ୍ଷୀ ବନସ୍ଥଳେ ।
ଅବସନ୍ତରେ ବସନ୍ତ ବହେ ଘନ ଘନ
ଦେଖିଣ ଉଦ୍ଧବ ବୋଲେ ଧନ୍ୟ କୁଞ୍ଜବନ ।
ଧନ୍ୟ ଏ ଯମୁନାନଦୀ ଧନ୍ୟ ଯାର ତଟ
ଏ ନଦୀରେ କ୍ରୀଡ଼ା କରୁଥିଲେ ନନ୍ଦଭଟ ।
କୋଟି କୋଟି ପୁଣ୍ୟତୀର୍ଥ ନୁହେଁ ଏହା ସରି
ନୋହିଲେ ବିହାର କିମ୍ପା କରନ୍ତେ ଶ୍ରୀହରି ।
ଗୋପୀକାମାନଙ୍କୁ ଧରି ଏହି ଜଳେ ପଶି
ଜଳକ୍ରୀଡ଼ା କରୁଥିଲେ ଆପେ ହୃଷୀକେଶୀ ।
କୈବର୍ତ୍ତ ସ୍ୱରୂପ ଧରି ବାହୁଥିଲେ ନାବ
ଗୋରୁଙ୍କୁ ଏଠାରେ ପାଣି ପିଆନ୍ତି ମାଧବ ।
ବନ ଦଇତ୍ୟଙ୍କୁ ବଧ କଲେ ଏହି ଜଳେ
ବିଶ୍ରାନ୍ତ ଚରନ୍ତି ହରି ଏହି ନଦୀକୂଳେ ।
ଯମୁନା ମହିମା କେହି ନୁହେଁ ଅନ୍ତକରି
ବର୍ଣ୍ଣିବଲେ ଯାଙ୍କୁ ଗଙ୍ଗା କେଉଁଗୁଣେ ସରି ।

ଈଶ୍ୱର ଜଟାରୁ ଫୁଟି ଗଙ୍ଗାଜଳ ବହି
ସୁମେରୁ ମେଖଳ ଖୋଟେ ଲୁଟିଥିଲା ବହି ।
ଐରାବତ ଗୃହଦନ୍ତ କରନ୍ତେ ପ୍ରହାର
ଦନ୍ତେ ଭାଙ୍ଗି ତିନିଦନ୍ତ ହୋଇଲା ବାହାର ।
ଗଙ୍ଗା ଯମୁନା ଆବର ସରସ୍ୱତୀ ତିନି
ସେ ତିନି ମାର୍ଗରେ ଫୁଟି ପଡ଼ିଲେ ଅବନୀ ।
ସବୁହୁଁ ଶ୍ରେଷ୍ଠ ଯମୁନାନଦୀ ବଷ୍ଟୁପଦୀ
ମର୍ତ୍ତ୍ୟ ମଣ୍ଡଳରୁ ଯାନ୍ତି ପାତାଳକୁ ଭେଦି ।
କଳ୍ମଷଧ୍ୱଂସିନୀ ନଦୀ କାଳିନ୍ଦୀ ଯା ନାମ
ବ୍ରହ୍ମାଗ୍ରେ କହିଛନ୍ତି ଦେବ ବୃହସ୍ପତିମ ।
ଯା ପାଦରୁ ପଡ଼ି ଗଙ୍ଗା ପବିତ୍ର ଜଗତେ
ସେ ପ୍ରଭୁ ଶ୍ରୀଅଙ୍ଗେ ଗୁଣ ନାହିଁ ଅବା କେତେ
ଏ ନଦୀ ଭିତରେ ଯେତେ ଜନ୍ତୁ ଛନ୍ତି ରହି
ପାପ ବିବର୍ଜିତ ଅଙ୍ଗ ଜନ୍ମ ମୃତ୍ୟୁ ନାହିଁ ।
ଏ ନଦୀ କୂଳରେ ଖେଳୁଥିଲେ ଦେବରାଜ
ତେଣୁ ଏ ଭୂମି ପବିତ୍ର ପଡ଼ି ପାଦରଜ ।
ଏତେବୋଲି ବାଲିମୂଳେ ଧରି ଅଙ୍ଗେ ଘଷି
ନମସ୍କାର କରି ଥୋକେ ମଥାରେ ନିବେଶି ।
ତହୁଁ ଥୋକେଦୂର ଗଲେ ରଥକୁ ଚଳାଇ
କଦମ୍ବ ବୃକ୍ଷର ତଳେ ପ୍ରବେଶିଲେ ଯାଇ ।
ଦେଖିଲେ ଅମର ବୃକ୍ଷ ଅତି ପରିମଳ
ଆକାଶ ମଣ୍ଡଳ ଯାଏ ଘୋଟିଅଛି ଡାଳ ।
ବୃକ୍ଷ ମୂଳରେ ଅଛଇ ଅଷ୍ଟରତ୍ନ ବେଦୀ
ବିଶ୍ୱକର୍ମା ଗଠନ ସେ ଶୋଭାକୁ ସମ୍ପାଦି ।
ବିଚାରିଲେ ଏ କଦମ୍ବବୃକ୍ଷ ପୁଣ୍ୟମୟ
ତେଣୁ ଏହାତଳେ କ୍ରୀଡ଼ାକଲେ ଦେବରାୟ ।
ଗୋପିକାମାନଙ୍କୁ ଘେନି ଏ ବୃକ୍ଷର ତଳେ
ନାନାରଙ୍ଗରେ ବିନୋଦ କଲେ କୁତୂହଳେ ।
ଗୋପୀଙ୍କ ବସ୍ତ୍ରହରଣ କପଟରେ କରି
ଏ ମହାବୃକ୍ଷରେ ବାନ୍ଧି ରଖିଥିଲେ ହରି ।
ନାନାରଙ୍ଗେ ନୃତ୍ୟକରି ଗୋପସୁତ ମେଳେ
ଷଣ୍ଢାସୁର ବଧକଲେ ରହି ବୃକ୍ଷ ତଳେ ।
ଏ ବୃକ୍ଷରେ ବସି କୃଷ୍ଣ ମୁରଲୀ ବଜାଇ
ଜଗତ ମୋହିଲେ ନାନାଛନ୍ଦେ ଗୀତ ଗାଇ ।
ପ୍ରୟାଗରେ ବାସ ଦେଇଥିବ ଯେଉଁଜନ
ସେ ଆସି ଏ ପୁଣ୍ୟଭୂମି କରିବ ଦର୍ଶନ ।

ଏମନ୍ତ ବୋଲି ଉଦ୍ଧବ ସ୍ତୁତିବାକ୍ୟ ପଢ଼ି
ସାଷ୍ଟାଙ୍ଗେ ପ୍ରଣାମକଲେ ବୃକ୍ଷତଳେ ପଡ଼ି ।
ଆନନ୍ଦେ ପୁଲକ ଉଠେ ଅଙ୍ଗ ପ୍ରେମାବଳି
କଦମ୍ବତରୁ ଉପେକ୍ଷି ଧୀରେ ଧୀରେ ଚଳି ।
କୁଞ୍ଜବନ ବୃନ୍ଦାବନ ଦେଖି ସ୍ତୁତି କଲେ
ମଧୁବନ ରୁଦ୍ରବନ ପୁଣି ସେ ଦେଖିଲେ ।
ଅମ୍ବିକା ନନ୍ଦନ ଦୁଇ ବନଶୋଭା ଦେଖି
ମନେ ମନେ ହୋଇଲେ ସେ ଅତିଶୟ ସୁଖୀ ।
ଏ ଯେ ଷଡ଼ବନ ଏକୁ ଆରେକ ସୁସଞ୍ଚ
ନାହିଁ ଏଠାନ୍ତର ସ୍ୱର୍ଗ ପାତାଳ ଯେ ମଞ୍ଚ ।
ଅତି ମନୋହର ବନ ଦିଶଇ ପ୍ରତ୍ୟକ୍ଷ
ଧାଡ଼ି ଧାଡ଼ି ରେଖ ରେଖ ସୁସଜ୍ଜିତ ବୃକ୍ଷ ।
ଉଦ୍ଧବ ଅକ୍ରୂର କଲେ ଦେଖି ମନେ ମନେ
ପାତକ ଖଣ୍ଡିଲା ମୁଁ ଏ ବନ ଦରଶନେ ।
ଧନ୍ୟ ଧନ୍ୟ ମୋ ଜନମ ଧନ୍ୟ ମୋର ତାତ
ଧନ୍ୟ ମୋର କୁଳ ଗୋତ୍ର ଗର୍ଭଧାରୀ ମାତ ।
ବିଷ୍ଣୁ ବାଲ୍ୟଲୀଳା ଭୂମି ଦେଖି ଚର୍ମଡୋଳେ
ଜନ୍ମ ମରଣ ଖଣ୍ଡିଲା ପୂର୍ବ ପୁଣ୍ୟବଳେ ।
ଏମନ୍ତ ଅକ୍ରୂର ରଥ ଚଳି ଧୀରେ ଧୀରେ
ଗୋପରେ ମିଳିଲେ ବେଳ ସାତ ଘଡ଼ିଠାରେ ।
ଗୋପରେ ନାୟିକାମାନେ ଦେଖି ଦୂରେ ଥାଇ
ଏକକୁ ଆରେକ ଗୋପୀ ପଚାରନ୍ତି ଚାହିଁ ।
ଅପୂର୍ବ ରଥ ଗୋଷ୍ଠାକ ଆସୁଅଛି ଭଲି
ଏସନ ସଞ୍ଜାତ ପୂର୍ବେ ଦେଖାତ ନ ଥିଲି ।
ଦିଶଇ ଜାଜ୍ୱଲ୍ୟମାନ ତେଜ ଜ୍ୱାଳାବଳି
ସ୍ୱର୍ଗର ଦେବତା ଅବା ଆସେ ମହୀସ୍ଥଳି ।
ନାନାରତ୍ନ ଭୂଷଣ ଏ ହୋଇଛି ଶରୀରେ
ଦୁର୍ଗ ଗୁଡ଼ କମ୍ପା ଏହୁ ଆସେ ମର୍ତ୍ତ୍ୟପୁରେ
ଦିଗପାଳ ସମାନରେ ଦିଶୁଅଛି ପ୍ରଭା
ଚାହିଁ ଚାହିଁ ଆମ୍ଭ ମନ ହରିନେବ ଅବା ।
କେ ବୋଲଇ ଏଥି ଏହା ଜାଣିବା କପଟ
ଶ୍ରୀକୃଷ୍ଣ ଅଇଲେ ଅବା ଶତ୍ରେ ଦୟାକର ।
ଆମ୍ଭମାନଙ୍କର ବାଞ୍ଛା ହେଲା ଆଜ ସିଦ୍ଧି
ଏ ନଷ୍ଟେଁ ଅଚ୍ଛନ୍ତି ଗୋପୀନାଥ ଗୁଣନିଧି ।
ଥୋକାଏ ବୋଲନ୍ତି ସଖି ନ ବୋଲ ଏ ବାଣୀ
କଂସ ଅକ୍ରୂର କଲେ ହୃଦ ହୁଏ ହାଣି ।

ଆବର କୃଷ୍ଣଙ୍କୁ ଆମ୍ଭେ ପାଇବା ଯେ କାହିଁ
ସ୍ୱପ୍ନପ୍ରାୟ ଗଲେ ମାୟାପଟଳ ଦେଖାଇ ।
କେଉଁଗୁଣ ବାହୁନିବା ଆମେ ତାହାଙ୍କର
ନିରଞ୍ଜନ ପୁରୁଷ ସେ ନିତ୍ୟ ନିରାକାର ।
କଳ୍ପନା କାମନାନିଧି କୋଟି କାମରୂପ
ଯା ମୁଖ ଦେଖିଲେ ଖଣ୍ଡେ କୋଟି ଜନ୍ମପାପ ।
ଜଗତମୋହନ ରୂପ କୋଟି ଗୁଣରାଶି
କେତେକାଳ ଲାଗି ଧାତା ଗଢ଼ିଥିଲା ବସି ।
ତା କଥା ଚିନ୍ତିଲେ ଅଙ୍ଗେ ପ୍ରାଣ ନୋହେ ଧିର
ସନ୍ତାପ ଜଳେ ବୁଡ଼ାଇ ଗଲେ ଗୋ ଶ୍ରୀହରି ।
କେମନ୍ତେ କରୁଣାନିଧି ଅଟେ ତାଙ୍କ ବାନା
ଆରତ ପ୍ରାଣୀଟିରେ କେହ୍ନେ ହୁଅନ୍ତି ବଜ୍ରସେହ୍ନା ।
ଉକାଇତ ଆଚରଣ କଲେ ନନ୍ଦବଳା
ଅମୃତ ବଚନ କହି କାଟିଗଲେ ଗଳା ।
ଗଗନର ଶଶୀ ଯେହ୍ନେ ଲୋଡ଼ିଲେ ନ ପାଇ
ଇନ୍ଦ୍ରଜାଲ ବିଦ୍ୟା ଯେହ୍ନେ ଦେଖୁ ଦେଖୁ ଯାଇ
ସେହିମତି କୃଷ୍ଣକଲେ ଆମ୍ଭଠାରେ ମାୟା
ନିରପ୍ରେମ ପୁରୁଷ ତା ହୃଦେ ନାହିଁ ଦୟା ।
ପବନ କି ଧରିପଡ଼େ ପାତିଲେ ଗୋ ଫାନ୍ଦ
ହାତେ ଧରି ଲୋଡ଼ୁଥିଲେ ଗଗନର ଚାନ୍ଦ ।
ଭେଳା ବାନ୍ଧି ତରିବାକୁ ଲୋଡ଼ ବାରିନିଧି
ବାଇ ବାତୁଳ ପରାୟେ ହେଲା ଆମ୍ଭ ବୁଦ୍ଧି ।
ଆଉ ଏକ ସଖୀ ବୋଲେ ଶୁଣ ସଙ୍ଗାତୁଣି
ସେ କୃଷ୍ଣର କଥା ମୁହିଁ ଥୋକେ ଅଛି ଜାଣି ।
ସବୁକାଳେ ମାୟାଧର ଅଟେ ସେ ପୁରୁଷ
ସର୍ବ ଅନ୍ତର୍ଯ୍ୟାମୀ ତାର ସର୍ବଭୂତେ ବାସ ।
ଅକ୍ଷୟ ସେ ଅବିନାଶୀ ଅଟେ ପୁଣ୍ୟଦେହୀ
ସବୁଠାରେ ସମ ତାର ଶତ୍ରୁ ମିତ୍ର ନାହିଁ ।
ଏକୁ ଏକ ମଣନ୍ତି ସେ ନ ଅକ୍ରୂର ପର
ନ ଜାଣିବା ଲୋକେ ତାଙ୍କୁ ବୋଲନ୍ତି ମୋହର
ମୃଗ ତୃଷ୍ଣା ସ୍ଥାନେ ଲୋଡ଼େ କେ ପାଇଛି ପାଣି
ଅଜ୍ଞାନରେ ପଡ଼ି ଭ୍ରମି ହେଉଥାନ୍ତି ପ୍ରାଣୀ ।
ବ୍ରହ୍ମା ଇନ୍ଦ୍ର ରୁଦ୍ରଙ୍କୁ ସେ ଭୁଲାଇଲେ ଏକା
ଆମ୍ଭେ ସ୍ତ୍ରୀ ଶରୀର ତାଙ୍କୁ କେଉଁଗୁଣେ ଲେଖା ।
ଲକ୍ଷ୍ମୀର ବଲ୍ଲଭ ସରସ୍ୱତୀ ପ୍ରାଣବନ୍ଧୁ
ଅନନ୍ତ ମାୟାଧର ସେ କୃପାଜଳ ସିନ୍ଧୁ ।

ତାହାଙ୍କୁ ଆମ୍ଭର ବୋଲ ବୋଲ ଯେ ନଜାଣି
ଗୁଳୁଣୀ ଭିତରେ କାହିଁ ରହିବ ଯେ ପାଣି ।
ବଡ଼ିଲ ନଦୀରେ ଖୋଜ କେ ପାଇବ ସ୍ଥଳ
ଯେତେ ପୁଣ୍ୟ ଥିଲା ତେତେ ଲଭିବାଇଁ ଫଳ ।
ସବୁକାଳେ ପ୍ରାଣୀର ନଥାଇଟି ଦୁଃଖ
ସମୟେକ ଦୁଃଖ ମାଇ ଭୋଗକଲେ ସୁଖ ।
ଲବଣ୍ୟନିଧି ଅଜଲେ ଆମ୍ଭେ ଭାଗ୍ୟବଳେ
ହସ୍ତୁଫିଟି ପଳାଇଲା କର୍ମର ଅବଳେ ।
ତହିଁକି ଶୋଚନା କଲେ ହେବ ଆଉ କସ
ବିଧାତାର ଘଟସୂତ୍ର ଏସନ ଭବିଷ୍ୟ ।
ଦେହକୁ ଆବୋରି ପ୍ରାଣ ରହିଅଛୁ ଭଲେ
ପିଣ୍ଡଅକାରଣ ହେବ ପ୍ରାଣ ଗୁଡ଼ିଗଲେ ।
ଶ୍ରୀକୃଷ୍ଣ ପ୍ରୀତିରେ ଆମ୍ଭେ ହୋଇଥିଲେ ମୋହ
ତାଙ୍କ ହୃଦରେ ଆମ୍ଭଙ୍କୁ ତିଳେ ନାହିଁ ସ୍ନେହ ।
ନବ ନାଗର ପୁରୁଷ ଅଟେ ଭଗବାନ
ବାହାରେ ଯାହା କରଇ ଭିତରେ ତା ଆନ
ସେ ବଡ଼ ନିଷ୍ଠୁର ତା ହୃଦେ ନାହିଁ ଦୟା
ଯେତେ କଥା କହଇ ସେ ସବୁ ତାର ମାୟା
ଆମ୍ଭେ ଯେ ଷୋଳସହସ୍ର ଅଟୁ ଗୋପବାଳୀ
ସୁକୁମାର ସୁଲକ୍ଷଣ ଏକୁ ଏକ ବଳୀ ।
ଅନୁପମ କାମମୁଦ୍ରା ସର୍ବ ଗୁଣଗ୍ରାହୀ
ଜଣ ଜଣକେ ଇନ୍ଦ୍ରଙ୍କୁ ପାରୁ ଆମ୍ଭେ ମୋହି
ବଡ଼ିଲୁ ଅସତ ମାର୍ଗେ ଗୁଡ଼ି ଜାତି ଲଜ୍ଜ୍ୟା
ଘର ବର ଆଦି ସବୁ କଲୁ ପରିତ୍ୟଜ୍ୟା ।
ନସ୍ତରବୁ ବୋଲି ଯେନଥିଲୁ ବଡ଼ ବାଞ୍ଛା
ଅସଞ୍ଚି ହୋଇଲୁ କାର୍ଯ୍ୟ ନ ପାଇଲୁ କଛୁ ।
ସପତ ସମୁଦ୍ରେ ପଶି ନ ତିନ୍ତିଲା ପାଦ
ସପ୍ତନିଧି ଆବୋରଣ ହୋଇଲୁ ଦରିଦ୍ର ।
କାମଧେନୁ ଆଶ୍ରେ କଲୁ ନ ତୁଟିଲା କ୍ଷୁଧା
ମୃତ୍ୟୁସଞ୍ଜିବନୀ ଶିଖି ଲାଗେ ମୃତ୍ୟୁ ବାଧା ।
ସବୁଗୁଡ଼ି ଶ୍ରୀକୃଷ୍ଣର ପାଦେ ଆଶ୍ରେ କଲୁ
କଛୁକାର୍ଯ୍ୟ ନ ହୋଇଲା ଉପହାସେ ମଲୁ ।
ଏହାଶୁଣି ବୋଲେ ଆନ ଏକ ଗୋପାଙ୍ଗୁଣୀ
ସତେ କି ଆମ୍ଭଙ୍କୁ ତ୍ୟାଗ କଲେ ବେଣୁପାଣି ।
ବୁଦ୍ଧିମନ୍ତ ଗୁଣବନ୍ତ ଅଟନ୍ତି ଗୋ ସେହି
ମୂଢାରେ ନିର୍ଦ୍ଦୟ ସେ ହେବ କାହିଁ ପାଇଁ

ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଚୌଖାନ
ପାଳନ କରନ୍ତି ନଚ୍ୟୋ ଦୟା ଗୁଣ ଯେନ ।
ମନବୁଦ୍ଧି ଅହଙ୍କାରେ ନୁହନ୍ତି ସେ ସଙ୍ଗ
ସର୍ବଗୁଣେ ପରିପୂର୍ଣ୍ଣ ଯାହାର ଶ୍ରୀଅଙ୍ଗ ।
ଆରତ ଭଞ୍ଜନ ବାନା କୃପାଜଳ ରାଶି
ଦୟାସିନ୍ଧୁ ବୋଲି ବେଦ ବେଦାନ୍ତରେ ଭାଷି ।
ଦେବଙ୍କ ଉପରେ ଦେବ ପରଂବ୍ରହ୍ମ ସ୍ୱାମୀ
ସବୁର ମନ ଜାଣନ୍ତି ସେହି ଅନ୍ତର୍ଯ୍ୟାମୀ ।
ଯା ନାମ ଧରନ୍ତେ ପ୍ରାଣୀ ଭବଜନ୍ତୁ ତରେ
ଭବଜାଣି ଅନୁଗ୍ରହ ସର୍ବଦା ଯେ କରେ ।
ଏଥକୁ ଅଭାବ କେହି ନଭଳ କାଞ୍ଚିତେ
ଆମ୍ଭଙ୍କୁ ସୁଦୟା କୃଷ୍ଣ କରଛନ୍ତି ଚତ୍ତେ ।
ଯାହାର ଆଶ୍ରୟେ ପ୍ରାଣୀ କଷ୍ଟ ହୁଏ ପାର
ତା ସହିତେ ଅଙ୍ଗସଙ୍ଗ କଲେ ବଜ୍ରନାଶ ।
ନାନା ପ୍ରେମ କଉତୁକ ହାସ ପରିହାସେ
ସ୍ୱଚ୍ଛନ୍ଦେ ବିହର ବନବଞ୍ଚିଲେ ତା ପାଶେ ।
କେତେ ପୁଣ୍ୟେ ସେ ଶ୍ରୀଅଙ୍ଗ ଲାଗି ଆମ୍ଭ ତହିଁ
ଖଣ୍ଡିଲେ ସକଳ ଦୋଷ ସ୍ପର୍ଶ ଜନ୍ମ ପାଇ ।
ଆମ୍ଭଙ୍କୁ ଉପେକ୍ଷି ଏବେ ଗଲେ ଶିଘ୍ରବହି
ଅଇଲେ ଏ ଦୁଃଖ ଆଉ ନ ରହିବ କଛୁ ।
ଅଳପ ଗୁଖିଲେ ଜାଣି ଅମୃତର ସ୍ୱାଦ
ଅପଳ ଯେନନ୍ତି ଲୋକେ ଶିବଙ୍କ ପ୍ରସାଦ ।
ଅଳ୍ପ ରାମ ନାମ ହୃଦେ ଘୋଷି ଯୋଗୀଜନ
ଅଳପେ ଖଣ୍ଡିଲେ ମାୟା ସଂସାର ବନ୍ଧନ ।
ଅଳପ ଅନଳ ପାରେ ସୃଷ୍ଟି ଧ୍ୱଂସ କରି
ଅଳପ ପ୍ରୀତିରେ ବୋଧ କରିଗଲେ ହରି ।
ଅଳପ ମଣିର ମୂଲ୍ୟ ପାଇ ବହୁ ଧନ
ଅଳପ ଭକ୍ତିରେ ତୋଷ ହୁଅନ୍ତି ଭଗବାନ ।
ପରଶ ପଥର ଲାଗି ଲୁହା ହୁଏ ସୁନା
ତେସନ ସଞ୍ଜାତ ଆମ୍ଭେ ହେଲେ ଗୋପାଙ୍ଗନା
ଖାଲଡ଼ଙ୍ଗର ପର୍ବତୁ ଯେତେ ଜଳ ଆସି
ପବିତ୍ର ହୁଅଇ ତାହା ସମୁଦ୍ରରେ ପଶି ।
ସେହି ଜଳ ପ୍ରାୟ ଆମେ ସବୁ ଗୋପୀଯାକ
ଶ୍ରୀକୃଷ୍ଣ ସମୁଦ୍ରେ ପଶି ଖଣ୍ଡିଲୁ ପାତକ ।
ଏ ବଚନ ଶୁଣି ବୋଲେ ଏକଇ ମୃଗାକ୍ଷୀ
ଜୀବ ଥିବେ ଶ୍ରୀକୃଷ୍ଣଙ୍କୁ ମୁର୍ଚ୍ଛି ନୋହେ ସଖି ।

ଘୁ ନୃପଙ୍କ ଉତ୍ତମ ସେ ସର୍ବଗୁଣ ରାଶି
କେତେଗୁଣ ତାହାଙ୍କର ବାହୁନିବା ବସି ।
ମାନେନ୍ଦୀ ଦଳ ପରାୟେ ଦିଶେ ତନୁକାନ୍ତି
ଯା ପାଦପଦ୍ମକୁ ସମ ନୁହେଁ ରକ୍ତପନ୍ତି ।
କୁଟିଳ କୁନ୍ତଳେ ଶୋହେ ବନ୍ଧ ପୁଷ୍ପ ବେଣୀ
ନୀଳଘନ ମଧ୍ୟେ ଯେସନେ ଉଦେ ତାରାଶ୍ରେଣୀ ।
ନାନାଜାତି କୁସୁମରେ ହୋଇ ପରିମଳ
ମସ୍ତକ ଉପରେ ଶୋଭାପାଏ ଦିବ୍ୟଚୂଳ ।
ଭାଲପଟ୍ଟେ ବିରାଜଇ ଗୋରଚନା ଚିତା
କନ୍ଦର୍ପ ଧନୁକୁ ନିନ୍ଦେ ଗୁରୁ ଭ୍ରୂଲତା ।
କଟାକ୍ଷରୁ ସରି ଶୋହେ ମଦନର ବାଣ
ଗୃହିଁଲ ମାତ୍ରକେ ହରିନିଏ ମନପ୍ରାଣ ।
ବିମ୍ବାଧରେ ମନ୍ଦହାସ ଅପୂର୍ବ ଚାହାଁଣି
ସେ କଥା ଚିନ୍ତିଲେ ସଖି ହୃଦ ହୁଏ ହାଣି ।
ବିକଚ କମଳ ପ୍ରାୟେ ଶୋହେ ବେନି ଡୋଳା
ମୁଖଚନ୍ଦ୍ର ଦେଖି ମୋହ ହେଲେ ଗୋପବାଳା ।
ସୁସଞ୍ଚ ସୁନ୍ଦର ନାସା ଅପୂର୍ବ ଶୋଭନ
ସତବାନ ସୁବର୍ଣ୍ଣ କି ଯା ପୀତ ବସନ ।
ତାଗ୍‌ବର୍ଣ୍ଣିକ ମୁକୁତା ଧାଡ଼ିଥାଇ ଲମ୍ବି
ହିମବନ୍ତ ପର୍ବତେ କି ଶ୍ୱେତନାଗ ଚୁମ୍ବି ।
ଅପୂର୍ବ ସୁନ୍ଦର ଦିଶେ ବିମ୍ବାଧର କାନ୍ତି
ସିନ୍ଦୂର ରେଖା ଲଳିତ ମୁକ୍ତା ଦନ୍ତପନ୍ତି ।
କଣ୍ଠ ଶୋଭାବନ ନାନା ବର୍ଣ୍ଣ ରତ୍ନହାର
ତାରାଗଣ ଘେନି ଯେସନେ ଉଦେ ନିଶାକର ।
ହସ୍ତୀଙ୍କର ଥୋରହସ୍ତ ଜାଣି ଭୁଜଦଣ୍ଡ
ସେ ଭୁଜର ବଳେ ଜିଣି ପାରଇ ବ୍ରହ୍ମାଣ୍ଡ ।
ବିଦ ମୁଦ୍ରି ତାଡ଼ ତୋଡ଼ କଙ୍କଣ ବାହୁଟି
ହୀରାମାଳା ଅଷ୍ଟରତ୍ନ ଖଞ୍ଜା ଗୋଟି ଗୋଟି ।
ଅଙ୍ଗୁଳ ଶୋଭା ଯେସନ ଚମ୍ପାଫୁଲ କଡ଼ି
ନଖ ସେବନ୍ତିକ ଜାଇଫୁଲର ପାଖୁଡ଼ି ।
କଟୀ ଶୋଭାକର ହରି ଡମ୍ବରୁକୁ ଜିଣି
ଆରକ୍ତ ପଦ୍ମ ପ୍ରାୟ ଶୋହେ ପାଦପାଣି ।
ନିକଚ୍ଛ ପୀତବସନ ଅର୍ଦ୍ଧାଞ୍ଚଳ ଫେଡ଼ି
ନବରତ୍ନ ଓଡ଼ଆଣି ତଥିପରେ ଜଡ଼ି ।
ତେଣୁ ଅତି ଶୋଭାବନ ଦିଶୁଥାଇ କଟୀ
ଗୋପ ନାୟିକାଙ୍କ ଧୈର୍ଯ୍ୟ କରଇ ସେ ଲୁଟି

ସଧୀର ଗୃଲଇ ଯେସନେ ରାଜହଂସ ଗୃଲ
ବିରହିଣୀ ହୃଦୟକୁ ହୁଅଇ ସେ ଭଲ ।
ଅଣ୍ଡିର କୋକିଳ ପ୍ରାୟ କହନ୍ତି ବଚନ
ସେ ବଚନେ ବନ୍ଦୀ ହେଲା ଗୋପୀଙ୍କର ମନ
ହେ ସଖି ଏମନ୍ତ ଯେତେ ଶ୍ରୀକୃଷ୍ଣର କଥା
ସୁମରନ୍ତେ ହୃଦଫାଟି ଜାତ ହୁଏ ବ୍ୟଥା ।
କେଉଁ ଦଇବର ଆମ୍ଭେ କଲୁ କେତେ ଦୋଷ
ଏଡ଼େ ସୁଖ ଭାଙ୍ଗି କଲା ଆମ୍ଭଙ୍କୁ ନିରାଶ ।
ଭାବ ଲଗାଇ ବିଚ୍ଛେଦ କଲେ ଦେବହରି
କେଉଁଦୋଷେ ଗୃଡ଼ିଗଲେ ସ୍ୱହସ୍ତେ ନ ପାରି ।
ନୋହିଲେ ଆମ୍ଭଙ୍କୁ ସଙ୍ଗେ ନେଇଥାନ୍ତେ ଅବା
ପରିଗୃରି ପଣେ ଆମ୍ଭେ କରୁଥାନ୍ତେ ସେବା ।
ଏତେବୋଲି ଶୋକ ଗଦ ଗଦ ଗୋପନାରୀ
ବେନି ନୟନରୁ ଫାଟି ବହେ ଅଶ୍ରୁବାରି ।
ହେ ବିଧାତା କି ବିଗୃରି କରି ଏହା କଲୁ
ପ୍ରାପ୍ତହେବା ନିଧି ଆମ୍ଭ ହସ୍ତୁ ଘେନିଗଲୁ ।
ଆବର କୃଷ୍ଣଙ୍କୁ ଆମ୍ଭେ ପାଇବୁ ଯେ କାହିଁ
ନିଶ୍ଚେ ପ୍ରାଣ ବିସର୍ଜିବୁ ବିଷ ଗୋଳି ଖାଇ ।
ଏମନ୍ତ ବୋଲି ବିକଳ ହୁଅନ୍ତେ ତରୁଣୀ
ଆବର ଗୋପୀଏ ବୋଲେ ଶୁଣ ସଙ୍ଗାତ୍ରୁଣୀ ।
ଶ୍ରୀକୃଷ୍ଣର ମାୟା ତୁମ୍ଭେ ନ ଜାଣ ଗୋ କିଛୁ
ତାଠାରେ ଆମ୍ଭର କିସ ପ୍ରୟୋଜନ ଅଛୁ ।
ବଡ଼ ନିରପେକ୍ଷ ଦେହୀ ଅଟଇ ସେ କହ୍ନାଇ
ପ୍ରତ୍ୟକ୍ଷରେ ଦେଖିଅଛ ମାଇଲା ପୂତନା ।
ତାକୁ ଆଶ୍ରେ କରି ବୃନ୍ଦା ପ୍ରାଣ ବିସର୍ଜିଲା
ଚନ୍ଦ୍ରାବଳୀ ମରୁଥିଲା ଭାଗ୍ୟରେ ବଞ୍ଚିଲା ।
ଷଣ୍ଢା ଶକଟା ଯାମଳାର୍ଜୁନ କେଶି ବକା
ଅଘା ତୃଣା ଆଦି ଯେତେ କଂସାସୁର ସଖା ।
ଧେନୁ କୁବଳୟା ଗଜ ମୁଷ୍ଟିକ ଚାଣୁର
ଏମାନଙ୍କୁ ମାରି କଲା କଂସକୁ ସଂହାର ।
ଏତେ ମାରି ହତ୍ୟା ଦୋଷ ନ ଲଗିଲା ଯାକୁ
ଆମ୍ଭେମାନେ ମଲେ କିସ ଭୟ ଅଛୁ ତାକୁ ।
ଆପଣାର ସୁଖ ଆପେ ଜାଣେ ବନମାଳୀ
ବଚନେ ଯାହା କହେ ତାହା ନପାରଇ ପାଳି
ଅନେକ ପୀରତି କରି ଆମ୍ଭଙ୍କୁ ଭଣ୍ଡିଲା
ଏତେ ରାଜ ଭୋଗ ପାଇ ତା ପାସୋରିଲା ।

ଅକ୍ରୂର ସଙ୍ଗତେ ଗଲାବେଳେ ସେ ମାଧୋଇ
ଆମେମାନେ ବୋଲୁଥିଲୁ ସଙ୍ଗେ ଯିବାପାଇଁ ।
ବେଢ଼ି କ୍ରୋଶ ଯାଏ ଗଲୁ ପଛରେ ତାହାର
ଲେଉଟି ଆମ୍ଭଙ୍କୁ ଥରେ ନ ଚାହିଁଲା ହରି ।
ଗୋପ ଛାଡ଼ିଯାନ୍ତେ ଏଡ଼େବଡ଼ ସେ ହୋଇଲା
ଏକାବେଳେ ସବୁ ସ୍ନେହ ମନରୁ ଭୁଲିଲା ।
ଏବେ ସିନା ଜଣାଗଲା ସଖି ତାର ମନ
ତଣ୍ଟିକଟା ଅଟଇ ସେ ନନ୍ଦର ନନ୍ଦନ ।
ଆମ୍ଭ ହୃଦୟରେ ବୁଦ୍ଧି ନଥିବାରୁ ଲେଶ
ଜାଣି ନ ପାରିଲୁ ତାର କପଟ ବିଶ୍ୱାସ ।
ଅମୃତ ଦେଖାଇ ବିଷ ଖୁଆଇଲା ପରି
କପଟ ପ୍ରୀତିରେ ଗଲା ଆମ୍ଭଙ୍କୁ ସେ ମାରି ।
ଏବେ କୋଷ୍ଟୀ କଲା ଯାଇ ଯାଦବଙ୍କ ମେଳେ
ଗୋପୀଗୋପାଳଙ୍କୁ କମ୍ପା ଚାହିଁବ ସେ ହେଲେ
ରାଜକୁମାରୀମାନଙ୍କୁ ହେବ ତହିଁ ବିଭା
ସେ କନ୍ୟାଙ୍କ ଆଗେ ଆମେ ଦିଶିବାକ ଶୋଭା
ମଥୁରା ନଗରେ ଯେତେ ନାଗରୀ ଯୁବତୀ
ଚଉଷଠି ବନ୍ଧ ନାନା ବିନୋଦ ଜାଣନ୍ତି ।
ନାଗର ପୁରୁଷ ତାଙ୍କ ହସ୍ତେ ଅଛି ପଡ଼ି
ଶୁଦ୍ଧ ସୁବର୍ଣ୍ଣରେ ଯେହ୍ନେ ମରକତ ଜଡ଼ି ।
ଦିନକୁ ଦିନ ପୀରତି ବଢ଼ିଲାକ ଯହୁଁ
ତାଙ୍କଠାରୁ ଉଭୁରି ସେ ଆସିବ ବା କାହୁଁ ।
ପଦ୍ମବନ ମଧ୍ୟେ ସଦା ବେଙ୍ଗ ରଖୁଆଳ
ଭ୍ରମର ବିହାର କରେ ଫୁଟିଲେ କମଳ ।
କର୍ପୂର କସ୍ତୁରୀ ଗନ୍ଧ ପନିଅର ଆଣି
ମୁଦି ହୋଇଥିଲେ କେହି ନ ପାରନ୍ତି ଜାଣି ।
ସମ୍ପୂର୍ଣ୍ଣ ଫିଟାଇ ଦେଲେ ଚହଟଇ ବାସ
ସୁଗନ୍ଧ ଆମୋଦ ପୂର୍ଣ୍ଣ ହୁଏ ଦଶ ଦିଶ ।
ସେହି ପ୍ରାୟ ତିନପୁରେ ଶ୍ରୀକୃଷ୍ଣର କୀର୍ତ୍ତି
ଶୁଭିଲାଣି ବଶ ହେବେ ଅନେକ ଯୁବତୀ ।
ବନ ପଶୁ ପ୍ରାୟେ ଆମେ ଅଟୁ ଗୋପାଙ୍ଗନା
ଆମ ପାଇଁ କମ୍ପା ସେ ଗୋ କରିବ ଶୋଚନା
ଅମେଧ୍ୟରେ ପଡ଼ିଥିଲେ ବ୍ରହ୍ମକାନ୍ତି ହୀରା
ଉତ୍ତମ ଲୋକେ କରନ୍ତି ତାକୁ ଗଳେ ହାରା ।
ସଂଯୋଗରେ କାଚ ସ୍ୱର୍ଣ୍ଣ ଏକ ବର୍ଣ୍ଣ ଦିଶେ
ବିଚାରି ଜାଣିଲେ ଏକ ମୂଲ୍ୟ ନୁହଇ ସେ ।

କୋକିଳ ଶିଶୁକୁ ଯେବେ କାକ ପ୍ରତିପାଳେ
ନିଜ ଗୁଣ ଧରଇ ସେ ବସନ୍ତର କାଳେ ।
ଗଜମୁକ୍ତା ପଡ଼ିଥିଲେ ଅରଣ୍ୟ ମଧ୍ୟରେ
କାଳେ ସେ ବସଇ ଯାଇ ନୃପତିଙ୍କ ଶିରେ ।
ଶାଳଗ୍ରାମ ଶିଳା ଯେବେ ମାଚଗୃହେ ଥିବେ
ବେଦ ଶାସ୍ତ୍ରମତେ ତାଙ୍କୁ ବ୍ରାହ୍ମଣେ ପୂଜିବେ ।
ଉତ୍ତମ ପୁରୁଷ ସ୍ୱାମୀ ଅଟନ୍ତି ଶ୍ରୀଅଙ୍ଗ
କିଛି କାଳ ଆମ ସଙ୍ଗେ କଲେ ଅଙ୍ଗସଙ୍ଗ ।
ପୁଣି ସେ ଲେଉଟି କମ୍ପା ଆସିବେ ଏଥକୁ
ସବୁଠାରେ ଭୋଗ ମିଳେ ଶ୍ରୀମନ୍ତ ଲୋକଙ୍କୁ
ବଳବନ୍ତ ଗୁଣବନ୍ତ ଲକ୍ଷ୍ମୀଦେବୀ ସାଇଁ
ଯହିଁ ଥିଲେ ତହିଁ ତାଙ୍କୁ କିସ ନ ମିଳଇ ।
ଧନ ରତ୍ନ ଅଳଙ୍କାର ସ୍ତିରୀ ନାନା ଦ୍ରବ୍ୟ
ବାଞ୍ଛାକଲେ ଅବହେଳେ ପାଇବେ ସେ ସର୍ବ
ଏହା ଶୁଣି ବୋଲେ ଆଉ ଏକ ଚନ୍ଦ୍ରମୁଖୀ
ମୁଁ କହିବା କଥା ତୁମେ ଶୁଣ ସର୍ବ ସଖି ।
ଅଖିଳ ବ୍ରହ୍ମାଣ୍ଡ ନାଥ ସେହି ନାରାୟଣ
ହୃଦୟ ପୋଡ଼ୁଛି ମନେ ଚିନ୍ତି ତାଙ୍କ ଗୁଣ ।
ଯେଉଁଦିନ ଅବତାର ହେଲେ ନନ୍ଦଘରେ
ଚାରିପାଦେ ଲକ୍ଷ୍ମୀ ବିଜେକଲେ ଗୋପପୁରେ
ଅଚଳାଚଳ ସମ୍ପଦ ପୁତ୍ରକନ୍ୟା ନାତି
ଚାହୁଁ ଚାହୁଁ ଅଦଭୁତେ ବଢ଼ିଲା ବିଭୂତି ।
ସ୍ୱର୍ଗସମ ଗୋପପୁରେ ବିକଶିଲା ଶୋଭା
ବୃଦ୍ଧମାନେ ପାଲଟିଣ ହେଲେ ନବଯୁବା ।
ଧରଣୀରେ ଉପୁଜିଲା ନାନା ପୁଷ୍ପ ଫଳ
ଇଚ୍ଛାକଲେ ମେଘମାନେ ବରଷିଲେ ଜଳ ।
ରୋଗ ଶୋକ ମୃତ୍ୟୁବାଧା ନ ଜାଣିଲେ କେହି
ନାନା ଉପଦ୍ରବୁ ରକ୍ଷା କଲେ ବେନି ଭାଇ ।
ରାସ ଦିବସ ବର୍ତ୍ତିନ୍ତି ରହାସ ବିନୋଦେ
ସର୍ବ ଗୋପୀଙ୍କି ମୋହିଲେ ଏକା ବଂଶୀନାଦେ
ନାନାରଙ୍ଗେ କ୍ରୀଡ଼ା କଲେ ଆମ ସଙ୍ଗେ ହରି
ସେ କଥା ସୁମରିଲେ ହୃଦ ହେଉଛି ବିଦାରି ।
ବତିଶ ଯେ ଆଲିଙ୍ଗନ ଷୋଳକଳା ରତି
ଚୌଷଠି ବନ୍ଧେ ଶୃଙ୍ଗାର ଆଳାପ ପୀରତି ।
ଜାରଣ ମାରଣ ଆଦି ସମ୍ଭାଷଣ ଲୀଳା
ସବୁ ରସେ ରସାଇଲେ ସେହି ନନ୍ଦବଳା ।

କଦମ୍ବ ବୃକ୍ଷରେ ଉଠି ବଜାଇଲେ ବେଣୁ
ଆମ ପଞ୍ଚଭୂତ ଆତ୍ମା ହରି ନେଲ ତେଣୁ ।
ଲଳିତ ଗାନ୍ଧାର ରାଗେ ଗାଇଲେ ସେ ଗୀତ
ଶୁଣିଲ୍ ମାତ୍ରକେ ଅଙ୍ଗ ହେଲ୍ ପୁଲକିତ ।
ମୃଦଙ୍ଗ କଂସାଳ ବୀଣାଯନ୍ତ୍ର ଅଳାବେଣୀ
ମର୍ଦ୍ଦଳ ପଞ୍ଚହ ବଜାଇଲେ ଚକ୍ରପାଣି ।
ତାଣ୍ଡବ ରଙ୍ଗରେ ପଶି କଲେ ଦିବ୍ୟ ନାଟ
ଷୋଳସହସ୍ର ଗୋପୀ ଆମେ ହୋଇଲୁ ଉଚାଟ
ଆମ୍ଭଙ୍କୁ ସୁନ୍ଦରୀ ବସ୍ତ୍ରେ କଲେ ପୀତବାସ
ଖଟିଲୁ ଅଭେଦ ଆତ୍ମା ହୋଇ ତାଙ୍କ ପାଶ ।
ଘର ବର ତେଜି ଲଜ୍ଜା ନ ଧରିଲୁ ମନେ
ସର୍ବଦା ସେବିଲୁ ତାଙ୍କୁ ବୁଲି କୁଞ୍ଜବନେ ।
ଶାଶୁ ଶ୍ୱଶୁର ଦିଅର ପତି ପୁତ୍ର ମୂର୍ଚ୍ଛି
ପିତା ମାତା ସହୋଦର ଭାଇ ବନ୍ଧୁ ଲେଛି
ଇଚ୍ଛାସୁଖେ ବରିଥିଲୁ ଯାକୁ ଭର୍ତ୍ତା କରି
କେଉଁଣ ଦଇବ ତାକୁ ନେଲ୍ ଏବେ ହରି ।
ଅସତୀ ହୋଇଲୁ ମାତ୍ର ନ ପୂରିଲ୍ ଆଶ
ଏଡ଼େ ବଡ଼ ପ୍ରୀତି ହେଲ୍ ଅଳ୍ପକରେ ନାଶ ।
ଏତେ କହିଣ ଆକୁଳ ହେଲ୍ ଗୋପାଙ୍ଗନା
କଛୁ କଛୁ ନ ରହିଲ୍ ଅଙ୍ଗରେ ଚେତନା
ଶୁକମୁନି ବୋଲନ୍ତି ହୋ ଶୁଣ ପରୀକ୍ଷିତ
ପଞ୍ଚମ ପୁରାଣ ଏ ଯେ ଶ୍ରୀହରି ଚରିତ ।
ଏକ ସଖୀ ଅସାଷ୍ଟମେ ଆରେକ ତରୁଣୀ
ବିକଳ ହୋଇଣ ବୋଲେ ଶୁଣ ସଙ୍ଗାତୁଣୀ ।
ଶ୍ରୀକୃଷ୍ଣ ଚିନ୍ତାରେ ଏତେ ଆରତ ତୁ ନୁହ
ତୋ ବିକଳ ଦେଖି ମୋର ନ ସହଇ ଦେହ
ସରିଲାଣି ଦମ୍ଭପଣ କୃଷ୍ଣଗଲ୍ ଦିନୁ
ଛଳେ ହେଲେ ତାଙ୍କ କଥା ନ ଛୁଡ଼ିଲ୍ ମନୁ
ନ ଲଗଇ କ୍ଷୁଧା ତୃଷା ନିଦ୍ରା ନାହିଁ ରାତେ
ପୋଡ଼ୁଛି ବିରହାନଳ ପଶି ମୋର ଗାତେ ।
ଯିବୁବେଳେ କରି କରି ସେହି କୃଷ୍ଣ ଚିନ୍ତା
ଖାଇବାକୁ ଅନ୍ନ ମୋତେ ଲାଗିଲ୍ଣି ପିତା ।
ଚକ୍ଷୁ କର୍ଣ୍ଣ ନାସା ଆଦି ଇନ୍ଦ୍ରିୟଙ୍କ ଭୋଗ
ବସନ ଭୂଷଣ ମାଲ୍ୟ ସବୁ କରି ତ୍ୟାଗ ।
ଗଜଦନ୍ତ ପଲଙ୍କରେ ଶେଯାଇ ହଂସତୁଳି
କର୍ପୂର ଚନ୍ଦନ ଗନ୍ଧ ରଖିଥାଇ ଗୋଳି ।
ଯେତେବେଳେ ନ ଦେଖିଲେ ଶ୍ରୀକୃଷ୍ଣ ବଦନ
ତା ମୋତେ ଲାଗିଲ୍ ଯେହ୍ନେ ପ୍ରଳୟ ଦହନ
ବାଲିରେ ପଡ଼ିଛି କୃଷ୍ଣଚରଣ ପଙ୍କଜ
ଯମୁନାକୁ ଗଲ୍ବେଳେ ଦେଖିଲି ମୁଁ ଆଜ ।
ସାଉଁଟି ଆଞ୍ଚଳ କରେ ସେ ଚରଣ ଧୂଳି
ମସ୍ତକରୁ ପାଦଯାଏ ଅଙ୍ଗେ ଦେଲି ବୋଳି ।
ଗତ କଥାମାନ ସବୁ ମନମଧ୍ୟେ ସ୍ମରି
ଅସାଷ୍ଟମ ହେଲି କାମବାଣେ ହୋଇ ଘାରି ।
ଏକାନ୍ତ କ୍ରୀଡ଼ାର ଭୂମି ଲତା କୁଞ୍ଜବନ
ଏକାହୋଇ ବୁଲି ବୁଲି ଦେଖିଲି ସେମାନ ।
ଯେଉଁଠାରେ କୃଷ୍ଣ ମୋତେ କହିଥିଲେ ଯାହା
ଆଦି ଅନ୍ତ କରି ରଖି ଚିତାଇଲି ତାହା ।
ତେତେବେଳୁ ପ୍ରାଣ ମୋର ହେଉଛି ଆଉଟି
ନିରନ୍ତର ଜପୁଅଛି କୃଷ୍ଣନାମ ଗୋଟି ।
କବରୀର ଫୁଲ ମୋତେ ଲାଗୁଅଛି ଭାର
ସର୍ପ ପ୍ରାୟ ମଣିଲି ମୁଁ ଗଳା ରତ୍ନହାର ।
କର୍ପୂର କସ୍ତୁରୀ ଗନ୍ଧ ଯେ ପଟ୍ଟୀର ପାଣି
ପରିତ୍ୟାଗ କଲି ସଖି ଅଗ୍ନି ପ୍ରାୟ ମଣି ।
ପରିଧାନ କ୍ଷୀଣବାସ ହେଲ୍ ମୋତେ ଗରୁ
ଖଳ ଖଳ ହୋଇ ଝାଳ ବହଇ ଦେହରୁ ।
ଭାସିଲି ମଦନ ଜଳେ ନ ପାଇଣ କୂଳ
ତରିବାକୁ ନାବ ଏକା ସେହି ନନ୍ଦବାଳ ।
ସତେ କି ଦେଖିବି ଆଉ ସେ ମୁଖ ମାଧୁରୀ
ଏତେ ବୋଲି ଉଚେ ଶୋକ କଲ୍ ଗୋପନାରୀ
ଆଉ ଏକ ସଖୀ ବୋଲେ ସତ ପ୍ରାୟ ମଣୁ
ଆଉ କି ଶୁଣିବା କର୍ଣ୍ଣେ ସେ ବିରହବେଣୁ
ବାହୁଡ଼ି ନିକୁଞ୍ଜବନେ ସେହିମତ ହୋଇ
ଏ ଜନ୍ମେ ଲେଉଡ଼ିଲେ ଆମେ ପାଇବା ଯେ କାହିଁ
ଯେଉଁଦିନୁ ଗଲେ ରାମକୃଷ୍ଣ ଗୋପ ଛାଡ଼ି
ସେହି ଦିନୁ ସବୁ ସୁଖ ସଙ୍ଗେ ନେଲେ କାଢ଼ି
ଆବର ଏଠାରେ ଆମେ ରହି କି କରିବା
ସେ ଯହିଁ ଅଛନ୍ତି ଚାଲ ସେହିଠାକୁ ଯିବା ।
ପରିବାସୀପଣେ ତାଙ୍କ ପାଦେ ଥିବା ଖଟି
ଏଠାରେ ରହିଲେ ପ୍ରାଣ ଯିବ ହୃଦ ଫାଟି ।
ଆଉ ଏକ ଗୋପୀବୋଲେ କୃଷ୍ଣର କି ଦୋଷ
କେବଳ ଅକ୍ରୂର ଆସି ସବୁ କଲ୍ ନାଶ ।

ତାହାଠାରୁ ଝୁରକର୍ମା ଜଗତେ କେ ନାହିଁ
କେମନ୍ତେ ଅକ୍ରୁର ବୋଲି ନାମ ଅଛୁ ବହି ।
ଏହିମନ୍ତ ପରସ୍ପରେ ସର୍ବ ଗୋପବାଳୀ
ଆକୁଳ ହୁଅନ୍ତି ରାମକୃଷ୍ଣ କଥା ଭାଳି ।
ଭୋଜନ ଶୟନ ଗୃହ ଦାଣ୍ଡ ଜଳଘାଟେ ।
ବାତୁଳୀ ପରାଏ ହୋନ୍ତି ଶ୍ରୀକୃଷ୍ଣ ଉଚାଟେ ।
ନବଲକ୍ଷ ସଂଖ୍ୟା ଗୃହ ବସେ ଗୋପପୁରେ
ଯେତେ ନରନାରୀ ବାସ କରନ୍ତି ତହିଁରେ ।
ସମସ୍ତେ କହନ୍ତି ବାଟଘାଟେ ସେହି କଥା
ରାମକୃଷ୍ଣ ବିନୁ ଆନ ନ ରୁଚେ ସର୍ବଥା ।
ଶୁଣ ହେ ପରୀକ୍ଷ ରଜା ଶୁକ ଯେ କହନ୍ତି
ଇତି ଶ୍ରୀପୁରାଣ ହରିବଂଶ ପୁଣ୍ୟକୀର୍ତ୍ତି ।
ସେ ଶୁକମୁନିଙ୍କ ପାଦେ କୋଟି ନମସ୍କାର
କହଇ ଅଚ୍ୟୁତ ଦାସ ହରିବଂଶ ସାର ।
ଜଗତ ବନ୍ଦନ କୃଷ୍ଣ ରାଧିକାବଲ୍ଲଭ
କୃପାକର ପ୍ରଭୁ ମୋତେ ହୁଅ ସଦଭାବ ।



## ଉଦ୍ଧବର ଗୋପପୁରରେ ରାମକୃଷ୍ଣଙ୍କ ବାର୍ତ୍ତା ପ୍ରଦାନ

ଏଥୁଅନ୍ତେ ଶୁକମୁନି ବୋଇଲେ ରାଜନ
କହିବା ଶ୍ରୀକୃଷ୍ଣ ଲୀଳା ହେତୁକରି ଘେନ ।
ଏସନେ ଗୋପିକାମାନେ ଖଳବଳ ହୋନ୍ତେ
ଉଦ୍ଧବ ଗୋପକୁ ଗଲେ ବସି ନିଜ ରଥେ ।
ଆନନ୍ଦେ ଗଦ୍‌ଗଦ ପୁଲକଇ ରୋମାବଳି
ନଗ୍ର ଚଉକତ ଗୃହିଁ ନ ପାରନ୍ତି କଳି ।
ଗୋପୀଜନମାନେ ତାହା ଦେଖନ୍ତେ ନେତ୍ରରେ
ଧାଇଁଲେ ଅପୂର୍ବ ପ୍ରାୟେ ମଣି ସେ ଯାହାରେ ।
ଉଦ୍ଧବ ରଥର ଚଉପାଶେ ବେଢ଼ି କରି
ନିରେପି ଗୃହିଁଲେ ସର୍ବେ ଏକ ଦୃଷ୍ଟି କରି ।
ତଥ୍ୟକରି ଜାଣିଲେ ଏ ନୁହନ୍ତି ମାଧବ
ଥୋକାଏ ବୋଲନ୍ତି ଏତ ଅଟଇ ଉଦ୍ଧବ ।
କେ ବୋଲଇ ଗୋପକୁ ଏ ଆସିଛୁ କପାଇଁ
ତଥ୍ୟ ଜଣାଯିବ ସଖି ପଚାରି ଗୋ ଯାଇ ।
କେ ବୋଲଇ ରାଜାଙ୍କର ଅଟଇ ଏ ଦୂତ
ଅମାତ୍ୟ ଅଧିକାରୀ ଯଦୁବଂଶ ଗୋତ ।
ଏଡେ ବଡ଼ଲୋକ ଯେବେ ଏଥିକୁ ଆସିଛି
ଅବଶ୍ୟ ଏଥିରେ କଥା ସନ୍ଧି ଥିବ କିଛି ।
ଏହା ପ୍ରାୟ ରଥେ ବସି ଅକ୍ରୁର ଅଇଲା
ଗୋପ ନଗରରୁ ଶିରୀ ଘେନି ପଳାଇଲା ।
ଏ ଉଦ୍ଧବ ସେହିମନ୍ତ ରାଜାଙ୍କର ଦୂତ
କି ନିମନ୍ତେ ଆସିଅଛି ବୁଝ ଗୋ ତଦନ୍ତ ।
ଥୋକାଏ ବୋଲନ୍ତି ଏଥୁ ନେବ କେଉଁ ଦ୍ରବ୍ୟ
ରାମକୃଷ୍ଣ ଗଲା ଦିନୁ ସରିଲାଣି ସର୍ବ ।
ଥୋକେଗୋପୀବୋଲନ୍ତିଗୋ କିମ୍ପାକର ଭୟ
ବାରତା ଶୁଣିବା ଯାଏ ହୋଇଥିବା ଥୟ ।
ଏସନକ ପରସ୍ପରେ ଭାଳି ଗୋପନାରୀ
ଉଦ୍ଧବ ମୁଖକୁ ଗୃହିଁ ବାରତା ପଚାରି ।
ହେ ଉଦ୍ଧବ ତୁମ୍ଭେ ଗୁଣବନ୍ତ ଶିରୋମଣି
ମଥୁରା ରାଜାଙ୍କ ପାଣି ରାଜ୍ୟରେ କାରେଣି
ତୁମ୍ଭପରି ଲୋକ କିମ୍ପା ଏକରଥେ ଚଢ଼ି
ଗୋପପୁରେ ଆସିଅଛ କହ କୂଟ ଛାଡ଼ି ।
ତୁମ୍ଭ ଆଗମନେ ଆମ୍ଭେ ଆତଙ୍କ ହେଉଛୁ
ତେଣୁ ତୁମ୍ଭ ଆଗେ ମିଳି ବାର୍ତ୍ତା ପଚାରୁଛୁ ।
ଗୋପିକାମାନଙ୍କ ମୁଖୁ ଏ ବଚନ ଶୁଣି
ଉଦ୍ଧବ କହିଲେ ତାଙ୍କୁ ହସ ମଞ୍ଜୁ ବାଣୀ ।
ତୁମ୍ଭେ ଗୋପିମାନେ ଅଟ ଶ୍ରୀକୃଷ୍ଣଙ୍କ ଦେହ
ବାର୍ତ୍ତା ଘେନି ଆସିଅଛୁ ଆନ କେହି ନୁହ ।
ତୁମ ସମୀପକୁ ମୋତେ ପେଷି ନାରାୟଣ
ଯାହା କହିଛନ୍ତି ତାହା ଏକମନେ ଶୁଣ
ତୁମ ଗୁଣମାନ ହରି ଅନ୍ତର୍ଗତେ ଗୁଣି
ନ ସରଇ ଦିନ ତାଙ୍କୁ ନ ରୁଚଇ ପାଣି ।
ଅନ୍ନ ମଧ ନ ରୁଚଇ କରିବାରୁ ଖେଦ
ସେହିମନ୍ତ ନିଶାକାଳେ ନ ଲାଗଇ ନିଦ ।
ସନକାଦି ଋଷି ଯାକୁ କରୁଥାନ୍ତି ଧ୍ୟାନ
ତୁମଠାରେ ମନଦେଇ ସେହି ଭଗବାନ ।
ରାଜଭୋଗ ଆଦି ସୁଖ ତୁଚ୍ଛପ୍ରାୟ ମଣି
ଆରତ ହୁଅନ୍ତି ଏକା ତୁମ୍ଭ ଗୁଣ ଗୁଣି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ତୁମ୍ଭ ଜନ୍ମ ସାଧୁ
ଏ ଦେହେ ନିସ୍ତାର ତେଣୁ ହେଲ ଗୋପବଧୂ
କେବଣ ତୀର୍ଥରେ ବସିକରି କେତେ ତପ
ନିରନ୍ତରେ କରୁଅଛ କୃଷ୍ଣ ନାମ ଜପ ।

ଜଗତମୋହିନୀ ଅଟେ ଯେଉଁ ବିଷ୍ଣୁ ମାୟା
ଜନ୍ମ ମରଣ ଖଣ୍ଡିଲ ଦେଖି ତାଙ୍କ କାୟା ।
ଯେଉଁ ପାଦ ପଖାଳିଲେ ଆପେ ବେଦବର
ଯେଉଁ ପାଦୋଦକ ଶିରେ ଧରିଲେ ଶଙ୍କର ।
ଶାପେ ଶିଳା ହୋଇଥିଲେ ଗଉତମନାରୀ
ଯେଉଁ ପାଦରଜ ଲାଗି ଗଲେ ସେ ନିସ୍ତରି ।
ଯେଉଁ ପାଦେ ବିଭୀଷଣ ପଶିଲେ ଶରଣ
ଚିରଜୀବୀ ହୋଇଲା ସେ ନ ପାଇ ମରଣ ।
ଯେଉଁ ପାଦେ ରସାତଳଗାମୀ ହେଲା ବଳି
ଯେଉଁ ପାଦ ଆଶ୍ରୟରେ ହନୁ ମହାବଳୀ ।
ଯେଉଁ ପାଦପଦ୍ମ ସେବା କରନ୍ତି ଚଞ୍ଚଳା
ଶକଟାସୁର ଯେବଣ ପାଦଘାତେ ମଲା ।
ଯେଉଁ ପାଦ ଆଶ୍ରେକରି ଶୁକ ମହାମୁନି
ମାତାଗର୍ଭେ ଥାଇ ବେଦ ପଢ଼ି ହେଲେ ଜ୍ଞାନୀ
ଯେଉଁ ପାଦେ ସେବାକରି ଜନକ ତନୁଜା
ମହାସତୀ ହୋଇଣ ସେ ପାଇଥିଲେ ପୂଜା ।
ଯେଉଁ ପାଦରଜ ଘେନି ଗଙ୍ଗାନଦୀ ବହି
ପତିତପାବନୀ ନାମ ଆପେ ଛନ୍ତି ବହି ।
ଯୋଗୀ ମୁନି ଆଦି କରି ଯେତେ ସିଦ୍ଧସତୀ
ଯେଉଁ ପାଦପଦ୍ମ ପୂଜି ଲଭିଲେ ସଦ୍‌ଗତି ।
ଯେଉଁ ପାଦ ଆଶ୍ରେକରି ଉଗ୍ରସେନ ରାଜା
ମଥୁରା ନଗରେ ବସି ପାଉଛନ୍ତି ପୂଜା ।
ଯେବଣ ପାଦକୁ ହର ବ୍ରହ୍ମା ପୂଜାକରି
ସେହି ପାଦ ମଞ୍ଚାଳିଲ ତୁମ୍ଭେ ଗୋପନାରୀ ।
ଆବର କି ତୁମ୍ଭ ଅଙ୍ଗେ ଅଛି ଆଉ ପାପ
ଏ ଦେହେ ଖଣ୍ଡିଲ ଜନ୍ମ ମରଣ ସନ୍ତାପ ।
ତୁମକୁ ଦେଖିଲି ମୋର ଥିଲା ପୂର୍ବଭାଗ୍ୟ
ଷଡ଼ାର୍ଘ୍ୟ ପୂଜାକୁ ତୁମ୍ଭେମାନେ ଅଟ ଯୋଗ୍ୟ
ତୁମ ଦର୍ଶନରେ ଆଜ ମୁକ୍ତ ହେଲି ମୁହିଁ
ଖଣ୍ଡିଲ ସକଳ ପାପ ନରତନୁ ବହି ।
ଜଣ ଜଣକରେ ତୁମ୍ଭେମାନେ ମହାଜ୍ଞାତା
କୃଷ୍ଣର ବଲ୍ଲଭୀ ତୁମ୍ଭେ ଅଟ ମୋ ମାତା ।
ଲକ୍ଷ୍ମୀଅଂଶେ ଜନ୍ମି ଅଛ ସର୍ବ ଗୋପାଙ୍ଗନା
ତୁମ୍ଭର ମହିମା କେବା କରିବ ବର୍ଣ୍ଣନା ।
ତେଣୁ ତୁମଠାରେ କୃଷ୍ଣ ବଢ଼ାଇଲେ ସ୍ନେହ
ଆବର ବିଶେଷେ ତୁମ୍ଭେ ଅଟ ତାଙ୍କ ଦେହ
ଅଶେଷ କୋଟି ବ୍ରହ୍ମାଣ୍ଡ ଯା ମାୟାରୁ ଜାତ
ମାୟାରେ ଭୁଲାଇ ନେଲ ତୁମେ ତାଙ୍କ ଚିତ୍ତ ।
ତୁମଠାରେ କୃଷ୍ଣଙ୍କର ମନ ଅଛି ରହି
ତୁମ ମନ ତାଙ୍କଠାରୁ ଭିନ୍ନ ହୋଇ ନାହିଁ ।
ଭକ୍ତିରେ ପ୍ରଭୁଙ୍କ ମନ ତୁମେ ନେଲ ହରି
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯାହା ନ ପାରନ୍ତି କରି ।
ତୁମମାନଙ୍କର ଗୁଣ କହିବଇଁ କେତେ
ମୂର୍ତ୍ତିମନ୍ତ ବିଷ୍ଣୁ ପ୍ରାପ୍ତ ହେଉଛନ୍ତି ମୋତେ ।
ଆବର ମଥୁରାପୁରେ ଯିବି ମୁଁ କପାଇଁ
ତୁମ ସେବା କରୁଥିବି ଏହିଠାରେ ଥାଇ ।
ତୁମ ମୁଖୁଁ ରାମକୃଷ୍ଣ ନାମ ଶୁଣୁଥିବି
ଯମୁନା ନଦୀର ଜଳେ ସ୍ନାହାନ କରିବି ।
ତୁମ ସଙ୍ଗେ ସଙ୍ଗୀ ହୋଇ ଆନନ୍ଦ ମନରେ
ଚିନ୍ତା ଛାଡ଼ି ବୁଲୁଥିବି ନିକୁଞ୍ଜ ବନରେ ।
ଇଚ୍ଛାସୁଖେ ଗାଈକ୍ଷୀର କରୁଥିବି ପାନ
ଏଥିରୁ ଅଧିକ ଆଉ ଅଛଇ କି ପୁଣ୍ୟ ।
ଏତେ ବୋଲି ଉଦ୍ଧବ ଯେ ପୁଲକିତ ଦେହୀ
କଣ୍ଠ ଗଦଗଦ ନେତ୍ର ଆନନ୍ଦାଶ୍ରୁ ବହି ।
ସମାଧିବିବରେ ମନ ଲାଗି ଅନୁପମ
ସମସ୍ତ ପାଶୋରି ଏକା ସ୍ମରେ କୃଷ୍ଣନାମ ।
ହରେ କୃଷ୍ଣ ହରେ ରାମ ବୋଲି ମୁଖେ ଘୋଷି
ରଥରୁ ଓହ୍ଲାଇ ତଳେ ଉଭା ହେଲେ ଆସି ।
ଶତେ ବାର ପ୍ରଣିପାତ କରିଣ ନିର୍ଭରେ
ଭୂମିରେ ଶୁତିଲେ ଗୋପୀନାଥଙ୍କ ସ୍ମୃତିରେ ।
ଶୁକ ବୋଇଲେ ହୋ ଶୁଣ ପରୀକ୍ଷ ନୃମଣି
ଉଠ ଉଦ୍ଧବ ବୋଲନ୍ତି ସର୍ବ ଗୋପାଳୁଣୀ ।
ଶୁଣି ଉଦ୍ଧବ ଉଠିଣ ଯୋଡ଼ି କରପଦ୍ମ
ଆନନ୍ଦରେ ଜରଜର ଉଲ୍ଲସଇ ଗାତ୍ର ।
ଗୋପୀଏ ବୋଇଲେ ତୁମେ ଛାଡ଼ି ସବୁକଥା
ସଂକ୍ଷେପିଣ କହ ରାମ କୃଷ୍ଣଙ୍କ ବାରତା ।
ଦୁରାତ୍ମା ଅକ୍ରୂର ଏଡ଼େ କ୍ରୂରକର୍ମ କଲା
ଶରୀର ଭିତରୁ ଆମ ପ୍ରାଣ କାଢ଼ି ନେଲା ।
ଆମଙ୍କୁ ଉପେକ୍ଷି ବାବୁ ଗଲେ ଭଗବାନ
ଆମ୍ଭ ତହିଁ ତ ତାଙ୍କର ଅଛିଟିକି ମନ ।
ସର୍ବଶୁଭେ ରାମକୃଷ୍ଣ ଅଛନ୍ତି କି କହ
ସେଠାଲୋକେ କରନ୍ତି କି ତାଙ୍କଠାରେ ସ୍ନେହ

ହସ ଖେଳ କରନ୍ତ ସେ ବୃନ୍ଦ ଯାହା ସଙ୍ଗେ
ଗୁପତ କଥା କହନ୍ତ ବିଶ୍ୱାସେ ଯା ଆଗେ ।
କୀର୍ତ୍ତି ଅପକୀର୍ତ୍ତି ଧନ ଅର୍ଜନ ପୌରୁଷେ
ମଥୁରା ଲୋକଙ୍କ ମନ ରଞ୍ଜାଇଲେ ଯେ ସେ ।
ଆମ୍ଭମାନଙ୍କର ଆଶା ଦେଇଛନ୍ତ ଛନ୍ଦି
ସତ୍ୱରେ ଆସିବ ବୋଲି କହିଗଲେ ଭଣ୍ଡି ।
ଏବେ ସେ ଆସିବାପାଇଁ କରନ୍ତ ନ ମନ
ପଥିକା ପ୍ରାଏ ବିଚ୍ଛେଦ କଲେ ଭଗବାନ ।
ବିଶ୍ୱାସ ଘାତକ ପାପ ଅର୍ଜିଲେ ଶ୍ରୀବତ୍ସ
ଆମ୍ଭେ ଗୋପାବଳୀ ତାଙ୍କୁ ନ ପାରୁ ମୁ ଛୁଟି ।
ଉଦ୍ଧବ ବୋଇଲେ ତୁମ୍ଭେ ନ ହୁଅ ଆକୁଳ
ବାର୍ତ୍ତା ଦେଇ ପେଷିଛନ୍ତ ମୋତେ ଆଦିମୂଳ ।
ଅତି ସ୍ନେହେ କହିଛନ୍ତ ପ୍ରଭୁ ବସୁଦେବ
ଗୋପୀ ଗୋପାଳଙ୍କ ଆଗେ ବୁଝାଇ କହିବ ।
ଆପେ ଆସୁଥିଲେ ରାଜକାର୍ଯ୍ୟ ପଡ଼ିବାରୁ
ବାହୁଡ଼ାଇ ନେଲ ସ୍ୱର ଅସିଣ ବାଟରୁ ।
ତେଣେ ମୋତେଆଜ୍ଞାଦେଇପଠାଇଲେବେଗେ
ବୋଇଲେ କହିବ ନନ୍ଦ ଯଶୋଦାଙ୍କ ଆଗେ ।
ଗୋପୀମାନଙ୍କର ଆଗେ କହିବ ଏ କଥା
ତୁମ୍ଭେମାନେ କେହି କିଛି ନ ପାଇବ ବ୍ୟଥା ।
ବିଳମ୍ବ ହୋଇଲା ବୋଲି ନୋହିବ ବିମୁଖ
ଆମ୍ଭ ଶ୍ରୀହସ୍ତର ଭାଷା ପତ୍ର ଯେନ ଦେଖ ।
ଶ୍ରୀକୃଷ୍ଣ ଆଜ୍ଞାରେ ମୁହିଁ ରଥ ଚଢ଼ି ବେଗେ
ଆସିଲି କହିବା ପାଇଁ ଏହା ତୁମ୍ଭ ଆଗେ ।
ଉଦ୍ଧବ ବଚନେ ଗୋପୀଗଣ ହୋଇ ଶାନ୍ତ
ବିଚାରିଲେ ନିଶ୍ଚେ କୃଷ୍ଣ ଆସିବ ଏ ସାନ୍ତ ।
ଏ ଉଦ୍ଧବ ଅଟନ୍ତ ତ କୃଷ୍ଣଙ୍କର ପ୍ରାଣ
ଏହାଙ୍କ ବଚନ କିମ୍ପା ହେବ ଅପ୍ରମାଣ ।
ସର୍ବଥା ପ୍ରତ୍ୟୟ ଏ ନ କହନ୍ତ ମିଛ
ଅବଶ୍ୟ ଏଠାକୁ ଆସିବେ ସେ ନନ୍ଦବତ୍ସ ।
ଏମନ୍ତ ବିଚାରି ଦାଣ୍ଡ ଖରକାଇ ଲୋକେ
ଚନ୍ଦନ ଗୋଳିଣ ଛେସ୍ତ ପକାଇଲେ ଥୋକେ ।
ଦ୍ୱାରେ ଦ୍ୱାରେ ପୂର୍ଣ୍ଣକୁମ୍ଭ ଆରୋପିଲେ ଆଣି
ମଙ୍ଗଳ ଆଳତି ସଜ୍ଜା କରନ୍ତ ତରୁଣୀ ।
ଦଧି ମତ୍ସ୍ୟ ହୁଳୁହୁଳି ଥୋଇ ଆନନ୍ଦରେ
ପୋତିଲେ କଦଳୀ ସ୍ତମ୍ଭ ଅଣି ଦ୍ୱାରେ ଦ୍ୱାରେ ।

କାନ୍ଥବାଡ଼ ଧଉଳାଇ ଲେଖନ୍ତ ପିତୁଳି
ଆନନ୍ଦ ଉତ୍ସବେ ମନ ପଡ଼ିଲ ଉଛୁଳି ।
ମେଲ କାଠମାନଙ୍କରେ ବାନ୍ଧ ଉଚ୍ଚ ତୋଣା
ସୁବର୍ଣ୍ଣ କଳସ ପରେ ନେତ ଜରକିଣା ।
ଅନେକ ଉତ୍ସବ କରି ମଣ୍ଡିଲେ ନଗର
ବୋଲନ୍ତ ଆସିବେ ନିଶ୍ଚେ ରାମଦାମୋଦର ।
ଉଚାଟ ହୋଇ ଆସିଲେ ସର୍ବେ ଆଶାଟେକ
ବାଟକୁ ଯାଇଣ ଥୋକେ ରହିଁନ୍ତ ନିରେଖି ।
ବାରତା ଶୁଣନ୍ତ ଥୋକେ ଆଗଭର ହୋଇ
କେ ବୋଲଇ ଅଧବାଟେ ହେଲେଣି କହ୍ନାଇ ।
କେ ବୋଲଇ ମିଳିଲେଣି ଆସି ନନ୍ଦଘରେ
ଶୁଣିଣ ଧାମନ୍ତ ଥୋକେ ଉଠି ସେ ଯାହାରେ ।
ହରଷେ ବିହ୍ୱଳା ହୋଇ ସବୁ ଗୋପାଙ୍ଗଣୀ
ଦଧି ବୋଲି ଘୃତଭାଣ୍ଡେ କେ ପୁରାଏ ପାଣି ।
କ୍ଷୀର ବୋଲି କେଉଁ ଗୋପୀ ଢାଳେ ତେଲଘଟ
ଘର ବୋଲି ବାହାରେ କେ ପକାଇଲ ଖଟ ।
ହଳଦୀ ବୋଲି ଗୋବର କେ ହୁଅଇ ବୋଳି
ଦଧି ବୋଲି ଚୂନଭାଣ୍ଡ ମନ୍ଥେ କେଉଁବାଳୀ ।
ଘଟୀ ବୋଲି କେଶରକୁ ଘସନ୍ତ କେ ଅଙ୍ଗେ
ସ୍ୱାମୀ ବୋଲି ମିଳଇ କେ ଦେଢ଼ଶୁର ଆଗେ
ଚଉଁରୀ ଭ୍ରମେ କେହୁ ଖୋଷେ କଳାକଳା
ପଣାବୋଲି ଗୋମୁହଁରେ କେ ଭରଇ ଛେନା
ଝୀନବସ୍ତ୍ର ଭ୍ରାନ୍ତେ ମଣି ଜାଲ କେହୁ ପିନ୍ଧେ
ରତ୍ନବସ୍ତ୍ର ବୋଲି ସୂତା ଦଉଡ଼ି କେ ବାନ୍ଧେ ।
ଶିବଲିଙ୍ଗ ବୋଲି ଶିଳପୁଆ କରି ପୂଜା
ନୈବେଦ୍ୟ କରନ୍ତ ଛେନା ଗୁଡ଼ ଖଣ୍ଡ ଖଜା ।
ପାଦର ନୂପୁର କେବା ପିନ୍ଧଇ ଗଳାରେ
ବସଣୀ ଯେନଇ କେଉଁ ଗୋପୀକା କଣ୍ଠରେ ।
ବତ୍ସା ବୋଲି ପୁତ୍ରକୁ କେ କରଇ ବନ୍ଧନ
ହରଷ ବିହ୍ୱଳେ ହେଲ ଗୋପିଙ୍କର ମନ ।
ଉଦ୍ଧବ ଜାଣିଲେ ଅନ୍ତର୍ଗତରେ ନିରେପି
ନିଷ୍ଠୁର ବାତୁଳୀ ହେଲେ ଏ ସକଳ ଗୋପୀ ।
କୃଷ୍ଣ ବିନା ଏହାଙ୍କର ଅନ୍ୟଗତି ନାହିଁ-
ଏମନ୍ତ ବିଚାରି ତାଙ୍କୁ କହିଲେ ବୁଝାଇ ।
ଅଶେଷ ବ୍ରହ୍ମାଣ୍ଡେ ଯେହୁ ଠାକୁର ଅନନ୍ତ
କେ ଜାଣି ପାରିବ ତାଙ୍କ କଥା ଆଦି ଅନ୍ତ ।

ସ୍ୱପନଧନକୁ କମ୍ପା ବୋଲୁଛ ମୋହର
ଚନ୍ଦ୍ରକୁ ଧରିବା ପାଇଁ ବଢ଼ାଉଛ କର ।
ପବନ ବାନ୍ଧିବା ପାଇଁ ଫାଶ ଅଛ ପାତି
ସମୁଦ୍ରକୁ ଅଞ୍ଜଳିରେ କେ ପାରଇ ମନ୍ଥି ।
ଦେବାଧିଦେବଙ୍କ ରାଜା ଲକ୍ଷ୍ମୀଦେବୀ ସାଇଁ
ସେ ଦୟା ନ କଲେ ତାଙ୍କୁ ପାଇବ ଯେ କାହିଁ
ଭକ୍ତଜନ ବାନ୍ଧବ ସେ ପ୍ରଭୁ ନନ୍ଦବନ୍ଧି
ଗ୍ୱାଳବର ପ୍ରଭୁ ଅଗ୍ୱାଳେ ନୁହଇ ସେ କହୁ ।
ଏମନ୍ତ କହୁ ଉଦ୍ଧବ ଚଳେ ପାଦଗତ
ସମସ୍ତ ଗୋପିକା ପଛେ ଗୋଡ଼ାଇ ଅଛନ୍ତି ।
ଗୋପନଗ୍ରେ ଯେତେଲୋକ କରିଥିଲେ ବାସ
ଉଦ୍ଧବ ଆଗମ ଶୁଣି ସମସ୍ତେ ହରଷ ।
ଏକର ତହୁଁ ଆରେକ ସମେ ବାଉଁ ପାଇ
ଦେଖା ଦରଶନ ଘେନ ଅଇଲେ ସେ ଧାଇଁ ।
ବାଟେ ମିଳି ରାମକୃଷ୍ଣ ବାରତା ପୁଚ୍ଛନ୍ତି
ଜଣ ଜଣ କରି ବୋଧି ଉଦ୍ଧବ କହନ୍ତି ।
ଏମନ୍ତ ପ୍ରକାରେ ଚାଲି ଦାଣ୍ଡେ ଦାଣ୍ଡେ ଗଲେ
ନନ୍ଦ ସିଂହଦ୍ୱାରେ ଯାଇ ପ୍ରବେଶ ହୋଇଲେ ।
ଦେଖିଲେ ସେ ପୁର ଦଶେ ଅପର୍ବ ଘଟଣା
ବାରସ୍ୱଣ୍ଡ ଭୁବନ କି ବରୁଣ ପାଟଣା ।
ଉଦ୍ଧବ ଭାଳନ୍ତି ମନେ ପରଶଂସା କରି
ନୋହିଲେ କେମନ୍ତେ ଏଥି ଆନ୍ତେ ରାମ ହରି ।
ଏମନ୍ତ ବିଚାରି ତହୁଁ ଭିତରକୁ ଗଲେ
ଅବାରିତ ହୋଇ ପୁର ମଧ୍ୟରେ ପଶିଲେ ।
ଯେଉଁଠାରେ ଥିଲେ ନନ୍ଦ ଯଶୋଦାଏ ବେନି
ସେଠାରେ ମିଳିଲେ ଯାଇ ଭେଟିଦ୍ରବ୍ୟ ଘେନି ।
ପାପନ୍ତକ ନାମେ ମଣି କୃଷ୍ଣ ଥିଲେ ଦେଇ
ନନ୍ଦ ଯଶୋଦାଗ୍ରମୁରେ ଥୋଇଲେ ତା ନେଇ
ଆଉର ସେ ନେଇଥିଲେ ଯେତେ ଯେତେ ଦ୍ରବ୍ୟ
ପାଏ ପଡ଼ି ଛାମୁରେ ତା କୁଡ଼ାଇଲେ ସର୍ବ ।
ବିନୟ ବୃତି ବଚନେ ବହୁ ସ୍ତୁତି ବୋଲି
ସାଷ୍ଟାଙ୍ଗେ ଶୁତିଲେ ପାଦତଳେ ଗଡ଼ଗାଲି ।
ଦେଖି ନନ୍ଦ ଯଶୋଦାଜନ୍ତୀ ଆନନ୍ଦିତ ହେଲେ
ଷଡ଼ଅର୍ଘ୍ୟ ପୂଜା କରି ପାଶେ ବସାଇଲେ ।
ଆନନ୍ଦରେ ଉତ୍କଣ୍ଠିତ ହୋଇ ବ୍ରଜପତି
ଉଦ୍ଧବଙ୍କୁ ରାମକୃଷ୍ଣ କୁଶଳ ପୁଚ୍ଛନ୍ତି ।

ସକଳ ଯାଦବମାନେ ଅଛନ୍ତି ନା ଭଲେ
ଉଗ୍ରସେନ ବସୁଦେବ ଦେବକୀର କୁଳେ ।
ଉଦ୍ଧବ ବୋଇଲେ ତୁମ୍ଭେ ପୁଣ୍ୟବନ୍ତ ପ୍ରାଣୀ
ତେଣୁ ତୁମ୍ଭ ପୁତ୍ରହେଲେ ତ୍ରୈଲୋକ୍ୟ କାରଣି
କେବଣ ତୀର୍ଥରେ ତପ କରିଥିଲ ବସି
ଜଗନ୍ନାଥ ଜନ୍ମ ହେଲେ ତୁମ୍ଭ ଘରେ ଆସି ।
ଯାହାଙ୍କୁ ଯୋଗୀଏ ଦେଖି ନ ପାରନ୍ତି ଧ୍ୟାନେ
ସେ ତୁମ୍ଭ କୋଳରେ ଖେଳେ କଲେ ଭବ୍ୟମାନେ
କୁଙ୍କୁମ ଚନ୍ଦନ ଘଷି ଶ୍ରୀଅଙ୍ଗେ ବୋଳିଲ
ଅନେକ ଯତ୍ନରେ ପୁଣି ତାହାଙ୍କୁ ପାଳିଲ ।
ରତନ ଦୋଳିରେ ବସାଇଲ ଗାଇ ଗୀତ
ତେଣୁ ସୁପ୍ରସନ୍ନ ହେଲେ ଜଗତର ତାତ ।
ସ୍ତନ ମେଲାଇଣ ଦୁଗ୍ଧ ଦେଲ ପଦ୍ମମୁଖେ
ଅନ୍ତର୍ଯ୍ୟାମୀ ନାଥ ତାହା ପାନ କଲେ ସୁଖେ ।
ଶ୍ରୀଅଙ୍ଗେ ହଳଦୀ ଘଷି ଶିରେ ତେଲ ଦେଲ
ନାନା ମିଷ୍ଟ ଦ୍ରବ୍ୟ ନିଜ ହସ୍ତେ ଖୁଆଇଲ ।
ମୁଖେ ଚୁମ୍ବ ଦେଇ ପୁଣି ବସାଇଲ କୋଳେ
ଯାହା ନ ଲଭନ୍ତି ଯୋଗୀଜନ ଜ୍ଞାନବଳେ ।
ଆନନ୍ଦରେ ପିନ୍ଧାଇଲ ନାନା ଅଳଙ୍କାର
ତାଡ଼ ତୋଡ଼ର କାହ୍ନଟି ନବରତ୍ନ ହାର ।
ପୀତବାସ ପିନ୍ଧାଇଲ ଶୁଣି କଟୀସ୍ଥଳେ
କାଳବଳେ ନୃତ୍ୟ କଲେ ସେ ତୁମ୍ଭର ଆଗେ ।
ଅଧମ ଲବଣୀ ସର ଗୋଟିକା ଗୋରସ
ଅମୃତ ଆହାର ହୋଇ ମନ କଲ ତୋଷ ।
ଏହି ମନ୍ଦିରରେ ରହିଥିଲେ ଦେବରାୟେ
ଏ ପୁର ଦିଶୁ ମୋତେ ବଇକୁଣ୍ଠ ପ୍ରାୟେ ।
ଏ ଭୁବନେ ପଡ଼ିଅଛି କୃଷ୍ଣ ପଦଧୂଳି
ଏତେବୋଲି ସାଉଟିଣ ଅଙ୍ଗେ ହେଲେ ବୋଳି
ଆନନ୍ଦରେ ଗଦ ଗଦ ପୁଲକିତ ତନୁ
ପଦ୍ମ ବିକାଶଇ ଯେସନ୍ତେ ଉଦେ ହେଲେ ଭାନୁ ।
ନିଧି ପାଇଲେ ଦରିଦ୍ର ଯେସନ୍ତେ ତୋଷହୁନ୍ତ
ଅନ୍ଧ ନେତ୍ର ପାଇ ଯେସନ୍ତେ ଆନନ୍ଦିତ ମତ ।
ଅପୁତ୍ରିକ ନେତ ଯେସନ୍ତେ ପୁତ୍ର ହେଲେ ଜାତ
ମଲା ଲୋକ ଜୀଇ ଆଇ ଯେସନ୍ତେ ଆନନ୍ଦିତ ।
ତେସନ୍ତେ ଉଦ୍ଧବର ମନ ଆନନ୍ଦିତ ହେଲା
ପୁରକୁ ବର୍ଣ୍ଣି ଅନେକ ପ୍ରଶଂସା ସେ କଲା ।

ବିଷ୍ଣୁଙ୍କ ମନ୍ଦିର ବିଶ୍ୱକର୍ମାର ଘଟଣ
ମନୋହର ବଣଇ ସେ ଅପୂର୍ବ ଭୁବନ ।
ତା ଦେଖି ଉଦ୍ଧବ ହୋଇ ଅଜ୍ଞାନ ଭୃଯତ
ବିସ୍ମରିଲେ କୃତପୁଣ୍ୟ ହେଲି ମୁଁ ଏ ଯାନ୍ତ ।
ନିଶ୍ଚୟେ ସୁଦୟା ମୋତେ କଲେ ଜନାର୍ଦ୍ଦନ
ନୋହିଲେ ଏ ପୁର କାହୁଁ କରନ୍ତି ଦର୍ଶନ ।
ଏମନ୍ତ ବିଚାରି ନନ୍ଦ ଯଶୋଦାଙ୍କୁ ଚାହିଁ
ବୋଇଲେ ତୁମ୍ଭର ଜନ୍ମମୃତ୍ୟୁ ଆଉ ନାହିଁ ।
ତୁମ୍ଭର ତୁମୁକୁ ମୋତେ ପେଷି ହୃଷୀକେଶ
ବୋଇଲେ ଆମ୍ଭର ଘରୁ ବାର୍ତ୍ତା ଘେନ ଆସ ।
ରାଜକାର୍ଯ୍ୟ ହେତୁ ଆମ୍ଭେ ନ ପାଇଲୁ ଯାଇ
ଆମ୍ଭର ବାରତା ତୋମ୍ଭେ କହ ଆସ ତୁମ୍ଭ ।
ପିତାମାତା ଦୁହେଁ କହିଁ ଅଛନ୍ତି ନା ଭଲେ
ଗୋପ ଗୋପୀ ଗାଈ ଗୋରୁ ଷଣ୍ଢ ବତ୍ସା ତୁଲେ
ଗୋପପୁରେ ଉପଦ୍ରବ ନୁହଇତ କିଛି
ପୂର୍ବ ପ୍ରାପ୍ତ ଧନଧାନ୍ୟ ପୂରି ତ ରହିଛି ।
ଆମ୍ଭପାଇଁ ପିତାମାତା ଚିନ୍ତା ନ କରିବେ
ତାଙ୍କ ସୁକୃତରୁ ଆମ୍ଭେ ଅଛୁ ସର୍ବସୁଖେ ।
ଗୋପନଗରକୁ ଆଉ କିଛି ଭୟ ନାହିଁ
ଆକଟ ଚଢ଼ିଲେ ଦୂତ ଦେବେ ପଠାଇ ।
ଉଗ୍ରସେନ ରାଜା ପାଶେ ଆମ୍ଭେ ଅଛୁ ଭଲେ
କହିବୁ ସକଳ କାର୍ଯ୍ୟ ତୁମୁରେ ଜଣାଇ ।
ରାଜା ରଖିଛନ୍ତି କରି ବହୁତ ଆଦର
ଆଉ ଥୋକେ ଦିନ ରହିଯିବୁ ଗୋପପୁର ।
ଆମ୍ଭର କଥାକୁ ଭ୍ରାନ୍ତ ନ କରିବେ କିଛି
ରାଜା ପାଶେ ଥିଲେ ସବୁ କଥା ଲାଭ ଅଛି ।
ଅନେକ ସୁକୃତ ଯେବେ ପୂର୍ବେ କରିଥାଇ
ତେବେ ସିନା ଲୋକ ରାଜସଭାରେ ବସଇ ।
ଆଉର ବିଶେଷ ଆମ୍ଭେ ତାହାଙ୍କର ପ୍ରଜା
ସମସ୍ତେ ତ ଜାଣିଅଛ ମଲ୍ଲ କଂସରାଜା ।
ଏମନ୍ତ ସମୟେ ଆମ୍ଭେ ରାଜ୍ୟ ଗଲେ ଛାଡ଼ି
ଶତ୍ରୁ ରାଜାମାନେ ଆସି ବସିବେ ଯେ ମାଡ଼ି ।
ଉଗ୍ରସେନ ନରପତି ହୋଇଲେ ବିନାଶ
ରାଜ୍ୟନାଶ ଯିବ ଆମ୍ଭେ ନ ପାଇବା ବାସ ।
ଏଣୁ ଆମ୍ଭେ ଥୋକେ ଦିନ ରହିବୁ ଏଠାରେ
ଆମ୍ଭ ପାଇଁ କେହି ଚିନ୍ତା ନ କର ମନରେ ।

ଶୁକ ବୋଲନ୍ତି ହେ ଶୁଣ ପରୀକ୍ଷ ନୃପତି
ନନ୍ଦ ଯଶୋଦାଙ୍କ ଆଗେ ଏସନ ଭାରତୀ ।
କହିଣ ଉଦ୍ଧବ ତାଙ୍କୁ କରାଇଲେ ତୋଷ
ଗୋପ ଗୋପୀମାନେ ଶୁଣି ଲଭିଲେ ହରଷ ।
ଯେଝା ଅନୁକ୍ରମେ ସର୍ବେ ହୋଇଲେ ଆନନ୍ଦ
ପ୍ରୀତେ ଉପୁଜିଲା ନିଶ୍ଚେ ଆସିବେ ଗୋବିନ୍ଦ ।
ନନ୍ଦ ଯଶୋଦା ବୋଇଲେ ରାମ ଭଗବାନ
ଯେ ଦିନୁ ଏଠାରୁ ଗଲେ ପୁର ହେଲା ଶୂନ୍ୟ ।
ପୁତ୍ରଙ୍କୁ ନ ଦେଖି ମନ ହେଉଅଛି ଦହି
ଘରେ ବାହାରେ ତ ଆମ୍ଭେ ନ ପାରିଲୁ ରହି ।
ଯେଉଁ ବାଟରେ ଅକ୍ରୂର ନେଲା ରଥ ଘୋଟି
ସେ ବାଟକୁ ଚାହିଁ ମୂର୍ଚ୍ଛା ଯାଉଅଛୁ ଫାଟି ।
ଦିବସରେ କ୍ଷୁଧା ନାହିଁ ରାତେ ନାହିଁ ନିଦ
ନିରନ୍ତରେ ହୃଦୟରେ ବଢୁଅଛି ଖେଦ ।
ଏତେ କହି ପତି ପତ୍ନୀ ହୋଇଲେ ବିକଳ
ବେନି ନୟନରୁ ଫୁଟି ବହେ ଅଶ୍ରୁଜଳ ।
ରାମକୃଷ୍ଣଙ୍କର ଗୁଣ ବିଚାରି ସମସ୍ତ
ଶୋକାଗ୍ନି ପ୍ରାପ୍ତ ଦହି ହେଲା ପଞ୍ଚଭୂତ ।
ଉଦ୍ଧବ ବୋଇଲେ ତୁମ୍ଭେ ବିକଳ ନ ହୁଅ
ଅଳ୍ପଦିନେ ଆସିବେ ତୁମ୍ଭ ବେନି ପୁଅ ।
ଅର୍ଜିବେ ଅନେକ ଧନରତ୍ନ ପୁରୁଷାର୍ଥ
ଈଶ୍ୱର ପୁରୁଷ ସେହି ରାମ ଜଗନ୍ନାଥ ।
ତାଙ୍କ ପ୍ରସାଦେ ତୁମଙ୍କୁ କିଛି ଭୟ ନାହିଁ
ଅନିମିତେ ଏତେ ଶୋକ କର କାହିଁ ପାଇଁ ।
ମଲ୍ଲ ହଜିଲକୁ ସିନା ହୁଅନ୍ତି ବିକଳ
ରାଜାଠାରେ ପୂଜ୍ୟ ହେଲେ ତୁମ ବେନିବାଳ ।
ଅନେକ ଧନ ସମ୍ପଦ ଅରଜିଲେ ତହିଁ
ଅନିମିତେ ଶୋକ ତୁମ୍ଭେ କର କାହିଁ ପାଇଁ ।
ନନ୍ଦ ଯଶୋଦା ବୋଲନ୍ତି ନ ପାରୁ ମୁ ବୁଝି
ଆମ୍ଭ ପଞ୍ଚଭୂତ ଆତ୍ମା ରାମ ଶିଶୁବଳି ।
ଧନ ଦ୍ରବ୍ୟରେ ଆମର ନାହିଁ କିଛି କାର୍ଯ୍ୟ
ଅନୁବ୍ରତେ ଦେଖୁଥିବୁ ସେ ମୁଖ ପଙ୍କଜ ।
ପୁତ୍ରମୁଖ ଦେଖୁଥିଲେ ଯିବ ଆମ୍ଭ ଦୁଃଖ
ଆଉ କିଛି ଲୋଡ଼ା ନାହିଁ ଧନ ଦ୍ରବ୍ୟ ସୁଖ ।
କେତେ ଗୁଣ ବାହୁନିବୁ ବସି ତାହାଙ୍କର
ନିରାଶ କରିଣ ଗଲେ ରାମ ଚକ୍ରଧର ।

ଏତେ ବୋଲି ପିତା ମାତା ଦୁଃଖନ୍ତି ସକଳ
ପୁଣି ବେନି ନୟନରୁ ବହେ ଅଶ୍ରୁଜଳ ।
ଉଦ୍ଧବ ବୋଇଲେ କିଛୁ କର ନାହିଁ ଭ୍ରାନ୍ତି
ମୋହର ବଚନ ଶୁଣି ଦୁଃଖ ତୁମେ ଶାନ୍ତ ।
ମୁଁ ଗଲା ଦିନରୁ ଲେଖିଥିବ ଦିନ ଗଣି
ନିକଟେ ଆସିବେ କୃଷ୍ଣ ରାମ ଚକ୍ରପାଣି ।
ତୁମ ଆଗେ ଏହି କଥା କହିବାର ପାଇଁ
ଆସିବା ଆଗରୁ ମୋତେ ଦେଲେ ପଠାଇ ।
ଉଦ୍ଧବର ଶାନ୍ତ ବାକ୍ୟେ ନନ୍ଦ ନନ୍ଦରାଣୀ
ଶୋକ ଶାନ୍ତ କଲେ ପୋଛି ନୟନରୁ ପାଣି ।
ଆନନ୍ଦରେ ଗୋପ ଗୋପୀ ନିଜପୁର ଗଲେ
ଉଦ୍ଧବଙ୍କୁ ନନ୍ଦରାଜା ଗୌରବେ ରଖିଲେ ।
ସ୍ନାନ ଆଦି ନିତ୍ୟକର୍ମ ବଢ଼ାଇ ତ୍ୱରିତେ
ଦେବାର୍ଚ୍ଚନ କଲେ ନନ୍ଦ ଉଦ୍ଧବ ସହିତେ ।
ତହିଁପରେ ଷଡରସ ଭୋଜନ ସେ କଲେ
ଆପେ ଯଶୋବନ୍ତୀରାଣୀ ଅନ୍ନ ପରଷିଲେ ।
ସନ୍ତୋଷେ ଭୋଜନ ସାରି କଲେ ଆଚମନ
ତଦନ୍ତେ ସେ କଲେ ପୁଣି ତାମ୍ବୁଳ ସେବନ ।
ଦେବାଙ୍ଗ ବସନ ରତ୍ନ ଦ୍ରବ୍ୟ ମାଲ୍ୟ ଗନ୍ଧ
ଉଦ୍ଧବଙ୍କୁ ସମର୍ପଣ କଲେ ଆଣି ନନ୍ଦ ।
ଦିନକୁ ଦିନ ଅତ୍ୟନ୍ତ ଗଉରବ ପାଇ
ଉଦ୍ଧବ ରହିଲେ ଗୋପେ ଆନନ୍ଦିତ ହୋଇ ।
ପରୀକ୍ଷ ଆଗେ କହନ୍ତି ଶୁକ ମହାମୁନି
ଇତି ଶ୍ରୀପବନ ହରିବଂଶ ପୁଣ୍ୟଧ୍ୱନି ।
ଜୟ ମଦନମୋହନ ପ୍ରଭୁ ଗୋପୀନାଥ
ଲଳିତ ଅଧର ବେଣୁ ଶୋହେ ପଦ୍ମହସ୍ତ ।
କଦମ୍ବ ବୃକ୍ଷେ ମଧୁର ସ୍ୱରେ ଗୀତ ଗାଇ
ଗୋପୀଙ୍କି ମୋହିତ କଲ ମୁରଲୀ ବଜାଇ ।
ସୁଚାରୁ ଚିକୁର ଶିରେ ବର୍ହିପୁଚ୍ଛ ବେଣୀ
ବେଦ ବେଦାନ୍ତରେ ତୁମ୍ଭ ନାମ ପରମାଣି ।
ନମସ୍ତେ ହେ ଗୋପୀନାଥ ଜଗତ ଜୀବନ
ନମସ୍ତେ ହେ ଗୋପୀନାଥ କଂସନସୂଦନ ।
ନମସ୍ତେ ହେ ଗୋପୀନାଥ କାମକଳ୍ପନିଧି
ତୁମ ନାମ ସୁମରନ୍ତେ ବାଞ୍ଛା ହୁଏ ସିଦ୍ଧି ।
ଧରଣୀର ଭାରଭର ଉଦ୍ଧରିବା ପାଇଁ
କଉତୁକେ ଜନ୍ମ ହେଲ ନର ତନୁ ବହି ।
ପତିତପାବନ ବୋଲି ଉଡ଼େ ତୁମ୍ଭ ବାନା
ଗରବଗଞ୍ଜନ ନାଥ ଦୁଃଖ ବଜ୍ରସେଣ୍ଢା ।
ଶ୍ରୀ ଗୋପୀନାଥ ଚରଣେ ଶରଣ ମୁଁ ଅନ୍ତ
ଅଚ୍ୟୁତ ଦାସ କହଇ ହଅ ଶୁଦ୍ଧମତ ।

—※—

## ଅକ୍ରୂରର ବାରୁଣାବନ୍ତପୁରେ ପ୍ରବେଶ ଏବଂ ଅକ୍ରୂରଙ୍କର କୃଷ୍ଣଙ୍କ ସମୀପେ ଗମନ

ଏଥିଅନ୍ତେ ପରୀକ୍ଷିତ ନାମେ ମହାରାଜା
ଶୁକମୁନି ପାଦତଳେ କଲେ ଦିବ୍ୟପୂଜା ।
ଅତି ଭାଗ୍ୟେ ଭାଗବତ ସୁଧାରସ ବାଣୀ
ପାପଧ୍ୱପାପ ଖଣ୍ଡନ କଲି କର୍ଣ୍ଣେ ଶୁଣି ।
ଗୋବିନ୍ଦ ଆଜ୍ଞା ପାଇଣ ଉଦ୍ଧବ ଆଇଲେ
ନନ୍ଦ ଯଶୋଦାଙ୍କଠାରୁ ଗୌରବ ପାଇଲେ ।
ଗୋପୀ ଗୋପାଳମାନଙ୍କୁ ପ୍ରବୋଧନା ଦେଇ
ସାନ୍ତ୍ୱନା ବାକ୍ୟେ ତାହାଙ୍କ ମନକୁ ରଞ୍ଜାଇ ।
ତେଣୁକରି ଉଦ୍ଧବ ଯେ ରହିଲେ ଗୋପରେ
ଅଭେଦ ପ୍ରୀତି ବଢ଼ିଲା ଗୋପୀଙ୍କ ସଙ୍ଗରେ ।
ନନ୍ଦ ଯଶୋଦା ମନକୁ ଲାଗିଲା ଯେ ସତ
ବୋଇଲେ ନିଶ୍ଚେ ଆସିବେ ରାମ ଜଗନ୍ନାଥ ।
ଗୋପପୁର ନରନାରୀ ଆନନ୍ଦିତ ହୋଇ
ଉଚାଟେ ରହିଲେ ରାମକୃଷ୍ଣ ବାଟ ଚାହିଁ ।
ଏଥିଅନନ୍ତରେ କଥା ହେଲା କିସ ଆନ
ମୋ ଆଗେ ବିସ୍ତାରି ତାହା କହ ତପୋଧନ ।
ରାଜା ବାକ୍ୟେ ହୃଷ୍ଟ ହୋଇ ଶୁକ ମହାଯତି
ବୋଇଲେ କହିବା ଶୁଣ ପଣ୍ଡୁ ପଣନାତି ।
ଅତି ଭାଗ୍ୟେ ଭାଗବତ ପୁରାଣ ଏ ଗ୍ରନ୍ଥ
ଯା ଗର୍ଭରେ ପରିଅଛି ପଞ୍ଚମ ବେଦାର୍ଥ ।
ଜଗନ୍ନାଥଙ୍କ ଆଜ୍ଞାରେ ଅକ୍ରୂର ଯେ ଗଲେ
ବାରୁଣାବନ୍ତ କଟକେ ପ୍ରବେଶ ହୋଇଲେ ।
ଆକାଶମଣ୍ଡଳକୁଁ ଉଠ ପଡ଼ିଲାକ ଝସି
ତାର ଝସିଲାର ପରି ଦିଶେ ତେଜରାଶି ।
ଭ୍ରମୀଭୂତେ ଚାହିଁହନ୍ତି ସକଳ ପ୍ରାଣୀ
କିମ୍ଭୂତ ମାୟା ଆମ୍ଭେ ତ ନ ପାରିଲୁ ଜାଣି ।
ଏମନ୍ତ ଆଶ୍ଚର୍ଯ୍ୟ ହେଲେ ଦେଖି ନଗ୍ରଜନେ
ସର୍ବେ ମିଳିଲେ ଅକ୍ରୂର ମନ୍ତ୍ରୀ ସନ୍ନିଧାନେ ।

କାହିଁ ଅଇଲ ବୋଲଣ ବାରତା ସେ ପୁଚ୍ଛି
ଅକ୍ରୂର ବୋଲେ ମଥୁରାପୁରୁ ଆସିଅଛୁ ।
ପାଣ୍ଡବଙ୍କ ତତ୍ତ୍ୱ ମୋତେ ପେଷିଲେ ଅଚ୍ୟୁତ
ଯୁଧିଷ୍ଠି ଛାମୁରେ କହିବାକୁ ସେ ଉଦନ୍ତ ।
ଶୁଣି ପଡ଼ିହାରି ନଗ୍ର ଭିତରକୁ ଗଲେ
ଆସ୍ଥାନର ତଳେ ଉଭା ହୋଇ ଜଣାଇଲେ ।
ହେ ଦେବ ସାବଧାନରେ ଶୁଣ ପଣ୍ଡୁନାନ
ଅକ୍ରୂରକୁ ପେଷିଛନ୍ତି ପ୍ରଭୁ ଭଗବାନ ।
ନଗରର ସିଂହଦ୍ୱାରେ ରଥରୁ ଓହ୍ଲାଇ
ବୋଇଲେ ଦର୍ଶନ ମୋତେ କରାଅ ଜଣାଇ ।
ଶୁଣି ଯୁଧିଷ୍ଠିର ହେଲେ ପରମ ସନ୍ତୋଷ
ଆଜ୍ଞା ଦେଲେ ଭିତରକୁ ତାଙ୍କୁ ଘେନିଆସ ।
ଶୁଣିଣ ଖଣ୍ଡିଆ ଧାଡକାରେ ସେ ଅଇଲେ
ଅକ୍ରୂରର ହସ୍ତ ଧରି ଭିତରକୁ ନେଲେ ।
ଆସ୍ଥାନରେ ବସିଛନ୍ତି ଯୁଧିଷ୍ଠି ନୃପତି
ଅକ୍ରୂର ଦର୍ଶନ ପାଇ କଲେ ଶୀଘ୍ରଗତି ।
ଦେଖିଲେ ଧର୍ମନନ୍ଦନ ବସି ପୁଣ୍ୟମୟେ
ପ୍ରତ୍ୟକ୍ଷରେ ଶୁକ୍ଳାମ୍ବର ବସ୍ତ୍ରଜ ଉଦୟେ ।
ଜାଜ୍ୱଲ୍ୟମାନ ଦିଶନ୍ତି ସେ ପୁଣ୍ୟ ପୁରୁଷ
ଯା ମୁଖ ଦର୍ଶନେ ସର୍ବ ଦୁଃଖ ଯାଏ ନାଶ ।
ଦକ୍ଷିଣରେ ଭୀମସେନ ଛତ୍ର ଧରି ଉଭା
ଦିଗପ ଇନ୍ଦ୍ର ପରାୟେ ଦିଶେ ରୂପ ଶୋଭା ।
ବାମେ ଉଭା ହୋଇଛନ୍ତି ବୀରବର ପାର୍ଥ
ଲକ୍ଷେକ ବଳ ଧନୁ ଯେ ଅଛି ବାମହସ୍ତ ।
ମାଦ୍ରୀଦେବୀ ସୁତ ସହଦେବ ଯେ ନକୁଳ
ସେ ଦୁହେଁ ବସିଅଛନ୍ତି ସିଂହାସନ ତଳ ।
ରାଜା ମହାରାଜା ଜେନା ଲମ୍ବହସ୍ତା ମୂଳେ
ସମସ୍ତେ ଉଭାରଛନ୍ତି ପ୍ରାଙ୍ଗଣର ତଳେ ।
ସୁବାସିତ ହଣ୍ଡପା ଯେ ଆଉ ଧୂପକାଠି
ଗନ୍ଧ ଚନ୍ଦନ କର୍ପୂର ସୁବାସ ପ୍ରକଟି ।
ସ୍ୱର୍ଣ୍ଣ ସିଂହାସନ ତଳେ ସୁପାଣ୍ଡ ଯେ ଶେଯ
ଉଦ୍ଦଣ୍ଡ ପାଟଛତ୍ର ଯେ ଦିଶେ ବଡ଼ ତେଜ ।
ଏହି ସମୟରେ ଯାଇ ଅକ୍ରୂର ଯେ ମିଳି
ଗଡ଼ଘାଲି ଶୁଭିଲ ସେ ଅଗ୍ରେ ନଇଁହୁଳ ।
ନମସ୍କରିଲି ବୋଲି ଧର୍ମସୁତ ଯେ ବୋଇଲେ
ଆସ୍ଥାନରୁ ଉଠି ଯାଇ କୋଳ ତାଙ୍କୁ କଲେ ।

ଗୌରବ କରି ତାହାଙ୍କୁ ପାଶେ ବସାଇଲେ
ଆସନ ପାଦ୍ୟାସନ ଯେ ଗନ୍ଧପୁଷ୍ପ ଦେଲେ ।
କୃତକୃତ୍ୟ ହୋଇଲେକ ଯୁଧିଷ୍ଠି ରାଜନ
ହେ ଅକ୍ରୂର ଅଟ ରାମକୃଷ୍ଣଙ୍କ ସମାନ ।
ବୁଦ୍ଧିମନ୍ତ ଗୁଣବନ୍ତ ଦୟାଳୁ ପୁରୁଷ
ଯାଦବ ବଂଶ ଉତ୍ତମ ଶ୍ରୀହରି ବିଶ୍ୱାସ ।
ଏତେମତେ ଅକ୍ରୂରକୁ ବୋଲି କୁନ୍ତୀସୁତ
ଶ୍ରୀକରରେ ଆଉଁଶିଲେ ଅକ୍ରୂରର ଗାତ୍ର ।
ରାମକୃଷ୍ଣଙ୍କ ବାରତା କୁହ ହେ ବଂଶନି
ଅକ୍ରୂର ବୋଇଲି ତୁମେ ଶୁଣ ଧର୍ମଶିଖି ।
ଏ ଜମ୍ବୁଦ୍ୱୀପ ମଧ୍ୟକୁ ତୁମେ ଯେ ଜାରେଣି
ରାଜାଧିରାଜାଙ୍କ ପରେ ଅଟ ଶିରୋମଣି ।
ପବିତ୍ର ସୋମବଂଶରେ ତୁମର ସମ୍ଭୂତ
ପଣ୍ଡୁରାଜା ପିତା ଯାର କୁନ୍ତୀ ଦେବୀ ମାତ ।
ହେ ଦେବ ତୁମ ତତ୍ତ୍ୱକୁ ପେଷିଲେ ମାଧୋଇ
ବୋଇଲେ ଯୁଧିଷ୍ଠି ଦେବେ କହିବ ମଣାଇ ।
ସେ ମୋର ମାଉସୀ ପୁତ୍ର ପୁଣି ଜ୍ୟେଷ୍ଠଭ୍ରାତ
ବେନି ମାତ ଏକା ଗର୍ଭୁ ହୋଇଛନ୍ତି ଜାତ ।
ଦେବକୀ ଯେ ହଇବଣି ଦେବକୀ ଏ ତିନି
ଉଗ୍ରସେନ ରାଜାଙ୍କର ତିନହେଁ ନନ୍ଦିନୀ ।
ଦେବକୀଙ୍କୁ କୁନ୍ତିଭୋଜ ରାଜା ଘେନି ଗଲେ
କୁନ୍ତୀ ନାମ ଦେଇ ପଣ୍ଡୁ ନୃପେ ବିଭାଦେଲେ ।
ସେ କୁନ୍ତୀ ଗର୍ଭରୁ ହେଲେ ତିନିପୁତ୍ର ଜନ୍ମ
ମହାରାଜା ଯୁଧିଷ୍ଠିର ଭୀମ ଅରଜୁନ ।
ଦେବକୀର ଷଡ଼ ପୁତ୍ର ବର୍ଷେ ବର୍ଷେ ଜାତ
ତାହାଙ୍କୁ ଶିଳାରେ କଚାଡ଼ିଲା କଂସ ଦୈତ୍ୟ ।
ସାନ୍ଦିପନୀ ଗୃହେ ଆମେ ବିଦ୍ୟା ପଢ଼ିଗଲୁ
ବିଦ୍ୟା ପଢ଼ିଣ ଗୁରୁଙ୍କୁ ଦକ୍ଷିଣା ଯାଚିଲୁ ।
ଗୁରୁପତ୍ନୀ ବୋଇଲେକ ଦ୍ରବ୍ୟେ କାର୍ଯ୍ୟ ନାହିଁ
ଷଡ଼ପୁତ୍ର ମରିଛନ୍ତି ଦିଅ ହେ ଜୀଆଇ ।
ସନମତ କରି ଆମେ ଯମପୁରେ ଗଲୁ
ଗୁରୁପୁତ୍ରମାନଙ୍କୁ ଯେ ଜୀଆଇ ଆଣିଲୁ ।
ଦେବକୀର ଷଡ଼ପୁତ୍ର କଂସ ମାରିଥିଲା
ମାଗନ୍ତେ କୃତାନ୍ତ ଷଡ଼ଭ୍ରାତା ଆଣିଦେଲା ।
କୃତାନ୍ତପୁରରୁ ଆମେ ଆସିବାର ବେଳେ
ତୁମ ପିତା ପଣ୍ଡୁ ବସିଛନ୍ତି ସଭା ତଳେ ।

ଅନେକ କଦର୍ଯ୍ୟେ ଥାଇ ଦେଉଛନ୍ତି ବାର୍ତ୍ତା
ଶୁଣି ଯୁଧିଷ୍ଠିର କଲେ ମନେ ବଡ ଚିନ୍ତା ।
ପୁଣି ଅକ୍ରୂର ବୋଇଲେ ଶୁଣ ନରନାହା
ଆବର ବଚନ ହରି କହିଛନ୍ତି ଯାହା ।
ଶ୍ରଦ୍ଧାଯୁକ୍ତ ମୋତେ କହିଛନ୍ତି ଜଗନ୍ନାଥେ
ଅର୍ଜ୍ଜୁନ ମଥୁରା ଯିବେ ମୋହର ସଙ୍ଗତେ ।
ହରି ବଳରାମ କହିଛନ୍ତି ଶ୍ରଦ୍ଧାକରି
ସମସ୍ତ ଯାଦବ ଉଗ୍ରସେନ ଆଦିକରି ।
ଦେବକୀ କହିଅଛନ୍ତି ହୋଇ ତୋଷମତି
ଆବର କହିଅଛନ୍ତି ରାଣୀ ଇନ୍ଦୁମତୀ ।
ନିଶ୍ଚେ ଅର୍ଜ୍ଜୁନକୁ ପଠାଇବେ ମୋର ତୁଲେ
ଯୁଧିଷ୍ଠି ସମ୍ମତ କଲେ ଅକ୍ରୂରର ବୋଲେ ।
ଏଥିଅନନ୍ତରେ ଆସ୍ଥାନ ଗୋଟି ଯେ ମଣ୍ଡଳ
ପାଣ୍ଡୁ ଅମନାଜ୍ଞା ଗଲେ ଯେଝା ପୁରେ ଚଳ ।
ଯୁଧିଷ୍ଠିର ଭୀମାର୍ଜ୍ଜୁନ ନକୁଳ ଅକ୍ରୂର
ଅନ୍ତଃପୁରରେ ମିଳିଲେ କୁନ୍ତୀଙ୍କ ଛାମୁର ।
ସକଳ ବୃତ୍ତାନ୍ତମାନ ବୁଝାଇ କହିଲେ
ଶୁଣି କୁନ୍ତୀଦେବୀ ମନେ ଆନନ୍ଦିତ ହେଲେ ।
ଶୁଣ ରାଜା ପରୀକ୍ଷିତ ଭଣି ଶୁକଯତି
ଅକ୍ରୂରେ ସ୍ତୁତି କହନ୍ତି ମହାସତୀ କୁନ୍ତୀ ।
ମୋହର କଥା କହିବ ଶ୍ରୀକୃଷ୍ଣଙ୍କୁ ଯାଇଁ
ରାଣ୍ଡ ଛେଉଣ୍ଡ ପୁଅଙ୍କୁ ପାଶୋରିବେ ନାହିଁ ।
ଧୃତରାଷ୍ଟ୍ର ଶତପୁତ୍ର ହେଲେ ମହାବଳୀ
ବିମ୍ବାଦ ହେତୁ କରନ୍ତି ସର୍ବଦା ସେ କଳି ।
କର୍ଣ୍ଣ ଅଶ୍ୱତ୍ଥାମା ଭୂରିଶ୍ରବା ଆଦି ଦ୍ରୋଣ
ଏହାଙ୍କୁ ଆବୋର ନିରନ୍ତରେ ଆଣ୍ଡପଣ ।
ବାଳୁତ ପୁଅ ମୋହର ସର୍ବେ ପାଞ୍ଚଗୋଟି
ଜନ୍ମଦିନଠାରୁ ହେଲେ ଅତିଶୟ କଷ୍ଟୀ ।
ତାହାଙ୍କର କଥା ମନୁ ନ ଦେବ ପାସୋରି
ମୁହିଁ ତାଙ୍କର ମାଉସୀ ଥିବେ ହେତୁ କରି ।
ଅନନ୍ତ ନାରାୟଣ ସେ କୃଷ୍ଣ ବିଶ୍ୱମୟ
ସେ ଯାହାକୁ ସାହାଥିବେ ତାର କିସ ଭୟ ।
ଅପାର ମହିମା ସେ ଯେ କୃପାଜଳ ସିନ୍ଧୁ
ଅନାଥ ପ୍ରାଣୀର ନାଥ ଦୀନଜନ ବନ୍ଧୁ ।
ମୁଁ ତାଙ୍କ ମହିମା ଜାଣି ପାରିବି କେମନ୍ତେ
ମୋ ପୁତ୍ରଙ୍କୁ ସାହା ଥିବେ ମାଗୁଅଛୁ ଏତେ ।

ଅକ୍ରୂର ବୋଇଲେ ତୁମ୍ଭେ ଶୁଣ ଠାକୁରାଣୀ
ବିଶ୍ୱକୂଟ ମାୟାଧର ବ୍ରହ୍ମ ଚକ୍ରପାଣି ।
ନୋହିଲେ କି ପେଷିଥାନ୍ତେ ମୋତେ ତୁମ୍ଭଠାଇଁ
ସବୁ କାର୍ଯ୍ୟ କରିବେ ସେ ଅର୍ଜ୍ଜୁନକୁ ନେଇ ।
ଏଥିକି ମନରେ ତୁମ୍ଭେ ନ କର ଗୋ ଭ୍ରାନ୍ତି
ଅଚଳାଚଳ ସମ୍ପଦ ମିଳିବ ଏ ଧାତ୍ରୀ ।
ଅଭେଦ ଆତ୍ମା ଶ୍ରୀହରି ଅରଜୁନ ବେନି
ପୃଥ୍ୱୀଭାର ନିବାରିବେ ଏହାଙ୍କୁ ଯେ ଘେନି ।
ପରମା ସାଧ୍ୱୀ ତୁମ୍ଭେ ନ ଜାଣ ବା କିସ
ତୁମ୍ଭଙ୍କୁ ତ୍ରିକାଳ କଥା ହୁଅଇ ତ ଦୃଶ୍ୟ ।
ପ୍ରତ୍ୟକ୍ଷରେ ଦେବତାଙ୍କୁ କରିଅଛ ଜାତ
ମାହେଶ୍ୱରୀ ଅଟ ତୁମ୍ଭେ ଆଦି ବୃଦ୍ଧ ମାତ ।
କଲ୍ୟାଣ କାମନା ତୁମ୍ଭେ କର ମାଗୋ ବସି
ଆମ୍ଭେ ଦୁହେଁ ଯାଉଅଛୁ ରଥପରେ ବସି ।
ଏତେ ବୋଲି ଦୁଇଜଣେ ଆରୋହିଲେ ଯାନ
ପବନହୁଁ ବେଗେ ରଥ ଚଳେ ଘନ ଘନ ।
ବାରୁଣବନ୍ତରୁ କାଢ଼ି ବାହିଲା ସାରଥି
ରଥଗୋଟି ଚଳିଯାଏ ଦକ୍ଷିଣ ରାଜ୍ୟତି ।
ଅକ୍ରୂର ଅର୍ଜ୍ଜୁନ ଦୁହେଁ ଯାନ୍ତେ ରଥେ ବସି
ଦେଖିଲେ ଗଗନମାର୍ଗେ ଥାଇ ସ୍ୱର୍ଗବାସୀ ।
ଦେବଇନ୍ଦ୍ର ପଚାରିଲେ ଗୁରୁମୁଖ ଚାହିଁ
କେବଣ ମହାତ୍ମା ଯାନ୍ତି ରଥରେ ଆରୋହି ।
ଏକରଥେ ବସିଛନ୍ତି ପୁଣ ବେନି ଜନ
ଜାଣି ନ ପାରିଲୁ ଆମ୍ଭେ ଏଥିର କାରଣ ।
ଅଙ୍ଗିରା ବୋଇଲେ ତାହା ଶୁଣ ସହସ୍ରନୟନ
ଅକ୍ରୂର ଯାଉଛି ସଙ୍ଗେ ଅର୍ଜ୍ଜୁନଙ୍କୁ ଘେନି ।
ଗୌରିବେ ପାର୍ଥକୁ ନେଉଛନ୍ତି ଦେବରାୟ
ଏହାଙ୍କୁ ଘେନି କରିବେ ପୃଥ୍ୱୀଭାର କ୍ଷୟ ।
ଏହାଶୁଣି ଶଚୀପତି ଆନନ୍ଦିତ ହେଲେ
ଅର୍ଦ୍ଧ ଆକାଶରେ ଥାଇ ପୁଷ୍ପ ବୃଷ୍ଟି କଲେ ।
ଶୁକମୁନି କହୁଛନ୍ତି ପରୀକ୍ଷିତ ଆଗେ
ଅକ୍ରୂର ଅର୍ଜ୍ଜୁନ ଦୁହେଁ ଗଲେ ବାୟୁବେଗେ ।
ଗମନ୍ତେ ପ୍ରବେଶ ହୋଇ ମଥୁରା ନଗରେ
ଭିତରକୁ ଗଲେ ରଥ ରଖି ସିଂହଦ୍ୱାରେ ।
ଯେବଣ ସ୍ଥାନରେ ଥିଲେ ପ୍ରଭୁ ଚକ୍ରଧର
ସେ ସ୍ଥାନେ ମିଳିଲେ ଯାଇ ଅର୍ଜ୍ଜୁନ ଅକ୍ରୂର ।

କୃଷ୍ଣଙ୍କୁ ଦେଖିଣ ଦୁହେଁ ପାଦ ତଳେ ପଡ଼ି
ବନସ୍ଥରେ ଉଷ୍ମ ହୋଇ ଶିରେ କର ଯୋଡ଼ି
ତାହାଙ୍କୁ ଦେଖିଣ ହୃଷ୍ଟ ହୋଇ ବନମାଳୀ
ତତକ୍ଷଣେ କୋଳକଲେ ସେ ବେନିକର ଟେକି
ବୋଲନ୍ତି ମୁଖରେ ଚୁମ୍ବ ଦେଇ ଭଗବାନ
କେତେ ଶ୍ରାନ୍ତେ କଲ ଆଜ ତୁମ୍ଭ ଦରଶନ ।
ତୁମ୍ଭେ ମୋର ପଞ୍ଚଭୂତ ଆତ୍ମାର କାରେଣି
ନିରନ୍ତରେ ତୁମ୍ଭ ନାମ ହୃଦେ ଥାଏ ଗୁଣି ।
ଏ ଅକ୍ରୂର କହିମା ମୁଁ କହିବଇଁ କେତେ
ପ୍ରାଣର ସଖାଙ୍କୁ ମୋର ଆଣିଦେଲ ମୋତେ ।
ଏତେ ବୋଲି ଅର୍ଜ୍ଜୁନଙ୍କୁ କୋଳରେ ବସାଇ
ନବରତ୍ନ ସିଂହାସନେ ବିଜେ ଲକ୍ଷ୍ମୀ ସାଇଁ ।
କୁରୁ ପାଣ୍ଡବଙ୍କ ଶୁଭବାର୍ତ୍ତା ପଚ୍ଛରିଲେ
ଯଥାବିଧି କରି ତାଙ୍କୁ ଅର୍ଜ୍ଜୁନ କହିଲେ ।
ଏକାନ୍ତରେ କୁନ୍ତୀଦେବୀ କହିଥିଲେ ଯାହା
କରଯୋଡ଼ି ଶ୍ରୀମୁଖରେ ଜଣାଇଲେ ତାହା ।
ଯୁଧିଷ୍ଠିର ଆଦି ଭାଇମାନଙ୍କ ଉତ୍ତର
ମଣାଇ କହିଲେ ପାର୍ଥ କୃଷ୍ଣଙ୍କ ଛାମୁର ।
ଶ୍ରୀକୃଷ୍ଣ ବୋଇଲେ ଅକ୍ରୂରଙ୍କୁ ଚାହିଁ ପୁଣି
ଏ ପଞ୍ଚ ପାଣ୍ଡବେ ମୋର ରାଜ୍ୟକୁ କାରେଣି ।
ପୃଥ୍ୱୀଦେବୀ ଭାରଭର ହରାଇବା ପାଇଁ
ପାଣ୍ଡବଙ୍କୁ ଘେନ ଜନ୍ମ ହୋଇଅଛୁ ମୁହିଁ ।
ଏହା କହି ଆନନ୍ଦରେ ପ୍ରଭୁ ଶିରୀରଙ୍ଗ
ଶ୍ରୀଭୁଜେ ମାର୍ଜ୍ଜନା କଲେ ଅର୍ଜ୍ଜୁନଙ୍କ ଅଙ୍ଗ ।
ପୁଣି ତାଙ୍କୁ ଆନନ୍ଦରେ କୋଳାଗତ କରି
ସଙ୍ଗେ ଘେନ ଭିତରକୁ ବିଜେ କଲେ ହରି ।
ଇନ୍ଦ୍ରଦେବ ଦେଇଥିଲେ ସହସ୍ର ନାୟିକା
ସୁକୁମାରୀ ସୁଲକ୍ଷଣୀ ରୂପେ ଅଗ୍ରେ ଲେଖା ।
ତାଙ୍କୁ ରାଇ ଆଜ୍ଞାଦେଲେ ପ୍ରଭୁ ଚକ୍ରଧର
ଆଜଠାରୁ ଅର୍ଜ୍ଜୁନଙ୍କ ସେବା ତୁମ୍ଭେ କର ।
ଏତେ କହି ତୈଳଲଗି ହେଲେ ଚକ୍ରପାଣି
ପାର୍ଥଙ୍କୁ ମାର୍ଜ୍ଜନା କଲେ ସକଳ ତରୁଣୀ ।
ହରିଦ୍ରା ତୈଳଚଇଳ ଲେପିଲେ ସକଳ
ସ୍ନାନ କରାଇଲେ ଚହୁଁ ଢାଳି ତୀର୍ଥଜଳ ।
ଝୀନବସ୍ତ୍ର ପରିଧାନ କରି କୃଷ୍ଣାର୍ଜ୍ଜୁନ
ସର୍ବାଙ୍ଗରେ ବୋଳି ହେଲେ କର୍ପୂର ଚନ୍ଦନ ।
ଅର୍ଜ୍ଜୁନଙ୍କୁ ସଙ୍ଗତରେ ଘେନ ବନମାଳି
ଉଗ୍ରସେନ ନୃପତିଙ୍କୁ କରେ କୃତାଞ୍ଜଳି ।
ତଦନ୍ତରେ ବସୁଦେବ ନମସ୍କାର କଲେ
ଇନ୍ଦ୍ରମାତା ଦେବକୀ ଏ ଦୁହିଁଙ୍କୁ ନମିଲେ ।
ସାରିବେଶ ଗୃହ ଚହୁଁ ଦ୍ୱିଜବେଶ ଧରି
ମଣୋହି କୋଠାରେ ବିଜେ ଅରଜୁନ ହରି ।
ଶ୍ରୀହସ୍ତେ ଅନ୍ନ ବ୍ୟଞ୍ଜନ ପରସନ୍ତି ମାଏ
ଭୁଞ୍ଜିଲେ ପାର୍ଥଙ୍କୁ ସଙ୍ଗେ ଘେନ ଦେବରାୟେ ।
ହରଷ ହରି ଅର୍ଜ୍ଜୁନ ସାରିଲେ ଭୋଜନ
ଉଠି ଆଗମନ କଲେ ପାର୍ଥ ଭଗବାନ ।
ଅଞ୍ଚଳରେ ମୁଖ ପୋଛି ତାମ୍ବୁଳ ଭୁଞ୍ଜିଲେ
ରାହି ଅର୍ଦ୍ଧମାନେ ରତ୍ନଖଟେ ପହୁଡ଼ିଲେ ।
ସେ ହରି ଅର୍ଜ୍ଜୁନ ପାଦେ ରତ୍ନ ମୋର ମନ
ଅଚ୍ୟୁତ ଦାସଙ୍କୁ କ୍ଷାନ୍ତି କର ଭଗବାନ ।

—※—

## ଜରାସନ୍ଧର ଅଷ୍ଟମ ବାର ଧାଡ଼ି

ଶୁକ ବୋଇଲେ ହେ ଶୁଣ ପରୀକ୍ଷ ରାଜନ
ଏମନ୍ତ ପ୍ରକାରେ ଚହିଁ ଗଲ କେତେ ଦିନ ।
ପାର୍ଥଙ୍କୁ ପାଇଣ ହୃଷ୍ଟ ହେଲେ ପୀତବାସ
ହେମ ଆସି ଶରତ ଋତୁ ହେଲା ପରବେଶ ।
କାଦୁଅ ଶୁଖିଲା ଶୁଷ୍କ ହୋଇଲା ଧରଣୀ
ଦିନ ନ୍ୟୂନ ହେଲା ଦକ୍ଷିଣରେ ଦିନମଣି ।
ହିନ୍ଦୁମାନେ ଯେ ଦୁର୍ଗାଙ୍କୁ ଉତ୍ସବ କରିଲେ
ଯବନ ରାଜା ମଥୁରା ନଗରେ ବୁଲିଲେ ।
ଜରାସନ୍ଧ ସୈନ୍ୟ ବୁଲିଲେକ ଦେଶ ଦେଶ
ବୋଇଲେ ରାଜ ମାନେ ହୋ ସଜହୋଇ ଆସ
ଏଥୁ ଅନନ୍ତରେ ମାର୍ଗଶିର ଅବଶେଷ
ପ୍ରଥମେ ପ୍ରବେଶ ହେଲା ଆସି ଧନୁମାସ ।
ଗୁଣବନ୍ତ ମନ୍ତ୍ରୀ ତାଙ୍କୁ ମଗଧ ଈଶ୍ୱର
ଆଶ୍ୱାସନା କରି ତାଙ୍କୁ କହେ ଏ ପ୍ରକାର ।
ତୁମ୍ଭେ ମନ୍ତ୍ରିବର ଅଟ ରାଜ୍ୟକୁ କାରେଣି
ଗଉଡ଼ଙ୍କ ହାତେ ଅପମାନ ଭୋଗୁ ପୁଣି ।
କଂସ ପରାସ୍ତ ଜୁଆଇଁ ମୋର ନାଶ କଲେ
ହେଷ୍ଟି ପ୍ରହେଷ୍ଟି ଦୁହିତା ବିଧବା ହୋଇଲେ ।
ହଂସ ଡିମ୍ଭ ପ୍ରମୁ ନାତି ନାସ୍ତି ହେଲେ ପୁଣି
ଏହାଠାରୁ ବଡ଼ ହୋଇଅଛୁ କି ଧରଣୀ ।

ଗୌଡ଼ଗ୍ରହରଯୋଗେମୋତେ ହେଲାଏଡ଼େକଷ୍ଟ
ପୋଡ଼ି ଏ ରାଜ୍ୟ କରିବ ନଷ୍ଟେ ପରିଙ୍ଗଜା ।
ଆଖଣ୍ଡେ ଅନେକ ସୈନ୍ୟ ମାଇଲା ମୋହର
ସାତବେଳ ଯାକେ ପିଠିଦେଇଗଲା ସ୍ୱେର ।
କୂଟକପଟ ଜାଣଇ ବଡ଼ମ ସ୍ୱା ଛନ୍ଦ
ସ୍ଥମୁରେ ରହି ନ ପାରେ ପଛେ କରେ ଦ୍ୱନ୍ଦ ।
ହସ୍ତେ ଧରୁ ଧରୁ ଯାଏ ସୈନ୍ୟ ଦେଇ ପିଠି
ରଥ ଗଜ ସୈନ୍ୟ ମୋର ମାରି କୋଟି କୋଟି
ଏବେ କେଉଁ ଉପାୟରେ ହେବ କାର୍ଯ୍ୟ ସିଦ୍ଧି
ରାମକୃଷ୍ଣ ଜିଣିବାକୁ ଅଛି କାର ବୁଦ୍ଧି ।
ମନ୍ତ୍ରୀବର ବୋଇଲା ତୁ ରାଜ୍ୟେ ରାଜଦେବା
ସ୍ତ୍ରିଭୁବନେ ଲକ୍ଷେ ରାଜା କରି ତୁମ ସେବା ।
ସର୍ବଗୁଣେ ସୁଲକ୍ଷଣ ବିଚକ୍ଷଣ ପୁଂସ
କିବା ତୁମେ ନ ଜାଣଟି କହିବା ବା କିସ ।
ରାମକୃଷ୍ଣ ବଧିବାକୁ ଶୋଚନା ଯେ ଏତେ
ଆଜ୍ଞାଦେଲେ ଚିହ୍ନ ନୁହେ ମାରିବୁ ଯୁକତେ ।
ସାତବଂଶ ଯାଦବ ଚୌରାଶୀ କୋଟିକରି
ଯାକୁ ବୋଲିବୁ କିଅନ୍ତା ଦେବୁ ନଷ୍ଟେ ଧରି ।
ଏହା ଶୁଣି ଜରାସନ୍ଧ ହେଲା ଆନନ୍ଦିତ
କେଉଁ ରାଜା ଆମ ବସ ନୁହଇ କହତ ।
ମନ୍ତ୍ରୀବୋଲେ କର ଯୋଡ଼ି ଶୁଣ ନୃପବର
ହସ୍ତିନା ନୃପତି ଦୁର୍ଯ୍ୟୋଧନ ଦଣ୍ଡଧର ।
ଅନ୍ତମାନେ ମାନଗୋବିନ୍ଦ ନ ମ ବହଇ
ଅବହେଳେ ପୃଥିବୀକୁ ଜିଣି ସେ ପାରଇ ।
ଅଇରି ଦର୍ପଦଳନ ଅଟଇ ଯେ ବାନା
ହସ୍ତ ଲାଗନ୍ତେ ପାଷାଣ ହୋଇଯାଏ ସୁନା ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଅଶ୍ୱତ୍ଥାମା କର୍ଣ୍ଣ
ଦ୍ୱାପରେ ସବେଇମଲ୍ଲ ହୋଇଛନ୍ତି ଜନ୍ମ ।
ଅଠର କ୍ଷୌହଣୀ ବଳ ଖଟନ୍ତି ଯା ଜତି
ଏ ମର୍ତ୍ତ୍ୟରେ ଅଟନ୍ତି ସେ ଏକ ଚକ୍ରବର୍ତ୍ତୀ ।
ଗାନ୍ଧାରୀ ମାତା ତାଙ୍କର ଧୃତରାଷ୍ଟ୍ର ପିତା
ପଣ୍ଡୁ ନାମେ ନରପତି ତାହାଙ୍କ ଖୁଡ଼ୁତା ।
ଯୁଧିଷ୍ଠି ଭୀମ ନକୁଳ ପାର୍ଥ ସହଦେବ
ପଣ୍ଡୁର ନନ୍ଦନ ଜାଣ ଏ ପଞ୍ଚ ପାଣ୍ଡବ ।
ଆଣିବା ଏହାକୁ ଦୂତ ବରଗାଇ କରି
କୋଟି ରାମକୃଷ୍ଣ ଜିଣି ପାରନ୍ତି ଏ ଧରି ।

ଶାଖା କଟକର ବଜ୍ରନାଭ ନରପତି
ଚୌଷଠିବଂଶ କ୍ଷୌହଣୀ ବଳ ଏହାକୁ ଖଟନ୍ତି ।
ଅଗ୍ନିର ପାଚେରୀ ଚତୁର୍ଦ୍ଦିଗ ଯାର ଖଣ୍ଡା
ଦ୍ୱାଦଶ ଯୋଜନ ଯାର ଗଡ଼ର ମାଟନା ।
ବଡ଼ ବଳବନ୍ତ ବିଚକ୍ଷଣ ଶିରୋମଣି
ଅବହେଳେ ଶତଇନ୍ଦ୍ର ପାରଇ ସେ ଜିଣି ।
ସେ ରାଜା ବରଣ କରି ଆଣି ଧାଡ଼ିକାରେ
ଜିଣିବା ଯାଦବ ଅବହେଳାରେ ସମରେ ।
ଶୋଣିତ କଟକେ ବାଣାସୁର ନାମେ ରାଜା
ବଳିର ନନ୍ଦନ ତାକୁ ଦେବେ କରି ପୂଜା ।
କୁମ୍ଭାଣ୍ଡ ନାମେଣ ମନ୍ତ୍ରୀ ତିନକାଳଜ୍ଞତା
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସେ ଜିଣିପାରେ ଶକ୍ତା ।
ସତେଇଶ କ୍ଷୌହଣୀ ବଳ ଖଟନ୍ତି ତାହାକୁ
ଅରିକୁଳ ଶଲ ସେ ଏ ତିନ ଭୁବନକୁ ।
ନାନାବିଧ ଉପାୟ କରି ସେ ରାଜାଙ୍କୁ ଆଣି
କୋଟିଏ ରାମକୃଷ୍ଣଙ୍କୁ ସେ ପାରେ ଜିଣି ।
ସାରିବଣ୍ଟ କଟକେ ଶମ୍ବର ବୋଲି ରାୟେ
ଅନେକ କାଳର ବୃଦ୍ଧ ରଣେ ନୋହେ କ୍ଷୟେ ।
ନବସହସ୍ର ନନ୍ଦନ ଏକୁ ଏକ ଯୋଧୀ
ନବଦ୍ୱୀପ ସାଗର ସେ କ୍ଷଣେ ପାରେ ସାଧି ।
ଏ ରାଜା ସ୍ଥମୁକୁ ତୁମେ ଦୂତ ବେଗେ ପେଷ
ପାଦପଜା କରଣ ସଙ୍ଗକୁ ଘେନ ଆସ ।
ରାମକୃଷ୍ଣ ଜିଣିବେ ସେ ବାହୁବଳେ
ତା ସମାନେ ବଳବନ୍ତ ନାହାଁ ରବିତଳେ ।
ଏ ପୃଥ୍ୱୀ ମଧ୍ୟରେ ଅଛି ନାରକା ଅସୁର
ବରାହଙ୍କ ବୀର୍ଯ୍ୟରୁ ସେ ଅଟେ ଅବତାର ।
ରଣେ ଗନ୍ଧର୍ବ ଦେବତା ଯାକୁ ନୁହେ କ୍ଷମ
ଉଡ଼ଇ ଶନ୍ଧ ବାରଧିବାନା ଯାର ନାମ ।
ଈଶ୍ୱରଙ୍କୁ ସେବାକରି ଅଛି ବରପାଇ
ଜଳସ୍ଥଳ ଅନଳରେ ଯାର ନାଶ ନାହିଁ ।
ଦୂତ ବରଗି ଆଣିବା ତାହାକୁ ଏକ୍ଷଣି
ସେ ରାଜାମାନଙ୍କ ବଳେ ରାମକୃଷ୍ଣ ଜିଣି ।
ବିଜୟ ଗିରି ନିକଟେ କାମ୍ୟକ ପାଟଣା
ଗୋସିଂହ ନାମେ ନୃପତି ଅଟେ ଜଗତ୍ଜିଣା ।
ଅତିବଳେ ବଳୀ ସେହି ଦୁର୍ବର ଦାନବ
ପଞ୍ଚବଂଶ ଅକ୍ଷୌହିଣୀ ବଳ ଅସମ୍ଭବ ।

ଅପ୍ରମିତ ସୈନ୍ୟ ରଥ ଗଜର୍ଙ୍କି ପଦାତ
ଯା ନାମ ଧରନ୍ତେ ସ୍ୱର୍ଗେ କମ୍ପେ ସୁରପତି ।
ସପ୍ତଦ୍ୱୀପା ପୃଥ୍ୱୀ ଜିଣି ସ୍ୱର୍ଗ ହୁଏ ଧାଉଁ
ଡରେ ଦେବଗଣେ ପଳାନ୍ତି ସେ ସ୍ୱର୍ଗପୁରୁ ।
ବ୍ରହ୍ମା ବିଷ୍ଣୁ ଈଶ୍ୱରଙ୍କୁ ଜିଣିପାରେ ସେହେଳ
ସାଗର ପୃଥ୍ୱୀ ବନ୍ଦିପାରେ ଭୁଜବଳ ।
ଦୁର୍ଜ୍ଜୟ ବ୍ରହ୍ମ ଶକତି ହସ୍ତେ ଥାଏ ଘେନ
ଅବହେଳେ ଜିଣିପାରେ ଚରାଚର ପ୍ରାଣୀ ।
ପତ୍ରେକ ଲେଖି ଉତ୍ତମ ଲୋକ ପଠାଇବା
ଧନ ବସ୍ତ୍ର ଅଳଙ୍କାର ଦେଇଣ ତୋଷିବା ।
ସେ ରାଜାର କୁଳେ ପ୍ରୀତି ହୋଇଲେ ନିଷ୍ଟୟ
ନିଃଶ୍ୱାସ ମାତ୍ରକେ ଶତ୍ରୁ କରିପାରେ କ୍ଷୟ ।
ଆରେକ ନୃପତି ଅଛି ସେ କାଳଦମନ
ଦୁର୍ବାର ବଳବନ୍ତ ସେ ଗୋପାଳୀ ନନ୍ଦନ ।
ଗର୍ଗ ମହାଋଷି ବୀର୍ଯ୍ୟେ ସେହି ଉତପତ୍ତି
ଦାସ ରାଜାର ଅଟଇ ଝିଅଣିଆ ନାତି ।
ସନ୍ତୋଷେ ବର ତାହାକୁ ଦେଲେ ମହାଦେବା
ଜନ୍ମହେଲା ମାତ୍ରକେ ସେ ହେଲା ନବଯୁବା ।
ଅନର୍ଗଳ ଅନ୍ଧକାର ଆରଣିକ ଜ୍ୟୋତି
ଭାଗ୍ୟବନ୍ତେ ଭୋଗ କରେ ରାଜାଙ୍କ ସମ୍ପତ୍ତି ।
ତାର ତହିଁକ ଦୂତେକ କରଗ ଏକ୍ଷଣି
ସେ ରାଜା ଅଇଲେ ନଷ୍ଟେ ଶତ୍ରୁ ପ୍ରାଣ ଜିଣି ।
ପଶ୍ଚିମ ସୌରାଷ୍ଟ୍ରେ ବିନ୍ଧ୍ୟଗିରିର ନିକଟେ
ମନୋହର କଟକ ସେ ଭଇରବ ତଟେ ।
ମୃଗସେନ ଅଟେ ପୁଣି ତହିଁର ନୃପତି
ବେଦବ୍ୟାସଙ୍କ ବୀର୍ଯ୍ୟେ ସେ ହୋଇଛି ଉତ୍ପତ୍ତି
ମୃଗୁଣୀ ଗର୍ଭରୁ ହୋଇଅଛି ଅବତାର
ବିନ୍ଧ୍ୟମାଳ ଦେଶ ଗୋଟା ତାର ଅଧିକାର ।
କୁଟୁମ୍ବୀ ପଣରେ ତାକୁ କେହି ନୋହେ ସରି
ଦୁହିତା ପୁତ୍ର ସେ ଅକଳଣା ଜାତକରି ।
ଷାଠିସହସ୍ର ଦୁହିତା ଚୌରାଶୀ କୋଟି ପୁତ୍ର
ଏରୂପେ ସନ୍ତତି ତାର ହୋଇଛନ୍ତି ଜାତ ।
ଅଠର କ୍ଷଉଣୀ ବଳ ଏହାଙ୍କୁ ଯେ ଖଟି
ଧନବନ୍ତ ବଳବନ୍ତ କଷା ଜଗଜ୍ଜେଠି ।
ଚରଣେ ତିନି ସହସ୍ରେ ରାଜା ଖଟିଆନ୍ତି
ତାର ସେବାରେ ଥିବାରୁ କାକୁ ନ ଗଣନ୍ତି ।

ତୁମ୍ଭଙ୍କୁ ଆଦରକରି ସେ ନ କରନ୍ତି ସେବା
ସେ ମୃଗସେନ ରାଜାକୁ ଦୁହିତାଏ ଦେବା ।
ବର୍ଣ୍ଣରେ ବ୍ରାହ୍ମଣ ସେହି ଅଟନ୍ତି ଶ୍ରେଷ୍ଠ ଜାତି
ଦୁହିତା ଦେଇ ତାହାକୁ କରିବା ଭୂପତ ।
ସେ ରାଜା ଅମ୍ଭ ସଙ୍ଗତେ ଥିଲେ ନାହିଁ ଭ୍ରାନ୍ତି
ଯାଦବ ମାରି କରିବ ତୁମ୍ଭ ମନ ଶାନ୍ତ ।
ଜମାଗୋଷ୍ଠ ବୋଲି ରାଜା ଅଟଇ ଗରିଷ୍ଠ
କଣସ୍ୱକଣ୍ଡର ରାଜା ଅତ୍ୟନ୍ତ ବଳିଷ୍ଠ ।
ଏମନ୍ତ ବର ତାହାକୁ ଶିବ ଯାଚି ଦେଏ
ଲିହି ପୋଛିଲେ ତାହାର ଶତ୍ରୁ ଯାଇ କ୍ଷୟେ ।
ସେ ରାଜାକୁ ସନ୍ତୋଷ କରିବା ଧନ ଦେଇ
ନୋହିଲେ ନାମ ଲେଖାଇ ପୋଛିଇବା ନେଇ
ଯାର ନାମ ଲେଖି ପୁଣି ପୋଛିଇଲେ କରେ
ସେହି ବ୍ୟକ୍ତି ନ ବର୍ତ୍ତଇ କାହାର ଆଜ୍ଞାରେ ।
ଯେତେକ ରାଜାର ବଳ ପ୍ରାକ୍ରମ ମହୀରେ
ସର୍ବ ନାମ ଗୁଣ କହି ଜରାର ଆଗରେ ।
ପୃଥୁନାମେ ନରପତି ଅଛନ୍ତି ଧରଣୀ
ନବ ପୁତ୍ରଜାତ ହେଲେ ସର୍ବେ ଗୁଣମଣି ।
ପୃଥ୍ୱୀ ଧାରଣ ଅଗସ୍ତି କପିଳ ଯେ କାନ୍ତ
ବଜସ୍ୱ ବୀରବାହୁ ଯେ ବୈଶ୍ୱାନରପୁତ୍ର ।
ବିଦକ୍ଷ ବୀର କେଦାର ଏ ନବ କୁମର
ପ୍ରତାପୀ ହୋଇ ଜନ୍ମିଲେ ଏକୁଁ ଏକ ଆର ।
ଏ ସମସ୍ତ ପୃଥୁରାଜ-ପୁତ୍ର ମହାତ୍ମା
ନବଖଣ୍ଡ କରି ବାଣ୍ଟିନେଲେ ଏ ମେଦମା ।
ସମଭାଗ କଲେ ନବଖଣ୍ଡ ଏ ପ୍ରମାଣ
ପ୍ରତେକ ବାଣ୍ଟି ଏଗାର ସହସ୍ର ଯୋଜନ ।
ନବ ପର୍ବତ ପକାଇ ସୀମାମାନ ବାଣ୍ଟି
ମହାବନ୍ଧ ପକାଇଲେ କଳାମାନ କଣ୍ଡ ।
ସୀମାନ୍ତ ରାଜାଏ ସର୍ବେ ପର୍ବତରେ ରହି
ଗୋଳ ହଳ କଳହନ୍ଦ୍ୱ ପାପ ପୁଣ୍ୟ ନାହିଁ ।
ହସ୍ତୀ ଘୋଡ଼ା ବ୍ୟାଘ୍ର ଭାଲୁ ଜନଆଦିକରି
ଯାହାକୁ ଦେଖନ୍ତି ତାକୁ ଗ୍ରାସ କଲେ ଧରି ।
ପାପ ପୁଣ୍ୟ ବିଚାର ନ ଥାଇ ଜାଣ ତଥି
ମୂର୍ଖ ଜନେ ଗଣ ବଣମନୁଷ୍ୟ ଯେ ଜାତି ।
ସେ ନବ ସହସ୍ର ବନ ପର୍ବତରେ ଥାନ୍ତି
ଏମାନେ ଜାଣ ତୁମ୍ଭଙ୍କୁ ସେବା ନ କରନ୍ତି ।।

ନବ ପୁତ୍ର ମଧ୍ୟେ ଶ୍ରେଷ୍ଠ ଭରତ କୁମାର
ଈଶାନ ଭାଗ ଖଣ୍ଡି ସେ ପଡ଼ିଲା ଏହାର ।
ଏଣୁ ଏହାକୁ ଭରତ ଖଣ୍ଡ ବୋଲି କହି
ଏଗାର ସହସ୍ର ଯୋଜନ ଭାଗ ତାଙ୍କ ମହି ।
ଏହି ପ୍ରମାଣେ ସେ ନବପୁତ୍ର ବାଣ୍ଟିନେଲେ
ଯେଝା ଭାଗ ସେ ଆପଣ ନାମରେ ଟି ଦେଲେ
ଏମନ୍ତେ ନବଖଣ୍ଡ ମେଦିନୀ ପ୍ରମାଣ
ଛପ୍ପାଣୋଇ ସହସ୍ର ରାଜା ଅଛନ୍ତି ଏ ଜାଣ ।
ଏକାଣୋଇ ସହସ୍ର ରାଜା ତୁମଙ୍କୁ ଖଟନ୍ତି
ଅମାନଆ ଜାଣ ପଞ୍ଚ ସହସ୍ର ନୃପତି ।
ଜରାସନ୍ଧ ରାଜ୍ୟେ ବୋଲେ କାର୍ଯ୍ୟ ମୋ ପଡ଼ିଛି
ଏତେବେଳେ ଦୁଷ୍ଟପଣ ନ କରିବା କଛି ।
ନାନାବିଧ ପ୍ରକାରେ ଶତ୍ରୁ ପାରି ଯେବେ ସାଧି
କାର୍ଯ୍ୟ ଶେଷ କରି ପାରି ସିଏ ଆନ ବୁଦ୍ଧି ।
ଏତେ ବୋଲି ରାଜଦୂତେ ପେଷିଦେଶେଦେଶେ
ଉଗର ଯାଇ ଜଣାଇ ରାଜାଙ୍କର ପାଶେ ।
ଯେତେ ଶୁଣି ଅଛନ୍ତି ଯେ ରାଜା ବାଟ ବୃନ୍ଦି
ଯେଝା ଅଙ୍ଗବଳ ଘେନି ମଗଧକୁ ଯାଇ ।
ନୃପତିଙ୍କ ଚର୍ଚ୍ଚା ପାଇ ଅମାତ୍ୟ ଯେ କରି
ଥାଟ ପୋଷଣ ସାମଗ୍ରୀ ଦ୍ୟନ୍ତି ଲେଖି ପଡ଼ି ।
ରାଜାମାନେ ବାର୍ତ୍ତାପାଇ ଅଇଲେ ତକ୍ଷଣ
ବସାଖର୍ଚ୍ଚ ଗଣି ପାଇ ରାଜାଗଣ ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ରେ ରୁକ୍ମଣ
ନାରକା ଶମ୍ବର ଆଦି ବଜ୍ରନାଭ ବାଣ ।
ଗାନ୍ଧାରସେନ ନୃପତି କାଳିଞ୍ଜନ ରାଜ୍ୟେ
ବିରାଟ କୀଚକ ଆଦି ନୃପତି ବିଜୟେ ।
ଦୁରବନ୍ତକ ଦମଘୋଷ ରାଜା ଭଗଦତ୍ତ
ବାରବାହୁ ଯେ ବଜ୍ରଯୁସେନ ଭାନୁମତ ।
କୌପ୍ରକ ପୁଣ୍ଡ୍ରକ ହରିସେନ ବାସୁଦେବ
ଶିବାଶ୍ରବା ସତ୍ତ୍ୱଭରି କାଳ କାମଦେବ ।
ଶଶାଙ୍କ ଚୂଡ଼ଙ୍ଗ ସାହା ସାନ୍ତ୍ୱକ ଆବର
ନଃଟଙ୍କ ନିର୍ଦ୍ଦୟ ନିରଞ୍ଜନ ନାଶକର ।
ରାଜାବ ବଧକାରକ ସୁରଥ ନୃପତି
ଜୟସିଂହ ଜ୍ୟୋତିରଙ୍ଗ ରାଜା ଗଣପତି ।
କାଶୀଶ୍ୱର ନରପତି ରାଜା ଛତ୍ରମାଳ
ସମସ୍ତ ନୃପତି ଆସି ମଗଧରେ ମିଳ ।

କାର୍ଯ୍ୟବଶରୁ ତର୍କ୍କିକ ଯେ ଆସି ନ ଥିଲେ
ଲେଖା ଦେଇଣ ଉଗର ତାହାଙ୍କୁ ଆଣିଲେ ।
ସମସ୍ତ ନୃପତିମାନେ ଆସି ଦେଲେ ରୁଣ୍ଡ
ଲୋକ ଗହଳ ଚହଳେ ପୂରିଲା ବ୍ରହ୍ମାଣ୍ଡ ।
ଇଦଂ ପ୍ରତିବାକ୍ୟ ଯେ ବଦନ୍ତି ଶୁକପତି
ଶୁଣ ସାବଧାନେ ତୁହେ। ଚଣ୍ଡ୍ର ପଣ ନ ତ ।
ସରସ୍ୱତୀ ନଦୀ ତଟେ ରହି କୋଟି ଥାଟ
ସ୍ୱର୍ଗେ ଇନ୍ଦ୍ର ଦେବତାକୁ ଲାଗିଲା ଉଚ୍ଚାଟ ।
ତେତିଶକୋଟି ଦେବତା ପାଇ ମନେ ଭୟ
ବୋଇଲେ ରାଣ୍ଡ ହେଲେ ଏ ସବୁ ଦୁଷ୍ଟରାୟ ।
ମନ୍ତ୍ରିକ ବୃନ୍ଦ ସେ ଜରାସନ୍ଧ ରାଜା ପୃଚ୍ଛି
କେଉଁ ରାଜା ମୋ ରାଜ୍ୟରେ ଆସିଣ ନ ଅଛି ।
ଏହା ସଂକ୍ଷେପିଣ ମୋତେ କହ ବୁଦ୍ଧିମନ୍ତ
ନାନା ଉପାୟରେ ତାକୁ ଆଣିବ ତ୍ୱରିତ ।
ସକଳ ସଂକ୍ଷେପ କରି ମନ୍ତ୍ରୀଏ କହିଲେ
ଏଗାର ନୃପତି ଗୁଡ଼ି ଅଇଲେ ସକଳେ ।
ସ୍ୱର୍ଗେ ଇନ୍ଦ୍ର ନ ଆସିଲେ ପାତାଳୁ ବାସୁକ
ମର୍ତ୍ତ୍ୟ ନବ ନ ଆସିଲେ ମୂର୍ଦ୍ଧା ଅଭିଷେକ ।
ଗୋସିଂହ କାଳଦମନ ମୃଗସେନ ବୀର
ଶିଶୁ ଯମକ ନୃପତି ମହେନ୍ଦ୍ର ଠାକୁର ।
କଳିଙ୍ଗ ଦା ବାନରେଶ୍ୱର ବାଳରାଜା ନାତି
ସୁବଳ ପର୍ବତ କୁନ୍ଦରୁ ଭୂପାଳ ନୃପତି ।
ଲଙ୍କା ରାବଣ ଅନୁଜ ରାଜା ବିଭୀଷଣ
ସେ ନଇଲେ ଦୋଷଘେନ ଦୈତ୍ୟକୁଳ ରାଣ ।
ବାରୁଣା ପୁରର ରାଜା ପଣ୍ଡୁର କୁମର
ଧର୍ମବନ୍ତ ସତ୍ୟବନ୍ତ ରାଜା ଯୁଧିଷ୍ଠିର ।
ଉଗ୍ରସେନ ନଆସିଲେ ଶତ୍ରୁ ପକ୍ଷ ଭାଳ
ଆଉ ସକଳ ନୃପତି ଆସି ଏଥେ ମିଳ ।
ଜରାସନ୍ଧ ବୋଇଲା ଏ ଅକଳତ ସୈନ୍ୟ
ଆସିଛନ୍ତି ପଦାତିକ ଘେନଣ ରାଜନ ।
କେ କେଣେ ଅଛନ୍ତି ତାହା ତଦନ୍ତ ନ ଜାଣି
ଥୋରେକ ରଖଥୋକେପଛେ ସଙ୍ଗେ ନବାପୁଣି
ଏଯେତେକ ପ୍ରଜା ଅଇଲେ ଘେନି ମୋ ରାଜ୍ୟେ ହ
ଆଗନ୍ତୁ ବସା ଖରଚ ଲେଖିକରି ଦିଅ ।
ରାନ୍ଧଣା କରୟୁ ପାକଶାଳେ ଅନୁକ୍ଷଣ
ସୁରଜାତି ଅଷ୍ଟାଦଶ କରିବେ ଭୋଜନ ।

ଯେବଣ ଲୋକ ମାନସ କରିବାକ ଯାହା
ମାଗନ୍ତେ ଦଣ୍ଡେ ବିଳମ୍ବ ନ କରିବ ତାହା ।
ହାତୀ ଘୋଡ଼ା ରଥ ଆଦି ନିଯୋଗ ଯେ ବିଧି
ଦିନେ ଦିନେ ବୃଦ୍ଧି ଦେବ ସଇନ୍ୟ ଅବଧି ।
ବଳଦ ପିଠି ଶଗଡ଼ମାନଙ୍କରେ ଲଦି
ଜୋଡ଼ ଟୋକେଇ କଟୁରୀ ସଙ୍ଗେ ଥିବ ସାଧି ।
ଶାଢ଼ୀ ଘର ଟେରା ଦଉଡ଼ି ଖଣ୍ଡିଆ ସନ୍ନତେ
ଛତା ପାଣ୍ଡୋଇ ପକ୍ଷିଆ ଭିଂଆଇ ଏମନ୍ତେ ।
ଗୁଚ୍ଛକ ଶାବେଳୀ ଖଣ୍ଡା କାଣ୍ଡ ଶୂଳ ଯଷ୍ଟି
ଘୋଡ଼ା ହାତୀଙ୍କି ନଗୁଡ଼ ଘୋଡ଼ା ବସ୍ତଗୋଟି ।
ଖଣତା କୁଷା କୋଦାଳ ଲୁହା ବାଡ଼ି ଭଲ୍ଲ
ଯମଦାଢ଼ ବାଙ୍କକୁଷା ଭୁସିଦାର ସଲ ।
ଲେନ୍ତ ପଥର ମାରଣ କରିବାକ ପଦା
ଟାଙ୍ଗିଆ ଭୁଷଣ୍ଡି ମାଟିହଣା ତୀକ୍ଷ୍ଣ ବନ୍ଧା ।
ଚେଙ୍ଗା ପାଟବର୍ଣ୍ଣା ଏକମୁନା ଛୁଟିକଣୀ
ଏମନ୍ତ ଅଠରଜାତ ଶସ୍ତ୍ର ପରମାଣି ।
ଛତିଶ ଜାତିରେ ଲୁହା ନାନାବର୍ଣ୍ଣ କର୍ମ
କୋଠଭଣ୍ଡାର ନିଯୋଗ ମାନଙ୍କୁ ଘେନମ ।
ଏସବୁ କଥାରେ ଅବଧାନ ହୋଇଥିବ
ଏତେ କଥାରୁ କଛୁ ଅନ୍ତର ନ କରିବ ।
ଏସନକ ଆଜ୍ଞା ଦେଲ ଜରାସନ୍ଧ ବୀର
ଧନୁ ଶୁକଳ ପଞ୍ଚମୀ ତିଥି ଗୁରୁବାର ।
ଗର ନାମେ କରଣ ଯେ ଆୟୁଷ୍ମାନ ଯୋଗ
କୁମ୍ଭର ପଞ୍ଚତ୍ରିଂଶ ଦଣ୍ଡ ଚନ୍ଦ୍ର ଭୋଗ ।
ଚାର ବାରଗ୍ରହ ଆଦି ଶୁଭଯୋଗ ବେଳେ
ମେଷ ଲଗ୍ନ ଅନୁକୂଳ ଜରାମନ୍ତ୍ରୀ ପାଳେ ।
ଦିଆଅ ଟମକ ସୈନ୍ୟ ହୁଅନ୍ତୁରେ ସଜ
ଥୋକେ ଦୂର ଯାଇ ଅନୁକୂଳ କର ଆଜ ।
ଏମନ୍ତ ଆଜ୍ଞା ଦେଲ ସେ ମଗଧ ନୃପତି
ଆପେ ବୀରବେଶ ହୋଇ କରେ ଶୀଘ୍ରଗତି ।
ହୃଦରେ ଭୂଷଣ ଗଳେ ସୁବର୍ଣ୍ଣର ହାର
ଚାଡ଼ ତୋଡ଼ର ମୁକୁତା ଲମ୍ବେ ଦିବ୍ୟମାନ ।
ବିଦ ମୁଦ୍ରିକା କଙ୍କଣ ପଦକ ବାହୁଟି
ଓଢ଼ଣୀ ଚୋଡ଼ର ବିରାଜଇ କୋଟି କୋଟି ।
ଶ୍ରୀକରେ ଖର କମାଣ କଟିରେ ତୂଣ ବାନ୍ଧି
ରଙ୍ଗ ପାଟ ପଚମା ଷୀରୋଦ୍ଭ ଯୋଡ଼ ବନ୍ଧି ।

କପୋଳେ ସିନ୍ଦୂର ଚିତା ଯମଦାଢ଼ କୁଷା
ଉପରେ ଅନେକ ଅସ୍ତ୍ରଶସ୍ତ୍ର ବାନ୍ଧ ଡୋର ।
ବାଜେ ମହୁରୀ ସୁସ୍ୱର ଶଙ୍ଖ ବୀଣା ବାଣୀ
ଶ୍ୱେତ ପରୁଆ ଉପର ରାଜହଂସ ଶ୍ରେଣୀ ।
ବିପ୍ରେ ବେଦଧ୍ୱନି କରି ବାଞ୍ଛୁ ସର୍ବ ଶୁଭ
ଗୋରଚନା ଚିତା ପୁଣ ଅକ୍ଷତ ଯେ ଦୂବ ।
ଦଧିମାଛ ପୂର୍ଣ୍ଣକୁମ୍ଭ ପରେ ଚୂତ ଡାଳ
ହୃଦପ୍ୟରେ ଆଭରଣ ଗଳେ ଧଣ୍ଟାମାଳ ।
ବନ୍ଦୀ ଭାଟ କଏବାର ସ୍ତୁତି ପାଠ ପଢ଼ି
ନଟ ଗଣିକା ଗୁମ୍ଫରେ ନୃତ୍ୟ ଗୀତ କରି ।
ଯଉତିକେ ପାଞ୍ଚ ତୋଳ କନ୍ୟା ଦିନ ବାର
ପରିବାରମାନେ ଖଟିଛନ୍ତି ଯେ ଯାହାର ।
ଶ୍ୱେତ ଛତ୍ର ଶ୍ୱେତ ଦୂବ ଶ୍ୱେତ ପୁଷ୍ପ ତିନ
ଶ୍ୱେତ ରତ୍ନ ଶ୍ୱେତ ବସ୍ତ୍ର ରାଜା ଅଛୁ ଘେନ ।
ନିଃଶ୍ୱାସ ବାରି ଦକ୍ଷିଣ ପାଦ ଆଦି କରି
ରଥ ଆରୋହି ହିଗବିଜେ କଲ ଦଣ୍ଡଧାରୀ ।
ଅଗ୍ନି କୋଣ ମାଡ଼ ରାଜା ହୋଇଲେବାହାର
ସଙ୍ଗତେ ଗୋଡ଼ାଇଛନ୍ତି ବହୁ ନୃପବର ।
ରଥ ରଥୀ ଗଜ ଅଶ୍ୱ ପଦାତି ଅଗଣ
ବଜାନ୍ତି କୋଟି କୋଟି ଟମକ ନିଶାଣ ।
ତେଲ ଦମାଲୁ ମର୍ଦ୍ଦଳ ଭେରୀ ବୀରତୂରେ
ମୃଦଙ୍ଗ ଶୃଙ୍ଗ ତବଲ ଝିଙ୍ଗୀର ଝଙ୍କାରେ ।
କଡ଼ା କୁଣ୍ଡଳୀ ସିହାଣୀ ବରଗଡ଼ ଢୋଲକ
ଦୋସରି ଅଣାବେଣୀ ଯେ ଡମ୍ଫ ଯୋଡ଼ଶଙ୍ଖ ।
ପଟା କୁଣ୍ଡଳୀ କାହାଳୀ ଗିନା ରାମତାଳ
ଡିବ ଡିବ ଡମ୍ବରୁ ଯେ ପଡ଼େ ହୁଳହୁଳ ।
ନାରୀଏ ମଙ୍ଗଳ ଗୀତ ନାନା ବାଦ୍ୟ ଧ୍ୱନି
କମ୍ପଇ ବ୍ରହ୍ମାଣ୍ଡଖଣ୍ଡ କମ୍ପେ ପୁର ତିନି ।
ଛତିଶ ଆୟୁଧ ଧରି ରାଉତେ ଯେ ସଜ
ବାହୁରି ଆୟୁଧ ଘେନି ହକାଡ଼େଲେ ଗଜ ।
ବେନଶତ ଆୟୁଧରେ ରାଜା ରଥ ରଥୀ
ପାଞ୍ଚ ପଦର୍ଶ ଆୟୁଧେ ସଜ ଯେ ପଦାତି ।
ଅକଳନା ବଳ ଘେନି ଗଲେ ଯୋଦ୍ଧାମତେ
ସଂଗ୍ରାମକୁ ସଜ ହୋଇ ଯାନ୍ତେ ପଥେ ପଥେ ।
ଉଦଣ୍ଡ ଆଲମ୍ବ ଏକ ଲକ୍ଷ ପନ୍ତ ପନ୍ତ
ବିକଳ ଶ୍ୱେତ ଚାମର ଦୁଛନ୍ତି ଶୋଭା ପାନ୍ତି ।

ମେଘ ଡମ୍ବରୁ ଆବର ବାଦ୍ୟ ଫର ଫର
ନିରନ୍ତର ସମୁଦ୍ରରୁ ଉଠେ କି ଲହରି ।
ରଥମାନଙ୍କ ଘୋଷଣା ଗଜଙ୍କ ଧାଉଡ଼ି
ଅଶ୍ୱଙ୍କର ହ୍ରେଷାରବ ଖୁରଘାତ ବଡ଼ି ।
ପଦାତିଙ୍କର ଗର୍ଜ୍ଜନ ଘଣ୍ଟାନାଦ ଶୁଣି
ଟଳମଳ ବସୁନ୍ଧରା କମ୍ପେ ସପ୍ତଫଣୀ ।
ରଥ ଉପରେ ପତାକା ଦିଶେ ବଢପନ
ଫରହର ମାଳ ମାଳ ଉଡ଼େ ନାନା ବର୍ଣ୍ଣ ।
ଅଷ୍ଟ ରତ୍ନରେ ନିର୍ମାଣ ବିଚିତ୍ର ମଣ୍ଡଣି
ମଧ୍ୟାହ୍ନ ସମୟେ ଯେସନ୍ତେ ଅସ୍ତ ଦିନମଣି ।
ଆଗ ପଛେ ବାମ ଡାହାଣରେ ଛନ୍ତି ବେଢ଼ି
କୋଶେ ଯାଇ ପଛକୁ ବ୍ୟୂହାନ୍ତ ଆଗବଢ଼ି ।
ଚୌରାଶୀ ଯୋଜନ ମାଡ଼ି ଚଳେ ସମଦଣ୍ଡ
ବାଦ୍ୟନାଦ ଶବ୍ଦେ କମ୍ପେ ଭୂମି ନବଖଣ୍ଡ ।
ମାର ମାର ଧର ଧର ଶବ୍ଦ ଘୋର ଡାକ
ଆକାଶ କମ୍ପି କମ୍ପିଲା ସ୍ୱର୍ଗଦେବଲୋକ ।
ଖାଲ ଉଙ୍ଗର ପର୍ବତ ଭଙ୍ଗ ହେଲା ବାଟ
ମଥୁରାକୁ କଟକାଇ କରି ସର୍ବ ଥାଟ ।
ଶୁଣ ପରୀକ୍ଷ ବଦନ୍ତି ଶୁକ ମହାସନ୍ତ
ଶ୍ରୀହରିବଂଶ ପୁରାଣ ପୁଣ୍ୟତମ କାନ୍ତି ।
ଏ ପ୍ରକାରେ ଚଳଇ ସେ ମଗଧ ଈଶ୍ୱର
ଆପଣା ରାଜୁ ବାହାର ହେଲା ରାଜେଶ୍ୱର ।
ରାଜା ଏ ଗୋଡ଼ାଇଛନ୍ତି ତାର ପଛେ ପଛେ
ରଣ ଅସ୍ତ୍ରେ ରହିଲେ ସେ ପଦ୍ମାବତୀ କାଛେ ।
ହରି କନ୍ଦର ବୋଲଣ ଏକଇ ପର୍ବତ
ସୌରାଷ୍ଟ୍ର ଦେଶରୁ ଆସି ସେ ନଦୀ ସଙ୍ଗତ ।
ଦଶାଶଏ ଯୋଜନ ସେ ଗିରିର ବିସ୍ତାର
ପାଣ୍ଡବଙ୍କ ଘେନ ତହିଁ ଥିଲେ ଦେବ ହରି ।
ବିଶ୍ୱକର୍ମାର ଗଠନ ନଗରେକ ତହିଁ
ସେ ନଗରେ ପୂର୍ବେ ଥିଲେ ସେ ଈଶ୍ୱର ରହି
ସେ ନଗ ମାଡ଼ି ରହିଛି ଜରାସନ୍ଧ ରାୟ
ଶାଢ଼ୀଘର ଠାଣି ରହିଛନ୍ତି ସବୁବାସ୍ତୁ ।
ସେହି ସମରେ ରାଜାଙ୍କୁ ଦେଲେ ତହିଁ ଠାବ
ହସ୍ତୀ ଘୋଡ଼ାଙ୍କୁ ତରଣି ଦେଇ ରାଜଦେବ ।
ପାଣିଖାଦ୍ୟ ଖାଇ ସୁସ୍ଥ ହୋଇଲେ ସକଳ
ରାନ୍ଧି ଭୁଞ୍ଜି ଯେ ଯାହାରେ ନିଦା ସର୍ବ ବଳ ।

ମଣୋହି ଜଳେ ଯୋଗାଡ଼ ପାଇ ରାଜଗଣ
ସୁସ୍ଥ ହୋଇଣ ଭଜନା କଲେ ସେ ଦିନ ।
ଯଥାଅନୁକ୍ରମେ ରାଜବନ୍ଧୁ ଯେ ଭିଆଣ
ରାଣକ ତହିଁ ବସିଲେ ଚତୁରଙ୍ଗ ସୈନ୍ୟ ।
ଏସନ ବାରତା ଶୁଣି ନାରଦ ଯେ ମୁନି
ଶ୍ରୀକୃଷ୍ଣ ତହିଁ ମିଳଲେ କରି ହରିଧ୍ୱନି ।
ଖଣ୍ଡେ ଦୂରରୁ ତପୀଙ୍କି ଦେଖି ଦେବ ହରି
ଆସନ ଛାଡ଼ି ଉଠିଣ ପ୍ରଣାମ ଯେ କରି ।
ଷଡ଼ ଅର୍ଘ୍ୟ ପାଦପୂଜ ଧୂପ ଦୀପ ଦେଇ
ହେ ମୁନି କି କାର୍ଯ୍ୟ ଏଥେ ପଷ୍ଟରବନସ୍ତି ।
ନାରଦ ବୋଇଲେ ତୁମ୍ଭେ ସର୍ବଜ୍ଞ ପୁରୁଷ
ଭୂତ ଭବିଷ୍ୟତ କଥା ମନ ଦୃଏ ଦୃଶ୍ୟ ।
ଶାରଦା ବଲ୍ଲଭ ତୁମ୍ଭେ ଲକ୍ଷ୍ମୀଦେବୀ ନାହା
ମୁଁ କିସ କହିବି ତୁମ୍ଭେ ନ ଜାଣ ବା କାହା ।
ଏ ବିଶ୍ୱକଥା ତୁମ୍ଭଙ୍କୁ ଲାଗ ସିନା ସବୁ
ଅସୁର ମାରି ଦେବଙ୍କୁ ସ୍ୱର୍ଗପୁର ଦେବୁ ।
ମଗଧ ଈଶ୍ୱର ଜରାସନ୍ଧ ନରପତି
ଗହଣରେ ବୃନ୍ଦଉଣା ଲକ୍ଷେକ ନୃପତି ।
ନରପତିମାନଙ୍କର ଅଙ୍ଗବଳ ଯେତେ
ସଂକ୍ଷେପି କହିଣ ତାହା କହିବଇଁ କେତେ ।
ସବୁ ରାଜା ଆସିଛନ୍ତି ଯୁଦ୍ଧ ପରିଧାଇ
ତୁମ୍ଭଙ୍କୁ ଧରିବେ ବୋଲି ମନେ କରି ସେହି ।
ହିନ୍ଦୁ ଆଦିକରି ଯେତେ ପାପିଷ୍ଠ ସଇନ
ସର୍ବେ ଏକତ୍ରିତ ହୋଇ ଜରା ସଙ୍ଗେ ଘେନ ।
କାଲି ସାତ ଘଡ଼ିରେ ସେ ବେଢ଼ିବେ ତୋ ଗଡ଼
ଜୁଆଇଁ ନାତିର ଛଳେ ପ୍ରାଣକରି ଗାଢ଼ ।
ତୁମ୍ଭର ବଳେ ଜରାକୁ ନୁହଇ ଯେ ମାରି
ବାଟ କାଟି ଗଡ଼ୁଁ ଏବେ ଯାଅ ଅପସରି ।
ଶିଶୁପାଳ ରୁକ୍ମଣ ଯେ ଶାଲ୍ୱ ଦନ୍ତବକ୍ର
ଏହାଙ୍କ ନାମ ଧଇଲେ କମ୍ପେ ଦେବ ଶକ୍ର ।
ବାଣାସୁର ବଜ୍ରନାଭ ନାରକା ଏ ତିନ
ନିମିଷେ ଜିଣି ପାରନ୍ତି ସକଳ ମେଦିନୀ ।
ସଙ୍ଗତେ ଆସି ଅଛନ୍ତି ଭାଇବନ୍ଧୁ ଗଣ
କାଶୀପତି ଭଗଦତ୍ତ ଆଦି ନୃପଗଣ ।
ଅଛନ୍ତି ସେ ସଦାଶିବଠାରୁ ବର ପାଇ
ଜଳସ୍ଥଳ ଅନଳରେ କାହିଁ ମୃତ୍ୟୁ ନାହିଁ ।

ଦୁର୍ବାର ନିଶାଚର ସେ ସଙ୍ଗେ ସୈନ୍ୟଗଣ
ଅବଶ୍ୟ ଉଗ୍ରୋଧ ଗୁଡ଼ କରିବେ ସେ ରଣ ।
ହାନି ଲଭ ବିସ୍ମରଣ କାର୍ଯ୍ୟ ଏବେ କର
ଜାଣି ନ ପାରିଲେ ହୁଅ ବେଳହୁଁ ଅନ୍ତର ।
ଶ୍ରୀକୃଷ୍ଣ ବୋଇଲେ ମୁନି ତୁମ୍ଭ ପ୍ରସାଦରୁ
କୋଟି କୋଟି ଜରାସନ୍ଧ ଯୁଦ୍ଧେ ଜିଣିପାରୁ ।
ଅନେକ ଦାନବ ହେଲେ ପୃଥ୍ୱୀରେ ପ୍ରକାଶ
ଦେବତା ଗୁରୁ ବ୍ରାହ୍ମଣ କରନ୍ତି ବିନାଶ ।
ଏମାନେ ନ ମଲେ ପୃଥ୍ୱୀଭାର ନୁହେଁ ହସ୍ୱ
ପୂର୍ବର ଭିଆଣ ଏହା ଦେବଙ୍କ ଉପାୟ ।
ଏକାବେଳେ ଏତେ ଲୋକପାଇ ଆମ୍ଭେ କାହିଁ
ଜରାସନ୍ଧ ସମସ୍ତଙ୍କୁ ଆଣୁଛି ରୁଣ୍ଡାଇ ।
ଦେବ କାର୍ଯ୍ୟପାଇଁ ଏଥୁ ମାର କଷ୍ଟ କଷ୍ଟ
ଶ୍ରୀକୃଷ୍ଣ ବାକ୍ୟେ ସନ୍ତୋଷ ହେଲେ ବ୍ରହ୍ମବର୍ଷି
କଳ ଧୂକୁଡ଼ ମୁଣିରୁ ଧଳମୁଠା କାଢ଼ି
ପକାଇ ଦେଇ ନ ଚନ୍ତି ଲଗୁ ଲଗୁ ବୋଲି ।
ସେଦିନ ମଥୁରାପୁରେ ରହି ତପଶାଳୀ
ବୋଇଲେ ରାହ ପାହିଲେ ଦେଖିବ ନା କଳି ।
ଏଥୁଅନନ୍ତରେ ରାଜା ଉଗ୍ରସେନ ରାଇ
ନିଅବକାଶରେ ଆଜ୍ଞା ଦେଲେ ଲକ୍ଷୀସାଇଁ ।
ବୋଇଲେ ମଥୁରାପୁରେ ପୁଣ ଜରା ଧାଡ଼ି
କାଲି ସାତଘଡ଼ି ବେଳେ ବସିବ ସେ ମାଡ଼ି ।
ଏହିକ୍ଷଣି କହିଲେ ନାରଦ ତପୋନିଷ୍ଠ
ଗନ୍ଧମାଦନକୁ ତୁମ୍ଭେ ଯାଅ ଘେନ ଥାଟ ।
ଧନ ଜନ ଗୋରୁ ଦ୍ରବ୍ୟ ସବୁ ଯିବ ଘେନ
ପର୍ବତ କନ୍ଦରେ ରହ ତୁମେ ଦିନା ତିନ ।
ବାଳବୃଦ୍ଧ ସ୍ତ୍ରୀବାପ୍ରିଷ୍ଟ ଯିବ ସର୍ବ ନେଇ
ଜରାସନ୍ଧ ବାହୁଡ଼ଣ ଯାଉ ହେଳ ହୋଇ ।
ଏମନ୍ତ ଆଦେଶ ଯହୁଁ ଜଗନ୍ନାଥ ଦେଲେ
କୁଟୁମ୍ବକୁ ଉଗ୍ରସେନ ଘେନ ଚଳିଗଲେ ।
ଯାଦବଙ୍କୁ ଆବୋରିଲେ ବଳଦେବ ସ୍ୱାମୀ
ଗଡ଼ ଭିତର ଅବୋର ଦେବ ଅନ୍ତର୍ଯ୍ୟାମୀ ।
ଅର୍ଗଳ ପେଛ ପଡ଼ିଲେ ଦ୍ୱାରକା କବାଟ
ଲୌହ ଦଣ୍ଡର ଧାରଣା ନିରେଧିଲେ ବାଟ ।
ବିଶ୍ୱକର୍ମାର ନିର୍ମାଣ ଲକ୍ଷ୍ମୀର ପାଟଣା
ସ୍ୱରପାଖ ନବଚଳ ଉଖାର ଯେ ଖଣା ।

ବୃଙ୍ଗମୁହାଁ ଫେରମୁହାଁ ବାଘମୁହାଁ ଘର
ଲଗାଇଛି ଛୁଟିକଣି ପିଡ ର ଉପର ।
ଏରୂପେ ଅସ୍ତ୍ର ଭିତରେ ସଜାଡ଼ିଣ ରହି
ବାଣ୍ଟି ରଖିଲେ ଅଶ୍ୱଙ୍କୁ ମୁହଁରେ ଉଖାଇ ।
ସାତବଂଶ ଯାଦବ ଚୌରାଶିକୋଟି ବଳ
ଏକକୁ ଆରେକ ଯୋଦ୍ଧା ରଣେ ଅନର୍ଗଳ ।
ଜଗଦ୍‌ବନ୍ଦନ ନାଥଙ୍କ ସଙ୍ଗ ଆଶ୍ରା ପାଇ
ଗନ୍ଧର୍ବ ଆଦ କାହାକୁ ମନେ ଶଙ୍କା ନାହିଁ ।
ଏଥୁଅନନ୍ତରେ ସେ ଜରାସନ୍ଧ ରାୟେ
ରାହ ସାତଘଡ଼ିମାନେ କଳ୍କ କଜାୟେ ।
ମନର ସନ୍ତାପ ବାଧା ଲାଗିଛି ଉଚାଟ
ରାଏ ଚଳାଇ ଅଛନ୍ତି ଭୟଙ୍କର ଥାଟ ।
ଟମକ ନିଶାଣ ବାଜେ ବୀରତୂର୍ଯ୍ୟ ଧ୍ୱନ
ପାଦଭରେ କମ୍ପ ଅଛି ସକଳ ମେଦିନୀ ।
ସମଦଣ୍ଡ ଚଳାଇଣ ଆସି ଅଛି ବେଗେ
ସାତଦଣ୍ଡେ ମିଳ ଆସି ଯମୁନା ସଂଯୋଗେ ।
କାଳନ୍ଦୀ ପାର ହୋଇଣ ବନଗିରି ମାଡ଼
ସମ୍ଭ୍ରମେ ଯାଇ ମଥୁରାପୁର ଗଡ଼ ବେଢ଼ି ।
ମଗଧେଶ ଆଜ୍ଞା ଦେଲେ ରାଜାଗଣ ବୁହିଁ
ଏକମୁଖେ ଗଡ଼ଦ୍ୱାର ଲାଗ ତୁମେ ଯାଇ ।
ବୃହଦ୍ୱାରେ ଥାଟ ବାଣ୍ଟି କଲେ ସେ ପ୍ରସ୍ଥାଣ
ସିଂହଦ୍ୱାରେ ଆବୋରିଣ ରହେ ନୃପଗଣ ।
ସେ ଦ୍ୱାରେ ଚଉଶସ୍ର ରାଜାବଳ ଘେନ
ଛତିଶ କ୍ଷଉଣୀ ବଳ ଥାଟ ଯେ ପଲ୍ଟଣି ।
ଏକ ଏକ ରାଜାଙ୍କର ଦଶ ବଂଶକ୍ଷୌଣୀ
ଗଣନା ନ ଯାଇ ସିନ୍ଧୁ ଅକଳତ ଜାଣି ।
ଏକୋଇଶ ରାଜା ଯୁଆଙ୍କ ସଙ୍ଗରେ ମୁରାଟ
ବଂଶ ବିଂଶକ୍ଷୌଣୀ ଏକ ରାଜାଙ୍କର ଥାଟ ।
ପଶ୍ଚିମ ଦ୍ୱାରକୁ ଆବୋରିଲେ ମହାବଳ
ପ୍ରଚଣ୍ଡ ଦାବାନଳ କି ତେଜେ ଝଙ୍କରାଳ ।
ଛତିଶି କ୍ଷଉଣୀ ଘେନ ରାଜା ଶିଶୁପାଳ
ସେନ ପତିଏ ଆବୋରି ଦକ୍ଷିଣ ଯେ ଦ୍ୱାର ।
ରଥୀ ମହାରଥୀ ବୀର ଯୋଦ୍ଧା ଆଦିକରି
ଧାମନ୍ତି ଯେ ମୁଖ୍ୟମାନେ କରେ ଶସ୍ତ୍ର ଧରି ।
ଅନ୍ତର୍ଯ୍ୟାମୀ ନାରାୟଣ ସ୍ୱାମୀ ଲକ୍ଷ୍ମୀ ସାଇଁ
ବଳରାମଙ୍କୁ ବୋଇଲେ ଉତ୍ତରକୁ ଯାଇ ।

ଆପେ ଜରାସନ୍ଧ ତହିଁ ଅଛୁ ପରିଘାଇ
ସମର ଅସଂଖ୍ୟ ହେଲେ ଯିବ ପିଠିଦେଇ ।
ସୁରଥକୁ ବୋଲେ ତୁହି ପଦ୍ମଦ୍ୱାରେ ରହ
ବାଇଶି ସହସ୍ର ସେନ ବଇରସ୍ଥ ପୁଅ ।
ଜରାସନ୍ଧର ପୁରୁଷ ଶିଶୁପାଳ ପିତା
ମହାରଥୀଙ୍କ ସଙ୍ଗେ ସେ ଅଟଇ ଗଣିତା ।
ସଂଗ୍ରାମେ ନ ପାର ଯେବେ ଯିବ ଅପସର
ନଷ୍ଟେ ଯୁଦ୍ଧରେ ହାରିବେ ସେହୁ ଯେ କଇଶ ।
ଅନାଧୃଷ୍ଟ କୃତବର୍ମା ଅକ୍ରୂର ଏ ତିନ
ଏମାନେ ତୁମ ସଙ୍ଗରେ ଥିବେ ସୈନ୍ୟ ସେନ ।
ଗୋବିନ୍ଦ ଅଜ୍ଞା ପ୍ରମାଣେ ସୁନାସ କୁମର
କନ୍ତୁସୈନ୍ୟ ସେନ ଆବୋରିଲେ ପୂର୍ବଦ୍ୱାର ।
ଉଦ୍ଧବ ସହସ୍ରାଜିତ ଆବର ବଦୁର
ଏ ତିନଙ୍କୁ ପଠାଇଲେ ପଶ୍ଚିମ ଦୁଆର ।
ଶାଲ୍ୱରାଜ ଦନ୍ତବକ୍ତ୍ର ରୁକ୍ମଣ ସଙ୍ଗତେ
ଏକୋଇଶ ରାଜା ସେନ ଅଛନ୍ତି ସଙ୍ଗତେ ।
ତୁମେ ଯା ସଂଗ୍ରାମ କର ଏହାଙ୍କର ତୁଲେ
ପିଠି ଦେଇଣ ଆସିବ ଯୁଦ୍ଧେ ନ ପାରିଲେ ।
ସାତ୍ୟକି ବୋଇଲେ ଦେବ ତୁମ ପ୍ରସାଦରୁ
ସହସ୍ରେ ଇନ୍ଦ୍ର ହେଲେ ତ ଆମେ ଜିଣିପାରୁ ।
ତୁମେ ଯେବେ ଅନୁଗ୍ରହ କର ଦେବ ସ୍ୱୟେ
ଦେବାସୁରଙ୍କୁ ଆମ୍ଭର ନାହିଁ କିଛି ଭୟେ ।
ଶୁଣିଣ ପରମ ତୋଷ ହେଲେ ଦେବହରି
ଯାଦବ ସୈନ୍ୟ ବାଣ୍ଟିଲେ ଗୃହଦ୍ୱାର କରି ।
ଚୌରାଶୀ କୋଟି ଯାଦବ ସର୍ବେ ମହାରଥୀ
କ୍ଷଣକେ ଜିଣି ପାରନ୍ତି ଚରାଚର ପୃଥ୍ୱୀ ।
ବାସ୍ତର କୋଟି ଯାଦବ ତିନଦ୍ୱାର ଗଲେ
ଠାବ ଠାବ ହୋଇଣ ସେ ବାଣ୍ଟିଣ ରହିଲେ
ଶୁକ ବୋଇଲେ ହେ ଶୁଣ ପରୀକ୍ଷ ନୃପତି
ବିଷ୍ଣୁର ପୁରାଣ ଏହୁ ଅଟେ ପୁଣ୍ୟକୀର୍ତ୍ତି ।
ପବିତ୍ର ଗଙ୍ଗାଜଳ ଏ ଗ୍ରନ୍ଥ ପୁଣ୍ୟମୟେ
ଇତଂ ଦଶମ ଅଧ୍ୟା ଯେ ସମାପତ ହୁଏ ।
ଏଥୁ ଅନନ୍ତରେ ଜରାସନ୍ଧର ସଇନ
ସଂଗ୍ରାମ କରନ୍ତି କରେ ନାନା ଅସ୍ତ୍ର ଘେନ ।
ଦମଘୋଷ ନରପତି ପୂର୍ବଦ୍ୱାରେ ଥିଲେ
ରଥ ଆରୋହଣ ସୁବରାଜ ଯେ ମିଳିଲେ ।
ଝପର ଧନୁ ଧରିଛୁ ସେ କୁମରମଣି
ରୂପେ ପଟାନ୍ତର କୋଟି କନ୍ଦର୍ପକୁ ଜିଣି ।
ହିଂଶାଇନ୍ଦ୍ର ପ୍ରାପ୍ତେ ଦଶେ ସୁନାସର ବଳ
ସମସ୍ତେ ଗୋଡ଼ାଇଛନ୍ତି ତାହାଙ୍କର ପଛ ।
ପ୍ରବେଶ ମାତ୍ରକେ ଆବୋରିଲେ ସେହୁ ଦ୍ୱାର
ଦେଖିଣ ହସିଲ ଦମଘୋଷ ନୃପବର ।
ବୋଲେ ଉଗ୍ରସେନ ବଂଶ ତୁ ସୁନାସ ବଳା
ସବୁତାଙ୍କେ ନାଶିଯିବୁ ବେଗେ ଏଥୁ ପଳା ।
ଏ ଯଦୁ ଭୋଜବଂଶକୁ ଅଟୁ ତୁ କାରେଣି
ଅକୂଳ ସମୁଦ୍ରେ ଭେଳା ବୁଡ଼ାଉଛୁ ଆଣି ।
ଦେଖୁ ଦେଖୁ ଜଳନ୍ତା ଅନଳେ ଝସୁଅଛୁ
ସ୍ୱହସ୍ତେ କେମନ୍ତ ପୁଣ ବିଷ ତୁ ଖାଉଛୁ ।
ନ ଜାଣୁ କି ଜରାସନ୍ଧ ରାଜା ବଳ ତୁହି
ଜାଣି ଶୁଣି ତୁ ମୋ ଆଗେ ଯୁଝି କସ ପାଇଁ ।
ନବଦ୍ୱୀପ ସପ୍ତସିନ୍ଧୁ ଜିଣିଛି ସମରେ
ଛୟାଣୋଇ ସହସ୍ର ରାଜା ବନ୍ଦୀ ଯାର ଘରେ ।
ବାଣାସୁର ବଜ୍ରନାଭ ନାରକା ଶମ୍ବର
ଭାଇବନ୍ଧୁଗଣ ଛନ୍ତି ସଙ୍ଗତେ ଯାହାର ।
ସୃଷ୍ଟିଭଣ୍ଡା ଲକ୍ଷେରାଜା ଯହିଁ ହୋଇ ମେଳ
ଏଥେ କି କାର୍ଯ୍ୟ କରିବୁ ସାନ ଟୋକ ଭଳ ।
ପଶା ଶକଟା ନୂଆଇ ନୁହେ ଦ୍ୟୁତଖେଳ
ଆସିଲେ କୃତାନ୍ତଦେବ ଅସି ମୂଡ଼େ କାଳ ।
ପ୍ରତ୍ୟକ୍ଷରେ ଏହା ଦେଖି ନ କରୁ ତୁ ଭୟ
ତୋଠାରୁ ତୋହର ବଂଶ ହୋଇବଟି କ୍ଷୟ ।
ତୋ ପିତାର ଜ୍ୟେଷ୍ଠଭ୍ରାତା କଂସରାଜା ଥିଲା
ବିଶ୍ୱାସ ଘାତକେ କୃଷ୍ଣ ତାହାକୁ ମାଇଲା ।
ତହିଁ ନିମନ୍ତେ ଆସିଛୁ ଜରା ପରିଘାଇ
ଜାଣି ପାରିଲେ ତୁମର କାର୍ଯ୍ୟଅଟେ ଏହି ।
ଏଥିର ନିମନ୍ତେ ତୋର କମ୍ପାରେ ଅମର୍ଷ
କୁଳ ଏଠାରୁ ବୁଡ଼ିବ ଯିବୁ ତୁହି ନାଶ ।
ତୁ କେବେ ଜାଣିବୁ ଜରା ସମର ଆନ୍ଦୋଳ
ପିମ୍ପୁଡ଼ି ହସ୍ତୀହେମ କି ପଦଂକୁ ଟାଳ ।
ତୁ ମୋହର ବନ୍ଧୁ ପୁଣି ଅଟୁ ପ୍ରାଣସ୍ୱର
ମୋହରି ହାତେତ ତୋତେ ନୁହଇଟେ ମାର
ତୁ ଆନଲୋକ ଛାମୁରେ ଯେବେ ଚଢ଼ିଥାନ୍ତୁ
ଏତେବେଳ ଯାକେ କରେ ପ୍ରାଣ ପାଇଥାନ୍ତୁ ।

ଅକଳଙ୍କ ସାଗର ଏ ଜଗସନ୍ଧ ବଳ
ଛପ୍ୟାଣୋଇସନ୍ତ ସଜା ହୋଇଛନ୍ତି ଠୁଳ ।
ଏକ ସଜାଏ ଇନ୍ଦ୍ରଙ୍କୁ କରିପାରେ ନାଶ
କାହୁଁଚ ହୋଇ ତୋର ଏଡ଼େକ ସାହସ ।
ମୂଢ଼ପ୍ରାପ୍ତ ହଣି କଲୁ ଏ ସାହସ କର୍ମ
ଜାଣୁ ଜାଣୁ ଆମ୍ଭେ କେଉଁେ କରିବୁ ଅଧର୍ମ ।
ତୋ ପିଉସୀ ଦଇବକୀ ନାମରେ କ ମିଶା
ଆମ ପାଣ୍ଡବଂଶୀ ଶିଶୁପାଳର ଜନମା ।
ତୋହର ଦୋଷମାନ ସେ ନ ଜାଣିଲେ କିଛି
ପଛେ ଶୁଣିଣ କହିବେ ଆମଙ୍କୁ ସେ ବାଛି ।
କିଛି ନକହି ପଳା ଯା ଏଥି ପିଠି ଦେଇ
ନୋହିଲେ ଜଗିର ଆଗେ ସମର୍ପିବ ନେଇ ।
ଗ୍ରମକୃଷ୍ଣ ବଚନକୁ ଯାଉଛୁ ଭିଶ୍ୱାସ
ନାନାବିଧ ପ୍ରକାରେ ତୋତେ କରିବେ ସେନାଶ
ତୁ ନାଶ ଗଲେ ତାଙ୍କର ଖିଣ୍ଡି ଯିବ ଗୁଡ଼
ଅକଣ୍ଟକ ମଥୁରାକୁ ବସିବେ ସେ ମାଡ଼ ।
ଏମନ୍ତ ବାକ୍ୟ ସେ ଦମଘୋଷ ମୁଖୁ ଶୁଣି
କୋପେ କାଳାନଳ ମୂର୍ତ୍ତି ହୋଇ ଯଦୁମଣି ।
ଲଞ୍ଜ ମାଡ଼ୁ କାଳସର୍ପ ଯେସନେ ଗର୍ଜ୍ଜଇ
ତେସନେ ଶରଙ୍ଗ ଧନୁ ଧରି ଗୁଣ ଦେଇ ।
ବୋଲେ ମୋ ଗ୍ରମ୍ଭରେ କରୁ କମ୍ପା ଏଡ଼େଦର୍ପ
ଅର୍ଜ୍ଜିଲୁ ତୁ ବିଷ୍ଣୁ ନିନ୍ଦା କରି ମହାପାପ ।
ଆପଣା ମହିମା ଆପେ ବଖାଣ କ କରୁ
ନଷ୍ଟସ୍ତୁ ଜାଣିଲ ତୁରେ ଖାଉ ଖାଉ ମଲୁ ।
ତୁ କସ ମୋତେ ଅଧିକ କହୁଅଛୁ ଆଜ
ଅଥଳ ସମୁଦ୍ରେ କାର୍ଯ୍ୟ କାଠି ପୋଡ଼ ଖୋଜ ।
ଏକା ସୂର୍ଯ୍ୟ ଘୋଟିଛନ୍ତି ଏ ବ୍ରହ୍ମାଣ୍ଡଯାକ
ସବୁ ସାଗର ମନ୍ଥିଲା ଏକ ମନ୍ଦରେକ ।
ଏକା ଗରୁଡ଼ ସେ ପୁଣି ବିନତା ନନ୍ଦନ
ସ୍ୱର୍ଗ ମର୍ତ୍ତ୍ୟ ପାତାଳର ଧ୍ୱଂସି ନାଗଗଣ ।
ଏକା ଯାମିନୀ ସ୍ୱଚ୍ଛ ରଯାକ ଜାଣେ ଟି
ସର୍ବଭୂତ ବ୍ୟାପିଅଛୁ ଏକ ଆତ୍ମା ଗୋଟି ।
ଏକା ଦେଖ କାମଦେବ ଧନୁର୍ଦ୍ଧର ପଣେ
ଜିଣିଲା ସେ ସୁରଖାନ ସ କ ପୁଷ୍ପବାଣେ ।
ଏକାକୀ ବାସୁକୀ ଅଛି ଧରିଛି ଶଯ୍ୟକ
ଏକା ଇନ୍ଦ୍ର ବଜ୍ର ମାରି ଜିଣି ଗିରିମାଳ ।

ଏକା ମେରୁ ଆଶ୍ରେ ରହିଛନ୍ତି ସର୍ବଦେବା
ଏକା ଚନ୍ଦ୍ରକେ ସଂସାରଯାକ ହରଇ ଶୋଷ ।
ଏକା ସେ ନାଭି କମଳ ଜାତ ପରମେଷ୍ଠି
ଏକା ନିମିଷକେ ସର୍ଜି ଚରାଚର ସୃଷ୍ଟି ।
ଏକା ଅଗ୍ନି ଘୋଟିଅଛି ଦେଖ ସୃଷ୍ଟି ଯାକ
ଏକା ଗ୍ରମନାମେ ଯାଇ ବଇକୁଣ୍ଠ ଲୋକ ।
ଏକା ଜଳକୁ ସକଳ ଜନ ଗ୍ରାସକର
ଏକା ପୃଥ୍ୱୀ ଚରାଚର ପ୍ରାଣି ଅଛି ଧରି ।
ଏକା ପବନ ସବୁରି ଅଙ୍ଗେ ଦେଖ ଲାଗି
ଏକା ବ୍ରହ୍ମଜ୍ଞାନ ସାଧି ଶିବ ମହାଯୋଗୀ ।
ଏକା ଆକାଶ ହୃଦଇ ଦେଖ ବିଶ୍ୱମୟ
ଏକା ବାସୁଦେବ ତେଲ୍ଲେ ସବୁ କରି କ୍ଷୟ ।
ଏକାକୀ ହୋଇ ଦେବକୀ ଗର୍ଭେ ଅବତରି
ଅବଶ୍ୟ ଦ୍ୱାପର ଭାର ହରିବେ ସେ ହରି ।
ସଜ୍ଜନ ପାଳି ଦୁର୍ଜ୍ଜନ କରିବେ ବିନାଶ
କୁଟ କପଟିଆ ହରି ସେହି ଜଗଦୀଶ ।
ତୁ ମୋର ବଚନ ଏବେ ଶୁଣ ଦମଘୋଷ
ପାଇବୁ କାରଣ ଯେବେ ଶରଣ ଯା ପଶ ।
ଲେଉଟାଇ ନିଅ ଯାଉ ଜଗସନ୍ଧ ହାସି
ନୋହିଲେ ଶରଣ ପଶୁ ପାଦପଦ୍ମେ ଆସି ।
ଶୁଭାଶୁଭ କର୍ମ ଯେତୁ କରିପାରେ ଆନ
ବଇଶ ହୋଇ ବଞ୍ଚିବ କହ କେତେ ଦିନ ।
କାଳସର୍ପ ମୁଖେ ହସ୍ତ ଭରି କମ୍ପା ଖେଳ
କୃଷ୍ଣର ବଇରି ହେଲେ ପୂରିବଟି କାଳ ।
ଏତେ ବୋଲି ଧନୁ ଧରି ଟେକ ବାମ କରେ
ତୀକ୍ଷଣ ମୁନା ବାଣ ଏକ ଧରି ରୋଷଭରେ ।
ମନ୍ତ୍ରିଣ ସେ ବାଣଗୋଟା କର୍ଣ୍ଣଯାଏ ଟାଣି
ହୁଁକାର ଶବଦ କରି ପେଷେ ଗୁଣମଣି ।
ପୁଣ ବେଳସନ୍ତ ବାଣ ପୂରଇ ବାବଲ
ଅଭିମନ୍ତ୍ରିଣ କରଣ ପେଷେ ମହାମଲ୍ଲ ।
କଙ୍କପକ୍ଷ ତୀକ୍ଷଣ ମୁନା ଛନବାଣ ଧରି
ସଇନ୍ୟଙ୍କ ଉପରକୁ ପେଷେ ରୋଷଭରି ।
ପୁଣି ଅଧାଚନ୍ଦ୍ର ବାଣ ଯେଷଇ ସେ ବେଗେ
ମନ୍ତ୍ର ସୁମରି ପେଷଇ ଅସ୍ତ୍ର ବେପେ ବେଗେ ।
ଯାର ସୁନାକସୁତ ଯାର ଅନର୍ଗଳା
ପ୍ରତ୍ୟେକେ ପାଇଅଛି ସେ ବିଷ୍ଣୁ ନିଜ କଳା ।

ଚକ୍ଷୁ ପିଛଡ଼ା ମାତ୍ରକେ ମାରେ ସପ୍ତବାଣ
ଦକ୍ଷିଣ ଭାଗ ସୈନ୍ୟକୁ ପେଷିଲା ତକ୍ଷଣ ।
ପଞ୍ଚାଶ ସହସ୍ର ବାଣ ବାମଭାଗେ ପେଷି
ଦଶବଂଶ ଘୋଡା ଏକା ବାଣକରେ ନାଶି ।
ବାଣ ପଡ଼ ବଳ ରଥଗଜ ମଣ୍ଡ ଲେଟି
ଆବର ଯାଦବମାନେ ମାରି ଲକ୍ଷ କୋଟି ।
ଦମଘୋଷ ନୃପ ଦେଖି କାତର ହୋଇଲା
ଧନ୍ୟ ଯାଦବ ବୋଲିଣ ବହୁ ପ୍ରଶଂସିଲା ।
ମୋହର ସଙ୍ଗେ ସଂଗ୍ରାମେ ତୋର ପରତାପ
ଚମତ୍କାର ପ୍ରଚ୍ଛନ୍ନ ମାରି ଶତେବଳ ।
ପ୍ରଥମରେ ଅଣ୍ଡାଅଣ୍ଡି କଲଣି ତ ଆଣି
ଆବର ଏହାକୁ ମୁହିଁ ପାରିବି କ ଜାଣି ।
ଏତେ ବଚନ ଧଇଲା ଧନୁ ବାମଭୁଜେ
ଅଭିମନ୍ତ୍ରଣ କରିଣ ପେଷିଲା ନାରଚେ ।
ସୁନାସ ପୁତ୍ର ତାହାକୁ ଦେଖି ଦୂରେ ଥାଇ
କାଟିଲା ପଞ୍ଚଶରରେ ତା ଦେଲାକ ଉଡ଼ାଇ ।
ପୁଣି ଦମଘୋଷ ରାଜା ଗୁଣ ଟଙ୍କାରିଲା
ବେଳକେ ତିନସହସ୍ର ନାରାଚ ପେଷିଲା ।
ଆବର ଶାରଙ୍ଗ ଲୋହ ଶର ଲୋହ କାନ୍ତ
ପେଷିଲା ପାଞ୍ଚସହସ୍ର ଶର ନରପତି ।
ବାଣ ଆସନ୍ତେ କୁମର ଦେଲା ଚହ୍ନି ଦୃଷ୍ଟି
ପାଶୁପତ ନାରାଚରେ ପକାଇଲା କାଟି ।
ଦେଖି ଦମଘୋଷ ରାଜା ହେଲା କୋପାନଳ
ମହାମେଘ ପରାଯେ ସେ ଗର୍ଜେ ଅନ୍ତରାଳ ।
ପର୍ବତ ଶର ପେଷିଲେ ସେ ଯେ ନୃପଶ୍ରେଷ୍ଠି
ବଜ୍ରଶରରେ ସୁନାସନନ୍ଦନ ତା କାଟି ।
ଲୁବ୍ଧକ ବାଣ ପେଷିଲେ ଦମଘୋଷ ରାୟେ
ଅନ୍ଧକାର ହେଲା ପୃଥ୍ୱୀ କ୍ଷଣେ ଧୂମମୟେ ।
ଏକକୁ ଆରେକ ଦେଖା ନ ଗଲେ ଯେ କେହି
ଆପଣାକୁ ଉହାଡ଼ ଯେ ହେଲା ନିଜ ଦେହି ।
ସୂର୍ଯ୍ୟାବର୍ତ୍ତ ଶର ପେଷି ସୁନାସ କୁମର
ଫିଟିଲା ଅନ୍ଧପଟଳ କ୍ଷଣେ ଦିବାକର ।
ଦେଖି ଦମଘୋଷ ରାଜା ବଳକ୍ଷୀଣ ହୋଇ
ପନ୍ନଗ ଅସ୍ତ୍ର ପେଷିଲେ ରଣେ ପରିଘାଇ ।
ଉଡ଼ନ୍ତି ସେ କାଳସର୍ପେ ଗଗନ ମଣ୍ଡଳେ
ଲହ ଲହ ଜିହ୍ୱା ବୁଲବନ୍ତି ଅନ୍ତରାଳେ ।
ଫୁଁ ଫୁଁ କାର ଗର୍ଜିଣ ଉଭା କରି ଫଣା
ଜଳଧାରା ପରାଯେକ ଯାଆନ୍ତି ସେ ଜଣା ।
ନିକଟେ ଦେଖିଣ ତାହା ଇନ୍ଦ୍ରମଣ୍ଡ ନାତି
ଗରୁଡ଼ ଅସ୍ତ୍ରକୁ ଗୁଣେ ବସାଇ ତଡ଼ିତ ।
ବାହାନାଦ କରି ବାଣ ଉଦ୍ଧେମନ୍ତ ପଢ଼ି
ଦେଖିକରି ସର୍ପମାନେ ଶୂନ୍ୟେ ଗଲେ ଉଡ଼ି ।
ପୁନରପି ଦମଘୋଷ ମେଘାସ୍ତ୍ରକୁ ବାଛି
ସୁନାସ ନନ୍ଦନ ବରୁଣାସ୍ତ୍ରେ ତାହା ଛେଦି ।
ବେଳକୁ ବେଳ ସମର ବଢ଼େ ମହାବଳୀ
ଦେଖି ଦମଘୋଷ ରାଜା କୋପେ ପରଜଳି ।
ମହାମେଘ ପରକାରେ ଗର୍ଜେ ରୋଷଭରେ
ଧନୁ ଛାଡ଼ି ବ୍ରହ୍ମଶକ୍ତି ଧରି ନିଜ କରେ ।
ଜାଜ୍ୱଲ୍ୟ ଜ୍ୟୋତି ଯେସନେ ବହ୍ନି ଶିଖା ଦିଶି
ବିଜୁଳି ତେଜ ପରାଯେ ଦୂରକୁ ପ୍ରକାଶି ।
ଦକ୍ଷିଣ ହସ୍ତରେ ଶକ୍ତି ଧରି ଊର୍ଦ୍ଧ୍ୱ ମାର୍ଗେ
ସମ୍ଭାଳ ସୁରଥ ବୋଲି ମାଇଲେକ ରାଗେ ।
ଶିବ ସେବି ପାଇଥିଲା ଦମଘୋଷ ରାୟେ
ଗଣ ଗନ୍ଧର୍ବ ଦେବତା କଲେ ଦେଖି ଭୟେ ।
ହସ୍ତରୁ ଫିଟନ୍ତେ ଧରି ଲକ୍ଷେକ ମୂରତି
ଦକ୍ଷପ୍ରଜାପତି ଯଜ୍ଞୁ ସେ ଶକ୍ତି ଉତ୍ପତ୍ତି ।
ଅନେକ ଦିନୁ ସେ ଶର ଯତ୍ନେ ରଖିଥିଲେ
ତପ ତୋଷହୋଇ ଦମଘୋଷ କରେଦେଲେ
ଦମଘୋଷ ସୁରଥକୁ ନ ପାରନ୍ତେ ଜିଣି
ଅମୋଘ ବ୍ରହ୍ମଶକତି ପ୍ରହାରିଲା ଆଣି ।
ନିଃଶ୍ୱାସ ମାତ୍ରକେ ଶର ଶୂନ୍ୟେ ଗଲା ଘୋଟି
ଏକୁ ଅନେକ ପ୍ରକାରେ ରୂପ ଧରି କୋଟି ।
ଦେଖିକରି ସୁରଥ ଯେ ହେଲା କୋପଭର
ନାରାୟଣ ଶର କାଢ଼ି ଧଇଲାକ କର ।
ଧନୁର୍ବେଦ ପଢ଼ି ଗୁଣେ ବସାଇଲେ ଆଣି
ତକ୍ଷଣେ ପେଷିଲେ ତାହା କର୍ଣ୍ଣଯାଏ ଟାଣି ।
ଦମଘୋଷ ଶକ୍ତି ଅନ୍ତରୀକ୍ଷେ ଆସୁଥିଲା
ସୁରଥ ଶର ଯାଇଣ ତାହାକୁ ଭେଟିଲା ।
ବାଣେ ବାଣେ ଆକାଶରେ ହେଲେ ପରିତାପ
ଘୋଟିଲା କ କ କ ନଳ ବହ୍ନି ଅନ୍ତରାଳ ।
ଦୁର୍ଜ୍ଜୟ ଶକତି ଯେଉଁ ନିର୍ଘାତରେ ଉଡ଼ି
ଉଲ୍‌କାପାତ ପରାଯେକ ହେଲା ଘଡ଼ଘଡ଼ି ।

ଦେଖିଣ ଶଙ୍କା ପାଇଲେ ସର୍ବ ନୃପମଣି
ବୋଇଲେ କିଂଭୂତ ଅଟେ ଆକାଶର ବାଣୀ ।
ଶୁଣ ହୋ ପରୀକ୍ଷ ରାଜା କହନ୍ତି ଶୁକଯତି
ଦେଖି ଦମଘୋଷ ଲଜ୍ଜା ପାଇଲେକ ଅତି ।
ବାଆଷଠି ଭାର ଗଦା ଘେନି ନିଜ କରେ
ରଥର ଉପରୁ ଡେଇଁ ପଡ଼ି ଧାଡିକାରେ ।
ଉଡ଼ନ୍ତା ପର୍ବତ ଜାଣି ଦିଶେ ତାର କାୟେ
ବେଷରେ ଗଜ ଧାମଇ କେଶରୀ ପରାୟେ ।
ଦେଖିକରି ସୁରଥ ଯେ ହାକୋଡ଼ାସ୍ତ୍ର ମାରି
ତତ୍ପରେ ପଡ଼ିଲା ଦମଘୋଷ ଦଣ୍ଡଧାରୀ ।
ଅର୍ଦ୍ଧଘଡ଼ି ପରିଯନ୍ତେ ମୂର୍ଚ୍ଛିତ ସେ ହୋଇ
ସୈନ୍ୟମାନେ ଦେଖି ହସିଲେକ ତାଳି ଦେଇ ।
ଦମଘୋଷ ଲଜ୍ଜା ପାଇ ପାଦଗତି ହୋଇ
ସୈନ୍ୟ ଭିତରେ ପଶିଲା ମୁହଁକୁ ଲୁଚାଇ ।
ବାଇଶି ସହସ୍ର ରାଜା ଆତଙ୍କ ହୋଇଲେ
ସେନାପତି ହାରିଯାନ୍ତେ ସର୍ବେ ଭୟ କଲେ ।
ଛତ୍ରଭଙ୍ଗ ହୋଇକରି ଗଲେ ସେ ସକଳ
ଗୋଡ଼ାଇ ଯାଦବେ ହକାଣିଲେ ବହୁବଳ ।
ଏଥୁ ଅନନ୍ତରେ ପୁଣି ଶୁକମୁନି ଭଣି
ଶୁଣ ପରୀକ୍ଷ ନୃପତି ସୁଧାରସ ବାଣୀ ।
ରୁକ୍ମିଣ ଦନ୍ତବକ୍ର ଯେ ଶାଲ୍ୱରାଜା ତିନି
ପଶ୍ଚିମ ଦ୍ୱାରେ ଲାଗିଲେ ବହୁସୈନ୍ୟ ଘେନି ।
ଏକୋଇଶସସ୍ର ରାଜା ସମରେ ମୁରାଟ
ଦଶହଂଶ ପଚିଶ ଯେ ଭୟଙ୍କର ଥାଟ ।
ଏକମୁଖରେ ସମସ୍ତେ ଗଡ଼ଦ୍ୱାରେ ଯାଇ
କବାଟ ଭାଙ୍ଗି ଭିତରେ ପଶିଲେ ଝସାଇ ।
ସାତ୍ୟକି ସହସାଜିତ ପ୍ରସ୍ନାଜିତ ଆର
ଅନେକ ଯାଦବେ ଛନ୍ତି ଏହାଙ୍କ ସଙ୍ଗର ।
ଜରାସନ୍ଧ ରାଜାଥାଟ ପେଲି ଆସୁଥିଲେ
ତିନି ମହାରଥୀ ଯାଇ ତାଙ୍କୁ ଓଗାଳିଲେ ।
ବନ୍ଧ ବାନ୍ଧିଲେ ଯେସନେ ରହେ ମହାଜଳ
ତେସନ ହୋଇ ରହିଲେ ସେ ଦଣ୍ଡ ସକଳ ।
ଶାଲ୍ୱରାଜା ଅଗ୍ରେ ଯାଇ ସତ୍ରାଜିତ ମିଳି
ପ୍ରସେନଜିତ ରୁକ୍ମିଣ ରାଜାଙ୍କୁ ଓଗାଳି ।
ସାତ୍ୟକି ଦନ୍ତବକ୍ର ଏ ହେଲେ ଭେଟାଭେଟି
ଆଧାନ ସନ୍ଧାନ ଧନୁ କରି ଗୁଣମୁଷ୍ଟି ।

ଏକୋଇଶ ସସ୍ର ରାଜା ୟାଙ୍କ ସଙ୍ଗେ ଥିଲେ
ଯେଝା ଅନୁକ୍ରମେ ବେଢ଼ି ସମର କରିଲେ ।
ରଥୀମାନେ ରଥ ଆବୋରିଲେ ରଣରଙ୍ଗେ
ଗଜେ ଚଉଦନ୍ତ କଲେ ରାଜାଙ୍କର ସଙ୍ଗେ ।
ଅଶ୍ୱେ ଅଶ୍ୱଙ୍କ ସଙ୍ଗରେ ହେଲେ ଭେଟାଭେଟି
ଭୂଭାଗେ ପଦାତି ରହିଲେକ ଦଶକୋଟି ।
କୋଦଣ୍ଡ କାଣ୍ଡ ଖଣ୍ଡା ଯେ ଶରେ ପରିଚାଳ
ଦେହେ ଦେହ ଲାଗି ବାଜିଲେକ ମହାଗୋଳ ।
ତ୍ରିଶୂଳ ଚକ୍ର ନାରାଚ ଛୁଟିକଣି ବର୍ଚ୍ଛିନା
ତୋମର ଲଙ୍କିଆ କୁନ୍ତ ଯେ ଶମ୍ଭୁ ଯଷ୍ଟି ନାନା ।
ଅନେକ ପ୍ରକାରେ ଶସ୍ତ୍ର ଚଳେ କୋଟି କୋଟି
ଘୁମାଇ ପଡ଼ିଲେ ଘାରେ ମସ୍ତିପୁଚ୍ଛେ ଲେଟି ।
କାହାର ଚରଣ ଛିଣ୍ଡେ କାର ମୁଣ୍ଡେ ମୁଣ୍ଡ
ଅଣ୍ଠୁ ଠାରୁ କାହାର ଯେ ହେଲା ବେନିଖଣ୍ଡ ।
କାହାର ମୂର୍ଦ୍ଧନା ଫାଟେ କାର ଛୁଟେ ପ୍ରାଣ
ଲକ୍ଷେକୋଟି ମଡ଼ା ଗଦା ପର୍ବତ ସମାନ ।
ବହିଲା ଶୋଣିତ ନଦୀ ସେ ରଣ ମଣ୍ଡଳେ
ଶ୍ମଶାନବାସିମା କ୍ରୀଡ଼ା କଲେ କୁତୂହଳେ ।
ତେତିଶିକୋଟି ଯାଦବେ ସକଳ ଅକ୍ଷୟେ
ଆପଣା ତେଜେ ଦିଶନ୍ତି ଦେବତା ପରାୟେ ।
ଏଥୁଅନ୍ତେ ଜାଣ ଶାଲ୍ୱରାଜାର ସମ୍ମୁଖର
ସହସ୍ରାଜିତ ମିଳିଲା ଅତି ବେଷଭରେ ।
ପଞ୍ଚଶ ସହସ୍ର ବଳ ଧନୁଧର କରେ
ତିନିସସ୍ର ବାଣ ବିନ୍ଧିଲେକ କୋପଭରେ ।
ଦୂରେ ଥାଇ ଶାଲ୍ୱ ଦେଖିଲେକ ବାଣ ଆସୁଁ
ଧାଡିକାରେ ପେଷିଲାସେ ଶର ଫକ୍ଷେଣ ପଶୁଁ ।
ଅଧବାଟେ ଦୁଇବାଣ ହେଲେ ଭେଟାଭେଟି
ସତ୍ରାଜିତ ବାଣସବୁ ପକାଇଲା କାଟି ।
ଦେଖି ସତ୍ରାଜିତ ଶେଷେ ସସ୍ରବାଣ ଘେନି
ତା ପଛେ ପୁଣି ପେଶଇ ପ୍ରଚଣ୍ଡ ବହନି ।
ପୁଣି ସସ୍ରବାଣ ପେଷିଲେକ ଫକ୍ଷେଣ ମୁନା
ସେ ବାଣେ କାଟିଲେ ପଡ଼ି ଶାଲ୍ୱରାଜା ସେହ୍ନା
କଚ୍ଛୁଷ ପଞ୍ଚଶସସ୍ର ପେଷିଲେକ ପୁଣି
ଶାଲ୍ୱରାଜା ହସ୍ତୁଁ ଧନୁ ପକାଇଲା ହାଣି ।
ପୁଣି ସସ୍ରେବାଣ ପେଷିଲେକ ମନଭେଦୀ
ସାରଥି ଅଶ୍ୱଙ୍କ ଶିର ପକାଇଲା ଛେଦି ।

ବିରଥୀ ହୋଇଲା ଯହୁଁ ଶାଲ୍ୱ ମହାବୀର
ବାହାସ୍ଫୋଟ ମାରି ଗଦା ଘେନେ ବାମକର ।
ରଥ ଉପରୁ ଡେଇଁଣ ପଡ଼େ ଧାଡିକାରେ
ଊର୍ଦ୍ଧ୍ୱେ ଭ୍ରମି ଗଦା ମାଇଲାକ ବେଗଭରେ ।
ଦେଖିକରି ସତ୍ରାଜିତ ପରିଘେକ ଧରି
ଛେଦି ପକାଇଲା ଗଦା ବେନଖଣ୍ଡ କରି ।
ସଂଗ୍ରାମରେ ଅଜେୟ ଯେ ସତ୍ରାଜିତ ବୀର
ଇନ୍ଦ୍ର ଦେବ ପରାୟେକ ଅଟେ ଧନୁର୍ଦ୍ଧର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ହେଳେ ପାରେ ଜିଣି
ପ୍ରସନ୍ନେ ବର ତାହାକୁ ଦେଲେ ଦିନମଣି ।
ହାବୋଡା ସହସ୍ରେ ବାଣ ପୁଣି ବେନ କରେ
ବାହାଦଣ୍ଡ ପରିଯନ୍ତେ ଓଟାରି ବେଗରେ ।
ଯେସନ୍ତେ ଶାଲ୍ୱର ବକ୍ଷେ ଯାଇ ବାଣ ପଡ଼ି
ମୂର୍ଚ୍ଛାଗତ ହୋଇ ରାଜା ପଡ଼େ ମୁହଁମାଡ଼ି ।
ଉହାଡ଼ରେ ଦେଖୁଥିଲେ ସର୍ବ ରାଜାମାନେ
ଅବଶେଷେ ଆବୋରିଲେ ରଣ ତତକ୍ଷଣେ ।
ଶୁକବ୍ରହ୍ମା ବୋଇଲେକ ଶୁଣ ଦଣ୍ଡଧର
ରୁକଣ ପ୍ରସନ୍ନାଜିତ ରଣ ମହାଘୋର ।
ଦୁହେ ମହାରଥୀ ସଂଗ୍ରାମରେ ଅନର୍ଗଳ
ଐରାବତ ଭେଟିଲା କି ମନ୍ଦର ଅଚଳ ।
ପ୍ରସନ୍ନ ଜିତକୁ ଗର୍ଜ୍ଜି ରୁକ୍ମଣ ବୋଇଲା
ଆରେ କାଳ ଆସି ତୋତେ ନିଶ୍ଚୟ ଘୋଟିଲା
ନ ଜାଣୁ କି ଜରାସନ୍ଧ ରାଜା ବୀରପଣ
ତାହାର ସମ୍ମୁରେ କାସ କରିବୁ ତୁ ରଣ ।
ଆପଣା ଗଳେ ଲଗାଉ ଆଣି କାଳଫାଶି
ସଗୋଷ୍ଠ ସହିତେ ତୋତେ ପକାଇବୁ ନାଶି ।
ଏତେବୋଲି ଧନୁ ଧଇଲାକ ବାମକରେ
ଧନୁର୍ବେଦ ସ୍ମରି ବାଣ ଗୁଡ଼ିଲା ବେଗରେ ।
ଉଡ଼ି ଶରମାନେ ଘୋଟିଲେକ ଶୂନ୍ୟମାର୍ଗେ
ଦେବତାଏ କମ୍ପିଲେକ ଥାଇଣ ସ୍ୱରଗେ ।
ବାଣ ଆସନ୍ତେ ନୟନେ ପ୍ରସନ୍ନାଜିତ ଦେଖି
ଲୁହା ନାରାଚ ଶତେକ ବିନ୍ଧେ କଙ୍କପକ୍ଷୀ ।
ଶୂନ୍ୟ ମଣ୍ଡଳରେ ବାଣ ଆସୁଥିଲେ ଘୋଟି
ବେନି ଖଣ୍ଡ କରି ସବୁ ପକାଇଲା କାଟି ।
ପୁନରପି ବାଣମାନ ଯେତେ ଧରି କରେ
ରଥୀକୁ ଷାଠିଏ ଅଶୀ ରଥର ଉପରେ ।
ତକକୁ କୋଡ଼ିଏ ପୁଣି ଅଶ୍ୱକୁ ପନ୍ଦର
ସେନାକୁ ପଞ୍ଚାଶ ଶର ବିନ୍ଧେ ମହାବୀର ।
ପୁନରପି ପଞ୍ଚବାଣ ଧରି ନିଜ କରେ
ବେଗଭରେ ପେଷଇ ସେ ସୈନ୍ୟଙ୍କ ଉପରେ ।
ପଡ଼ିଲେକ ସୈନ୍ୟବଳ ସର୍ବେ ମଥା ଲୋଟି
ଏକାବାଣେ ଦଶବଂଶ ପକାଇଲା କାଟି ।
ଘାଏଣ ରୁକ୍ମଣ ବୀର ହୋଇଲା ବିରଥି
ପ୍ରାଣ ବିକଳେ ପଳାଏ ପାଇ ଲଜ୍ଜା ଅତି ।
ଯେ ସମୟେ ବଳଦେବ ଦେଖିଣ ତାହାକୁ
ହାତ ଧରି ଟେକଦେଲା ରଥ ଉପରକୁ ।
ଭୟ ପାଇ ଦୁଇବୀରେ ରଣେ ପିଠିଦେଇ
ନିଜସୈନ୍ୟ ମଧ୍ୟେ ଗଲେ ରଥଲେଉଟାଇ ।
ଦେଖିଣ ସାତ୍ୟକି ଧନୁ ଥୋଇ ରଥେ ବସି
ଭାଳିଲେ ଏହାକୁ ବଧ କଲେ ହେବା ଦୋଷୀ
ସଂଗ୍ରାମ କରନ୍ତେ ଯାର ଧନୁଗୁଣ ଛିଡ଼ି
ତାହାକୁ ମାଇଲେ କ୍ଷତ୍ରୀ ନରକରେ ପଡ଼ି ।
ସଂଗ୍ରାମ କରନ୍ତେ ଯାର ରଥ ହୁଏ ଭଗ୍ନ
ତାକୁ ବଧ କଲେ ନାଶଯାଏ ସର୍ବ ଧର୍ମ ।
ସଂଗ୍ରାମେ ଯାହାର କେଶବାସ ଯାଏ ଫିଟି
ତାକୁ ନାଶ କଲେ ନିଶ୍ଚେ ଆୟୁଯାଏ ତୁଟି ।
ସଂଗ୍ରାମ ସମୟେ ଯାର ନ ଥାଇଟି ଜ୍ଞାନ
ତାକୁ ବଧ କଲେ ହୁଏ ପାପ ବର୍ଦ୍ଧମାନ ।
ସଂଗ୍ରାମରୁ ପିଠି ଦେଇ ପଳାଏ ଯେ ଲୋକ
ତାକୁ ଯେ ମାରଇ ସେହୁ ଭୁଞ୍ଜଇ ନରକ ।
ଏତେ ବିଚାରି ସାତ୍ୟକି ଗୁଡ଼ିଲେ ସମର
ଶୁକମୁନି ବୋଲନ୍ତି ଯେ ଶୁଣ ନୃପବର ।
ଏଥୁ ଅନନ୍ତରେ ତର୍ଜ୍ଜି ଜଗନ୍ନାଥ ସ୍ୱାମୀ
ଦକ୍ଷିଣ ଦ୍ୱାର ଆବୋରି ଥିଲେ ଅନ୍ତର୍ଯ୍ୟାମୀ ।
ଗଡ଼ଦ୍ୱାର ଆବୋରିଛି ଶିଶୁପାଳ ବୀର
ଦୁର୍ଯ୍ୟୋଧନ ଆଦିକରି ଥୋକେ ନୃପବର ।
ବାଣାସୁର ବଜ୍ରନାଭ ଶମ୍ବର ନାରକା
ରାଇବନ୍ଧୁ ଆଦି ଯେତେ ଜରାସନ୍ଧ ସଖା ।
କର୍ଣ୍ଣ ଅଶ୍ୱତ୍ଥମା ଭୂରିଶ୍ରବା ଆଦିକରି
ରଥୀ ମହାରଥୀ ଛନ୍ତି ଅସ୍ତ୍ର ଶସ୍ତ୍ର ଧରି ।
ତା ଦେଖି ଅର୍ଜ୍ଜୁନ ଭୁଜ ଧରି ଦେବରାୟ
ଗଡ଼ଦ୍ୱାର ଅଟ୍ଟାଳିରେ କଲେକ ବିଜୟ ।

ଏକାଳେ ମିଳନ୍ତ ଚହିଁ ଆସି ଜରସନ୍ଧ
ଦେଖି କୃଷ୍ଣାର୍ଜୁନ ଦୁହେଁ ହୋଇଲେ ଆନନ୍ଦ ।
ଶିଶୁପାଳ ପୁତ୍ର ତାର ଅଟେ ସେନାପତି
ପଛରେ ଗୋଡ଼ାଇଛନ୍ତି ଅନେକ ନୃପତି ।
ତେଇଶ ଅକ୍ଷଉଣୀ ଥାଟ ଅଙ୍କବଳ ଯେତେ
ଏକ ଏକ କରି ତାହା କହିବଇଁ କେତେ ।
ଉଦ୍ଦଣ୍ଡ ଧବଳ ଛତ୍ର ଲକ୍ଷେକ ଚାମର
ରଥଧ୍ୱଜେ ଶାରବାନା ଉଡ଼େ ଫରଫର ।
ବାଜଇ ବିବିଧ ବାଜା ଶବ୍ଦ ଗରୁଟାଣ
ପୃଥ୍ୱୀଦେବୀ କମ୍ପଇ ସେ ଟଙ୍କାରନ୍ତେ ଗୁଣ ।
ଏସନ ସଞ୍ଜାତେ ଆସି ମିଳେ ବହୁ ଶେଷ
ସକଳଙ୍କୁ ଆଜ୍ଞାହେଲା ଦ୍ୱାର ଭାଙ୍ଗି ପଶ ।
ରାଜା ଆଜ୍ଞାପାଇ ଥାଟ ପଶିଲେ ଧସାଇ
ଦୁଆର ଭାଙ୍ଗି ଭିତରେ ପ୍ରବେଶିଲେ ଯାଇ ।
ଗଜଦନ୍ତ ଲଗାଇଣ ଉପାଡ଼ିଲେ କାଠ
ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ିଲା କବାଟ ।
ପିମ୍ପୁଡ଼ି ଧାଡ଼ି ପରାପ୍ତେ ପଶି ସୈନ୍ୟବଳ
ପଶିଲେ ପ୍ରଳୟକାଳେ ଯେସନେ ସିନ୍ଧୁଜଳ ।
ଦେଖିଣ ଯାଦବ ବୀରେ ମହାଭୟ କରି
ଦ୍ୱାର ଗୁଡ଼ି ପଳାଇଣ ଗଲେ ଅପସରି ।
କେତେମାନେ ଶ୍ରୀକୃଷ୍ଣଙ୍କୁ ଆଶ୍ରା କଲେ ଯାଇ
ଥୋକାଏ ବଣ୍ଡା ଅବୋର ରହିଛନ୍ତି ଚହିଁ ।
ଅପୂର୍ବ ରଥରେ ବସି ଶିଶୁପାଳ ବୀର
ଦିଶି ଯମପ୍ରାୟ ଦିଶେ ମହାଭୟଙ୍କର ।
ପଞ୍ଚାଶ ସହସ୍ର ବଳ ଧନୁ ଧରି କରେ
ଦଶସସ୍ର ବାଣ ସନ୍ଧି ରଖିଛି ଚହିଁରେ ।
ରଥୀ ମହାରଥୀ ହସ୍ତୀ ଅଶ୍ୱଆଦି କରି
ଅନେକ ରାଜା ଅଛନ୍ତି ଚଉପାଶେ ଘେରି ।
ଦେବ ଦୈତ୍ୟ ହେଉ ତାର ଭୟ ନାହିଁ କଛୁ
ଈଶ୍ୱରଙ୍କୁ ସେବାକରି ବର ପାଇଅଛୁ ।
କୋଟିଏ ସିଂହର ବଳ ବହିଅଛୁ ଅଙ୍ଗେ
ସମଗ୍ର ପୃଥିବୀ ଜିଣିପାରେ ରଣରଙ୍ଗେ ।
ଥାଟ ଘେନ ଭିତରକୁ ପଶିଲା ଧସାଇ
ଜଗନ୍ନାଥେ ଦେଖୁଛନ୍ତି ଅଟ୍ଟାଳରେ ଥାଇ ।
ଅଶେଷ କୋଟି ଜଗତ ପ୍ରାଣୀଙ୍କର ବନ୍ଧୁ
ଅପାର ମହିମା ନାଥ କୃପାଜଳ ସିନ୍ଧୁ ।

ଭାବେ ଅଭାବେ ସେ ସବୁଠାରେ ଅଛି ପୂରି
ଏକରୁ ଅନେକ ରୂପେ ବ୍ରହ୍ମାଣ୍ଡେ ଆବୋରି ।
ଅର୍ଜୁନ କରକୁ କରେ ଧରି ଅନ୍ତର୍ଯ୍ୟାମୀ
ଅଟ୍ଟାଳ ଉପରେ ସୈନ୍ୟ ଦେଖୁଛନ୍ତି ସ୍ୱାମୀ ।
ଶୁକ ବୋଲନ୍ତି ସେ ଶୁଣ ପରୀକ୍ଷ ନୃପତି
ଏଥ ଅନନ୍ତରେ କଥା ହେଲା ଯେଉଁ ରୀତି ।
ସୁଧର୍ମା ସଭାରେ ବସି ଦେବଗଣ ସଙ୍ଗେ
ବୃହସ୍ପତି ଜଣାଇଲେ ଇନ୍ଦ୍ରଙ୍କର ଆଗେ ।
ସାବଧାନ ହୋଇ ତୁମ୍ଭେ ଶୁଣ ଶଚୀସାଇଁ
ସମଦଣ୍ଡ ଘେନ ଜରାସନ୍ଧ ଅଛି ବାହି ।
ଛୟାଣୋଇ ସହସ୍ର ରାଜା ତା ସଙ୍ଗେ ଅଛନ୍ତି
ଲକ୍ଷେପୁର କରି ମଥୁରାକୁ ବେଢ଼ିଛନ୍ତି ।
ରଥ ରଥୀ ଅଶ୍ୱ ଗଜ ପଦାତି ବଳରେ
ଚାରିଦ୍ୱାରେ ଲାଗିଛନ୍ତି ଅତି ନଘଞ୍ଚରେ ।
କେତେ ସୈନ୍ୟମାନେ ତାହା ନ ଯାଏ ଗଣିତା
ପାଞ୍ଚଛାଳମାନେ ଖାଚ ହୋଇଲଣି ପୋତା ।
ଶିଶୁପାଳ ଲାଗିଅଛି ପଶ୍ଚିମ ଦୁଆରେ
କୃଷ୍ଣାର୍ଜୁନ ବଜେ କରିଛନ୍ତି ସେହିଠାରେ ।
ନର ନାରାୟଣରୂପୀ ଅଟନ୍ତି ସେ ବେନି
ରାଗ ନବାରିବେ କୃଷ୍ଣ ଅର୍ଜୁନଙ୍କୁ ଘେନି ।
ରଥ ଚଢ଼ି ଯୁଝିଛନ୍ତି ସକଳ ନୃପତି
କୃଷ୍ଣାର୍ଜୁନ ଦୁହେଁ ହୋଇଛନ୍ତି ପାଦଗତି ।
ଶଙ୍ଖ ଚକ୍ର ଗଦା ପଦ୍ମ ନନ୍ଦଘୋଷ ରଥ
ତାଳଧ୍ୱଜ ଆଦି ତାଙ୍କ ଆୟୁଧ ସମସ୍ତ ।
ଆବରହିଁ ଦେବଗୃହେ ଅଛି ଯେତେ ଯେତେ
ଶାର୍ଙ୍ଗଧନୁ ଗଦା ହଳ ମୁଷଳ ସହିତେ ।
ଚିତ୍ରସେନ ଏହାନେଇ ବେଗ ହୋଇ ଯାଉ
ଦାରୁକା ସୂତ ଗରୁଡ଼ ତା ସଙ୍ଗତେ ଥାଉ ।
ଯେତେବେଳେ ଲୋଡ଼ିବେକୃଷ୍ଣ ଯେଉଁ ଦ୍ରବ୍ୟ
ବେଦ ଭଣ୍ଡାର ନେଇଣ ଯୋଗାଇବେ ସର୍ବ ।
ବୃହସ୍ପତି ବାକ୍ୟ ଶୁଣି ଇନ୍ଦ୍ର ତୋଷ ହୋଇ
ଚିତ୍ରସେନ ଗନ୍ଧର୍ବଙ୍କୁ ଆଣିଲେ ଡକାଇ ।
ସବୁକଥା ବୁଝାଇଣ ତାକୁ ସୁରନାଥ
ସମର୍ପଣ କଲେ ଆଣି ନନ୍ଦଘୋଷ ରଥ ।
ତାଳଧ୍ୱଜ ରଥଆଦି ଆୟୁଧ ଯେତେକ
ଶଙ୍ଖ ଚକ୍ର ଗଦା ହଳ ମୁଷଳ କାର୍ମୁକ ।

ଜଗତମୋହନ ମଣି ଅଭେଦ୍ୟ କବଚ
ଯମଦାଢ଼ ନାମେ ଛୁରୀ ଅମୋଘ ନାରାଚ ।
ଦେବଙ୍କ ଆୟୁଧମାନ ସ୍ୱର୍ଗେ ଥିଲା ଯେତେ
ଇନ୍ଦ୍ର ଆଜ୍ଞା ପରମାଣେ ଆସିଲେ ସମସ୍ତେ ।
ମହାତ୍ମା ଗରୁଡ଼ ଯେତ ଅଛୁ ସଙ୍ଗତରେ
ସବୁଦ୍ରବ୍ୟ ରଖାଇଲେ ନନ୍ଦିଘୋଷ ପରେ ।
ଆବର ଅର୍ଜୁନ ପାଇଁ ବହୁଦ୍ରବ୍ୟ ଦ୍ୟନ୍ତ
ଜଗମୋହନ ମୁକୁଟ ଦେଲେ ଚନ୍ଦ୍ରକାନ୍ତ ।
ଦେବ ଭଣ୍ଡାରରୁ ଦେଲେ ଅକ୍ଷୟ ତୂଣୀର
ଗାଳବାଣ ଭୁଜବାଣ ଆଦ୍ୱ'ବଳ ଶର ।
ମନଭେଦୀ ନାରାଚ ଯେ ଅମୃତ କୁଣ୍ଡଳ
ସେ କୁଣ୍ଡଳ କର୍ଣ୍ଣେ ଥିଲେ ନ ପୂରଇ କାଳ ।
ଅମ୍ଳାନ ବସନ ଦେବ ଭଣ୍ଡାରୁ ଅଣାଇ
ଆଜ୍ଞାଦେଲେ ସୁରପତି ମାତଳକୁ ଚାଇ ।
ଚିତ୍ରସେନ ସହିତରେ ରଥ ଘେନଯାଅ
ହରି ଅର୍ଜୁନ ସମ୍ମୁଖରେ ଏହାନେଇ ଦିଅ ।
ଗାଣ୍ଡିବ ଧନୁ ଯେ ନନ୍ଦିଘୋଷ ରଥେ ଅଛି
ଆଜଠାରୁ ସେ ଧନୁକୁ ଧରୁ ସବ୍ୟସାଚୀ ।
ବ୍ରହ୍ମାଙ୍କ ଯଜ୍ଞରୁ ଯେଉଁ ବାଉଁଶ ଜନ୍ମିଲା
ତାହା ଆଣି ବିଶ୍ୱକର୍ମା ଷଡ଼ଧନୁ କଲା ।
ପରଶେଷେ ଉବୁରଣ ଥିଲା ଯେଉଁ ଖଣ୍ଡ
ଶ୍ରୀକୃଷ୍ଣର ବଂଶୀ ହେଲା ବ୍ରହ୍ମାଙ୍କରଦଣ୍ଡ ।
ରୁଦ୍ରଙ୍କ ଲଉଡ଼ ହେଲା ଇନ୍ଦ୍ରଙ୍କର ଯଷ୍ଟି
ଦେବ ଭଣ୍ଡାରରେ ହେଲା ଖଣ୍ଡେ ନଳକାଠି ।
ତଳ ତିନଖଣ୍ଡ କାଟି ଦୁଇଫାଳ କଲା
ଆଗେ ବିଶ୍ୱକର୍ମା ଷଡ଼ଧନୁ ନିର୍ମାଣିଲା ।
ଅଜଗବ ପିନାକ ଯେ ଶାରଙ୍ଗ କୋଦଣ୍ଡ
ଗାଣ୍ଡୀବ ଯେ ଆଦ୍ୱ'ବଳ ହେଲା ଏକଖଣ୍ଡ ।
ଏ ଧନୁ ଅର୍ଜୁନେ ଦେଇ କହିବ ମଣାଇ
ଶ୍ରୀକୃଷ୍ଣଙ୍କ ପ୍ରସାଦରୁ କିଛି ଭୟ ନାହିଁ ।
ଚିତ୍ରସେନ ସଙ୍ଗେ ମିଶି ଗଲେ ଶୂନ୍ୟମାର୍ଗେ
ଇନ୍ଦ୍ର ବଚନେ ମାତଳି ରଥ ଚାଳି ବେଗେ ।
ପୃଥିବୀର ଗଡ଼ ନିକଟେ ଗଗନରୁ ଆସି
ଦିଶିଲେ ଯେସନେ ସୂର୍ଯ୍ୟ ତଳେ ପଡ଼େ ଖସି
ଜାଜ୍ୱଲ୍ୟମାନ ଜ୍ୟୋତି ଯେ ପ୍ରକାଶ ହୋଇଲା
ଆକାଶ ମଣ୍ଡଳୁ ରଥ ଖସିଣ ପଡ଼ିଲା ।

ଜରାସନ୍ଧ ସୈନ୍ୟ ଦେଖି ଚମତ୍କୃତ ମଣି
କମ୍ପୁଛ ଏ ମାୟା ବୋଲି ନ ପାରିଲେ ଜାଣି ।
ଚନ୍ଦ୍ରମା ମଣ୍ଡଳ କିବା ବରୁଣ ବିମାନ
ସ୍ୱର୍ଗରୁ ଅଇଲା କିବା ଇନ୍ଦ୍ର ସିଂହାସନ ।
ଏସନ ସଞ୍ଜାତ ପୂର୍ବେ ଦେଖିଲା ତ ନାହିଁ
ନିର୍ମଳ ଜ୍ୟୋତିରେ ଦିଗ ବିଦିଗ ଉଠଇ ।
ଥୋକାଏ ନୃପତି ଦେଖି ହୋଇଲେ ଚରସ୍ତ
ଶ୍ରୀକୃଷ୍ଣ ସମ୍ମୁଖେ ମିଳେ ନନ୍ଦିଘୋଷ ରଥ ।
ବଳରାମ ସନ୍ନିଧାରେ ତାଳ ଧ୍ୱଜ ମିଳି
ଦେଖିଣ ଆନନ୍ଦ ହେଲେ ହଳୀ ବନମାଳୀ ।
ଶୁଣ ହେ ପରୀକ୍ଷ ରାଜା କହେ ଶୁକମୁନି
ଶ୍ରୀହରିବଂଶ ପୁରାଣ ପୁଣ୍ୟମୟ ଧ୍ୱନି ।
ସେ ରାମ କୃଷ୍ଣ ଚରଣେ ସଦା ମୋର ସେବା
ଅଚ୍ୟୁତ ଦାସ କହଇ ଗତିମୁକ୍ତି ଦେବା ।

—※—

## ଶ୍ରୀକୃଷ୍ଣଙ୍କ ଯୁଦ୍ଧେ ଶିଶୁପାଳର ପରାଜୟ ଓ ନନ୍ଦିଘୋଷ ରଥେ ବନ୍ଦନ

ନନ୍ଦିଘୋଷ ରଥ ଦେଖି ପ୍ରଭୁ ଜଗନ୍ନାଥ
ପ୍ରଦକ୍ଷିଣ କରି ଆରୋହିଲେ ଯେ ତ୍ୱରିତ ।
ସାରଥି ପଣେ ଅର୍ଜୁନ ବସାଇଲେ କତ
ସିଂହାସନ ମାଡ଼ିଯାଇ ବସିଲେ ଶ୍ରୀପତି ।
ଚାରି ଅଶ୍ୱଙ୍କର ବାଗ ଧରି ଧନଞ୍ଜୟେ
ସାରଥି ପଣେ ବସିଲେ ଯାଇ ପଣ୍ଡୁ ପୋଏ ।
ଶ୍ରୀକରେ ଶାରଙ୍ଗ ଧନୁ ଧରି ନାରାୟଣ
ସର୍ବାଙ୍ଗରେ ଅଳଙ୍କାର ହୋଇଲେ ଭୂଷଣ ।
ଗଣ ଗନ୍ଧର୍ବ ଦେବତା କଲେ ଜୟଧ୍ୱନି
ବୃହତ ସାମ ଗାୟନ କଲେ ସିଦ୍ଧ ମୁନି ।
ଶାନ୍ତ ଶୀଳ ରାଜାମାନେ ଦେଖି ହେଲେ ଶାନ୍ତ
ବୋଇଲେ ଜନ୍ମ ମରଣ ଖଣ୍ଡିଲୁ ଏ ଯାନ୍ତ ।
ପରମାତ୍ମାଙ୍କୁ ଦେଖିଲୁ ଏବେ ଚର୍ମଡ଼ୋଳେ
ମନର ଭ୍ରାନ୍ତ ସକଳ ଫିଟିଲା ଏକାଳେ ।
ଅସୁରବୁଦ୍ଧି ରାଜାମାନେ ମହାଭୟ କଲେ
ଥକା ହୋଇଣ ସଂଗ୍ରାମେ ଗ୍ରହଣ ରହିଲେ ।
ଧୃଷ୍ଟ ଦ୍ରୋଣ ଦୁହେଁ ଦେଖି ହେଲେ ଠରଟର
ବୋଇଲେ ଏ ଜଗବନ୍ଧୁ ନାଥ ଦେବହରି ।

ପୃଥିବୀର ଭାରଭର ନିବାରିବା ପାଇଁ
କୌତୁକେ ଜନମିଛନ୍ତି ନରଦେହ ବହି ।
କୃଷ୍ଣକପଟୀ ମାୟାପ୍ରଭୁ ବିଶ୍ୱମୟେ
ଅଶେଷ କୋଟି ବ୍ରହ୍ମାଣ୍ଡ ଯା ଅଙ୍ଗୁ ଉଦୟେ ।
ଆବର ଅପୂର୍ବ ଯାହା ଦେଖିଲୁ ନୟନ
ଜଗନ୍ନାଥଙ୍କ ରଥରେ ସାରଥି ଅର୍ଜୁନ ।
ଦ୍ରୋଣ ବୋଇଲେ ଅର୍ଜୁନ ସାରଥି ସେ ରଥୀ
କୃଷ୍ଣକର ଜୟସୈନ୍ୟ ପକାଇଲେ ମନ୍ଥି ।
ଭୀଷ୍ମ ବୋଇଲେ ସେ ଦୁହେଁ ଜୁହନ୍ତି ଯେ ଘର
ମାଉସୀ ପୁଅ ବନ୍ଧୁତା ଅଛଇ ଆବର ।
ତେଣୁକରି ସୁହୃଦ ଯେ ଅଟଇ ଫାଲଗୁନ
ଭାରଭର ନିବାରିବେ ସ୍ୱାମୀ ସଙ୍ଗେ ଘେନ ।
ଦ୍ରୋଣ ବୋଇଲେ ପାଣ୍ଡବେ ହରିଙ୍କ ବିଶ୍ୱାସ
ନିଷ୍ଟୟେ କୌରବ ବଂଶ ଆଜ୍ଞୁ ଗଲେ ନାଶ ।
ନ ଜାଣିଣ ଆବୋରିଲୁ ତାଙ୍କୁ ମୂଢ଼ପଣେ
ବନ୍ଧୁ ସଙ୍ଗରେ ବିବାଦ ହେଲୁ ଅକାରଣେ ।
ଅନ୍ଧରାଜା ପୁଅ ଗୋଟି ହୋଇବ ନିର୍ମୂଳୀ
ଦୁର୍ଯୋଧନେ କେତେବେଳେ ନପାରିବା ରକ୍ଷି
ଏମନ୍ତ ବିଚାର କରି ଭୀଷ୍ମ ଦ୍ରୋଣ ବେନ
ଫେଡ଼ି ନ ବହି କାହାକୁ ହୋଇଲେକ ତୁନ ।
ଏଥୁ ଅନନ୍ତରେ ଦମଘୋଷର କୁମର
ହରି ଆଗୁ ହାରରେ ରଥ ଟେକେ ଧାଡକାର ।
ବଡ଼ୁତ ମୁକୁଟବନ୍ଧା ଯୋଦ୍ଧା ମହାରଥୀ
ଗୋଡ଼ାନ୍ତି ସକଳେ ଶିଶୁପାଳ ପଛକତି ।
ଶେଲ ଚକ୍ର ନାରାଚ ଯେ ମୁଦ୍ଗର ଯଷ୍ଟି
ଶ୍ରେଷେ ନାନାଶସ୍ତ୍ର ମାରୁଛନ୍ତି କୋଟି କୋଟି ।
କାଙ୍କ କୁରଡ଼ି ଲଗାଇ ପକାଅନ୍ତି ଚାଡ଼ି
ମାରନ୍ତି ସେ ବାହାସ୍ଫୋଟ ଗୁର୍ଜ୍ଜି ସିଂହରଡ଼ି ।
ଅର୍ଜୁନକୁ ବ୍ରହ୍ମ ଆଜ୍ଞାଦେଲେ ଦେବହରି
ଶିଶୁପାଳ ପାଶେ ରଥ ବାହା ଶୀଘ୍ରକରି ।
ଜଗନ୍ନାଥଙ୍କର ଆଜ୍ଞା ଧନଞ୍ଜୟ ଶୁଣି
ଶିଶୁପାଳଆଗେ ରଥ ଉଭାରିଲା ଆଣି ।
ସର୍ବଙ୍କୁ ପୁରୁଷ ନାଥ କୋଟି ବିଶ୍ୱମୂର୍ତ୍ତି
ସର୍ବ ଯାଦବେ ଆବୋରିଛନ୍ତି ଚଉକତି ।
ନାକ୍ଷତ୍ରଗଣ ମଧ୍ୟେ ଯେହ୍ନେ ଚନ୍ଦ୍ରବଂଶେ ଶୋଭା
ପଦ୍ମବନ ମଧ୍ୟେ ଯେହ୍ନେ ରାଜହଂସ ପ୍ରଭା ।
ଗଜଯୂଥ ମଧ୍ୟେ ଯେହ୍ନେ ଐରାବତେ ଶୋଭା
ଯାଦବଗଣ ମଧ୍ୟରେ ତେହ୍ନେ ନରହରି ।
ଅହୋବଳ ସୈନ୍ୟଦେଖି ସର୍ବେ ହେଲେ ମୋହ
ଚିହ୍ନି ନ ଲୋକେ ବୋଇଲେ ଜଗନ୍ନାଥୀ ଏହ୍ନ ।
ଏହି ଭୂଆଇଲେ ପିନା ସକଳ ମେଦିନୀ
ନିରଞ୍ଜନ ପୁରୁଷ ଏ ଦେବ ଶିରୋମଣି ।
ଯେତେକ ଦୁଷ୍ଟ ପାପିଷ୍ଠ ଜାତ ଅସୁରାଧି
ବୋଲନ୍ତି ନିନ୍ଦା ବଚନ ଅଜ୍ଞ ମୂଢ଼ବୁଦ୍ଧି ।
ବାଣାସୁର ବଜ୍ରନାଭ ନାରକା ଶମ୍ବର
ଦୁର୍ଯୋଧନ ଭଗଦତ୍ତ ଆଦି ଦଣ୍ଡଧର ।
କଳଙ୍ଗସେନ ଆବର କାଶୀ ନରପତି
ଏହିପରି ରାଜାମାନେ ରଥୀ ମହାରଥୀ ।
ଶିଶୁପାଳ କୁମର ଯେ ଭୁଲଇ ଅଗ୍ରତେ
ପଞ୍ଚଶତ ବଳ ଧନୁ ଧରିଅଛି ହସ୍ତେ ।
ହରି ଆଗୁ ଇନ୍ଦ୍ର ପରାୟେ ବଂଶେ ଶୋଭିବନ
ଜଗନ୍ନାଥ ମୁଖ ଚାହିଁ ବୋଲନ୍ତି ବଚନ ।
ଆରେ ଆରେ ଗଉଡ଼ ତୋ ପୂରିଲା ଯେ କାଳ
ସଗୋହ ସହିତେ ଯେଣିକି ଯମଆଳ ।
ଜରାସନ୍ଧ ମହିମା କି ଶୁଣିଲୁ ତୋ ନାହିଁ
ପ୍ରଭାପନ୍ତି ଏହିମତେ ଯାଉ ତୁ ଫେଡ଼ାଇ ।
ମୋହର ସମ୍ମୁଖରେ ତୁ ଯେ କେନେ ପଡ଼ିନାହୁ
ପଡ଼ିଥିଲେ ଏତେଦିନ ବଞ୍ଚିଥାନ୍ତୁ କାହୁଁ ।
ଆଜ ଯେ ଜାଣିବା ତୋର ବଳବନ୍ତପଣ
ତିଳପ୍ରମାଣେ ମାଂସ ତୋ କାଟିବି ପ୍ରମାଣ ।
ମିଛେ ମିଛେ ନାରାୟଣ ବୋଲାଉ ତୁ ପୁଣି
ଗଉଡ଼ ହାଉଡ଼ ଜାତିଗୋହ ତୋ ନ ଜାଣି ।
ଗୋହତ୍ୟା ବ୍ରହ୍ମହତ୍ୟା ଯେ ସ୍ତ୍ରୀହତ୍ୟା କଲୁ
ଗଉଡ଼ଙ୍କ ସଙ୍ଗେ ଥାଇ ଅଭକ୍ଷ୍ୟ ଭକ୍ଷିଲୁ ।
ମାଉସୀ ପିଉସୀ ଜେଠୀ ଖୁଡ଼ୀ ମଉଳାଣୀ
ସମସ୍ତଙ୍କ ଜାତ ନେଲୁ କୁଞ୍ଜବନେ ଆଣି ।
ହୋଇଲୁ ବର୍ଣ୍ଣସଙ୍କର ତେଜ ସର୍ବଧର୍ମ
କୁସଙ୍ଗେ ବଢ଼ିଲେ ଆରେ ଥିଲା ତୁମ୍ଭ କର୍ମ ।
ବସୁଦେବ ପୁଅବୋଲି ତୁ କହୁ କେମନ୍ତେ
ନନ୍ଦ ଗଉଡ଼ର ପୁଅ ବୋଲନ୍ତି ସମସ୍ତେ ।
ଅଧମ ଅପାହ ଅଦବ୍ୟା ଯେ ବାଇବୁଦ୍ଧି
ନଟୀ ନଟକାରପଣେ ଗୋବକାକୁ ସାଧି ।

ଜରାସନ୍ଧ ରାଜାଙ୍କର ନଜାଣିବା ପଣ
ମଶକ ସଙ୍ଗରେ ମତ୍ତହସ୍ତୀର ପଲ୍ଲଣ ।
ସ୍ୱରିଉଣା ଲକ୍ଷେରଜା ସର୍ବେ ଦଣ୍ଡ ବାନ୍ଧ
ଏ ଘୁର କଥାକୁ ଏତେ ଶ୍ରମ କାହିଁପାଇଁ ।
ଏତେ ବୋଲିଣ ଧନୁକୁ ଟଙ୍କାର ସେ ଦେଲ
ରାଜଗୁରୁ ନାମ ଧରି ଶିରେ ଲଗାଇଲ ।
ଭୂମିକା ନାରାଚମାନ ବନ୍ଧ ଧୀରକରି
ଗୁଣ ଆମଞ୍ଜନ କଲ ଧନୁର୍ବେଦ ସ୍ମରି ।
ପୁଣି ତୂଣୀରୁ କାଢ଼ିଲ ସପ୍ତେବାଣ ଗଣି
ଅଭିମନ୍ତ୍ର କରି ଗୁଣେ ବସାଇଲ ଆଣି ।
ଅର୍ଦ୍ଧଚନ୍ଦ୍ର ତୀକ୍ଷ୍ଣମୁନା ଶାରଙ୍ଗ ଯେ ପକ୍ଷୀ
ମନ୍ତ୍ର ଗୁଣରେ ବସାଇ ଆଠସସ୍ତ୍ର ବାଛି ।
ଆକର୍ଣ୍ଣ ଯାଏ ଓଟାରି କଲ ଶରବୃଷ୍ଟି
ହୁଙ୍କାର ଘୋର ଶବଦେ ପୂରେ ନବସୃଷ୍ଟି ।
ଚଳିଲେ ବାଣମାନେ ଯେ ଅନ୍ତରୀକ୍ଷ ମାର୍ଗେ
ଜୁଜୁଳା ପୋକ ପ୍ରାୟେ ଦିଶି ମଧ୍ୟସ୍ୱର୍ଗେ ।
ଗର୍ଜିଣ ବାଣ ଆସନ୍ତେ ଦେଖି ଦେବହରି
କଭୁସ୍ତ ଶତେ ନାରାଚ ବନ୍ଧ ହସ୍ତେ ଧରି ।
ଶିଶୁପାଳ ବାଣ ସ୍ୱର୍ଗେ ଅଧାବାଟେ ଭେଟି
ସାତ ସାତ ଖଣ୍ଡକରି ପକାଇଲେ କାଟି ।
ଦେଖିକରି ବଳକ୍ଷୀଣ ହେଲ ଶିଶୁପାଳ
କାଳସର୍ପ ପରାପ୍ରେକ ଗର୍ଜେ ଅନ୍ତରାଳ ।
ଛୁରି କାନ୍ତ କଙ୍କ ନାରାଚକୁ ବେଗେ ବାଛି
ବୃହୁଁ ବୃହୁଁ ବିନ୍ଧିଲ ସେ ଦମଘୋଷ ବଂଶି ।
ବାବଲ କୋଟିଏ ବାଣ ପେଷି ଦେବରାୟେ
ଶିଶୁପାଳ ବାଣ ଉଡ଼ିଗଲେ ତୃଣ ପ୍ରାୟେ ।
ପୁଣି ବେନସସ୍ତ୍ର ବାଣ ବାଛି ତୀକ୍ଷ୍ଣମୁନା
ମନ୍ତ୍ର ସୁମରଣ ପେଷେ ବୀର ବଜ୍ରସେହ୍ନା ।
ଅର୍ଦ୍ଧ ନିଶ୍ୱାସ ମାତ୍ରକେ ପେଷେ ବୀରବର
ଚଳିଲେ ବାଣମାନେ ଯେ ହୋଇ ଭୟଙ୍କର ।
ବାଣରେ ଆଚ୍ଛାଦ ହେଲ ସେ ଯେ ଚରାଚର
ଦିବସେ ସଂସାରଯାକ ଦିଶେ ଅନ୍ଧକାର ।
ମେଘ ଆଚ୍ଛାଦିଲେ ଯେହ୍ନେ ପରବତ ଲୁଚି
ନନ୍ଦଘୋଷ ରଥ ତେହ୍ନେ ନଦିଶିଲ କିଛି ।
ଲୁହରେ ଶର ବାଜିଣ ଶବ୍ଦ ବିକରାଳ
ଗଗନ ମଣ୍ଡଳୁଁ ଯେହ୍ନେ ଖସଇ ବିଜୁଳି ।

ଶସ୍ତ୍ର ଆସନ୍ତେ ଘାଶକୁ ଦେଖି ନାରାୟଣ
ମନ୍ତ୍ର ଶପେଷିଲେ ସ୍ୱାମୀ ମନଭେଦୀ ବାଣ ।
ଶିଶୁପାଳ ବାଣ ଯେତେ ଆସୁଥିଲ ମାଡ଼ି
ସାତଖଣ୍ଡ ହୋଇ ମଧ୍ୟେ ପଡ଼ିଲକ ଝଡ଼ି ।
ଦେଖି ଦମଘୋଷ ସୁତ ମନେ ପାଇ ବ୍ୟଥା
ପଞ୍ଚାଶରି ଧରିଣ ପେଷେ ମହା ରଥା ।
ଗିରି କନ୍ଦର ଭେଦିଣ ଉଡ଼ଇ ଗଗନେ
ମର୍ତ୍ତ୍ୟପୁର ଗର୍ଜିବକ ଆଘାତ ପବନେ ।
ଧାତକାରେ ଧାଇଁଲ ସେ ମହାଧ୍ୱନି କରି
ସାଧୁ ସାଧୁ ଶିଶୁପାଳ ବୋଲନ୍ତି ଶ୍ରୀହରି ।
ବଜ୍ରବାଣ ପୁରାଇଲେ ଶାରଙ୍ଗ ଧନୁରେ
ଅଧର ପୃଷ୍ଟ କରିଣ ବାନ୍ଧିଲେ ସତ୍ୱରେ ।
ଶିଶୁପାଳ ପଞ୍ଚାସ୍ତ୍ର ଆସୁଥିଲେ ମାଡ଼ି
ମସିଗୁଣ୍ଡା ହୋଇ ଗଲ ଅନ୍ତରୀକ୍ଷେ ଉଡ଼ି ।
ଦେଖି କୋପିଲ ଯେ ଦମଘୋଷର କୁମର
କାଳାନ୍ତକ ଶକ୍ତି ପୁଣି ଘେନେ ନିଜକର ।
ଅଭିମନ୍ତ୍ରି ବାଣଗୋଟି ଧନୁରେ ବସାଇ
ଶ୍ରୀକୃଷ୍ଣଙ୍କ ଉପରକୁ ମାରେ ରୋଷବହ୍ନି ।
ଶବଦେ କମ୍ପିଲେ ଦେବ ତ୍ରୟସ୍ତ୍ରିଂଶକୋଟି
ବୃହୁଁ ବୃହୁଁ ବାଣ ଆସେ ମଣ୍ଡପୁର ଘୋଟି ।
ଦେଖିକରି ଜଗନ୍ନାଥେ ବାରୁଣାସ୍ତ୍ର ପେଷି
କାଳାନ୍ତକ ଶକତିକି ପକାଇଲେ ନାଶି ।
ଶକତି ବିଫଳ ହେବା ଦେଖି ଶିଶୁପାଳ
ପାଶୁପତ ନାରାଚକୁ ପେଷେ ମହାବଳ ।
ଧନୁରେ ବସାଇ କର୍ଣ୍ଣମୂଳ ଯାଏ ଟାଣି
ଅଣବାହୁଡ଼ା ଶରକୁ ପେଷେ ବୀରମଣି ।
କୋଟି ଭଇରବ ରୂପ ଧରି ବାଣ ଚଳି
ନନ୍ଦଘୋଷ ନିକଟରେ ଯାଇ ବେଗେ ମିଳି ।
ଜଗନ୍ନାଥେ ପେଷିଲେ ଯେ ପୁଣି ତୀକ୍ଷ୍ଣ ଶର
ତିଳ ପ୍ରମାଣରେ ଝଡ଼ି ପଡ଼ିଲ ଭୂମିର ।
ଦେଖି ଶିଶୁପାଳ ବୁଦ୍ଧି ନଷ୍ଟ ରଇ କିଛି
କୋପେ କୋପାନଳ ହୁଏ ଦମଘୋଷ ବଂଶି ।
ଅଗ୍ନି ଚଢ଼ୁଁ ବୈଶ୍ୱାନର ଅସ୍ତ୍ର ବସାଇଲ
ଅଭିମନ୍ତ୍ର କରି ତାହା ଗୁଣେ ବସାଇଲ ।
କର୍ଣ୍ଣମୂଳ ପରିଯନ୍ତେ ଓଟାରିଣ ରାଗେ
ଶ୍ରୀକୃଷ୍ଣଙ୍କ ଉପରକୁ ପେଷିଲ ତା ବେଗେ ।

ଘୋଟିଲ୍ଲ ଅନଳ ଶିଖା ଜ୍ୟୋତ ଭୟଙ୍କର
ତେଜରେ ବଢ଼ନ୍ତ୍ୟମାନ ହେବ ଏ ସଂସାର ।
ଭୂମିଠାରୁ ଘୋଟିଅଛୁ ଶୂନ୍ୟପୁର ଯାଏ
ତ୍ରସ୍ତ ହୋଇଲେ ଦେଖି ସବୁ ପ୍ରାଣୀ ଭୟେ
ଗୋବିନ୍ଦ ପେଷିଲେ ଜଳଧାର ବାଣ ଯେନ
ତତକ୍ଷଣେ ବୃଷ୍ଟି ହୋଇ ଲିଭିଲ୍ଲ ବହ୍ନ ।
ଦେଖି ଶିଶୁପାଳର ଯେ ଭଙ୍ଗିଗଲ୍ଲ ଦର୍ପ
ଗରଳହୀନେ ନିସ୍ତେଜ ହୁଏ ଯେହ୍ନେ ସର୍ପ ।
ଅନ୍ତର୍ଗତେ ବିଚାରଇ କରିବି କି ବୁଦ୍ଧି
କେଉଣ ପ୍ରକାରେ କାର୍ଯ୍ୟ ନୋହିଲ୍ଲ ସିଦ୍ଧି ।
ପିଠ ଦେଇ ଯେବେ ରଣ କରିବି ମୁଁ ତେଜ୍ୟା
ଜନମୁଖେ ଅପଖ୍ୟାତ ପାଇବଇଁ ଲଜ୍ୟା ।
ସେନାପତିପଣେ ଅଇଲଇଁ ପରିହାଇ
ଏଥୁଁ ପଳାଇଲେ ଆଉ ବର୍ତ୍ତିବି କି ମୁହିଁ ।
ହାରିବା ଜିଣିବା ଅଟେ କ୍ଷତ୍ର ଙ୍କ ବେଭାର
ଏତେ ଭାଳି କରେ ଧନୁ ଧରି ମହାବୀର ।
ବାୟବ୍ୟ ଅସ୍ତ୍ରକୁ ବୀର କାଢ଼ିଲ୍ଲ ବହନ
ବହିଲ୍ଲକ ଅଣସ୍ଥଣ ପ୍ରବଳ ପବନ ।
କ୍ରୁଦ୍ଧକ ବାଣକୁ ପୁଣି ମୁହୂର୍ତ୍ତେକେ ପେଷି
ଜ୍ୱାଳାବଳ ଅନ୍ଧକାର ପେଷେ ମୋହପାଶି ।
ଲକ୍ଷେକୋଟି ବାଣମାନ ବର୍ଷେ ପୁଣି ପୁଣି
ଦେଖିଣ ଆଶ୍ଚର୍ଯ୍ୟ ହୁଅନ୍ତ ସକଳ ସଇନ ।
ଶିଶୁପାଳ ବାସୁଦେବ ଯୁଦ୍ଧ ଗୁରୁତର
ବୋଲନ୍ତ ଯେ ଶୁକମୁନ ଶୁଣ ନୃପବର ।
ଏଥୁଅନନ୍ତରେ ତହୁଁ ଜଗନ୍ନାଥ ସ୍ୱାମୀ
ଶିଶୁପାଳ ବାଣମାନ ଦେଖି ଅନ୍ତର୍ଯ୍ୟାମୀ ।
ପ୍ରଚଣ୍ଡ ଅନଳ ଶୂନ୍ୟେ ଆସୁଅଛୁ ଘୋଟି
ହଗ ନ ହଣଇ ବାଣ ଆକାଶକୁ ଛୋଟି ।
ଏସନ ରୂପେ ଆସନ୍ତେ ଦେଖି ନାରାୟଣ
ଶାରଙ୍ଗରେ ବସାଇଲେ ମନଭେଦୀ ବାଣ ।
ପୁନରପି ସହସ୍ରେ ବାଣ ଅଭିମନ୍ତ୍ର କରି
ସାରଙ୍ଗ ଧନୁରେ ଯୋଡ଼ିଲେକ ଦେବହରି ।
ସ୍ୱରିଅଶ୍ୱଙ୍କୁ ଯେ ଆଠ ସାରଥିକି ତିନ
ଚକକୁ ଯେ ସ୍ୱରିବାଣ ଅଖକୁ ଯେ ବେନ ।
ଖମ୍ବକୁ ଅଷ୍ଟ ନାରାଚ ବିନ୍ଧିଲେ ବିସ୍ମର
ପୀଢ଼କୁ ଯେ ପୁଣି ମାଇଲେକ ସ୍ୱରି ସ୍ୱରି ।

ଶ୍ୱେତପାଖକୁ ଯେ ବାଣ ମାରି ମନ୍ତ୍ରି ସାତ
ଧ୍ୱଥ ଚକଡ଼ାକୁ ଶର ମାରି ଜଗନ୍ନାଥ ।
ଧନୁକୁ ପଞ୍ଚ ନାରାଚ ଗୁଣକୁ ଯେ ସ୍ୱରି
ତୂଣିରକୁ ବଂଶବାଣ ପେଶିଲେ ଶ୍ରୀହରି ।
ସେହ୍ନାକୁ ଚୌବିଂଶ ହସ୍ତୀ ଅଶ୍ୱକୁ ଯେ ଆଠ
ଏ ଅନୁକ୍ରମେ ନାରାଚ ପେଷି ନନ୍ଦସୁତ ।
ହସ୍ତରୁ ଫିଟନ୍ତେ ଚଳଯାନ୍ତେ ବାଣମାନେ
ସକଳେ ଭେଦିଲେ ଯାଇ ଯେଯାହାର ସ୍ଥାନେ
ପ୍ରଥମେ ଅଖରୁ ଚକ ଛୁଟିଣ ପଡ଼ିଲ୍ଲ
ହିଙ୍ଗୁଳେ ଭୂମି ଉପରେ ଅଖ ନିକଳିଲ୍ଲ ।
ତଦପରେ ଦଣ୍ଡକୁ ପକାଇଲ୍ଲ କାଟି
ତାହାପରେ ସ୍ୱରିଅଶ୍ୱ ଭୂମିପରେ ଲୋଟି ।
ଶିଶୁପାଳ ଉପରକୁ ବାଣଗଲ୍ଲ ଚଳି
ଅଚେତ ହୋଇଲ୍ଲ ଚେଦ୍ରେବଢ଼ ମହାବଳୀ ।
ବାଗ ଦଉଡ଼ି ହସ୍ତରୁ ପଡ଼ିଲ୍ଲକ ଝଡ଼ି
ଭଙ୍ଗ ପଡ଼ି ରଥଗୋଟା ଶିଶୁପାଳେ ମାଡ଼ି ।
ଘାଏ ଘୁମାଇଲ୍ଲ ତହୁଁ ଦମଘୋଷ ସୁତ
ପଡ଼ିଲ୍ଲକ ମୁହଁମାଡ଼ି ଗଲ୍ଲ ମୂର୍ଚ୍ଛାଗତ ।
ଗୋବିନ୍ଦ ଆଜ୍ଞା ଦେଲେକ ଅର୍ଜୁନକୁ ସ୍ୱହିଁ ।
ଶିଶୁପାଳ କେଶଧରି ଯେନଆସ ଯାଇ ।
ପାଦେ ଶାଙ୍କୁଳ ଦେଇଣ ରଥ ଖମ୍ବେ ବାନ୍ଧ
ଅପମାନ ପାଇଯାଉ ରାଜା ଜରାସନ୍ଧ ।
ଆଜ୍ଞା ପାଇଣ ରଥରୁ ଡେଇଁ ଅରଜୁନ
ଶିଶୁପାଳ କେଶ ଧରି ଆଣିଲେ ବହନ ।
ପାଶେ ରହି ଦେଖୁଥିଲ୍ଲ ବାଣା ଦଣ୍ଡଧାରୀ
ରେରେକାର କରି ମିଳେ ଆସି ଆଗକରି ।
ଅପୂର୍ବ ରଥଗୋଟି ଯେ ସୁବର୍ଣ୍ଣରେ କାମ
ଆହଣ୍ଡା ରଥପରିଏ ରାଜେ ଶୁଦ୍ଧ ହେମ ।
ଶତେନଳ ଆୟତନ ରଥ ଊର୍ଦ୍ଧ ପ୍ରତି
ସହସ୍ରେ ଶାଙ୍କୁଳ ଯୋଚିଅଛୁ ଚଉକତି ।
ଦେବଗଣଙ୍କର ଲକ୍ଷେକୋଟିଏ ଆୟୁଧ
ଝେଲଚକ୍ର ଗଦାମାନ ଭେରିଅଛୁ ମଧ୍ୟ ।
କର୍ଣ୍ଣାଞ୍ଚଳ ମୁକୁଟ ଯେ ସୀମନ୍ତମା ବଳା
ନବରତନରେ ଶୋଭା ବଳୀରାଜାବଳା ।
କଳେବର ଭୟଙ୍କର ପୃଥୁଳ ମୁରତି
କୃତାନ୍ତକ ଦେବତାର ପ୍ରାୟେ ହବ୍ୟଜ୍ୟୋତି

ପ୍ରତାପୀ ସାବଧିସାରବର ଶିରୋମଣି
ସ୍ୱର୍ଗ ମର୍ତ୍ତ ପାତାଳ ସେ ହେଳେ ପାରେ ଜିଣି ।
ସୁପ୍ରସନ୍ନେ ସଦାଶିବ ଦେଇଛନ୍ତି ବର
ପ୍ରହ୍ଲାଦର ନାତି ସେ ଯେ ଅଟଇ ଆମ୍ଭର ।
ଏକା ଶରୀରରେ ତାର ସହସ୍ରେକ ଭୁଜ
ଆଠଗୋଟି ସିଂହର ଯେ ବହୁଥାଏ ଓଜ ।
ବାମ ଭୁଜେ ପଞ୍ଚଶତ ଶ୍ରେଷ୍ଠ ଧନୁଧର
ଦକ୍ଷିଣ ପଞ୍ଚାଶ ଭୁଜେ ବହଇ ଓଟାର ।
ଗଦା ମୁଦ୍ଗର ଶକ୍ତି ଧରି ଅସିବର ।
ଦକ୍ଷିଣ ଭୁଜେ ଭୁଷଣ୍ଡି ରହିଅଛି ତାର ।
ଛେଲ ଚନ୍ଦ୍ର ଶର ଧରିଅଛି କେଉଁ କରେ
ମୁଷଳ ଧରି ଅଛଇ କେବଣ କରରେ ।
କେବଳ ହସ୍ତେ ଡମ୍ବରୁ ତ୍ରିଶୂଳ ଯେ କାନ୍ତ
ଛୁରୀ ଯମଦାଢ଼ ହସ୍ତବିଂଶ ଶର ଜାତ ।
ସର୍ବାଙ୍ଗେ ମାଣିକ୍ୟ ରଙ୍ଗ ପତନିକ ପିନ୍ଧି
ଶ୍ରୀଅଙ୍ଗେ ଚନ୍ଦନ ମାଥେ ସେବନ୍ତିକ ବାନ୍ଧି ।
ରଙ୍ଗମିଶା ଅଞ୍ଚଳ ଯେ ଅତି ଶୋଭାକର
ଶ୍ରୀକୃଷ୍ଣ ସମ୍ମୁଖରେ ମିଳି ହେଲା ଆଗଭର ।
ସହସ୍ର ଭୁଜେ ଆୟୁଧ ଧରିଛି ପୂରାଇ
ରହ ରହ ଗୌଡ଼ ବୋଲି ଓଗାଳିଲା ଯାଇ ।
ମୋହର ସମ୍ମୁଖରେ ତୋର ଏଡ଼େକ ଭରସା
ଶୋଇଲା ସିଂହକୁ ଯେହ୍ନେ ନାତ ମାରେ ଶଶା
ନନ୍ଦଘୋଷ ସୂତକୁ ମୋ ଆଗୁଧରି ନେଉ
ଗରୁଡ଼ ହୋଇଣ ତୁରେ ଏଡ଼େ ଗର୍ବ ବହୁ ।
ଲକ୍ଷେ ରଜା ଉପରେ ସେ ଅଟେ ଅଧିକାରୀ
ସେନାପତି ପଣେ ଶାଢ଼ୀ ବାନ୍ଧିଛନ୍ତି ବରି ।
ଏଡ଼େବଡ଼ ସାରଥୀକୁ ବାନ୍ଧିକରି ନେବୁ
ତୁ ସୈନ୍ୟ ମଧ୍ୟେ କେମନ୍ତେ ଜୀବନ ପାଇବୁ ।
ଏତେ ବୋଲିଣ ରଥକୁ ଧୁଆଁଏ ସେ ବେଗେ
ତକ୍ଷଣେ ମିଳିଲା ଯାଇ ନନ୍ଦଘୋଷ ଆଗେ ।
ପୁଣି ନିଜ ଭୁଜେ ଶର ଧରି ଆଣ୍ଠକରି
ଗୋବିନ୍ଦଙ୍କ ଉପରକୁ ବିନ୍ଧେ ରୋଷଭରି ।
ଧନୁରେ ପାଞ୍ଚସହସ୍ର ବାଣକୁ ପୂରାଇ
ମନ୍ତ୍ର ସୁମରିଣ ବିନ୍ଧେ ମହାରୋଷ ବହି ।
ଛେଲ ଚନ୍ଦ୍ର ଭୁଷଣ୍ଡି ଯେ ଆଉ ତୀକ୍ଷ୍ଣମୁନା
ମନ୍ତ୍ର ସୁମରିଣ ବାଣ ପେଷେ ମହାମନା ।

ଶୁଣ ପରୀକ୍ଷିତ ବଦନ୍ତି ଶୁକ ମହାମୁନି
ଇତି ଶିରୀ ହରିବଂଶ ପୁଣ୍ୟମୟ ଧ୍ୱନି ।
ଏସନ ବଚନେ ବାଣ ବଳିର ତନୟ
କମ୍ପିଲେ ଅମରଗଣେ ପାଇ ମନେ ଭୟ ।
ଚାଲିଗଲେ ବାଣମାନେ ଶୂନ୍ୟପୂର ଘୋଟି
ଶ୍ୟେନ ପକ୍ଷୀ ପ୍ରାୟେ ଶବ୍ଦ ଆସନ୍ତେ ଚହଟି ।
ଖଣ୍ଡା ସାବେଳ ପ୍ରଭୃତି ତୀକ୍ଷ୍ଣ ଲୌହ ଫଳ
ଶୂନ୍ୟମଣ୍ଡଳରୁ ଯେହ୍ନେ ପଡ଼ଇ ବିଜୁଳି ।
ରଣଝଣ ଭୟଙ୍କର ଶବ୍ଦ ଶୂନ୍ୟେ ଘୋଟି
ଦଲଦଲ ବସୁମତୀ କମ୍ପେ ନବସୃଷ୍ଟି ।
ଉଲ୍କାପାତ ପୃଥିବୀ ଯୁଗାନ୍ତ କି ଜାଣି
ଗଗନ ଅନ୍ଧାର ଦୃଶ୍ୟ ହୁଏ ଦିନମଣି ।
ବାଣମାନେ ଆସନ୍ତେଣ ଦେଖି ଅନ୍ତର୍ଯ୍ୟାମୀ
ଶାରଙ୍ଗ ଧନୁକୁ କରେ ଧଇଲେକ ସ୍ୱାମୀ ।
ଅର୍ଦ୍ଧଚନ୍ଦ୍ର ତୀକ୍ଷ୍ଣମୁନା ଗୁଣରେ ସେ ଦେଲେ
ସହସ୍ରେ ଗୁଣରେ ଅଭିମନ୍ତ୍ରିଣ ପେଷିଲେ ।
ସାନ୍ଦୀପନି ଶିକ୍ଷା ଦେଇଛନ୍ତି ଯେ ମନ୍ତ୍ରଟି
ଏକା ନାରାଚକେ ଜାତହେଲା କୋଟି କୋଟି ।
ଏମନ୍ତେ ପାଞ୍ଚସହସ୍ର ଶରମାନ ସନ୍ଧି
ବାଣାସୁର ବାଣକୁ ସେ ଶରଦେଲା ଛନ୍ଦି ।
ଶରେ ଶର ଛନ୍ଦାଛନ୍ଦି ମହାଜ୍ୱାଳା ହୋନ୍ତେ
ଘୋଟିଲା ଅନଳଶିଖା ଗଗନର ପଥେ ।
ନିରନ୍ତରେ ଶରେ ଶର ହେଲା ମହା ସନ୍ଧି
ଶର ଗତାୟୁତେ ସୂର୍ଯ୍ୟକିରଣ ଆଚ୍ଛାଦି ।
ଆଡ଼େ ଜଗନ୍ନାଥ ଅନ୍ୟ ଆଡ଼େ ବାଣାସୁର
ଶର ବନ୍ଧ ପଡ଼ିଲା ସେ ଦୁହିଙ୍କ ଭିତର ।
ଅଗ୍ନିଶର ପେଷିଲାକ ବାଣା ମହାବଳି
ସବୁ ଶର ଅଗ୍ନି ତେଜେ କ୍ଷଣକରେ ଜଳି ।
ବାଣାସୁର ଦାନବ ଯେ ବହୁ ଶର ଧରି
ଅନର୍ଯ୍ୟାପ୍ତ ବାଣ ବିନ୍ଧେ କୋଟ୍ୟର୍ବୁଦ କରି ।
ଶ୍ରାବଣ ମାସରେ ଯେହ୍ନେ ମେଘ ବରଷଇ
ତେସନ ଶର ଗଗନ ପଥରୁ ଖସଇ ।
ମହାଭୟଙ୍କର ଶବ୍ଦ ଟଙ୍କାରର ଧ୍ୱନି
ଶବଦରେ କମ୍ପୁଅଛି ସକଳ ମେଦିନୀ ।
କୋଟିଏ ଶାର୍ଦ୍ଦୁଳି ତାକ ରଥେ ଯୋଗ୍ୟହୋଇ
ଯହିଁ ମନ କରଇ ସେ ତହିଁ ନିଅନ୍ତି ବହି ।

ରଥରେ ବସି ସାରଥି ବାହେ ଉଦ୍ଧବର
ଜଗନ୍ନାଥଙ୍କ ସମ୍ମୁଖରେ ଯୁଝେ ବାଣାସୁର ।
ନନ୍ଦଘୋଷେ ବଳେ କରିଛନ୍ତି ଦେବରାୟେ
ସାରଥି ପଣରେ ବସିଛନ୍ତି ଧନଞ୍ଜୟେ ।
ରଥ ଗଜ ମଦାନ୍ଧକ ଅଶ୍ୱ ଯେ ଯାହାର
ଏକ ଆରମ୍ଭିରେ ଲାଗି ଯୁଦ୍ଧ ମହାଘୋର ।
ଉଠନ୍ତି ପଡ଼ନ୍ତି କେତେ ଲୋଟନ୍ତି ଧରଣୀ
ମେଦମେଦା ମାଂସ ଖାନ୍ତି ପିଶାଚୀ ଡାକିନୀ ।
ଶ୍ରୀକୃଷ୍ଣ ରଥ ପଛରେ ଯାଇଣ ଯାଦବେ
ଏକେ ଏକେ ପରଶାଇ ଯୁଝନ୍ତି ସରବେ ।
ଗୋବନ୍ଦ ରୂପ ଯାଦବଗଣେ ଛନ୍ତି ଯେନ
ଜଣକେ ଆବୋରିଛନ୍ତି ଅର୍ବୁଦେ ସଇନ ।
ଲାଗିଲା ଘୋର ସମର ଆରମ୍ଭିଣି ଅପାର
ଏକା ବାଣକେ କୋଟିଏ ଯାନ୍ତି ଯମପୁର ।
ନାରାଚ ଖଡ଼ଗଘାତେ ଛୁଡ଼ଯାନ୍ତେ କନ୍ଧ
ଭୟଙ୍କର ମୂର୍ତ୍ତି ଧରି ନାଚିଲେ କବନ୍ଧ ।
ବହିଲା ରକତ ନଦୀ ବେନି ତୀର ଉଚ
ଭାସିଯାନ୍ତି ମଡ଼ାମାନେ ହୋଇଣ କଚ୍ଛ ।
ଆନନ୍ଦେ ନାଚନ୍ତି ମିଳି ଶ୍ମଶାନ ବାସିନୀ
କଳକଳା କୁହୁ କୁହୁ ଭୟଙ୍କର ଧ୍ୱନି ।
କଙ୍କାଳୀ ବେତାଳୀ ଚଣ୍ଡୀ ଚାମୁଣ୍ଡା ସହିତେ
ଉର୍ଦ୍ଧ୍ୱକେଶୀ ଭଇରବୀ ପିଶାଚୁଣୀ ଯେତେ ।
ମେଦମେଦା ଖାଇ ସୁଖେ ରକ୍ତ କରି ପାନ
ହୁଳ ହୁଳି ଦେଇ ରଣେ କରନ୍ତି ନର୍ତ୍ତନ ।
ଅତି ଉଚେ ରାବ ଦିଅନ୍ତି ଶ୍ୱାନ ଗୃଧ୍ରକାକେ
ବ୍ରହ୍ମାଣ୍ଡ ଉଚ୍ଛୁଳ ପଡ଼େ ରେରେକାର ଡାକେ ।
ସର୍ବ ପ୍ରତି ଅଦ୍ଭୁତନେ ବେନି ଯୁଣ ଯାଏ
ନିରନ୍ତରେ ବିଶୁଅଛି ଚଣ୍ଡିମୁଣ୍ଡ ମସ୍ତେ ।
ଶୁଣ ପରୀକ୍ଷିତ ରାୟେ ଶୁକମୁନି କହି
ଅତି ଆଶ୍ଚର୍ଯ୍ୟ ଭାଗବତ ପୁରାଣ ଯେ ଏହି ।
ଏସନେକ ମହାଘୋର ଲାଗିଲା ସମର
ପୁଣି ପୁଣି ବାଣାସୁର ବଳେ କୋଟି ସର ।
ଉଲ୍କାପାତ ପରାଏ ବରଷେ ମହାସ୍ଥଳୀ
ଦଶଦିଶ ଯାକ ସବୁ ଶରରେ ମଣ୍ଡଳୀ ।
ଭୂମଣ୍ଡଳଠାରୁ ସ୍ୱର୍ଗପୁର ପରଯନ୍ତେ
ସମସ୍ତ ପୂରିଅଛଇ ମହା ଅସ୍ତ୍ର ଶସ୍ତ୍ରେ ।

ଟଙ୍କିଣ ଧାଆନ୍ତି ବାଣ ଝଲମଲ ଜ୍ୟୋତି
ବଜ୍ରସୂଚୀ ପ୍ରତ୍ୟେକ ଧରି ବିଶ୍ୱମୂର୍ତ୍ତି ।
ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ନାରାୟଣ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଘୋଟେ ଦୈତ୍ୟବାଣ
ପଞ୍ଚାଶତ ଭୁଜେ ଧନୁ ଧରି ବଜ୍ର ଯଷ୍ଟି
ଏକା ବାଣକେ ଜନମ ହୁଏ କୋଟି କୋଟି ।
ନିଃଶ୍ୱାସକେ ଶତେ ବେଳ ଆମଞ୍ଚଇ ଗୁଣ
ବାଣର ଉପରେ ବାଣ ବର୍ଷନ୍ତି ଗୁରୁ ଟାଣ ।
ପବନରୁଁ ବେଗେ ବାଣ ଆସୁଅଛି ମାଡ଼ି
ଅବଶ୍ୟ ପ୍ରମାଦ ହେବ ନନ୍ଦଘୋଷେ ପଡ଼ି ।
ଏମାନଙ୍କୁ ପ୍ରତିକାର କର ନରହରି
ତାନୋହିଲେ ମୋତେବୋଲଦେବ ମୁଁ ସଂହାରି
ଅର୍ଜୁନ ବାକ୍ୟେ ବୋଲନ୍ତି ଲକ୍ଷ୍ମୀଦେବୀ ସାଇଁ
ଏ ବାଣାସୁର ଯୋଗରେ ବହୁ କାର୍ଯ୍ୟ ହୋଇ ।
ରାଜସୂୟ ଯାଗ କରିବେ ଯୁଧିଷ୍ଠି ରାଜନ
ଲକ୍ଷେ ନରପତି ତହିଁ ହୋଇବେ ବରଣ ।
ଅପମାନ ପାଇଛନ୍ତି ପଣ୍ଡୁ ନରପତି
ଚୈଦ୍ୟକରି ରାଜାମାନେ ମିଳିବା ଯୁକତି ।
ଆବର ଅଶେଷ ପୂର୍ବୁ ଅଛି ବର ପାଇ
ନାତିର ହସ୍ତେ ମରିବ ଶିବଛନ୍ତି କହି ।
ସମସ୍ତ ଅନ୍ତରେ ଏହି ନନ୍ଦଘୋଷ ରଥେ
ମୂର୍ତ୍ତିମନ୍ତ ହୋଇ ଆମ୍ଭେ ବଜେ କରି ଏଥେ ।
ଶୋଣିତ କଟକେ ହେବ ତୁମୁଳ ସମର
ସେହିଠାରେ ବାଣାସୁର ଯିବ ଯମପୁର ।
ଏତେ ପରିଶ୍ରମ କରିବାଟି ଅନମିତ୍ତେ
ଏ ବାଣ ବଧ ନୋହିବ ଜାଣ ଆମ ହସ୍ତେ ।
ତୁହି ହୋ ଅର୍ଜୁନ ଏବେ କର ଆମ୍ଭବୋଲ
ଲେଉଟାଇ ରଥବାହା ଯିବା ଏଥୁ ଚାଲ ।
ଅରଜୁନ ବୋଇଲେ ହେ ଶୁଣ ବନମାଳି
କମ୍ପା ବଦନ ଲୁଚାଇ ଯିବା ଏଥୁ ଚଳି ।
ତୁମ୍ଭେ ସ୍ୱାମୀ ବଞ୍ଚବନ୍ତ ଅଟ ଗୁଣମଣି
ଜାଣି ଏ କଥା କେମନ୍ତେ କହ ଚକ୍ରପାଣି ।
ସଂଗ୍ରାମେ ଅପସରିଲେ ଯିବ ସବୁ ଧର୍ମ
ଜନମୁଖେ ନିବାସିତ ହେବ ପାପକର୍ମ ।
ଯୁଗେ ଯୁଗେ ଅଜ୍ରାମର ନୋହେ କାରଦେହ
ମାୟାମୟ ସଂସାର ଏ ଶୁଭାଶୁଭ ତୁହିଁ ।

ଅର୍ଜ୍ଜୁନ ବଚନ ଶୁଣି ହସି ଜଗନ୍ନାଥ
ବୋଇଲେ ସାଧୁ ତୁମ୍ଭର ଗାଣ୍ଡୀବ ପାର୍ଥ ।
ବାଞ୍ଛିତ ହୋଇ ତୁମ୍ଭର ସମର୍ପଣ ଏତେ
ଲକ୍ଷ୍ମୀ ନ ଛାଡ଼ନ୍ତି ତୁମ୍ଭ କନ୍ଧ କଦାଚିତେ ।
ଏରୂପେ ଉଚ୍ଚାଟ ହୁଅନ୍ତେ ଉର୍ଦ୍ଧ୍ୱେ ବେନି
ଅଭୁତେ ଆକାଶୁଁ ଶୁଭେ ଚମତ୍କାର ଧ୍ୱନି ।
ଆହେ ପାର୍ଥ ଜଗନ୍ନାଥ ଏହି ବୋଲକର
ଶୀଘ୍ର ନେଉଛାଅ ନନ୍ଦିଘୋଷ ରଥବର ।
ନୋହିଲେତ ଦେବକାର୍ଯ୍ୟ ନୋହେ ଜାଣସିଦ୍ଧ
ଆଗ ପଛ ବିଚାରିଣ ଶତ୍ରୁ କର ବଧ ।
ଶ୍ରୀମୁଖରେ ଅଜ୍ଞାଦେଲେ ଯାହା ଜମ୍ଭଦ୍ୱେଷୀ
ନଷ୍ଟେ ନଷ୍ଟେଁ ସେହିକାର୍ଯ୍ୟ ହୋଇବଟି ସିଦ୍ଧି
ଏହାଶୁଣି ସବ୍ୟସାଚୀ ଅଶ୍ୱ ଚଳାଇଲେ
ନନ୍ଦିଘୋଷ ରଥ ତହୁଁ ନେଉଛାଇ ନେଲେ ।
ନିଃଶ୍ୱାସକେ ଯାଇ ରଥ ଉଠେ ଶୂନ୍ୟମାର୍ଗେ
ବାଣାସୁର ବାଣମାନ ଆସୁଛନ୍ତି ବେଗେ ।
ଗରୁଡ଼କୁ ଆଜ୍ଞାଦେଲେ ଦେବ ଭଗବାନ
ଡେଣା ବିସ୍ତାରିଲେ ଆସି ବିନତା ନନ୍ଦନ ।
ବାଣାସୁର ପରେ ଗରୁଡ଼ର ଡେଣାବାଜ
ଥୋକେ ଉପୁଡ଼ି ପଡ଼ିଲେ ଥୋକେ ଗଲେ ଭାଜି
ଖଗେଶ୍ୱର ହଲାଇଣ ଦେଲା ଯହୁଁ ଡେଣା
ବହିଲା ଯେ ଅଣଞ୍ଚାଶ ବାୟୁ ଶତେ ଗୁଣା ।
ବାଣାସୁର ସୈନ୍ୟମାନେ ଅନ୍ତରୀକ୍ଷେ ଉଡ଼ି
ପ୍ରାଣତ୍ୟାଗ କଲେ ବନଗିରି ତଳେ ପଡ଼ି ।
ରଥ ଗଜ ଅଶ୍ୱ ରଥୀ ମାହୁନ୍ତ ବହୁତ
ଅନେକ ଦୂରରେ ପଡ଼ିଣ ହେଲେ ପ୍ରାଣ ହତ ।
ନନ୍ଦିଘୋଷ ରଥବର ଆକାଶରେ ଥାଇ
ଶୁଣ ପରୀକ୍ଷିତ ରଜା ଶୁକମୁନି କହି ।
ଏଥୁ ଅନନ୍ତରେ ଜରାସନ୍ଧ ନରପତି
ବଳରାମ ଶ୍ରୀଛାମୁରେ ମିଳିଲା ତଡ଼ିତ ।
ଚଉପାଶେ ବେଢ଼ିଛନ୍ତି ନରପତି ଗଣ
ଚତୁରଙ୍ଗ ସୈନ୍ୟତାର ଅଟେ ଅପ୍ରମାଣ ।
କାଙ୍କ କୁବଡ଼ି ଧନୁଯେ ଅଛନ୍ତି ସଜାଡ଼ି
ଶାବଳେ ସେ ପୁରମ ନ ପକାଇଲେ ତଡ଼ି ।
ଦ୍ୱାରେ ଜଣି ଭିତରେ ସେ ପଶିଲେ ଝସାଇ
ଦେଖି ଯାଦବେ ପଳାଇଗଲେ ଭୟ ପାଇ ।

ବଳରାମଙ୍କ ପଛରେ ରହିଲେ ସକଳ
ରହ ରହ ବୋଲି ଓଗାଳିଲେ କାମପାଳ ।
ତାଳଧ୍ୱଜ ଆରୋହଣ ରେବତୀର ବଳା
ଶ୍ରୀକରେ ହଳ ମୁଷଳ ଧରି ଅନର୍ଗଳା ।
ଜରାସନ୍ଧ ଆଗେ ରଥ ଟେକିଲେକ ଆଣି
ଦେଖିକରି କୋପ କଲା ମଗଧ ନୃମଣି ।
ନୟନ ବୁଲାଇ ଜରା ଓଷ୍ଠ କଲା ପୁଷ୍ଟ
ହସି ବୋଲଇ ଗଉଡ଼ ତୁ ରେ ଏଡ଼େ ଦୁଷ୍ଟ ।
ମୋର ଶତ୍ରୁ ଅଟ ଏକା ତୁମ୍ଭେ ଭାଇ ବେନି
ତୁମ୍ଭ ଲାଗି ଆସିଅଛୁ ଏତେ ସୈନ୍ୟ ଘେନି ।
ବେଳେବେଳେ ମୋଠାରୁ ତୁମ୍ଭେ ପରାହୋଇ
ଯିବୁଁ ଯିବୁଁ ଯାଉଅଛ କପଟେ ଭୁଲାଇ ।
ଏବେ ରେ ନଷ୍ଟସ୍ତେ ପଡ଼ିଲଟି ମୋର ଆଗେ
ଏତେ ବୋଲି ଧନୁ ଜରା ଧଇଲାକ ବେଗେ ।
ତୀକ୍ଷଣ ମୁନା ସସ୍ରମୁନା ଧନୁରେ ଯୁଗାଇ
ବଳରାମଙ୍କ ଉପରେ ବିନ୍ଧଇ ନଠାଇ ।
ପୂର୍ବ ପଞ୍ଚାଶ ସହସ୍ର ବାଣ କରେ ଘେନ
କହିଲା ମାହକେ ପଶେ ମନକ୍ରୋଧ ଘେନ ।
ବାଜଲ ଶତେ ନାରାଚୀ ପୁନରପି ବାଛି
ମନ୍ତ୍ର ସୁମରି ବିନ୍ଧଇ ସଙ୍କୋଚନ ନାହିଁ ।
ଲୋହ ଶର ଗଦା ସହ ସହସ୍ରେକ ବାଣ
କର୍ଣ୍ଣଯାଏ ଓଟାରିଣ ବିନ୍ଧେ ତତକ୍ଷଣ ।
ଇକ୍ଷୁ ପିଛଡ଼ା ମାହକେ ପୁଣି ଶର ମାରି
ଲକ୍ଷକୋଟି ଶର ଯେସେ ମହାରୋଷ ଭରି ।
ତାଳଧ୍ୱଜ ରଥେ ଥାଇ ବଳଦେବ ସ୍ୱାମୀ
ବାଣ ଆସନ୍ତେ ଦେଖିଣ ଦେବ ଅନ୍ତର୍ଯ୍ୟାମୀ ।
ରଥର ଉପରେ ଥାଇ ପାଞ୍ଚଲେ ବାମାଙ୍ଗ
ନାରାଚ ମାରନ୍ତେ ପଡ଼ି ହେଲା ସବୁ ଭଙ୍ଗ ।
ଧବଳ ପର୍ବତ ପରେ ଯେସନେ ପୁଷ୍ପ ବୃଷ୍ଟି
ଶମ୍ଭୁଲିଙ୍ଗ ଉପରେ କି ସୁଧା ପାଣି ସିଞ୍ଚି ।
ସେହିପରି ଜରା ବାଣ ହଳୀ ଅଙ୍ଗେ ପଡ଼ି
ଥୋକେ ଭାଙ୍ଗିଲେକ ଥୋକେ ପଡ଼ିଲେ ଉପୁଡ଼ି ।
ଦେଖି ମନେ ଲଜ୍ଜା ପାଇ ମଗଧ ଈଶ୍ୱର
ପୁଣି ଆକୋଶି ସେ ଧନୁ ଧରେ ବାମ କର ।
ପଞ୍ଚାଶ ସହସ୍ର ବାଣ ଅଭିମନ୍ତ୍ର କରି
କର୍ଣ୍ଣମୂଳ ପରଯନ୍ତେ ଆଣିଲା ଓଟାରି ।

କଥା: କହୁବା ମାତ୍ରକେ ଷାଠିସହସ୍ର ଶର
ରେରେକାର କରଣ ସେ ବେଗେ ଧାଡକାର ।
ବାବଲ ଛେଲ ମୁଦ୍‌ଗର କୁନ୍ତମୁନା ଯଷ୍ଟି
ଗୁଣ ପୁଷ୍ଟକର ବାଣ ବର୍ଷେ କୋଟି କୋଟି ।
ପୃଥ୍ୱୀଯାକ ହଣିଗଲା ଉଲ୍‌କାପାତ ପ୍ରାୟେ
ଅବନୀରୁ ଲାଗେ ବାଣ ବଇକୁଣ୍ଠ ଯାଏ ।
ଜରାସନ୍ଧ ଯୁଦ୍ଧ ଦେଖି ସର୍ବ ରାଜାଗଣ
ଯାଦବଙ୍କ ସମ୍ମୁଖରେ କଲେ ମହାରଣ ।
ଯେଉଁ ରେ ସୈନ୍ୟ ଆବୋରି ସର୍ବେଛନ୍ତି ରହି
ନାନା ଶସ୍ତ୍ରମାନ ଘେନ ମାରନ୍ତି ଲୁହାଇ ।
ଫିରିଫିରି ନାରାଚ ଯେ ବଜ୍ରସୂଚି ବାଣ
ପର୍ଶୁ ଆତପତ୍ର ଘୃତ ପାଷାଣ ଲବଣ ।
ଯାଦବଗଣଙ୍କୁ କେହି ନ କରନ୍ତି ଶଙ୍କା
ମଣ୍ଡାପରେ ଉଠି ଯୁଝନ୍ତି ରଣରଙ୍କା ।
ପାଞ୍ଚାଳ ଖଣା କ୍ଷଣକରେ ହେଲେ ପୋତ
ଅନେକ ଯୋଦ୍ଧା ପଡ଼ିଲେ ତହିଁ ନାନାଯାତ ।
ଥୋକାଏ ଉଶ୍ୱାସ ହୋଇଗଲା ବସୁନ୍ଧରା
ଅନେକ ଦୁଷ୍ଟଙ୍କୁ ନାଶ କଲେ ହଇଙ୍କାରି ।
ଶୁଣ ହେ ପରୀକ୍ଷ ବଦନ୍ତି ଶୁକଯତି
ଇତି ଶିଷ୍ଟ ହରିବଂଶ ପୁରାଣର ଖ୍ୟାତି ।
ଅତିଭାଗ୍ୟେ ଭାଗବତ ଗ୍ରନ୍ଥ ଶୁଣାଯାଇ
ସପ୍ତ ସମୁଦ୍ର କେ ପାରେ କରରେ ଶୁଖାଇ ।
କୋଟିମୁଖ ବ୍ରହ୍ମାଣ୍ଡ ଯେ ଅଗୋଚର ଗ୍ରନ୍ଥ
ସଂକ୍ଷେପ କରି କହିବ କେତୁ ପୁଣ୍ୟବନ୍ତ ।
ନ ଜାଣନ୍ତି ଶଙ୍କର ଯା ନ ଜାଣନ୍ତି ଉମା
ଦେବାସୁର ଅଗୋଚର ଯେ ହରି ମହିମା ।
ଜଣେଜଣକେ ଅସଂଖ୍ୟ ରଣ ହେଲା ତହିଁ
ଅଗୋଚର ମହିମା ତ ଗୋଚର ନୁହଇ ।
ଛୟାଣୋଇ ସହସ୍ର ରାଜା ଚତୁରଙ୍ଗ ବଳ
ଅସଂଖ୍ୟକ ଅସମ୍ଭବ ଯେସନ୍ତେ ସିନ୍ଧୁଜଳ ।
ଏକ ଏକ ରାଜାଙ୍କର ଦଶ ବଂଶ କ୍ଷୌଣୀ
ବଚନେ କହି ନୁହଇ ପାରିବ କେ ଗଣି ।
କ୍ଷଣକେ ଭାଙ୍ଗନ୍ତି କ୍ଷଣେ ଲାଗନ୍ତି ଯେ ଉଠି
କ୍ଷଣକେ କବନ୍ଧ ନୃତ୍ୟକରି କୋଟି କୋଟି ।
ଏସନକ ମାୟା କରିଛନ୍ତି ଦେବରାୟେ
ଯାଦବମାନଙ୍କ ମଧ୍ୟେ ଜଣେ ନୁହେ କ୍ଷୟେ ।

ଲକ୍ଷେକୋଟି ବଳ ଛନ୍ତି ଆବୋରିଣ ରଣେ
ହସ୍ତି ତେଜ କଳା ବହିଛନ୍ତି ଜଣେ ଜଣେ ।
ଯାଦବ ରୂପରେ ସ୍ୱର୍ଗୁଁ ଆସି ଦେବଗଣ
ଗୁପତେ ଶସ୍ତ୍ର ଧରି କ କରୁଛନ୍ତି ରଣ ।
ବାଣାଙ୍କର ମୁକେ ବାଜେ କରି ମହାଚଣ୍ଡୀ
କଳକଳା ରବ ଦେଇ ଭକ୍ଷି ମୁଣ୍ଡଗଣ୍ଡି ।
ଏହିପରି ସମର ଯେ ହୋଇଲା ଦୁସ୍ତର
ହଳୀଙ୍କ ଛାମୁରେ ମିଳେ ଜରା ନୃପବର ।
ଶରଦ ମେଘ ପରାୟେ ଗର୍ଜ୍ଜେ ରୋଷଭରେ
ଗଜଦନ୍ତ ମାଇଲେକ ମାଳ୍ୟବନ୍ତ ପରେ ।
ପୁନରପି ବହୁଶର ମାରେ ରୋଷ ଭରି
ଇନ୍ଦ୍ର ବଜ୍ର ମାଇଲେକ ହେମବନ୍ତ ଗିରି ।
ରଥୁଁ ଡେଇଁପଡ଼ି ହଳୀ ମୂଷଳ ବୁଲାଇ
ରୋଷଭରେ ଗର୍ଜ୍ଜନ୍ତି ସେ ସପ୍ତଫଣା ବହି ।
ହଟହ ପାଦଗତରେ କରି ଘୋରରଡ଼ି
ଆସନ୍ତି ପର୍ବତ ଯେସନ୍ତେ ପଡ଼ି ଥାଏ ମାଡ଼ି ।
ସମୁଦ୍ର ଭିତରୁ ଯେସନ୍ତେ ଚନ୍ଦ୍ରମା ଉଦୟେ
ଶୁକ୍ଳାମ୍ବର ରୂପ ତେସନ୍ତେ ଦିଶେ ତେଜୋମୟେ ।
ହଳ ମୂଷଳ ବୁଲାଇ ଦେବ ଅନ୍ତର୍ଯ୍ୟାମୀ
ଜରାସନ୍ଧ ପରେ ବେଗେ ପିଟିଲେକ ସ୍ୱାମୀ ।
ଭାଜିଲା ରଥବର ସେ ଆଘାତକୁ ପାଇ
ଉଡ଼ିଲା ଗଗନ ମାର୍ଗେ ମଣ୍ଡିଗୁଣ୍ଡା ହୋଇ ।
ସାରଥି ସହିତେ ଚାରିଅଶ୍ୱ ତହିଁ ମଲେ
ବିରଥି ହୋଇଲା ଜରା ସମର ଭୂମୂଳେ ।
ବାଆସ୍ତରି ଭାର ଗଦା ଘେନ ବାମକରେ
ବଳରାମଙ୍କ ଉପରେ ପିଟେ କୋପଭରେ ।
ଦେଖି କାମପାଳେ ହେଲେ ଲଙ୍ଗଳକୁ ଆଡ଼
ଶତଖଣ୍ଡ ହେଲା ଗଦା ଲଙ୍ଗଳରେ ପଡ଼ି ।
ନିସ୍ତବ୍ଧେ ରହିଲା ତହୁଁ ମଗଧ ନୃପତି
ବାହାସ୍ଫୋଟ ମାରି କଲା ମାଲବିଦ୍ୟା ଗତି ।
ଭୂମି ଉପରେ ଲୋଟିଣ ମାରି ଶୂନ୍ୟଚରି
ମୁଷ୍ଟି ଉଞ୍ଚାଇ ଉନ୍ମତ୍ତ ହୋଇ ମହାଗାରି ।
ଦେଖି କାମପାଳ ବାମ ଭୁଜକୁ ପ୍ରସାରି
ଲଙ୍ଗଳ ବେକରେ ଦେଇ ଆଣିଲେ ଓଟାରି ।
ଘାଏ ଅସାଷ୍ଟମ ହେଲା ସଂକୋଚନ ହୃଷା
ଘଡ଼ିଏ ପର୍ଯ୍ୟନ୍ତେ ତଳେ ପଡ଼ିଗଲା ମୂର୍ଚ୍ଛା ।

ଦକ୍ଷିଣ କରରେ ଧରି ମୁଦ୍ଗରକୁ ହଳୀ
ଜରାସନ୍ଧ ପରେ ନେଇ ପିଟନ୍ତେଣ ଚୋଳ ।
ଏସନ ସମୟେ ସ୍ୱର୍ଗୁ ହେଲା ଦୈବବାଣୀ
ଜରାସନ୍ଧଠାରୁ କୋପ ସମ୍ବର ହେ ସ୍ୱାମୀ ।
ଏହାରେ ଅନେକ କାର୍ଯ୍ୟ ହୋଇବ ଯୁକତେ
ପ୍ରାଣଦାନ ଦେଲ ଯାକୁ ଗୁପ୍ତ ଶୂନ୍ୟହସ୍ତେ ।
ସମସ୍ତେକ ରହିଥାଉ ଏହି ଦୁଷ୍ଟବୁଦ୍ଧି
ତେବେ ଜାଣ ଦେବକାର୍ଯ୍ୟ ହୋଇବାକ ସିଦ୍ଧି
ଆକାଶ ବାଣୀ ଶୁଣିଣ ରେବତୀର ସାଇଁ
ବାହୁଡ଼ି ରଥ ଉପରେ ବେଗେ କଲେ ଯାଇ
ଅହୋବଳ ସୈନ୍ୟ ମଧ୍ୟେ ବଳରାମ ଧନ୍ୟ
ବୋଲି ଜୟ ଉଚ୍ଚାରିଲେ ସ୍ୱର୍ଗେ ଦେବଗଣ ।
ଏଥିଅନ୍ତେ ଜରାସନ୍ଧ ନୃପତିକୁ ଜିଣି
କୃଷ୍ଣଙ୍କ ପାଶେ ପ୍ରବେଶ ହେଲେ ହଳପାଣି ।
ଦେଖିଲେ ନନ୍ଦିଘୋଷେର ବେଳେ ବୃଷ୍ଣିରାଶି
ସ୍ମୁମୁରେ ପାର୍ଥ ସାରଥିପଣେ ରଥେ ବସି ।
ତହନ୍ତେ ଦେଖିଲେ ଦମଘୋଷର ଦୁଲାଳ
କର ଚରଣ ବନ୍ଧନେ ଅଛି ଶିଶୁପାଳ ।
ବଳରାମ ହସିଲେକ ହସ୍ତ ମୁଖ ଗୃହି
ଶିଶୁପାଳେ ଏତେ ଦୁଃଖ ଦେଲେ କାହିଁପାଇଁ
ଏ ପରା ଆମ୍ଭ ମାଉସୀପୁଅ ସହୋଦର
ଦେବକୀ ଦୈବେକୀ କୁନ୍ତୀ ଏ ନୁହନ୍ତି ପର ।
ଏବେ ନ ଜାଣିବାପଣେ କଲ ଆମ ଦୋଷ
ଆମେ ନ ସହିଲେ ଧର୍ମ ନଷ୍ଟେ ଯିବ ନାଶ ।
ଏ ମଲେ ଆମ ମାଉସୀ ହୋଇବ ବିକଳ
ସପତାଙ୍କେ ନାଶଯିବ ଦମଘୋଷ କୁଳ ।
ଶ୍ରୀକୃଷ୍ଣ ବୋଇଲେ ଏହି ମୂଢ଼ ବଣ୍ଡମନ୍ଦ
ଆମ ସଙ୍ଗତେ କପାଇଁ କଲା ବୃଥା ଦ୍ୱନ୍ଦ୍ୱ ।
ଏହାର ବଚନ ଭଙ୍ଗେ ନାହିଁ ଜରାସନ୍ଧ
ଯାହା ବୋଲିବ ତାହାର ଅଟେ ଦୃଢ଼ବନ୍ଧ ।
ସଙ୍ଗତେ ଅଛନ୍ତି ଯାର ଅନେକ ସଇନ
ସେନାପତିପଣେ ଆସିଅଛି ଶାଲ୍ୱୀ ହେନ ।
ବାଣା ବଜ୍ରନାଭ ଆଉ ସମ୍ବର ନାରକା
ରଥୀ ମହାରଥୀ କେତେ ଛନ୍ତି ଯାର ସଖା ।
ସେ ସମସ୍ତେ ଥାଉ ଏ ଯେ ହେଲା ଆଗଭର
ମାଉସୀ ଉତ୍ପ୍ରୋଧ ଦୋଷ ସହିବା ଏହାର ।

ଶତେବାର ପରାଯନ୍ତେ ସମ୍ଭାଳ ରହିବା
ତହିଁରୁ ବଳିଲେ ନଷ୍ଟେ ପରାଣେ ବଧିବା ।
ଆଜଯାଏଁ ତ ଅପରାଧୀ ହୋଇଲାଣି ଏତେ
ନଷ୍ଟେ ଜଣାଯାଏ ପ୍ରାଣ ଦେବ ଆମ ହସ୍ତେ ।
ମାତାର ଉତ୍ପ୍ରୋଧ ଯାକୁ ବେଳେବେଳା ଛାଡ଼
ଏତେ ବୋଲି ବଳରାମ ବନ୍ଧନରୁ ଫେଡ଼ ।
କହୁଛ ତଥାପି ତାକୁ ପ୍ରଭୁ ହଳପାଣି
ବୋଇଲେ ରାଜ୍ୟକୁ ତୋର ଯାଅ ଏହିକ୍ଷଣି ।
ଏ ଜରାସନ୍ଧ ରାଜାର ସଙ୍ଗେ ଯେବେ ଥିବୁ
କୃଷ୍ଣ କୋପ କଲେ ଆମ୍ଭେ ରଖି ନ ପାରିବୁ ।
ଏହା ଶୁଣି ଶିଶୁପାଳ ପାଇ ମନେ ଖେଦ
ସମର ଛାଡ଼ିଣ ବେଗେ ଗଲା ପାଦଗତି ।
ଆପଣା ରାଜ୍ୟରେ ଯାଇ ପ୍ରବେଶ ହୋଇଲା
ନିଜ ମାତା ଆଗେ ସବୁ ବୃତ୍ତାନ୍ତ କହିଲା ।
ଦସ୍ୟୁମାନଙ୍କୁ ରାମକୃଷ୍ଣ ଜଗତ ସୋଦର
ନାହିଁ ତାଙ୍କୁ ଶତ୍ରୁ ମିତ୍ର ନାହିଁ ପରାପର ।
ସେ ପ୍ରଭୁଙ୍କ ପାଦପଦ୍ମେ ରେଣୁକୁ ମୋ ଆଶ
ଅଚ୍ୟୁତ ଦାସକୁ ଗତି ହୁଅ ପୀତବାସ ।

—※—

## ଜରାସନ୍ଧର ନବମ ବାର ଧାଡ଼ି

ଏଥିଅନ୍ତେ ବାର୍ତ୍ତା ନେଇ ଜରାସନ୍ଧ ଆଗେ
ଦେଶାଉର ଜଣାଇଲା ମିଳି ଅତିବେଗେ ।
ହେ ଦେବ ସାବଧାନରେ ଶୁଣ ନୃପମଣି
ସଂଗ୍ରାମ ବାରତା ଦେବ ଅଇଲା ଯା ଶୁଣି ।
ଦକ୍ଷିଣ ଦ୍ୱାରରେ ଥିଲା ଶିଶୁପାଳ ବୀର
ରାମକୃଷ୍ଣ ସଙ୍ଗେ କଲା ଭୀଷଣ ସମର ।
ତାହାଙ୍କ ସଙ୍ଗତେ ଯୁଦ୍ଧେ ନ ପାରିଲା ଜିଣି
ଦେବଶରମାନ ସବୁ ପ୍ରହାରିଲା ଆଣି ।
କୌଣସି ଶସ୍ତ୍ର ନ କାଟେ ହରିଙ୍କ ଅଙ୍ଗକୁ
ଏକଶରେ ଶର କାଟି ମୋହ କଲେ ତାକୁ ।
ରଥର ଉପରୁ ଶିଶୁପାଳେ ବାନ୍ଧି ନେଇ
ଦେଖି ବାଣାସୁର ଯୁଦ୍ଧେ ଆସି ପରଘାଇ ।
ସହସ୍ର ଭୁଜରେ ବାଣ ସନ୍ଧାନ ସେ କଲା
ତା ସ୍ମୁମୁରେ ରହି କୃଷ୍ଣ ଯୁଝି ନ ପାରିଲା ।
ଯୁଧିଷ୍ଠିର ରାଜାର ଭାଇ ବୀରବର ପାର୍ଥ
ସାରଥିପଣେ ବାହଇ ନନ୍ଦିଘୋଷ ରଥ ।

ମେରୁ ମନ୍ଦର ପର୍ବତେ ଆଗେ ମିଳିଥିଲ
କେହି ନ ଦେଖିଲେ କେଣେ ମାୟାକରି ଗଲ ।
ଆରେକ ଉଗର ଆସି କହିଲ ବାରତା
ଶୁଣ ଦେବ ସାବଧାନରେ ଶୁଣ ତାଙ୍କ କଥା ।
ବାଣାସୁର ଆଗୁ ଜଗନ୍ନାଥ ଯେ ପଳାଇ
ଅର୍ଦ୍ଧ ଆକାଶରେ ରଥ ରଖିଥିଲ ନେଇ ।
ଶିଶୁପାଳକୁ ବାନ୍ଧଣ ଥୋକେ ଦୂର ଯାନ୍ତେ
ରୋହଣୀସୁତ ଭେଟିଲେ ଯାଇ ତାଙ୍କୁ ପଥେ ।
ଶିଶୁପାଳେ ଛାଡ଼ିଦେଲ ସହୋଦର ପଣେ
ପାଦଗାମୀ ହୋଇ ସେହୁ ପଳାଇଲ କେଣେ ।
ତୁଙ୍ଗଭଦ୍ରା ତୀରେ ମଣିଭଦ୍ର ପରବତ
ସେ ପର୍ବତ ତଳେ ରହିଛନ୍ତି ବେନି ଭ୍ରାତ ।
ନନ୍ଦଘୋଷ ତାଳଧ୍ୱଜ ରଥରେ ଆରୋହି
ତାଙ୍କ ସଙ୍ଗେ ପଣ୍ଡୁ ସୁତ ପାର୍ଥ ଅଛି ରହି ।
ରଥ ଗଜ ଅଶ୍ୱ ନାହିଁ ପଦାତିକ ବଳ
ଦୁଇ ଭାଇ ରହିଛନ୍ତି ସେ ପର୍ବତ ତଳ ।
ଶୁଣିକରି ଜରାସନ୍ଧ ସନ୍ତୋଷ ହୋଇଲ
ଶାଢ଼ୀ ସୁନାବଳା ଭଣ୍ଡାରରୁ ଆଣି ଦେଲ ।
କେବଣଠାରେ ଅଛନ୍ତି କହ ତଥ୍ୟକରି
ଦୂତ ବୋଇଲ ପର୍ବତ ତଳେ ବେନି ହରି ।
ଏହି ମଣିଭଦ୍ର ଗିରି ଅତ୍ୟନ୍ତ ସୁସଞ୍ଜ
ଚଉଦଶ ଯୋଜନ ଦୀର୍ଘ ତିନି ଯୁଗ ଉଚ୍ଚ ।
ଏ ଗିରି ଦକ୍ଷିଣ ଭାଗେ ତୁଙ୍ଗଭଦ୍ରା ନଦୀ
ସ୍ୱର୍ଗ ଗଙ୍ଗାରୁ ହୋଇଛି ସେ ଉତ୍ତରବେଦୀ ।
ସେ ନଦୀତଟରେ ନିର୍ମଳ ନାମେ ଅଛି ବଟ
ଶଙ୍କେତ ନାମରେ ଗୁମ୍ଫା ଅଛି ତା ନିକଟ ।
ଅମରେଶ୍ୱର ବୋଲଣ ଲିଙ୍ଗ ଅଛି ତହିଁ
ଦ୍ୱାଦଶବର୍ଷ ପର୍ଯ୍ୟନ୍ତେ ଦୁର୍ବାସା ଯେ ରହି ।
ସେ ଗୁମ୍ଫା ଭିତରେ ନିଦ୍ରାଗଲେ ଭାଇ ବେନି
ଦ୍ୱାରେ ଜଗି ହୋଇଅଛି ବୀର ଫାଲଗୁନି ।
ଜରାସନ୍ଧ ବୋଲେ ତହିଁ ପଥ ହେବ କେତେ
କେଉଁଦିଗେ ଅଛନ୍ତି ସେ କହ ମୋ ଅଗ୍ରତେ ।
ଉଗର ବୋଇଲ ଦେବ ସାବଧାନେ ଶୁଣ
ଏଥିକୁ ସେ ମଣିଭଦ୍ର ଚଉତିଂଶ ଯୁଣ
ତୁଙ୍ଗଭଦ୍ରା ନଦୀ ଅଛି ତା ଦକ୍ଷିଣ ଭାଗେ
ଶଙ୍କେତ ନାମରେ ଗୁମ୍ଫା ଅଛି ତହିଁ ଆଗେ ।

ଯେବଣଠାରେ ନିର୍ମଳ ନାମେ ଅଛି ବଟ
ଏଠାକୁ ହେବ ଦ୍ୱାତ୍ରିଂଶ ଯୋଜନ ଯେ ବାଟ
ଏହା କହିଣ ଉଗର ବଢ଼ାଇଲ ହାତ
ଏ ସ୍ଥାନ ବୋଲି ଦେଖାଇ ଦେଲ ସେ ପର୍ବତ ।
ଜରାସନ୍ଧ ଯେ ପ୍ରତିଜ୍ଞା କରି ତହୁଁ ଉଠି
ରଥର ଉପରେ ବଜେ କଲ୍କ ଲେଉଟି ।
ବାଆସ୍ତରି ଭାର ଗଦା ବୁଲାଇଣ କରେ
ବାତଚକ୍ର ପରାୟେକ ଧାମେ ବେଗ ଭରେ ।
ଊର୍ଦ୍ଧ୍ୱବାହୁ ହୋଇ ସେହି ହେଲ କୋପାନଳ
ଗଦାକୁ କାନ୍ଧେ ପକାଇ ଧାମେ ଅନ୍ତରାଳ ।
ହୁଂକାର ଘୋର ଶବଦ ଭୟଙ୍କର ଧ୍ୱନି
ଶବଦରେ କମ୍ପମାନ ହୁଏ ପୁର ତିନି ।
ଅଣଚାଶ ପବନ ଯେ ବହେ ଘନ ଘନ
ପବନ ଆଘାତେ ମେରୁ ହୁଏ କମ୍ପମାନ ।
ବୁଲାଇ ଗଦାବରକୁ ଫିଙ୍ଗନ୍ତେ ସରୋଷେ
ଭୟ ପାଇ କମ୍ପିଲେକ ସକଳ ଦିଗେଶେ ।
ବତିଶ ବାର ପର୍ଯ୍ୟନ୍ତେ ଦୃଢ଼କରି ଗଣି
ଗଣନ୍ତେ ବାରେକ ଭ୍ରମ କଲ ନୃପମଣି ।
ଏସନକ ବର ତାକୁ ଦେଇଛନ୍ତି ବେଧା
ଏକ ବେଳ ବୁଲାଇବେ ଯତେ ହୋଏ ଗଦା ।
କୋପେ ଜରାସନ୍ଧ ଗଦା ବୁଲାଇଲ ବେଳେ
ଏକବାର ଭ୍ରମ ହେଣୁ ହୋଇଲ ସେ କାଳେ ।
ଆକାଶ ମାର୍ଗରେ ଗଦା ଗଲ ବେଗେ ଉଡ଼ି
ଶବଦ ଶୁଭଇ ଯେହ୍ନେ ମେଘ ଘଡ଼ଘଡ଼ି ।
ଅଣଚାଶ ବାୟୁ ଜାଣି କ୍ଷେପେ ଶୂନ୍ୟ ଗତି
ବିଜୁଳି ପରାୟେ ଦିଶେ ଚହଟି ତା ଜ୍ୟୋତି ।
ଆକାଶୁ ସୂର୍ଯ୍ୟମଣ୍ଡଳ ପଡ଼େ ଯେହ୍ନେ ଖସି
ତେସନ ସଞ୍ଜାତେ ଗଦା ଆସନ୍ତେଣ ଦିଶି ।
ରାମକୃଷ୍ଣ ଦୁହେଁ ଥିଲେ ଯେବଣ ଠାବରେ
ପଡ଼ିଲ ସେ ଗଦା ତାଙ୍କୁ ଯୋଜନ ଅନ୍ତରେ ।
ବରୁଣ ନାମେ ପର୍ବତ ସୁସଜ୍ଜିତ ଅତି
ଉଚ୍ଚରେ ସେ ପାଞ୍ଚଯୁଗ ତିନିଯୁଗ ପ୍ରନ୍ତ ।
ସେ ଗିରି ଉପରେ ଗଦା ପଡ଼ିଲାକ ଆସି
ଶତେ ତାଳପ୍ରାଏ ଗିରି ତଳେ ଗଲ ପଶି ।
ବଜ୍ର ଘାତ ପ୍ରାୟେ ଶବ୍ଦ ଶୁଭିଲ ପ୍ରଚଣ୍ଡ
ବନଗିରି ସହିତରେ କମ୍ପିଲ ବ୍ରହ୍ମାଣ୍ଡ ।

ଭୟେ ଚରାଚର ପ୍ରାଣୀ ହୋଇଲେ କାତର
ଶ୍ରୀକୃଷ୍ଣ ମୁଖକୁ ଚାହିଁ ପ୍ରଭୁ ପୀତାମ୍ବର ।
ବୋଇଲେ କମ୍ପିତ ଶବ୍ଦ ହୋଇଲା ଏ ଜାତ
ଜାଣି ନ ପାରିଲୁ ଆମେ ଏଥିର ତଦନ୍ତ ।
ଗୋବିନ୍ଦ ବୋଇଲେ ତୁମ୍ଭେ ଶୁଣ ହଳପାଣି
ଗଦା ଫିଙ୍ଗି ଦେଲା ଜରାସନ୍ଧ ନୃପମଣି ।
ଗଣନ୍ତେ ବିଭ୍ରମେ ଚାରି ହେଲା ସହସ୍ର ବାରେ
ଚେଣ୍ଟୁ ଗଦା ପଡ଼ିଲାକ ଯୋଜନ ଅନ୍ତରେ ।
ଆଉ ବାରେ ବୁଲାଇ ସେ ଯେବେ ଫିଙ୍ଗିଥାନ୍ତା
ନିଶ୍ଚେ ଗଦା ଆସି ଆମ୍ଭ ଉପରେ ପଡ଼ନ୍ତା ।
ଭଲ ହୋଇଲା ଯେ ଧର୍ମଦେବ ରକ୍ଷାକଲା
ମେଣ୍ଟ ଲା ମହା ଅରିଷ୍ଟ ବିପତ୍ତି ଖଣ୍ଡିଲା ।
ଏତେ ବୋଲି ନନ୍ଦଘୋଷ ଆରୋହି ଶ୍ରୀହରି
ତାଳଧ୍ୱଜ ରଥେ ସଂକର୍ଷଣ ବିଜେ କରି ।
ଆନନ୍ଦ୍ୟ ଅନ୍ତମାନରେ ଚଳିଲେ ଦୁଃଖରେ
ଗ୍ରହରେ ମିଳିଲେ ଯାଇ ଉତ୍ତର ବନରେ ।
ବୋଧପୁର ବୋଲିଣ ଯେ ପାଟଣାଏ ତହିଁ
ପୁରୁରବା ଚକ୍ରବର୍ତ୍ତୀ ତହିଁ ଥିଲା ହୋଇ ।
ଦ୍ୱାଦଶ ଯୋଜନ ପାଟଣାର ପରିମିତ
ବସିଅଛୁ ଗୃହ ତହିଁ ଷଡ଼ବିଂଶ ଜାତ ।
ମେଡ଼ ମଣ୍ଡପ ଦେଉଳ ଜଗତି ଅଟ୍ଟାଳୀ
ସରସ୍ୱତୀ ନଦୀତୀରେ କଟକ ଉଜ୍ଜ୍ୱଳ ।
ବଳରାମ ଜଗନ୍ନାଥ ଅର୍ଜୁନକୁ ଘେନି
ସେ ନଗ୍ରେ ମିଳିଲେ ଯାଇ ହୋଇଛୁ ରଜନୀ ।
ରାହେ ନଗର ଭିତରେ ଗୁପତରେ ରହି
ସଙ୍ଗରେ ଅକ୍ଷୌହିଣୀ ଯେ ଅଛନ୍ତି ଗୋଡ଼ାଇ ।
କୋଟି କାମଧେନୁ ବତ୍ସ ଗର୍ଭମଧେ ଭରି
ଜଗବନ୍ଧୁ ସଙ୍ଗେଛନ୍ତି ସେ କପିଳା ନାରୀ ।
ଯେତେବେଳେ ଯା ଲୋଡ଼ନ୍ତି ହଳୀ ଚକ୍ରପାଣି
ସହସ୍ର ଗୁଣେ ଯୋଗାଇ ଦିଅନ୍ତି ସେ ଆଣି ।
ଶୁକ ବୋଇଲେ ଯେ ଶୁଣ ପରୀକ୍ଷ ନୃପତି
ବୋଧପୁର ପାଟଣାରେ ରହିଲେ ଶ୍ରୀପତି ।
ନିତ୍ୟକର୍ମ ଶେଷ କରି ଭୋଜନ ସାରିଲେ
ବିଚିତ୍ର ଗୃହେ ଅଚିନ୍ତ୍ୟାଗ୍ରହେ ନିଦ୍ରା ଗଲେ ।
ଅର୍ଜୁନ ମଞ୍ଚାଳେ ଜଗନ୍ନାଥଙ୍କ ଚରଣ
ସୁପାତ୍ର ଶେଯରେ ଶୟ୍ୟାକଲେ ନାରାୟଣ ।

ଇତି ଶ୍ରୀହରିବଂଶ କଥା ପୁଣ୍ୟମୟେ
ଇଦଂ ଏକାଦଶ ଅଧ୍ୟା ସମାପତ ହୋଏ ।
ଏଥୁ ଅନନ୍ତରେ ଜରାସନ୍ଧ ନୃପସାଇଁ
ପରମ ସାନନ୍ଦ ହେଲା ଗଦା ଫୋପଡ଼ାଇ ।
ଆପଣା ହୃଦେ ବିଚାର କରେ ଶୁଦ୍ଧବୁଦ୍ଧି
ଏବେ କାର୍ଯ୍ୟଗୋଟା ମୋର ହେ ଇଲାକସିଦ୍ଧି ।
ଆଗହୁଁ ଏ ବୁଦ୍ଧି ଯେବେ ସ୍ଫୁରିଥାନ୍ତା ମୋତେ
ଅକାମିତେ ସୈନ୍ୟ ମୋର ମରନ୍ତେକମର୍ଥେ ।
ଜୀବନ୍ତା ଧରିବ ବୋଲି କଲି ମୁଁ ସାହସ
ପାଇଲି ଅନେକ ଲଜ୍ୟା ହେଲା କାର୍ଯ୍ୟନାଶ ।
ଯାଦବଙ୍କ ସଙ୍ଗେ କର୍ମ କରିଲି ମୁଁ ବଳ
ବଇରୀ ଅଟନ୍ତି ମୋର ହଳୀ ବନମାଳୀ ।
ତାହାଙ୍କ ସକାଶେ ମୋତେ ହେଲା ଏତେଲାଜ
କର୍ମବଳେ ରକ୍ଷା ହେଲ ପ୍ରାଣ ଘେନି ଆଜ ।
ସବୁ ରାଜାମାନେ ତୁମ୍ଭେ ଶୁଣ ମୋର ବୋଲି
ରାମ କୃଷ୍ଣ ମରିଛନ୍ତି ଦେଖିବା ଯେ ଚାଲି ।
ଶୁଣି ସେ ନୃପତି ମାନେ ହୋଇଲେ ସନ୍ତୋଷ
ବୋଲନ୍ତି ସୁବୁଦ୍ଧି ତୁମ୍ଭେ ଶ୍ରୀମନ୍ତ ପୁରୁଷ ।
ଏ ମର୍ତ୍ତ୍ୟ ମଣ୍ଡଳ ମଧ୍ୟେ ଏକ ଦଣ୍ଡଧାରୀ
ଚଉଦିଗୁଣା ଲକ୍ଷେ ରାଜା ତୋତେ ଆଜ୍ଞାକରି ।
ରାମ ଜଗନ୍ନାଥ ସଙ୍ଗେ ହାରିଥିଲେ ରଣେ
ଯେ ତୋହର କାର୍ଯ୍ୟଦେବ କଲୁ ତୁ ଆପଣେ
ଏମନ୍ତ ବୋଲି ସମସ୍ତେ କଲେ ନଉଚ୍ଛଳ
ଲେଉଟି ଧମକ ଦେଇ ଚଳେ ବନମାଳୀ ।
ମଥୁରା ଗଡ଼କୁ ବେଢ଼ି ସୈନ୍ୟ ରହିଥିଲେ
ଜରାସନ୍ଧ ଯାନ୍ତେ ତ ର ପଛେ ଗୋଡ଼ାଇଲେ ।
ଉଗ୍ର ଆଗରେ ଯାଇ ବାଟ ଚଢ଼ାଉଛୁ
ସଇନ୍ୟକୁ ଚାହିଁ ରାଜେ ସଙ୍କୋଚନ କରି ।
କେତେ ଶ୍ରମ ପାଇଲେଣି ଯୁଦ୍ଧେ ମୋର ଲୋକ
ରାହେ ନିଦ୍ରା ନାହିଁ ବିଶେ ନ ଦୃଅଇ ଶୋକ ।
ଏତେ ବିଚାରିଣ ଘାର ଚଳାଏ ସଇନ
ଗିରି ନିକଟେ ମିଳିଲେ ରାଜ ଦଣ୍ଡ ଛନ୍ନ ।
ଦେଖିଲେ ପର୍ବତ ପଡ଼ି ଯ ଛନ୍ତୁ ତୋଳକୁ
ଗଢ଼େ ତାଳ ଗଞ୍ଜର ଯେ ବିଶଇ ନିମ୍ନକୁ ।
ଅଛିବାରଣ ବୋଲିଣ ନଗ ଏକ ଥିଲା
ଜରାସନ୍ଧ ଗଦାଘାତେ ସବୁ ଦାଣଗଲା ।

ଡଗରା ମୁଖକୁ ଶୁଣି ଜରାସନ୍ଧ ପୁଚ୍ଛି
ରାମକୃଷ୍ଣ ଥିବା ସ୍ଥାନ କେତେ ଦୂରଅଛି ।
ଡଗରା ବୋଇଲା ଦେବ ହୋଇଲା ନିକଟ
ଏଠାରୁ ସେ ଗୁମ୍ଫା ହେବ ଏକଯୁଣ ବାଟ ।
ଜରାସନ୍ଧ ବୋଲେ କାର୍ଯ୍ୟ ନୋହିଲାତ କିଛି
ଏଠାରେ ଗଦା ପଡ଼ିବା ସଙ୍କେତ ଦିଶୁଛି ।
ଏତେ ବୋଲି ଧାଡ଼କାରେ ସଇନ ଚଳାଇ
ମଣିଭଦ୍ରା ପର୍ବତରେ ପହଞ୍ଚିଲା ଯାଇ ।
ଦେଖିଲା ନିର୍ମଳ ବାଟ ସମୁଳରେ ଅଛି
ସ୍ତମ୍ଭୀଭୂତ ହେଲା ରାଜା ନଷ୍ଟ ଭଇ କିଛି ।
ଦମଘୋଷ ମୁଖ ଶୁଣି ଏମନ୍ତ ବୋଇଲା
ଏତେମତେ କାର୍ଯ୍ୟକଲୁ ନିଷ୍ଫଳ ହୋଇଲା ।
ଅଧର୍ମରେ ଯୁଦ୍ଧ କଲେ ସେହି ମୂଢ଼ମତି
ଗଦା ବାଜି ଥିଲେ ଯାଇ ନ ପାରନ୍ତେ କହିଁ ।
ବତିଶ ବେଳେ ପର୍ଯ୍ୟନ୍ତେ ଗଦାକୁ ବୁଲାଇ
ବିଧିଯୋଗେ ଏକାବେଳେ ପାଶୋରିଲୁ ମୁହିଁ ।
ତେଣୁ କରି ଏ ସ୍ଥାନକୁ ନ ଆସିଣ ଗଦା
ଯୋଜନ ଛଡ଼ାରେ ଦଣ୍ଡ ଗ୍ରାମ କଲା ପଦା ।
ଆଉବେଳେ ବୁଲାଇଣ ଫିଙ୍ଗି ଥାନ୍ତି ଯେବେ
ତେବେମୋର କାର୍ଯ୍ୟସିଦ୍ଧ ହୋଇଥାନ୍ତା ଜବେ ।
ଏମନ୍ତ ବୋଲିଣ ଆଜ୍ଞା ଦେଲା ଜରାସନ୍ଧ
ଏଠାରେ ରହିବା ସର୍ବେ ଶାଢ଼ୀଘର ବାନ୍ଧ ।
ଶୁଣି ସକଳ ସଇନ ସନ୍ତୋଷ ହୋଇଲେ
ଜେଷ୍ଠା ଅନୁରୂପେ ରାନ୍ଧ ବାଢ଼ିଣ ଭୁଞ୍ଜିଲେ ।
ରାତେ ନିଦ୍ରା ଗଲେ ସର୍ବେ ସନ୍ତପନ୍ତ ହୋଇ
ରାତ୍ର ପ୍ରହରେକ ଥାଉଁ ଉଠନ୍ତି ଚଆଇଁ ।
ଦୁଃଖିତେ କହଇ ରାଜା ସୈନ୍ୟଙ୍କୁ ଅନାଇ
ସ୍ୱେର ପରାସ୍ତେ ପଳାନ୍ତି ଭୟେ ବେନଭାଇ ।
ଆଗେ ଦେଖାଦେଇ ମୋତେ ଯାଉଛନ୍ତି ଭଣ୍ଡି
ଯେତେ ଉପାୟେ କରିଲି ସବୁ ଯାଏ ଖଣ୍ଡି ।
ଆହୁଁ ଆଠବେଳ ଯୁଦ୍ଧ କଲେ ମୋର ସଙ୍ଗେ
ଧରା ନ ପଡ଼ିଲେ ଯେହ୍ନେ କଉଣସି ବାଗେ ।
ଜମ୍ବୁଦ୍ୱୀପ ନବଖଣ୍ଡେ ଯେତେ ଦଣ୍ଡଧର
ମୋରପାଇଁ କଷ୍ଟ ସିନା ପାଇଲେ ଅପାର ।
ଜଣ ଜଣକରେ ଦଶଇନ୍ଦ୍ର ଜିଣି ପାରେ
ରାମକୃଷ୍ଣ ସାଧ୍ୟ ନୋହିଲେ ତ ତୁମ୍ଭ କର ।

ଜନମୁଖେ ଅପକୀର୍ତ୍ତି ହୋଇବ ମୋ ଲାଜ
ଏମନ୍ତ ହୋଇବାର ତ ଅଛି କିସ କାର୍ଯ୍ୟ ।
ଯେବଣ ଗଦା ଫିଙ୍ଗିଲି ମୁହିଁ ମନ୍ତ୍ର ଦେଇ
ଯୋଜନ ପର୍ଯ୍ୟନ୍ତେ ସେହୁ ଭେଦିଲା ପାତାଳେ
ସେ ଯେବେ ପଡ଼ିଥାଆନ୍ତା ରାମକୃଷ୍ଣ ପରେ
ଜୀବନ କି ରହିଥାନ୍ତା ତାଙ୍କର ଶରୀରେ ।
ଏତେବଡ଼ ଉଦ୍ୟୋଗ ମୋ ହେଲା ଅକାରଣ
ଆଉ କିସ ବୁଦ୍ଧି ଅଛି କହ ବିଚାରଣ ।
କୋଟରାଗ୍ନି ପ୍ରାୟେ ହୃଦ ଦହୁଅଛି ମୋର
କେସନ ଶାନ୍ତ ଲଭିବ ଏ କଥା ବିସ୍ତର ।
ଦନ୍ତବକ୍ର ବୋଲେ ତୁମ୍ଭେ ବୁଦ୍ଧିମନ୍ତ ହୋଇ
ଅନିମିତ୍ତେ ଏତେ ଚିନ୍ତା କର କାହିଁ ପାଇଁ ।
ହାରିବା ଜିଣିବା ସିନା କ୍ଷତ୍ରୀଙ୍କ ବେଭାର
ଧୈର୍ଯ୍ୟ ପଣ ଧରଣ ମତିକର ସ୍ଥିର ।
ଆପଣେ ଜୀଇଁଥିଲେ ତ ସବୁ ଅର୍ଜି ପାର
ଧନ ଜୀବନ ସମ୍ପଦ ଏ ନୁହଇ କାହାର ।
ତୁମ୍ଭେଯେ ବୋଇଲ ମୋର ସୈନ୍ୟଗଲେ ନାଶ
ସେ କଥା ଶୋଚନା କଲେ ହେବ ଆଉ କିସ ।
ଯୁଆଖେଳ ଯୁଦ୍ଧ ଦୁଇ ଅଟେ ସମସର
ଜଣେ ଜିଣଇ ଜଣେ ତ ନିଶ୍ଚେ ଯାଏ ହାରି ।
ସବୁବେଳେ ପ୍ରାଣୀର ତ ଜୟ କଥା ନାହିଁ
ଲାଭ ହାନି ବୋଲି ପୂର୍ବେ ମୁନିଛନ୍ତି କହି ।
ଏ ସ୍ଥିର କଥାକୁ କ୍ଷମା କରି ଏତେ ଭୟ
ଏବେ ଭିଆଇବା ଆମ୍ଭେ ଅନେକ ଉପାୟ ।
ଚରକାଲ କାକ ଯେହ୍ନେ ଶନ୍ୟେ ଯାଏ ଉଡ଼ି
ସୁପକ୍ୱ ଦ୍ରବ୍ୟ ହସ୍ତରୁ ପଡ଼ଇ ଉଛୁଡ଼ି ।
କାପ୍ୟେ କାଣ୍ଡ ଭେଟ ପୁଣ ନ ପାଏ ଯାହାକୁ
ବଳବନ୍ତପଣେ ଆଉ ନଗଣ ତାହାକୁ ।
ରାମକୃଷ୍ଣଙ୍କର କଥା ତେମନ୍ତ ହୋଇଲା
ଜରାସନ୍ଧ ଆଗେ ଦନ୍ତବକ୍ର ଯେ କହିଲା ।
ଅଷ୍ଟବାର ବଞ୍ଚିଗଲେ ସୁପୁଣ୍ୟ ବଳରୁ
ନିସ୍ତରୁ ବନଶ ହେବେ ନବମ ଧାଡ଼ିରେ ।
କାଲି ସମରେ ସଇନ ପାଇଛନ୍ତି ଦୁଃଖ
ଆଜ ଏଠାରେ ରହିବା ସର୍ବେ ପାନ୍ତୁ ସୁଖ ।
ଏମନ୍ତ ହାଲୁ ହାଲୁ ଯେ ପାହିଲା ରଜନୀ
ଗଗନେ ଉଦୟ ହେଲେ ପ୍ରଭୁ ଦିନମଣି ।

ରାଜାଙ୍କୁ ଘେନିଣ ଜରାସନ୍ଧ ମହୀପାଳ
ସମଦଣ୍ଡ ଘେନ ରହେ ସରସ୍ୱତୀ କୂଳ ।

—*—

## ପରଶୁରାମଙ୍କସହିତ ରାମକୃଷ୍ଣଙ୍କସାକ୍ଷାତ

ଶୁଣ ପରୀକ୍ଷ ବଦନ୍ତି ଶୁକ ମହାମୁନି
ବୋଧପୁର ନଗ୍ରୁ ରାମକୃଷ୍ଣ ଫାଲଗୁନି ।
ରାତ୍ର ଘଡ଼ିଏକ ଥାଉଁ ହୋଇଲେ ବାହାର
ଅସ୍ତ୍ରଶସ୍ତ୍ର ନାହିଁ ହୋଇଛନ୍ତି ଶୂନ୍ୟକର ।
ଆଗରେ ବଳଭଦ୍ର ଯେ ମଧ୍ୟେ ବୀର ପାର୍ଥ
ପଛେ ବିଜେ କରିଛନ୍ତି ପ୍ରଭୁ ଜଗନ୍ନାଥ ।
ଗ୍ରାମରୁ ବାହାର ହୋଇ ଥୋକେଦୂର ଗଲେ
ବୁଧଗିରିରେ ଯାଇଣ ପ୍ରବେଶ ହୋଇଲେ ।
ସେ ପର୍ବତ ତଳେ ବହେ ଶହେ ସୂଳା ନଦୀ
ପର୍ବତ ତଳକୁ ହୋଇଅଛି କୋଟିଭେଦୀ ।
ସେ ନଦୀରେ ନିତ୍ୟକର୍ମ ସାରି ତିନିଜଣ
ଭୋଜନ ସାରିଣ କ୍ଷୁଧା କଲେ ନିବାରଣ ।
ଦକ୍ଷିଣମୁଖେ ଚଳିଲେ ତହୁଁ ଦୁଇଭାଇ
ଦେଖିଲେ ସେ ସ୍ଥାନଗୋଟି ଗହନ ଅଟଇ ।
ଥୋକେ ଦୂର ପ୍ରବେଶିଲେ ଗଣ୍ଡକୀ ପାଶରେ
ତହନ୍ତେ ମିଳିଲେ କୋଳାହଳ କାନନରେ ।
ଖଣ୍ଡଗିରି ନାମେ ପରବତ ଅଛି ସଞ୍ଚ
ଏଗାର ଯୋଜନେ ଦୀର୍ଘ ବିଯୋଜନ ଉଚ୍ଚ ।
ସେ ପର୍ବତୁଁ ଜାତ ଶୁଦ୍ଧ ଶାଳଗ୍ରାମ ଶିଳା
ଅଛନ୍ତି ଛତିଶ ଜାତି ତହିଁ ବିଷ୍ଣୁ କଳା ।
ସେ ଗିରି ପଶ୍ଚିମେ ବିହେମର ଦକ୍ଷଭାଗେ
ଦେଖିଲେ ସେ ପରଶୁରାମ ଆସୁଛନ୍ତି ଆଗେ ।
ଦକ୍ଷିଣେ ପରଶୁ କୁଠାର କନ୍ଧେ ଛନ୍ତି ଭିଡ଼ି
ବାମରେ କଣ୍ଡା ବାଉଁଶ ଧାମ୍ଣା ଧନୁପଡ଼ି ।
କାଖେ ବେଦ ପୋଥି କୁଶବଟୁ ଅଙ୍ଗୁଳିରେ
କପିଳା ମଳ ବିଭୂତି ଚହଟେ ଅଙ୍ଗରେ ।
ଶିରେ ହବ୍ୟଜଟା କୃଷ୍ଣ ପିଙ୍ଗଳ ବରନ
ତୁଳସୀମାଳ ରୁଦ୍ରାକ୍ଷ କଣ୍ଠେ ଆବରଣ ।
ଯଜ୍ଞ ଉପବୀତ କନ୍ଧେ ଜାଜ୍ୱଲ୍ୟ ଯେ ଅତି
ରସଣିତ ତମ୍ବା ପ୍ରାୟ ଦେହର ଆକୃତି ।
ରେଣୁକା ନନ୍ଦନ ଯମଦଗ୍ନି ଋଷିବଳା
ଅବତାର ନାରାୟଣ ବିଷ୍ଣୁ ନିଜ କଳା ।
ଅକ୍ଷୟ ଅଜରାମର ଧ୍ୱଂସ ପୂଣ୍ୟମୟେ
ପୃଥ୍ୱୀ ନିକ୍ଷେପ ଯେ କଲେ ବହୁବାର ଯାଏ ।
ଯଜନ ଯାଜନ ଧ୍ୟାନ ଆଧାନ ସମସ୍ତି
ପିତାଙ୍କର ଆଜ୍ଞାମାନେ ମାତା ମୁଣ୍ଡ କାଟି ।
ସେ ପରଶୁରାମ ଚରଣେ ଶରଣ ନମାମି
ଅଚ୍ୟୁତ ଦାସ କହିଲୁ ଉଦ୍ଧାର ହେ ସ୍ୱାମୀ ।
ଏପରି ବେଶେ ଆସନ୍ତେ ଯମଦଗି ଶିଷ୍ୟ
ଖଟେଣ୍ଡ ଦୂରରୁ ଦେଖିଲେ ପ୍ରଭୁ ପୀତବାସ ।
ବଳରାମ ମୁଖ ଚାହିଁ ବଚନ ପ୍ରକାଶି ।
ଏ ଅଟନ୍ତି ପରଶୁରାମ ଯମଦଗ୍ନି ଋଷି ।
ଅଙ୍ଗରେ ଏ ବିଷ୍ଣୁ ତେଜ ଅଛନ୍ତି ଯେ ବହି
ଅକ୍ଷୟ ଅଜରାମର ଧ୍ୱଂସ ପୁଣ୍ୟଦେହୀ ।
ଏମନ୍ତ ବିଚାରି ମୁନି ସନ୍ନିଧିରେ ଯାଇ
ସାଷ୍ଟାଙ୍ଗରେ ଶୁଭିଲେକ ଲକ୍ଷ୍ୟଦେବା ପାଇଁ ।
ବଳଦେବ କୃଷ୍ଣ ଫାଲ୍ଗୁନି ନମିଲେ ମୁନିଙ୍କି
ପରଶୁରାମ ସୁକଲ୍ୟାଣ କଲେ ସେ ତିନିଙ୍କି ।
କୁଶଳ ବାରତା ପରଶୁରାମ ଯେ ପଚାରି
ସବୁ ବୃତ୍ତାନ୍ତ କହିଲେ ରାମ ଦଇତ୍ୟାରି ।
ଜରାସନ୍ଧ ନୃପତିର ଆଠଧାଡ଼ି ଯାକ
ସଂକ୍ଷେପି କହିଲେ ସବିଶେଷ ଏକେ ଏକ ।
ପରଶୁରାମ ବୋଇଲେକ ତୁମ୍ଭେ ବିଶ୍ୱବାସୀ
ତୁମ୍ଭ ନାମକୁ ଧରିଣ ସର୍ବଭୟ ନାଶି ।
ସର୍ବଭୂତ ଆତ୍ମା ତୁମ୍ଭେ ପୁରାଣ ପୁରୁଷ
କୋଟି ଜରାସନ୍ଧ ହେଲେ କରିପାରେ କସ ।
ତୁମ୍ଭେ ଯେ କରମ କର୍ତ୍ତା ସୃଷ୍ଟି ଜାତ କର
ମହା ପ୍ରଳୟ କାଳରେ ଗର୍ଭରେ ସଂହର ।
ତୁମ୍ଭେ ଗଙ୍ଗାଧର ବିଷ୍ଣୁ ତୁମ୍ଭେ ପଦ୍ମଯୋନି
ବିହନ୍ତା ପୁରୁଷ ତୁମ୍ଭେ କର ଲଭ ହାନି ।
ଏ ଦ୍ୱାପର ମହାଭାର ନିବାରିବା ପାଇଁ
କୌତୁକେ ଜାତ ହୋଇଲ ନରଦେହ ବହି ।
ରାମାବତାର ପାଇଛ ବହୁବାର କଷ୍ଟ
ନବଯୁବା ବୟସରେ ହେଲ ରାଜ୍ୟଭ୍ରଷ୍ଟ ।
ପିତାସତ୍ୟ ପାଳି ତୁମ୍ଭେ ହେଲ ବନବାସୀ
ଦଣ୍ଡକାରଣ୍ୟ ରାବଣ ସୀତା ନେଲା ହରି ।
ଏ ରାମ ଯେ ଯୁଗେ ସଞ୍ଜମିନୀ ହୋଇଥିଲେ
ଅନେକ ଦୁଃଖେ ତୁମ୍ଭର ସେବାଧର୍ମ କଲେ ।

ଯେତେବେଳେ ସୀତା ଘେନ ଆସିଲ ଗୋସାଇଁ
ସାରବାଦ୍ୟ ଶୁଣିଣ ମୁଁ ଓଗାଳଲି ଯାଇଁ ।
ଅଜଗବ ଧନୁ ଭଗ୍ନ କଲ ଭୁଜବଳେ
ନରାକାର ବସ୍ତୁ ବୋଲି ଜାଣିଲି ସେ କାଳେ ।
ସେ ଧନୁ ସାରବେଶ ମୁଁ ଛାଡ଼ିଲି ହେ ହରି
ଭଗବନ୍ତ ଦୀକ୍ଷା ଘେନ ହେଲି ବ୍ରହ୍ମଚାରୀ ।
ତୁମ୍ଭଙ୍କୁ ଦେଖିଣ ମୋର ଉପୁଜିଲା ଶ୍ରଦ୍ଧା
ଆଜହୁଁ ଖଣ୍ଡିଲା ମୋର ଜନ୍ମମୃତ୍ୟୁ ବାଧା ।
ଯୋଗୀଜନେ କରୁଥାନ୍ତି ତୁମ୍ଭଙ୍କୁ ଯେ ଲୟେ
ନୟନେ ଦେଖିଲି ତୁମ୍ଭ ରୂପ ଜ୍ୟୋତିର୍ମୟେ ।
ଆବର ବଚନ ମୋର ଶୁଣ ଭବଗ୍ରାହୀ
ଦଣ୍ଡେକ ବିଶ୍ରାମି ଏଥେ କରିବା ମଣୋହି ।
ଶ୍ରୀକୃଷ୍ଣ ବୋଇଲେ ଏହି ଅରଣ୍ୟ ଯେ ଘୋର
ଏଠାରେ ମିଳିବ କାହୁଁ ଅପୂର୍ବ ଆହାର ।
ପର୍ଶୁରାମ ବୋଇଲେକ ଶୁଣ ଚକ୍ରପାଣି
କାମଧେନୁ ପ୍ରସାଦରେ ସବୁ ପାରେ ଆଣି ।
ପର୍ଶୁରାମ ଆଜ୍ଞାଦେଲେ କାମଧେନୁ ରାଇ
ମାଗୋ ଶ୍ରୀହରି ଭୋଜନ ଭୁଆଅ ତୁ ଯାଇ ।
ଶୁଣିଣ କପିଳା ମାତା ଭୁଆଣ ତକ୍ଷଣ
କଳ୍ପିଲ ମାତ୍ରକେ ସଖା କରିଲେ ନିର୍ମାଣ ।
ଚୌରାଶୀ ପ୍ରକାରେ ଦ୍ରବ୍ୟ ଭୋଗମାନ ସଞ୍ଚ
ପଟାନ୍ତର ଦେବାକୁ ଯେ ନାହିଁ ସ୍ୱର୍ଗ ମଞ୍ଚ ।
ମେଢ଼ ମଣ୍ଡପ ଅଟ୍ଟାଳି ଦିବ୍ୟ ରମ୍ୟ ଘର
ନଅବକାଶେ ଶୋଭଇ ଚନ୍ଦ୍ରଶାଳା ପୁର ।
ସୁପକ୍ୱ ଅନ୍ନ ବ୍ୟଞ୍ଜନ ଷଡ଼ରସ ଦଧି
କାମଧେନୁର ପ୍ରସାଦେ ହେଲା ସର୍ବସିଦ୍ଧି ।
ଗୌଷ୍ଟ ଶୈଷ୍ଟ ନଳଦଧି ରନ୍ଧଣା ବହୁତ
ଇକ୍ଷୁଦଣ୍ଡ ଗଜା ଆଦି ଗୋରସ ସହିତ ।
ପଲଙ୍କ ଅମୃତପାଣି କଦଳୀ ପଣସ
ଦେବ ରକ୍ଷା ନିର୍ମାଣ ଚନ୍ଦ୍ରଶାଳା ବାସ ।
ସୁସ୍ୱାଦୁ ସୁପକ୍ୱ ଆଦି ସୁବାସ ଦରବ
ଚକ୍ଷୁପିଚ୍ଛଡ଼ା ମାତ୍ରକେ ମିଳେ ଆସି ସର୍ବ ।
ହରି ବଳରାମ ପାର୍ଥ ନିତ୍ୟକର୍ମ ସାରି
ମଣୋହିରେ ଭୋଜନକଲେ ତହୁଁ ଯାଇ କରି ।
ସ୍ୱର୍ଣ୍ଣ ପଲଙ୍କରେ ଅନ୍ନ ପର୍ଶେ ସୁପକାର
ଚଉଷଠୀ ମଢ଼ପୂଲି ଦଧି ଉପସ୍କର ।

ପର୍ଶୁରାମ ମୁନି ଜନେ ଫଳ ମୂଳ ସାର
ଭୁଞ୍ଜିଣ କଷାୟ ଫଳ ଆଚମନ କରି ।
ସୁବର୍ଣ୍ଣ ଆସନେ ରାମ କୃଷ୍ଣ ଧନଞ୍ଜୟ
କୃଷ୍ଣାଜିନେ ବିଜେ କଲେ ରେଣୁକା ତନୟ ।
କଥାବାର୍ତ୍ତା ହୋଇ ସୁଖେ ରଜନୀ ବଞ୍ଚିଲେ
ଶୁଣ ହେ ପରୀକ୍ଷ ରାଜା ଶୁକମୁନି ବୋଲେ ।
ଶ୍ରୀକୃଷ୍ଣଙ୍କୁ ଏକାନ୍ତରେ ଡାକି ପର୍ଶୁଧାରୀ
ବୋଇଲେ ଆମ୍ଭର ବାକ୍ୟ ଶୁଣ ତୁମ୍ଭେ ହରି ।
ଜରାସନ୍ଧ ଏ ସ୍ଥାନକୁ ଆସୁଥିବ ବାହି
ଆମ୍ଭେ ଏଥି ରହିବାର ପ୍ରୟୋଜନ ନାହିଁ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ କ୍ଷତ୍ରି ଚୂଡ଼ାମଣି
ଏକ ବାଣକରେ ପାର ତିନପୁର ଜିଣି ।
ସେ ଛାର ଜରାସନ୍ଧକୁ ତୁମ୍ଭର ଏ ଖ୍ୟାତ
କପଟ କରିଣ କର୍ପା କହୁଛ ହେ ଯତ ।
ପର୍ଶୁରାମ ବୋଇଲେ ମୁଁ ଛାଡ଼ି କ୍ଷତ୍ରି ଧର୍ମ
ସନ୍ନ୍ୟାସ ଦୀକ୍ଷାକୁ ନେଲି ଆଚରି କରମ ।
ତେଜିଲି ମଦ ମତ୍ସର ଅହଙ୍କାର କୋପ
ଧରିଲି ତ ଏଣେ ମୁହିଁ ସନ୍ନ୍ୟାସୀ ସ୍ୱରୂପ ।
ଆମ୍ଭ ଭଳି ଲୋକଙ୍କୁ ଯେ ନ ସାଜଇ ଏହା
ଶରୀରରେ ପ୍ରାଣ ଥିଲେ ଲଙ୍ଘଇ କେ ତାହା ।
ସଂଗ୍ରାମ ପଡ଼ିଲେ ଗୋଟି ଦ୍ୱିଜ ହେଲେ ମାରି
ହତ୍ୟାପବାଦ ପାତକ ନୋବେ କେବେ ପାରି
ଆମ୍ଭେ ଜାଣୁ ଜାଣୁ କେହ୍ନେ କରିବୁ ଏ କର୍ମ
ଯଶ ବିନାଶ ହୋଇବ ନାଶ ଯିବ ଧର୍ମ ।
ଶ୍ରୀହରି ବୋଇଲେ ସ୍ୱାମି ଆଜ ଏଥି ଥିବ
ଦୂରରୁ ସୈନ୍ୟଙ୍କୁ ଦେଖି ପଳାଇ ନ ଯିବା ।
ପର୍ବତେ ଉଠିଣ ବାଟ ଚାହିଁ ଥିବା ବସି
ନିକଟକୁ ଅଇଲେ ସେ ଯାଇ କନା ଖସି ।
ପର୍ଶୁରାମ ସନ୍ତୋଷ ଯେ ଶ୍ରୀହରି ବଚନେ
ବୋଇଲେ ଆଉ କଥାଏ ଶୁଣ ଭଗବାନେ ।
ଅଷ୍ଟାଦଶ ବାର ଦେବ ଜରାସନ୍ଧ ଧାଡ଼ି
ସଂଗ୍ରାମେ ଅନେକ ହେବ ମହାଭାର ପଡ଼ି ।
ଶେଷେ ଦେବ ସ୍ୱା ଭୟେ ମଥୁରାକୁ ତେଜି ଯିବ
କୁଶସ୍ଥଳୀ ନିକଟରେ ଯାଇଣ ରହିବ ।
ଅଷ୍ଟ ପାଟବଂଶୀ ସହ ବହୁ ନାରୀଗଣ
ପୁତ୍ର ନାତି ବଢ଼ିବେ ଯେ ହୋଇ ଅପ୍ରମାଣ ।

ପଦ୍ମବନ ପର୍ଯ୍ୟନ୍ତେକ ବଂଶ ଯେ ବଢ଼ିବ
କଣ୍ଟ ସକଳ ବିନାଶ ଅକ୍ଳେଶେ ହୋଇବେ ।
ଯୋଗବଳେ ଜାଣୁ ଆମ୍ଭେ ଭବିଷ୍ୟ ପୁରାଣ
ଆପଣ ସକଳ କଥା ଜାଣ ନାରାୟଣ ।
ଏତେ ବୋଲିଣ କହିଲେ ରେଣୁକାର ବନ୍ଧି
କଳ୍ପବିଦ୍ୟା ଦେବା ଆମ୍ଭେ ଯେବେ ତୁମ୍ଭେ ବାଞ୍ଛ
କାଳାନ୍ତକ ଯୁଗାନ୍ତକ ପ୍ରଳୟ ସେ ଶର
ଏହା ଦେଲେ ନେଇ ଜଗନ୍ନାଥଙ୍କ ଛାମୁର ।
'ଏ ବାଣ ଯତ୍ନେ ସାଇତି ରଖ ଚକ୍ରଧର
ବଳରାମେ ସମର୍ପିଲେ ଭଇରବୀ ଶର ।
ଏ ବାଣ ଥିଲେ ଜଣନ୍ତା ନୋହିବେ ସଂସାର
ଗନ୍ଧର୍ବ ଆଦିକରି ଆଉ ବୈଶ୍ୱାନର ।
ହେ ଯୋଗାରୂଢ଼ ପୁରୁଷ ତିନିକାଳ ଜ୍ଞାତା
ତୁମ୍ଭେ ଜାଣ ଏହି ବାଣମାନଙ୍କର କଥା ।
ମଧୁ କଇଟଭ ବଧ କାଳେ ନାରାୟଣ
ଏ ବାଣକୁ କରିଥିଲେ ଆପେ ନିରମାଣ ।
ବହୁ ଯୁଗ ପର୍ଯ୍ୟନ୍ତେ ଏ ସ୍ୱର୍ଗପୁରେ ଥିଲା
ଦିଗ୍‌ବିଜୟ କାଳେ ମର୍ତ୍ତ୍ୟେ ରାବଣ ଆଣିଲା ।
ଜମଦଗ୍ନି ସଙ୍ଗେ ମୁହିଁ ବିଶ୍ରାମ କୁଟୀରେ
ପ୍ରବେଶି ଦେଖିଲି ଶର ଅଛଇ ସେଠାରେ ।
ବିନୟଭାବେ ତାଙ୍କଠୁଁ ଘେନିଲଇଁ ଏହା
ନିଅ ବୋଲିଣ ସନ୍ତୋଷେ ଦେଲେ ମୁନିନାହା ।
ସଚରାଚର ସାଧି ମୁଁ କଲି ଏହି ଶରେ
ବଇରୀ ନଷ୍ଟହୁଏ ଏଥେ ଯିବ ଯମପୁରେ ।
ଏ ସଞ୍ଜୀବନୀ ନାରାଚ ଘେନ ଦାମୋଦର
ଅଭେଦ୍ୟ ବଜ୍ର କବଚ ବଜ୍ର ସେହ୍ନା ଶର ।
ଆନଯାଏ ସାଇତି ମୁଁ ଯତ୍ନେ ରଖିଥିଲି
ପୃଥ୍ୱୀ ଭାର ନାଶିବାକୁ ତୁମ୍ଭ ହସ୍ତେ ଦେଲି ।
ଏ ଶସ୍ତ୍ର ହାତରେ ଥିଲେ ବୈରୀ ଯିବ ହଟି
ଆଉର ବହୁତ ଗୁଣ ଏଥିରେ ଅଛୁଟି ।
ମରିବା ଲୋକ ଜୀଅଇ ଏହାର ପ୍ରସାଦେ
ପ୍ରତ୍ୟକ୍ଷେ ଏ ଛଦ୍ମରୂପୀ ଜାଣ ନିଶ୍ଚେ ହାଦେ ।
ବହନ୍ତେ ନ ସରଇ ଏ ବାଣର ମହିମା
ଶୁମ୍ଭ ଦୈତ୍ୟ ବଧକଲେ ଧରିଥିଲେ ଉମା ।
ଏକୋଇଶ ବାର ମୁହିଁ ନିକ୍ଷତ୍ରିୟ କଲି
ଏହାର ପ୍ରସାଦେ ମୁହିଁ ଜୟଲକ୍ଷ୍ମୀ ହେଲି ।
କୁଠାରୀ ଦେଖି ସେ ଠାରେ ପ୍ରସନ୍ନ ହୋଇଲେ
ସନ୍ତୋଷରେ ଯାଚିଣ ସେ ନାରାଚକୁ ଦେଲେ
ହିମବନ୍ତନନ୍ଦିନୀ ସେ ଦେବୀ ମାହେଶ୍ୱରୀ
କୁଠାର ସ୍ୱରୂପେ ମୋର ଗୃହେ ବିଜେ କରି ।
ଯତନେ ଏ ଶସ୍ତ୍ର ତୁମ୍ଭେ ନିଅ ଧନଞ୍ଜୟ
ଏ ଶସ୍ତ୍ର ଥିଲେ ହସ୍ତରେ ନାହିଁ କାହୁଁ ଭୟ ।
ଏହିରୂପ କଥା କହୁଁ ପ୍ରବେଶ ରଜନୀ
ଅସ୍ତାଚଳକୁ ଚଳିଲେ ପ୍ରଭୁ ଦିନମଣି ।
ଯଜନ ଯାଜନ ଜପ ସନ୍ଧ୍ୟା ଆଦିକରି
ମୁନି ସଙ୍ଗେ ବଡ଼ ଭଲେ ରାମ ପାର୍ଥ ହରି ।
ସ୍ୱଗଣ୍ୟ ଅନ୍ନ ଭୁଞ୍ଜିଣ ଆଚମନ କଲେ
କୁଶାସନେ ନିଦ୍ରା କରି ରଜନୀ ବଞ୍ଚିଲେ ।
ପ୍ରଭାତରୁ ସ୍ନାନ ସାରି ଗିରି ଶିଖେ ଉଠି
ଜରାସନ୍ଧ ଆସିବାକୁ ଦେଖେ ଏକ ଦୃଷ୍ଟି ।
ଶୁଣ ପରୀକ୍ଷିତ କହନ୍ତି ଶୁକ ମହାମୁନି
ଇତି ଶ୍ରୀ ପୁଣ୍ୟପୁରାଣ ହରିବଂଶ ଧ୍ୱନି ।
ରାମ କୃଷ୍ଣ ପରଶୁରାମ ପାଦେ ମୋର ସେବା
ଅଚ୍ୟୁତ ଦାସ କବିକ ଗତି ମୁକ୍ତି ଦେବା ।

—*—

## ଜରାସନ୍ଧର ଅଷ୍ଟମବାର ଧାଡ଼ି

ସରସ୍ୱତୀ ନଦୀତଟରେ ଜରାସନ୍ଧ ରହି
ଦେଶାନ୍ତର ଆସି କହେ ଶିରେ କର ଦେଇ ।
ହେ ଦେବ ତୁ ସାବଧାନେ ଶୁଣ ନୃପମଣି
ଦେଶାନ୍ତର ବାର୍ତ୍ତା ଆମ୍ଭେ ଆସିଅଛୁ ଶୁଣି ।
ଭୟରେ ଗୁମ୍ଫାରୁ ରାମ କୃଷ୍ଣ ପଳାଇଲେ
ବାଟେ ଯାଉ ଯାଉ ପରଶୁରାମଙ୍କୁ ଭେଟିଲେ ।
ଅର୍ଜୁନ ପରଶୁରାମ ସଙ୍ଗେ ବେନି ଭାଇ
ଖଣ୍ଡଗିରି ପର୍ବତେ ଏବେ ଛନ୍ତି ରହି ।
ଯାନ ବାହନ ଆୟୁଧ ଆଦି ନାହିଁ କିଛି
କନ୍ଦର ପରାଏ ବନେ ବସିଛନ୍ତି ଲୁଚି ।
ଏହା ଶୁଣି ହସିଲା ଯେ ଶାଲ୍ୱ ନରପତି
ବୋଇଲା ଗଉଡ଼ ମାତ୍ର ଜାଣେ କପ ରୀତି ।
ତୁମ୍ଭର ଭୟରେ କାହିଁ ନ ପାରିଲେ ରହି
କେତେ ଦୁଃଖ ପାଇଲେଣି ପଳାଇ ପଳାଇ ।
ଶୁଣି ଉଗରକୁ ରଜା ପୁଚ୍ଛି ସାବଧାନେ
ଆଜ୍ଞାବେଳେ କହ ସର୍ବେ ଶୁଣନ୍ତୁ ନା କର୍ଣ୍ଣେ ।

ଡଗର ବୋଇଲା ମୁହିଁ ଗୁପତରେ ଥିଲି
ଉପ୍ତୁରେ ସେ ବସିଛନ୍ତି ନରେପି ଦେଖିଲି ।
ଜରାସନ୍ଧ ବୋଲେ ଆଉ ବିଳମ୍ବ ନ କର
ଯେ ଯାହାରେ ସଜ ହୁଅ ଯିବା ଧାତକାର ।
ଯହିଁର ନିମନ୍ତେ ସର୍ବେ ପାଉ ଅଛ ଦୁଃଖ
ସେ କାର୍ଯ୍ୟ ସାଧିଲେ ଯିବା ହେବ ଆମ୍ଭ ସୁଖ
ଦୁଇଗୋଟା ଗଉଡ଼ଙ୍କୁ ନ ପାରିଲେ ଜିଣି
ଜଗତେ ହସିବେ ସବୁ ଲୋକ ଏହା ଶୁଣି ।
ବୀର ମହାବୀର ରଥୀ ସର୍ବେ ମିଳିଅଛ
ଜଣ ଜଣକରେ ହେବ ଇନ୍ଦ୍ର ସମକକ୍ଷ ।
ପାଇଲେ ଶତ୍ରୁଙ୍କୁ ସର୍ବେ ଉପାୟରେ ମାର
ନୋହିଲେ ସବୁଙ୍କୁ ମାରିବଟି ଦାମୋଦର ।
ଆଜହୁଁ ବିଷମ ତାର ହୋଇଲାଣି ଏତେ
କ୍ଷତ୍ରୀ ହୋଇ ଆମ୍ଭେ ତାହା ସହିବା କେମନ୍ତେ
ଏଥିପାଇଁ ପଛେ ଧନ ଜୀବନ ଛାଡ଼ିବା
ରାମକୃଷ୍ଣ ନ ମାଇଲେ ବାହୁଡ଼ି ନ ଯିବା ।
କ୍ଷତ୍ରୀଙ୍କ ବଚନ ଅଟେ ପାଷାଣରେ ଗାର
ଯେ ଯାହା ପ୍ରତିଜ୍ଞା ପାଳ ଉଠ ଧାତକାର ।
ଏହା ଶୁଣି ରାଜାମାନେ କୋପେ ଗର୍ଜିଲେ
ସାଜରେ ସଇନ୍ୟ ବୋଲି ଉଠି ଆଜ୍ଞା ଦେଲେ
ଆଜ୍ଞା ପରମାଣେ ସମଦଣ୍ଡ ହେଲେ ସଜ
ସ୍ୱତେଉଣା ଲକ୍ଷେ ରାଜା ସୈନ୍ୟ ଅଶ୍ୱ ଗଜ ।
ବଜ୍ରନାଭ ଉଠି ବୋଲେ ଜରାସନ୍ଧ ଆଗେ
ବହୁତ ସୈନ୍ୟ ଦେଖିଲେ ପଳାନ୍ତି ସେ ବେଗେ
ଉପାୟ ନ କର ତୁମ୍ଭେ ବିଷମ ଦେଖୁଅ
ଜିଣି ନ ପାରିଣ ତେଣୁ କାର୍ଯ୍ୟ ହାନି ପାଅ ।
ମୂଷା ମାରିବାକୁ ଗଜଦନ୍ତ ସାଜ ଆଣି
ଅନମିତ୍ତେ ଭ୍ରମିହୁଅ କାରଣ ନ ଜାଣି ।
ନାନା ନଟକୁଟ ମାୟା ଜାଣଇ ସେ ହରି
ମାୟାଯୁଦ୍ଧ କଲେ ଯିବା ତାକୁ ଜିଣିପାରି ।
ଅଙ୍ଗଭର ହୋଇ କଥା ଲାଗିଲିକ ମୋତେ
ମାରିବ ତୁମର ଶତ୍ରୁ କହୁଛୁ ନିଶ୍ଚିତେ ।
ଏଠାରେ ନିଶ୍ଚିନ୍ତ ହୋଇ ଥାଅ ତୁମେ ରହି
ଥୋକେ ସୈନ୍ୟ ସଙ୍ଗେ ଘେନ ଯାଉଅଛୁ ମୁହିଁ
ଠିକଣା ସ୍ଥାନରେ ନେଇ ଭେଟାଇବ ହରି
ଦେଖିଲି ମାରିବେ ପ୍ରାଣ ଘେନିବ ତାହାର ।

କାର୍ଯ୍ୟ ସିଦ୍ଧ ହେଲେ ବାଣ୍ଟିଦେବ ମୁଁ ପଠାଇ
ହାତେ ନ ରହିଣ ତୁମେ ଯିବ ବେଗହୋଇ ।
ଜରାସନ୍ଧ ବୋଇଲା ମୁଁ ପଛେ ପଛେ ଥିବି
ହୁବୁଡ଼େ ପଡ଼ିଲେ ଧାତକାରେ ଉଗାଳିବି ।
ଏତେ ବହିର ସଇନ ରୁହାଇ ସକଳ
ଥୋକାଏ ବାଛି ସଙ୍ଗତେ ଘେନ ଶ୍ରେଷ୍ଠବଳ ।
ନିଜ ସେସ୍ୱ ଧରି ବଜ୍ରନାଭ ନରପତି
ଆଗୁଆଣି ଥାଟରେ ସେ ହେଲା ସେନାପତି ।
ପଛେ ଚଳେ ଜରାସନ୍ଧ ଛାଡ଼ି ଏକଯୂଣ
ପାରୁଶରେ ଖଟିଛନ୍ତି ନରପତି ଗଣ ।
ଶ୍ୱେତ ଚାମର ହେ ପୁଷ୍ପ ଧୂପକାଠି
ବାହୁର ନିଯୋଗ ମୂଳେ ସୈନ୍ୟ ଲକ୍ଷକୋଟି ।
ଏସନ ସମ୍ଭାରେ ବଢ଼େ ମଗଧ ନୃମଣି
ପାଦଭରେ ଟଳ ଟଳ କମ୍ପଇ ଧରଣୀ ।
ଡଗର କଡ଼ାଏ ବାଟ ଚାଲି ଆଗେ ଆଗେ
ସମଦଣ୍ଡ ଘେନି ବଜ୍ରନାଭ ଚଳେ ବେଗେ ।
ନୃପତିମାନଙ୍କୁ ଘେନି ସଙ୍କୋଚନ କରି
ଯୋଜନ ଛଡ଼ାରେ ପଛେ ଥାଟେ ରହିଅଛି ।
ଏଥୁଅନ୍ତରେ ପର୍ବତ ଶିଖେ ଉଭାହୋଇ
ଦେଖିଲେ ପରଶୁରାମ ଦିବ୍ୟ ଦୃଷ୍ଟି ଦେଇ ।
ଦେଖିଲେ ସିନ୍ଧୁ ଲହରୀ ପରାୟେକ ଥାଟ
ଖାଲି ଢ଼ଙ୍ଗର ପର୍ବତ କାହିଁ ନାହିଁ ବାଟ ।
ବାଇ ଭାଙ୍ଗିଲେ ଯେସନେ ମାଡ଼ିଆସେ ଜଳ
ଭୟଙ୍କରରୂପେ ତେହ୍ନେ ଆସନ୍ତି ଯେ ବଳ ।
ବ୍ୟାଘ୍ରାଲୁ ଓଟ ଗଧ ମୈଷି ପରେ ଚଢ଼ି
ବିକରାଳ ରୂପ ଧରି ଆସୁଛନ୍ତି ମାଡ଼ି ।
ପର୍ଶୁରାମ ବୋଇଲେକ ଶୁଣ ବନମାଳୀ
ବଜ୍ରନାଭ ଆଗୁଆଣି ସୈନ୍ୟ ଆଗେ ଚଳି ।
ବହୁ ପ୍ରତିଜ୍ଞା କରନ୍ତି ଯୁଦ୍ଧେ ପଠାଇ
ମନ କରନ୍ତି ତୁମ୍ଭଙ୍କୁ ଜିଣିବାର ପାଇଁ ।
ବଢ଼ାଇ ଦୁର୍ଭର ସେହୁ ବଳବନ୍ତ ଦୈତ୍ୟେ
ମୃତ୍ୟୁ ନାହିଁ ତାହାଙ୍କର ଦେବାସୁର ହସ୍ତେ ।
ଇନ୍ଦ୍ର ବଜ୍ର ନ କାଟଇ ତାହାଙ୍କର ଅଙ୍ଗେ
ବହୁ କପଟ ଜାଣିଛି ସେହୁ ରଣରଙ୍ଗେ ।
କଶ୍ୟପଙ୍କ ଅଂଶେ ଜାତ ଦୁଷ୍ଟ ଅସୁରାଧି
କୁବେର ପରି ଅଚଳାଚଳ ତା ସମୃଦ୍ଧି ।

ଈଶ୍ୱରଙ୍କ ସେବା କରି ପାଇଅଛୁ ବର
କଦାପି ତୁମ୍ଭ ହସ୍ତରେ ନ ମରେ ଅସୁର ।
ତୁମ୍ଭେ କି ନ ଜାଣ ଅବା କହିବି ବିଶେଷ
ସର୍ବଙ୍କ ଅନ୍ତର୍ଯ୍ୟାମୀ ତ ସୁଜାଣ ପୁରୁଷ ।
ଗୋମାତା ଶାପ ତୁମ୍ଭଙ୍କୁ ଅଛି ପୂର୍ବକାଳେ
ଅବଶ୍ୟ ତ ପଳାଇବ ଅଷ୍ଟାଦଶ ବାରେ ।
ଜବ ଯେତେ ସୈନ୍ୟ ଗୁଣ୍ଡ କରିଅଛି ଆଣି
ଏକା ବାଣକେ ସବୁଙ୍କୁ ପକାନ୍ତି ମୁଁ ହାଣି ।
ଦେବକାର୍ଯ୍ୟ ନିମିତ୍ତରେ ଅବହେଳା କରି
ଅବହେଳେ ଜିଣିପାରୁ ତୁମ୍ଭେ ନରହରି ।
କୌତୁକ ପୁରୁଷ ତୁମ୍ଭେ ଅଟ ବିଶ୍ୱବାସୀ
ଓଁକାର ମୂଳମନ୍ତ୍ର ଯେ ପରଂବ୍ରହ୍ମ ରାଶି ।
ତୁମ୍ଭେତ ସକଳ ଜାଣ କହିବି ମୁଁ କିସ
ନିକଟରେ ବଜ୍ରନାଭ ହୋଇଲା ପ୍ରବେଶ ।
ମଗଧେଶ୍ୱର ନୃପତି ତାର ପଛକତି
ଗୁଣରଞ୍ଜଣା ଲକ୍ଷେରାଜା ସଙ୍ଗରେ ଅଛନ୍ତି ।
ପର୍ବତ ତଳକୁ ଦେବ ଦିଅ ଜନା ଦୃଷ୍ଟି
ଜଳଚରଙ୍କ ପରାୟେ ଆସୁଛନ୍ତି ଯେ କିଟି ।
ନିଃଶ୍ୱାସ ମାତ୍ରକେ ଏହି ପର୍ବତ ବେଢ଼ିବେ
ଗଣ୍ଡି ପଡ଼ିଲେ ଅବଶ୍ୟ ସମର କରିବେ ।
ଏତେ ବୋଲି ପର୍ଶୁରାମ କଲ୍ୟାଣ ବାଞ୍ଛିଲେ
ଏକମନା ହୋଇ ମହାମନ୍ତ୍ର ସୁମରିଲେ ।
ଉଗର ଯେ ଅଂଗୁଆଣି ଥାଟେ ରହିଥିଲା
ଏହି ଦେଖ ବୋଲି ଅଙ୍ଗୁଳିରେ ଦେଖାଇଲା ।
ପର୍ବତ ତଳକୁ ସର୍ବେ ଗଲେ ଚଢ଼ି ଧାଇଁ
ଦେଖିଲେ ବସି ଅଛନ୍ତି ରାମ ହରି ତହିଁ ।
ବଜ୍ରନାଭ ଘୋର ଚଢ଼ି ମହାକୋପ କଲା
ଏଭାନ୍ତ କେଉଣେ ଯିବରେ ବୋଲିଣ ବୋଇଲା
ନିଶ୍ଚେ ଯମ ପୋଛୁଲା ତ ତୁମର ଯେ ପାଞ୍ଜି
ତୁଳା ପରମାଣେ ମାଂସ ପକାଇବ ପିଞ୍ଜି ।
ଏତେବୋଲି ଗିରିଯାକ ଶତେପୁର କରି
ବେଢ଼ିଲେ ମହାକୋପରେ ସର୍ବେ ଅମରାରି ।
ତିନଙ୍କୁ ଧରିଣ ନେଲେ ଈଷ୍ଟ ଶାନ୍ତ ହେବ
ଜରାସନ୍ଧ ହୃଦୟରୁ ଦଗା ଯେ ଘୁଞ୍ଚିବ ।
ଉଗର ବୋଇଲା ଦେବ ସାବଧାନେ ଶୁଣ
ଏ ଖଣ୍ଡଗିରି ପର୍ବତ ବତିଶ ଯୋଜନ ।

ଗଣ୍ଡିଙ୍କ ନଗର ଠାରୁ କୋଳାହଳ ଯାଏ
ପାଞ୍ଚଶ ଯୋଜନ ଜଳ ଅକାତ ଯେ ଥାଏ ।
ତେଣୁକରି ପର୍ବତରେ ଦ୍ରୁମ ଅତି ଗାଢ଼
ତିନ ଯୋଜନ ପର୍ଯ୍ୟନ୍ତେ ଲାଗିଅଛି ବେଢ଼ ।
ବଜ୍ରନାଭ ବୋଲେ ସର୍ବ ପର୍ବତକୁ ଉଠ
କାଟ କୁରାଢ଼ି ନେଇଣ ବନସ୍ତକୁ କାଟ ।
ଆଜ୍ଞାପାଇ ସଇନ ଯେ ଚଳିଲେ ସନ୍ତରେ
କାଟ କୁରାଢ଼ି ଘେନିଣ କାଟିଲେ ଯେଖାରେ ।
ବଜ୍ରନାଭ ସେନାପତି ଦେଇଅଛି ଧାଡ଼
ସମୁଦ୍ର ପରାୟେ ସୈନ୍ୟ ପଡ଼ିଛନ୍ତି ମାଡ଼ ।
ହରି ବଳରାମ ପ୍ରାର୍ଥ ବୃକ୍ଷତଳେ ଥିଲେ
ତିନହେଁ ଶୂନ୍ୟହସ୍ତରେ ଆସନ ଛାଡ଼ିଲେ ।
ଖଣ୍ଡଗିରିଠାରୁ ନଇର୍ଋତ ମୁଖ ହୋଇ
ସମସ୍ତଙ୍କୁ ଦେଖି ଦେଖି ଗଲେ ପିଠିଦେଇ ।
ଖାଲି ଉଙ୍ଗର ଖଣ୍ଡା ସେ ନ ପାରନ୍ତି ବାରି
ବନ ଜଗତ ପରାୟେ ଯାନ୍ତି ଅପସରି ।
ଥୋକେ ଦୂତରେ କଙ୍କଣ ପର୍ବତରେ ଉଠି
ପଶ୍ଚିମମୁଖେ ସେଠାରୁ ଚଳନ୍ତି ଲେଉଟି ।
ବଜ୍ରନାଭ ନୃପତିକ ବେନ କୋଶ ଛଡ଼ା
ମନ୍ତ୍ରବଳେ ତିନଙ୍କ ଯେ ହେଲା ଏକ ବେଢ଼ା ।
ବଜ୍ରନାଭ ରାଜା ଲୋକେ ଗୋଡ଼ାନ୍ତି ଦଗଣ୍ଡ
ବୋଲନ୍ତି ଅଲୁ ଛେଗଲେ ଦେଖଁ ଦେଖଁ ଭଣ୍ଡ
ଥୋକାଏ ବୋଲନ୍ତି ଉଦାତ୍ତରେ ଥିବେ ପଶି
ଯତନେ ନିର୍ବନ୍ଧ କରି ଖୋଜ ସର୍ବେ ଆସି ।
ଥୋକାଏ ବୋଲନ୍ତି ଆଜ ପଳାଇଲେ ଭଲା
ସୁଭାଗ୍ୟ ଦଶା ତାଙ୍କର ନିଶ୍ଚୟ ହୋଇଲା ।
ପଟୁଆର ରହି ଯେବେ କରିଥାନ୍ତେ ରଣ
ତେବେ ଜଣାଯାନ୍ତା ସିନା ତାଙ୍କ ବଡ଼ପଣ ।
ଥୋକାଏ ବୋଲନ୍ତି ଆମ୍ଭେ ଜାଣୁ ନା ସକଳ
ଏହିପରି ଭଣ୍ଡାଇଣ ଗଲେ ବହୁ ବେଳ ।
ଫାଶ ପାତିଲେ ନିଶ୍ଚଳ ହୁଏ କି ପବନ
ବାଲି ପକାଇଲେ ସିନ୍ଧୁ ହୁଏ କି ବନ୍ଧନ ।
ହାତ ବଢ଼ାଇଲେ ଚନ୍ଦ୍ର ଜଏ ଧରି ପାରି
ଆକାଶ କି ମାପିହୁଏ ବୁଦ୍ଧିରେ କାହାରି ।
କେ ଅବା ନ ଜାଣନ୍ତି ଯେ ରାମ କୃଷ୍ଣ ସମ
ପ୍ରତ୍ୟକ୍ଷେ ନାରାୟଣ ମାନବରୂପେ ଜନ୍ମ ।

ତାହାଙ୍କୁ ଜିଣିବା ପାଇଁ କାର ଶକ୍ତି ନାହିଁ
କାର୍ଯ୍ୟ ନୋହିବ ମରିବା ବିନା ଦୁଃଖ ପାଇ ।
ଏସନରୂପେ ବିଗ୍ରହ କରନ୍ତେଣ ଖର
ଜରାସନ୍ଧ ନରପତି ମିଳନ୍ତି ସେଠାର ।
ବଜ୍ରନାଭ ନରପତି କହେ ସବୁ ବାଣୀ
ପ୍ରଣିଭୂତ ହେଲେ ଶୁଣି ମଗଧ ନୃମଣି ।
ବୋଲେ ତାହାଙ୍କର ମାୟା ଜାଣିଲି ସକଳ
ଏହିମତ ଭଣ୍ଡାଇଣ ଗଲେ ବହୁବେଳ ।
ଅନେକ ପ୍ରକାରେ ମୂର୍ଖ କରିଲଇଁ ବୁଦ୍ଧି
କଉଣସି ପରକାରେ ନୁହେ କାର୍ଯ୍ୟସିଦ୍ଧି ।
ସମସ୍ତ ଜିଣିଲି ଗୋପାଳଙ୍କୁ ବୁଦ୍ଧି ନାହିଁ
ଗଞ୍ଜି ହେଲି ବହୁବାର ଲଜ୍ଜା ପାଇଲଇଁ ।
ଏହିଠାରେ ରହିବା ଯେ ସୁସ୍ଥ ହୋଇ ସର୍ବେ
ଯହିଁ ଅଛନ୍ତି ବାରତା ପାଇବାଟି କେବେ ।
ଏତେ ବୋଲିଣ ସଇନ ରହିଲେ ସେଠାରେ
ଅଚ୍ୟୁତ ଦାସ ଭଜଇ ହରି ଚରଣରେ ।

—*—

## ଜୈମାନ୍ୟେ ଜରାସନ୍ଧର ଏକାଦଶ ଠାରୁ ପଞ୍ଚଦଶ ବାର ଯାଏ ଧାଡ଼ି

ଏଥୁ ଅନନ୍ତରେ ରାମକୃଷ୍ଣ ଫାଲଗୁନ
ଅଗମ୍ୟ ବନେ ଗମନ୍ତି ସଙ୍ଗହୋଇ ତିନ ।
କଞ୍ଚନ ପର୍ବତ ଜିଣି ଥୋକେଦୂର ଗଲେ
ଗୋମତୀ ନଦୀ ତୀରରେ ବ୍ୟାସଙ୍କୁ ଭେଟିଲେ ।
ହସ୍ତେ ଦଣ୍ଡ କମଣ୍ଡଳୁ କାଖେ କୁଶବଡ଼ି
ଧୋତି ଉତ୍ତରୀ ପ୍ରୋକ୍ଷଣି ଆଜ୍ୟ ବେଦକାଣ୍ଡି ।
ତମ୍ବା ପ୍ରୋକ୍ଷଣି ଖଡ଼ଗ କୁଶବଟୁ ଗୋଟି
କପିଳାମଳ ବିଭୂତି ଅଙ୍ଗରେ ଚହଟି ।
ମାଥେ ଦିବ୍ୟଜଟା ବେନି କର୍ଣ୍ଣରେ କୁଣ୍ଡଳ
କାଖେ କୃଷ୍ଣାଜିନ ବାମହାତେ କମଣ୍ଡଳ ।
ଶଙ୍ଖ ଗୋକ୍ଷୀର ପରାୟେ ରାଜେ ଦିବ୍ୟ ତନୁ
ନିର୍ମଳ ମେଘେ ଯେସନେ ଉଦେ ହୁଏ ଭାନୁ ।
ଅଠାଶୀ ସହସ୍ର ଶିଷ୍ୟ ସଙ୍ଗେ ମହାଜ୍ଞତା
ରାମହରି ଆଗେ ମିଳିଗଲେ ବ୍ରହ୍ମବେତା ।
ଦେଖିଣ ସାନନ୍ଦ ହେଲେ ହଳି ବନମାଳୀ
ସାଷ୍ଟାଙ୍ଗ ହୋଇ ଗ୍ରାମୁରେ କଲେ କରଞ୍ଜଳି ।
ଅର୍ଜୁନ ସହିତେ ମୁନି ପ ଦତଳେ ନମି
ଆମ୍ଭଙ୍କୁ ଶୁଦୟା କର ଆହେ ତପିମଣି ।
ବହୁରୂପେ ସ୍ତୁତି କଲେ ଶିରେ ଦେଇ କର
ଉଭୟ କୁଶଳ ବାର୍ତ୍ତା ପୁଚ୍ଛି ମୁନିବର ।
ଭଲେ ଅଛନ୍ତି ନା ବନ୍ଧୁ କୁଟୁମ୍ବ ସୋଦର
ସମସ୍ତ କୁଶଳ ବୋଲି ଭଣି ଦାମୋଦର ।
ଆସନ ପାଦାସନରେ ମୁନିଙ୍କୁ ପୂଜିଲେ
ପବିତ୍ର ଗଙ୍ଗାଜଳରେ ପାଦ ପଖାଳିଲେ ।
ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ଶୁଣ ମୁନିବର
ପ୍ରତ୍ୟକ୍ଷେ ବ୍ରହ୍ମ ମୂରତି ମର୍ତ୍ତ୍ୟେ ଅବତାର ।
ତୁମ୍ଭର ଯେ ପଣନାତି ପଣ୍ଡୁ ନରପତି
ଅମଳାନ ସୋମବଂଶୀ ଶୁଦ୍ଧପୂତ ଜାତି ।
ଯୁଧିଷ୍ଠିର ଭୀମାର୍ଜୁନ ନକୁଳ ସହଦେବ
ପଣ୍ଡୁ ନନ୍ଦନ ଏ ପାଞ୍ଚ ପାଣ୍ଡବ ଜାଣିବ ।
ଆମ୍ଭର ମାଉସୀ କୁନ୍ତିଭୋଜର ନନ୍ଦିନୀ
କୁନ୍ତୀର ନନ୍ଦନ ଏହି ବୀର ଫାଲଗୁନୀ ।
ହେ ମୁନି ଭୂତ ଭବିଷ୍ୟ ସବୁକଥା ଜାଣ
ବେଦଶାସ୍ତ୍ରଜ୍ଞାତା ତୁମ୍ଭେ ଅଟ ନାରାୟଣ ।
ବହୁକାଳୁ ବୁଲୁଅଛୁ ଜରାସନ୍ଧ ଡରେ
ରାଜ୍ୟ ତେଜି ବୁଲେ ପାର୍ଥ ଆମ୍ଭ ସଙ୍ଗତରେ ।
ହେ ମହାତମା ଅର୍ଜୁନେ ସଙ୍ଗତରେ ନିଅ
ଯୁଧିଷ୍ଠିର ଆଗରେ ନିହି କୁଇନ୍ତାକୁ ଦିଅ ।
ଏତେ ବୋଲିଣ ବ୍ୟାସଙ୍କ କରେ ସମର୍ପିଲେ
ପଶ୍ଚିମ ମୁଖରେ ତହୁଁ ଦୁହେଁ ଚଳିଗଲେ ।
ମାଲିନୀ ନାମରେ ନଦୀ ବହେ ପୁଣ୍ୟଜଳ
ମତ୍ସ୍ୟଦେଶ ପାଟଣାରେ ସେ ଦକ୍ଷିଣ କୂଳ ।
ପୂର୍ବେ ଜଇମିନଙ୍କର ଆଶ୍ରମ ଯେ ଥିଲା
ତହିଁ ପ୍ରବେଶ ହୋଇଲେ ଯାଇ ନନ୍ଦବଳା ।
ସେଠାରେ ଦେଖିଲେ ଏକ ଅତି ପରିମଳ
ମତ୍ସ୍ୟ ମାଧବ ନାମରେ ଦେବ ତହିଁ ଠୂଳ ।
ରାତ୍ରିକାଳେ ସେ ମଣ୍ଡପେ ରହି ନନ୍ଦବହି
ସ୍ତୁତି ଆରମ୍ଭ କରିଲେନିଜ ଶୁଭବାଞ୍ଛି ।
ସେ ସ୍ତୁତିରେ ଦେବଙ୍କର କମ୍ପିଲା ଆସନ
ପ୍ରବେଶ ହୋଇଲେ ରାମକୃଷ୍ଣ ସନ୍ନିଧାନ ।
ସୁପକ୍ୱ ଦ୍ରବ୍ୟନ୍ନ ଯୋଗାଇଲେ ସେ ସକଳ
ସାନନ୍ଦେ ମଣୋହି କଲେ କୃଷ୍ଣ କାମପାଳ ।

ଆଚମନ ଅବଶେଷ ତାମ୍ବୁଳ ଭୁଞ୍ଜିଲେ
ପଥଶ୍ରାନ୍ତ ପାଇକରି ସେଠାରେ ଶୋଇଲେ ।
ଶୁଣ ପରୀକ୍ଷ କହନ୍ତି ଶୁକ ମହାମୁନି
ବେଦବ୍ୟାସେ ଅର୍ଜୁନଙ୍କୁ ସଙ୍ଗତରେ ଘେନି ।
ମନପବନ ଦଣ୍ଡକୁ ଆରୋହଣ ମୁନି
ବାରୁଣାବନ୍ତ କଟକେ ମିଳିଲେ ସେଓଣି ।
କୁନ୍ତୀ ସହିତେ ପାଣ୍ଡବମାନେ ଛନ୍ତି ତହିଁ
ଅର୍ଜୁନେ ଘେନି ମିଳିଲେ ବେଦବ୍ୟାସ ଯାଇ ।
ଦେଖିଣ ସର୍ବେ ଉଠିଲେ ଆସନକୁ ଛାଡ଼ି
ଶତେସସ୍ର ଦଣ୍ଡବତ ପାଦପଦ୍ମେ ପଡ଼ି ।
ତା ଦେଖିଣ ବ୍ରହ୍ମବେତ୍ତା ସନ୍ତୋଷ ହୋଇଲେ
ଜଣେ ଜଣେ ସମସ୍ତଙ୍କୁ କଲ୍ୟାଣ ବାଞ୍ଛିଲେ ।
କୁନ୍ତୀଙ୍କୁ ବୋହିଁଣ ମୁନି କହିଲେକ ବାଣୀ
ତୁମ୍ଭେ ମୋର କୁଳବଧୂ ସତୀ ଶିରୋମଣି ।
ପଞ୍ଚଦିଗପାଳ ଆଦି ତୁମ୍ଭ ପୁଣ୍ୟବଳେ
ପ୍ରତ୍ୟକ୍ଷ ପଞ୍ଚ ଦେବତା ଜାତ ମହୀତଳେ ।
ଏ ତୁମ୍ଭ କଷ୍ଟ ଫେଡ଼ିବ ନିବାରିବ ଶଙ୍କା
ମାନ ଉଦ୍ଧରିବ ଏହୁ କୁଳଦୀପ ଏକା ।
ଏ ମୁନି ପ୍ରସାଦେ ନାହିଁ କାହାକୁହିଁ ଭ୍ରାନ୍ତି
ଅଚଳାଚଳ ସମ୍ପଦ ମିଳିବ ଏ ଶାନ୍ତି ।
ଆବର ପ୍ରତ୍ୟକ୍ଷେ ଯାହା ଦେଖିଲି ନୟନ
ଜଗନ୍ନାଥ ଆତ୍ମା ଜାଣ ଅଟନ୍ତି ଅର୍ଜୁନ ।
ଜଗନ୍ନାଥ ବନ୍ଧୁ ଯାଙ୍କୁ ସହାୟ ଅଛନ୍ତି
ତାଙ୍କ ପାଶେ ଥିଲେ ନାହିଁ ଉପଦ୍ରବ ଖିତି ।
କେତେ ଜନ୍ମେ ଯେବେ ବହୁପୁଣ୍ୟ କରିଥାଇ
କୁଳ ବିଖ୍ୟାତ ତନୟ ସେହୁ ବଂଶେ ପାଇ ।
କୁନ୍ତୀ ବୋଇଲେ ହେ ମୁନି ତୁମ୍ଭ ହେତୁ ସିନା
ଛେଉଣ୍ଡା ପୁତ୍ରଙ୍କୁ ମୋର ହଅ ବଜ୍ରସେହ୍ଣା ।
କୌରବ ଏହାଙ୍କଠାରେ ଶତ୍ରୁଭାବ କରି
ନିରନ୍ତର ଛିଦ୍ର ପାଞ୍ଚ ରହିଛନ୍ତି ଚାହିଁ ।
ଭୀଷ୍ମ ଦ୍ରୋଣ ଭୂରିଶ୍ରବା ଅଶ୍ୱତ୍ଥାମା କର୍ଣ୍ଣ
ଚରଦନୁ ଖାଇଛନ୍ତି କୌରବଙ୍କ ଅନ୍ନ ।
ପହିଜ କରନ୍ତି ତେଣୁ ସେ ତାଙ୍କର ପାଇଁ
ମୋ ପୁତ୍ରଙ୍କୁ ସାହା ହୋଇ ଜଣେ କେହି ନାହିଁ
ବଡ଼ ପୁଣ୍ୟବତୀ ପ୍ରିୟା ଅଟନ୍ତି ଗାନ୍ଧାରୀ
କୋଟିଲକ୍ଷ୍ମୀ ଭୋଗକଲେ ଧୃତରାଷ୍ଟ୍ର ବର ।

ଆପଣା ଗର୍ଭରୁ ଶତେକପୁତ୍ର କଲେ ଜାତ
ସେ କୁମର ସର୍ବଗୁଣେ ତ୍ରୈଲୋକ୍ୟ ବିଖ୍ୟାତ ।
ମୁହିଁ ମନ୍ଦଭାଗି କେଉଁ ପାପ କଲି ଅବା
ସ୍ୱାମୀ ଯମପୁରେ ଗଲେ ହୋଇଲି ବିଧବା ।
ଛେଉଣ୍ଡା ହୋଇଲେ ମୋର ପାଞ୍ଚଗୋଟି ପୁତ୍ର
ଜନ୍ମକାଳୁ ଦୁଖିନୀ ମୁଁ ଦେବ ଘଟସୂତ୍ର ।
ବ୍ୟାସ ବୋଇଲେ ମାତ ଶୋ ନ କର କୁଶଳା
ତୋହର ସମାନେ କେହି ନାହିଁ ପୁଣ୍ୟବନ୍ତା ।
ପ୍ରତ୍ୟକ୍ଷରେ ପଞ୍ଚଦେବ ଗର୍ଭେ କଲୁ ଜନ୍ମ
ଖଣ୍ଡିଲୁ ଦୁର୍ଗତିମାନ ଛେଦ ପାପକର୍ମ ।
ଆଉ ଅଳ୍ପଦିନେ ମାଗୋ ଦେଖିବୁ ପ୍ରତ୍ୟକ୍ଷ
ତ୍ରୈଲୋକ୍ୟ ଉପରେ ତୋର ପୁତ୍ରହେବେଦକ୍ଷ
ଏମନ କହିଣ ମୁନି ଅନ୍ତର୍ଦ୍ଧାନ ହେଲେ
ଶୁଣ ପରୀକ୍ଷିତ ଶୁକମୁନି ଯେ ବୋଇଲେ ।
ଏଥିଅନନ୍ତରେ କଥା ଶୁଣ ନୃପସୁତ
ମର୍ତ୍ତ୍ୟପୁରେ ରହିଥିଲେ ହରି ଲକ୍ଷ୍ମୀପତି ।
ଉଗର କହିଲ ଜରାସନ୍ଧ ଆଗେ ଯାଇ
ପୁଣି ସମଦଣ୍ଡ ଘେନି ଅଇଲା ସେ ବାହି ।
ସ୍ବରଉଣା ଲକ୍ଷେରଜା ଜରାସନ୍ଧ ଘେନି
ଗର୍ବେ ମଧ୍ୟଦେଶେ ଆସି ବେଢ଼ିଲେ ସଘନ ।
ଜାଣିଲେ ତା ଜଗନ୍ନାଥ ଲକ୍ଷ୍ମୀଦେବୀ ସାଇଁ
ନଗରରୁ ପଳାଇଲେ ଭୟେ ବେନି ଭାଇ ।
ଅନେକ ଆକ୍ଷୌହିଣୀ ଜରାସନ୍ଧ ନରପତି
ଶତେ ଯୋଜନ ପର୍ଯ୍ୟନ୍ତେ ଧାଇଁ ପଛକତି ।
ପୁଣି କେତେ ଦୂରେ ପ୍ରଭୁ ଅଦୃଶ୍ୟ ହୋଇଲେ
ପୁନରପି ଖଣ୍ଡେଦୂରେ ଲଗା ଲଗି ହେଲେ ।
ଧରୁ ଧରୁ ପେଲି ହୋଇ ସ୍ୱାମୀ ଚଳିଯାନ୍ତି
ଅଛି ଆଗେ ନଧ ମରି ଅଦୃଶ୍ୟ ହୁଅନ୍ତି ।
କନପି ପର୍ବତ ତଳେ କୁଶନାମେ ଦେଶ
ଶଶ ଭୂଷଣ ବଜାର ତହିଁ ଧନ କୋଷ ।
ଶତେ ଯୋଜନ ଆବୃତ ସେହୁ ସ୍ୱର୍ଗପ୍ରାନ୍ତ
ପଞ୍ଚାଶ ଅଦ୍ଭୁତ ଘର ତହିଁ ନାନା ଜାତ ।
ଦେବ ନଗ୍ରକୁ ଯେସ୍ତେ କଟକ ଶୋଭଇ
ତହିଁ ବିଶ୍ରାମ କରିଲେ ରାମ ହରି ଯାଇ ।
ପୁନରପି ଜରାସନ୍ଧ ଆସେ ଦଣ୍ଡବାହି
କାହିଁଗଲେ ରାମହରି ବୋଲିଣ ଖୋଜଇ ।

ଅନ୍ତର୍ଯ୍ୟାମୀ ନ ରହିଲେ ତାହା ଜାଣିପାରି
ନିକଟେ ଥାଇ ଦେଖିଣ ଗଲେ ଅପସରି ।
ଚୌଷଣୀ ଯୋଜନପର୍ଯ୍ୟେ ନଗ୍ନ ଗୋଡ଼ାଇଲ
କୌଣସି ପ୍ରକାରେ ତାଙ୍କୁ ଧରି ନପାରିଲ ।
ପୁଣି କେତେ ଦୂର ଯାଇ ହୋଇଲେ ଗୁପତ
ଚତୁର୍ଦ୍ଦଶ ଧାଡ଼ ଏଥିଁ ହେଲ ସମାପତ ।
କାଳିଞ୍ଜନ ଗିରି ତଳେ କୃଷ୍ଣା ନାମେ ନଦୀ
ମହେନ୍ଦ୍ର ପର୍ବତୁ ଯାଏ ଈଶାନକୁ ଭେଦି ।
ତହିଁ ନିତ୍ୟକର୍ମ ସାରି କୃଷ୍ଣ କାମପାଳ
ପଦ୍ମବନ ଦେଶ ଗଲେ ହେଲ ଘଡ଼ି ବେଳ ।
ପଦ୍ମକେଶରୀ ବୋଲିଣ ତହିଁର ନୃପତ
ବଡ଼ଇ ଧାର୍ମିକ ସେ ଯେ ଅଟନ୍ତି ଶୁଦ୍ଧ ଜାତ ।
ଜରାସନ୍ଧ ସଙ୍ଗେ ସୈନ୍ୟ ଘେନି ସେ ଯାଇଛି
ଥାଇ ସୈନ୍ୟ ନାହିଁ ଦେଶ ଶୂନ୍ୟ ହୋଇଅଛି ।
ଖାରବାହୁ ନାମେ ତାର ପୁତ୍ର ଅଗ୍ର ଲେଖା
କଟକ ରକ୍ଷା କରିଣ ରହିଛି ସେ ଏକା ।
ବେନଭାଇ ପ୍ରବେଶିଲେ ତା ନଗରେ ଯାଇ
କଟକୁ ପାଳୁଛି ଆଶେ ପୁତ୍ର ବର୍ତ୍ତିପାଇ ।
ରାମକୃଷ୍ଣଙ୍କୁ ଭକ୍ତିରେ ଆସି ଘେନିଗଲ
ଆପଣା ମନ୍ଦିରେ ଯାଇ ପ୍ରବେଶ ହୋଇଲ ।
ଅଷ୍ଟରତ୍ନ ସିଂହାସନେ ବସାଇଲ ନେଇ
ନିଜେ ତଳେ ଉଭା ହେଲ କାଖେ କରିହୋଇ ।
କର ଯୋଡ଼ିଣ ସମ୍ମୁଖରେ କଲ ବହୁ ସ୍ତୁତି
ଜୟ ହରି ବଳରାମ ଜୟ ରଣମୂର୍ତ୍ତି ।
ସ୍ୱାମୀ ସ୍ଥାବର ଜଙ୍ଗମ ଆଦି ସୃଷ୍ଟିଖାନ
ତୁମ୍ଭ ଅଙ୍ଗୁ ଆଣି ଧାତା ନିର୍ମାଣିଲ ପୁଣି ।
ସର୍ବଦେବ ପରେ ଶ୍ରେଷ୍ଠ ତୁମ୍ଭେ ଅନ୍ତର୍ଯ୍ୟାମୀ
ଅନୁଗ୍ରହ କର ନାଥ ଚରଣେ ନମାମି ।
ତୁମ୍ଭେ ସୃଷ୍ଟି କର୍ତ୍ତା ତୁମ୍ଭଙ୍କୁ ତ ସବୁ ଜଣା
ନ ଜାଣିଣ ଯୋଗୀମାନେ ହେଉଛନ୍ତି କଣା ।
ଅଶେଷ କୋଟି ବ୍ରହ୍ମାଣ୍ଡ ଯା ଆଜ୍ଞାରେ ଯାତ
ନିଗମ ଭୂତ ଆତ୍ମା ତୁମ୍ଭେ ପୁରୁଷ ମହତ ।
ଷଡ୍‌ଗୁଣପଞ୍ଜର ନାଥ ଦୁଃଖିଜନ ବନ୍ଧୁ
ଅପାର ମହିମା ତବ ପାଦପଦ୍ମେ ବନ୍ଦୁ ।
ଦେବତାଙ୍କ ପରେ ତୁମ୍ଭେ ଅଟ ଶିରୋମଣି
କ୍ଷଣକରେ ପୃଥିସାର ସର୍ବ କର୍ମ ଜାଣି ।

ଅଜ୍ଞାନ ପାମର ସ୍ଥୂଳ ଜଡ଼ ମନ୍ଦବୁଦ୍ଧି
ମସ୍ତକରେ ନାଶଯିବ ହୋଇ ତବ ବାଧା ।
ଏହିପରି ସ୍ତୁତିକଲ ସେ କୁମର ମଣି
ସାନନ୍ଦ ହୋଇଲେ ହଳୀ କୃଷ୍ଣ ତାହା ଶୁଣି ।
ହରି ବୋଇଲେ ତୁମ୍ଭ ତ ବାଳୁତ କୁମର
ଆଜହୁଁ ଏତେ ଧାର୍ମିକ ଧନ୍ୟ ଜନ୍ମ ତୋର ।
ଏଥିଅନ୍ତେ ସୁପକାର ଜଣାଇଲ ଯାଇ
ପାକସିଦ୍ଧି ହେଲ ସ୍ୱାମୀ କରିବା ମଣୋହି ।
ତତକ୍ଷଣେ ଦୁଇଭାଇ ଭୋଜନେ ବସିଲେ
ସୁପକ୍ୱ ବ୍ୟଞ୍ଜନ ସୁପକାର ପରଷିଲେ ।
ଚୌରଷ୍ଟି ବ୍ୟଞ୍ଜନ ଭୁଞ୍ଜି ରାମ ହୃଷିକେଶ
ବଢ଼ଆ ଲାଗି ହୋଇଣ ଲଭିଲେ ସନ୍ତୋଷ ।
ଏଥିଅନନ୍ତରେ ଜରାସନ୍ଧର ଆଗର
ଦେଶାନ୍ତର ବାର୍ତ୍ତାକୁ ଜଣାଏ ସତ୍ୱର ।
ଭୋ ଦେବ ସାବଧାନେ ହେ ଶୁଣ ନୃପମଣି
ନିର୍ଣ୍ଣୟ ବାରତା ଆମ୍ଭେ ଅଇଲୁଁ ଶୁଣି ।
ପଦ୍ମକେଶରୀ ଦେଶରେ ଯାଇ ରାମ ହରି
ଲୁଚିଣ ଅଛନ୍ତି ତୁମ୍ଭ ଭୟେ ଯାଇ କରି ।
ଶୁଣି ଜରାସନ୍ଧ ରାଜା ଆନନ୍ଦ ହୋଇଲ
ପଦ୍ମକେଶରୀ ରାଜାକୁ ପାଶେ ଡକାଇଲ ।
ଶୀଘ୍ର ଆଣିଦେବୁ ବସୁଦେବର କୁମର
ଆହେ ପଦ୍ମକେଶରୀ ତୁ ଚଳ ଧାଡ଼କାର ।
ତୁମ୍ଭ ରାଜ୍ୟରେ ଅଛନ୍ତି କୃଷ୍ଣକାମପାଳ
କପଟ ପ୍ରୀତି କରିବୁ ବାବୁ କ୍ଷଣକାଳ ।
ମୁହିଁ ଯାଇ ଶୀଘ୍ର ତହିଁ ପ୍ରବେଶ ହୋଇବି
ଧାଡ଼କାରେ ରାମକୃଷ୍ଣଯାଇଣ ବାନ୍ଧିବି ।
ଶୁଣି ପଦ୍ମକେଶରୀ ଯେ ଗଲ ଶୀଘ୍ର ହୋଇ
ସାତଦିନେ ନିଜ ରାଜ୍ୟ ପ୍ରବେଶିଲ ଯାଇ ।
ନଗରେ ପ୍ରବେଶ ଯାଇ ହେଲ ମହୀପାଳ
ସାଷ୍ଟାଙ୍ଗରେ ପଡ଼େ ରାମକୃଷ୍ଣ ପାଦତଳ ।
କରପଦ ଯୋଡ଼ି ରାଜା ବହୁ ସ୍ତୁତି କଲ
ବୋଇଲେ ମୋ ନଗରେ ସ୍ୱାମୀ ଚରଣ ପଡ଼ିଲ ।
ଯେ ପଦାକୁ ସାନକାଦି କରୁଥାନ୍ତି ଲୟେ
ସେ ପାଦପଦ୍ମକୁ ଦେଖି ଖଣ୍ଡିଲି ମୁଁ ଭୟେ ।
ତୁମ୍ଭେ ଦେବ ଆଦି ତୁମ୍ଭେ ଦେବଯେ ଅନାଦି
ତୁମ୍ଭେ ଦେବ ଜଳସ୍ଥଳ ତୁମ୍ଭେ ଶୂନ୍ୟ ଭେଦି ।

ତୁମେ ସୃଜଅଛ ଏହି ଚରାଚର ମହୀ
ନମସ୍ତେ ହେ ଜଗନ୍ନାଥ ପ୍ରଭୁ ଭବତ୍ରାହୀ ।
ଭୂଲୋକ ଯେ ଭୁବଲୋକ ସ୍ୱର୍ଗ ଲୋକ ଆଦି
ଏ ତୁମ୍ଭର ବିଶ୍ୱକାୟା ଘୋଟିଛି ଅନାଦି ।
ନମସ୍ତେ ନମସ୍ତେ ନାଥ ତୁମେ ମୋକ୍ଷପାନ
ଶୁଭାଶୁଭକର୍ତ୍ତା ତୁମଠାରୁ ନାହିଁ ଆନ ।
ସ୍ୱାମୀ ଅଜ୍ଞାନ ପାମର ଜରାସନ୍ଧ ଛାର
ନ ଜାଣି ତୁମ ସଙ୍ଗରେ କରଇ ସମର ।
କୃପାସିନ୍ଧୁ ନାଥ ତୁମେ ଶରଣପଞ୍ଜର
କାର୍ଯ୍ୟ ନିମନ୍ତେ ସହୁଛ ଅସୁର ଦୁର୍ବାର ।
ନମସ୍ତେ ନମସ୍ତେ ନାଥ ହେ ଧର୍ମ ପ୍ରତ୍ୟକ୍ଷ
ତୁମେ ଇଚ୍ଛା କଲେ ଜରାସନ୍ଧ ଯିବ ନାଶ ।
ତୁମେ ଅନୁଗ୍ରହ କରି ଅଇଲ ମୋ ପୁରେ
ଉଗ୍ରସେନ ବାର୍ତ୍ତା କହିଲା ରଜାର ଆଗରେ ।
ଚର୍ଚ୍ଚି ନିମନ୍ତେ ପେଷିଲା ମୋତେ ଉଗ୍ରସେନ
ବୋଇଲା ତୁ ରାମକୃଷ୍ଣ ଦିଅ ଆଣି ଧରି ।
ଦଣ୍ଡେ ବିଶ୍ରାମ ନ କରି ପେଷିଲାକ ବେଗେ
ସଇନ ଘେନଣ ପଛ ଆସୁଛି ବୈରାଗେ ।
ଶ୍ରୀକୃଷ୍ଣ ବୋଇଲେ ପଦ୍ମକେଶରୀକ ଚାହିଁ
ଲକ୍ଷେ ଜରାସନ୍ଧ ହେଲେ ମୋର ଭୟ ନାହିଁ ।
ସବୁ ରଜାଙ୍କର ସୈନ୍ୟ ପାରଇ ମୁଁ ମାରି
ଦେବକାର୍ଯ୍ୟ ପାଇଁ ମାତ୍ର ଅଛୁ ଅପସରି ।
ଏସନକ ବଚନର ସେ କରନ୍ତେଣ କସି
ଉଗ୍ରସେନ ପୁଣି ବାରତା କହିଲାକ ଆସି ।
ଶ୍ରୀ ଦେବ ସାବଧାନରେ ଶୁଣିମା ଗୋସାଇଁ
ସମଦଣ୍ଡ ଘେନ ଜରା ଆସୁଅଛି ବାହି ।
ଚାରିଉଣା ଲକ୍ଷେ ନରପତିଙ୍କ ସଇନ
ପାଦଭରେ କମ୍ପମାନ ସକଳ ମେଦିନୀ ।
ଷାଠିଏ ଯୋଜନ ମାଡ଼ି ଆସୁଅଛି ଆଟ
ଖାଲ ଡିଙ୍ଗର ଉର୍ଦ୍ଧିଣ ସବୁହେଲା ବାଟ ।
ଏହିକ୍ଷଣି କଟକକୁ ବେଢ଼ିବେ ଶ୍ରୀ ଦେବ
ଜଗନ୍ନାଥ ବୋଇଲେକ ଚର୍ଚ୍ଚି କି ମିଳବ ।
ଏନିମିତ୍ତେ ବନ୍ଧୁ କରିବାଟି କିସ ଅର୍ଥେ
ଏହା କହି ବାହାରିଲେ ହଳୀ ଜଗନ୍ନାଥେ ।
ପଦ୍ମକେଶରୀ ରଜା ତା ସ୍ୱକୁଟୁମ୍ବେ ଘେନ
ରାମକୃଷ୍ଣ ପାଦେ ପଡ଼ି ହୋଇଲା ବଇନ ।
ତାହାଙ୍କୁ ତୁଟାଇ ଚର୍ଚ୍ଚି ହଳୀ ବନମାଳୀ
ରାଜ୍ୟରୁ ବାହାରି ନଈର ତ କୋଣେ ଚଳି ।
ଜରାସନ୍ଧ ରଜା ଦଣ୍ଡ ଘେନି ଆସୁଥିଲା
ମାଲ୍ୟବନ୍ତ ପର୍ବତରେ ଦୂତ ଜଣାଇଲା ।
ଶ୍ରୀ ଦେବ ସାବଧାନରେ ଶୁଣ ନୃପସାଇଁ
ଯାହିଁ ନିମନ୍ତେ ଆସୁଛ ତୁମେ ସନ୍ୟ ବାହି ।
ପଦ୍ମକେଶରୀ ରାଜ୍ୟରେ ରାମକୃଷ୍ଣ ଥିଲେ
ତୁମର ଯିବାର ସେହୁ ବାରତା ପାଇଲେ ।
ଏହିକ୍ଷଣି ବାହାରିଣ ଗଲେ ଦେବ ଚର୍ଚ୍ଚି
ଏ ମାଲ୍ୟବନ୍ତ ପର୍ବତେ ଲୁଚି କହି କହି ।
ମଗଧେଶ୍ୱର ବୋଇଲା ମୋର ଏଡ଼େ ଭାଗ୍ୟ
ସତେ କିବା ରାମକୃଷ୍ଣ ପଡ଼ିବେ ମୋ ଆଗ ।
ଉଗ୍ରସେନ ବୋଇଲା ଆମେ ପଦ୍ମଦଳେ ଥିଲୁ
ରାମକୃଷ୍ଣ ପଳାଇବା ନୟନେ ଦେଖିଲୁ ।
ଯେ ଯାହା ପାଖରେ ତୁମେ ଜଗିଥାଅ ଗାଢ଼
ଖଟେ ପୂର କରି ମାଲ୍ୟବନ୍ତ ଗିରି ବେଢ଼ ।
ରଜାର ଆଜ୍ଞାରେ ସୈନ୍ୟ ପର୍ବତ ବେଢ଼ିଲେ
ଆଡ଼ଭିଆ ଅନୁସରି ଚୋପାଶ ଲୋଡ଼ିଲେ ।
ଗିରି ଖୋଲ ଖଣା ଚାରିପାଶ ଅନୁସରି
ଅନେକ ଯତ୍ନେ ଲୋଡ଼ନ୍ତି ଚର୍ଚ୍ଚି ରାମ ହରି ।
ରାମକୃଷ୍ଣ ସନ୍ଦେଶ ନ ପାଇଲେ ଲୋଡ଼ି
ଜରାସନ୍ଧ ଅଗ୍ରତରେ କହିଲେ ବାହୁଡ଼ି ।
ଶୁଣି ମଗଧେଈଶ୍ୱର ହେଲା ମହାରୋଷ
ପରିତାପେ ବୋଲଇ ସେ ଚାହିଁ ଦମଘୋଷ ।
ଆମେ ଅନେକ ପ୍ରକାରେ କଲୁ ନାନା ବୁଦ୍ଧି
କୌଣସି ପ୍ରକାରେ ନୋହିଲା ତ କାର୍ଯ୍ୟସିଦ୍ଧି ।
ବଡ଼ଇ ମାୟାଧର ସେ ରାମ ବନମାଳୀ
ଧରି ନ ପାରିଲୁ ତାଙ୍କୁ ଆସୁ ମୋହ ଭଳି ।
ଚାରିଉଣା ଲକ୍ଷେ ରଜା ଚତୁରଙ୍ଗ ବଳ
ମୋହର ନିମନ୍ତେ ସର୍ବେ କଲେ ଅଙ୍ଗଛଳ ।
ରଥୀ ମହାରଥୀ ସୈନ୍ୟ ପଦାତି ସହିତେ
ଅମନାଙ୍କବୃନ୍ଦ ମୋର ରହିଛନ୍ତି କେତେ ।
ଜଗମୁଖେ ଅପକୀର୍ତ୍ତି ହେଲା ମୋତେ ଲାଜ
ଶ୍ରମ ମାତ୍ର ପାଇଲଇଁ ନୋହିଲା ତ କାର୍ଯ୍ୟ ।
ଆବର ରାଜପଣରେ ନାହିଁ ମୋର ଇଚ୍ଛା
କରିବଇଁ ଦେଶାନ୍ତର କହି ଭିକ୍ଷା ।

ଅନେକ ବନ୍ଧୁ ମୋହର ହୋଇଲେ ବଧବା
ରାଜ୍ୟଭୁଗଲେ ମୋତେ କ ବୋଲିବେସେଅବା
ସବଳକ ପୁରୁଷାର୍ଥ ହେଲେ ମହାପାପୀ
ଏ ରାଜା ଗଣେ ମୋତେ ନମାନିବେ କଦାପି ।
ଜରାସନ୍ଧ ମୁଖୁଁ ଏହି ବଚନକୁ ଶୁଣି
କରଯୋଡ଼ କହେ ଦମଘୋଷ ନୃପମଣି ।
ତୁ ରାଜାଧିରାଜେଶ୍ୱର ଅଟ ମହାବୀର
ପରମ ପଣ୍ଡିତ ତୁମେ ଅଟନ୍ତ ଚତୁର ।
ତୁମେ ତ ଆପଣେ ଜାଣ ଏହା ନୃପଶ୍ରେଷ୍ଠୀ
ହାରିବା ଜିଣିବା କ୍ଷତ୍ରୀଙ୍କର ବେଭାରଟି ।
ଦଣ୍ଡ ଭେଦ ସମ ଆମେ କରୁଥିବା ପୁଣି
ଉପାୟ ବଳରେ ଯିବା ଶତ୍ରୁ ହୋଏ ଜିଣି ।
ଯେଉଁ ଶତ୍ରୁକୁ ନ ପାରି ପରାକ୍ରମ କରି
ସମୟେ କୌଶଳେ ତାକୁ ଯତ୍ନେ ସାଧି କରି ।
ସାମାନ୍ୟ ଶତ୍ରୁ ତୋହର ନୋହେ ଯଦୁନାଥ
ଜାଣୁ ନା କ କେତେ କର୍ମ କରିଅଛି ଯାହା ।
ଅତିବଳବନ୍ତ ଅଟେ ମହାରାଜା କଂସ
ଅଷ୍ଟମଲ୍ଲ ସହିତରେ କଲା ତାକୁ ନାଶ ।
ସାନ୍ଦୀପନୀ ଘରକୁ ସେ ପାଠ ପଢ଼ିଗଲେ
ଚତୁର୍ଦ୍ଦଶ ଦିବସରେ ଶକଳ ଶିଖିଲେ ।
ଷଡ଼ପୁତ୍ର ମରିଥିଲେ ସାନ୍ଦୀପନଙ୍କର
ଯମପୁରୁ ଆଣି ତାଙ୍କୁ ଦେଲେ ପୁନର୍ବାର ।
ରୁକ୍ମଣୀ ହରଣ କାଳେ କ କଥା ନକଲେ
ଲକ୍ଷେ ରାଜାଙ୍କ ମୁଖରେ କାଳି ଲଗାଇଲେ ।
ତର୍କ ତାର୍କରେ ତାହାଙ୍କୁ ଧରି ଅବା ପାରି
ନୋହିଲେ ସାଧି ନୁହନ୍ତ କେବେ ରାମ ହରି ।
ପଞ୍ଚଦଶ ବାର ଏବେ ହେଲା ଆମ ଧାଡ଼ି
କଉଣସିମତେ ସେହୁ ଧରା ତ ନ ପଡ଼ି ।
ଏ ମୋହର ବଚନକୁ ମାନ ମହାରାୟେ
ସମୟେକ କୋପଶାନ୍ତ କରିବା ଉପାୟେ ।
ଲେଉଟି ସମରାଜ୍ୟକୁ ବୁଲ ବେଗେ ଯିବା
ଚତୁର୍ମାସ୍ୟା ସାରି ପୁଣି ବାହୁଡ଼ି ଆସିବା ।
ସାତମାସ ହେଲା ଆମେ ହେଲୁଣି ଦୁର୍ବଳ
ଚରଣ ନ ପାଇ ଘୋଡ଼ା ହସ୍ତୀଏ ଦୁର୍ବଳ ।
ଦେଖ ଏବେ ଚତୁର୍ମାସ୍ୟା ହେଉଛି ପ୍ରବେଶ
ସର୍ବ ରାଜାମାନେ ଯାନ୍ତୁ ଯେ ଯାହାର ଦେଶ ।
ସମରରେ ପଡ଼ନ୍ତୁ ଅପ୍ରମିତ ବଳ
ପୁଣି ଉଆଇବେ ନୃପେ ଗଲେ ତା ସକଳ ।
ଶୁଣିଣ ମଗଧେଶ୍ୱର ସନମତ କଲେ
ସମସ୍ତ ରାଜାଏ ତାମ୍ବୁ କାଢ଼ ଲଗିହେଲେ ।
ଅନେକ ପ୍ରକାରେ ରାଜା କହେ କରଯୋଡ଼
ଚତୁର୍ମାସ୍ୟା ଶେଷେ ତୁମେ ଆସିବ ବାହୁଡ଼ ।
ରାମକୃଷ୍ଣଙ୍କର ଯୋଗୁ ପାଇଲୁଁ ଲାଜ
ସମସ୍ତଙ୍କୁ ଲାଗେ ଯିନା ଅପମାନ ବୋଝ ।
ଜରାସନ୍ଧ ଠାରୁ ରାଜାଗଣେ ଆଜ୍ଞାପାଇ
ଯେ ଯାହାର ରାଜ୍ୟକୁ ଗଲେ ବିଦାହୋଇ ।
ଅଙ୍ଗବଳ ସୈନ୍ୟ ଘେନି ଜରାସନ୍ଧ ରାୟେ
ମଗଧ ଦେଶରେ ଯାଇ ପରବେଶ ହୁଏ ।
ଇତି ଶ୍ରୀହରିବଂଶ ଏ ଧାଡ଼ି ଖଣ୍ଡ ପର୍ବ
ପଞ୍ଚଦଶ ଧାଡ଼ି ଜରାଶନ୍ଧ ଉପଦ୍ରବ ।
ପଢ଼ନ୍ତ ଶ୍ରୀ ଭାଗବତ ଗ୍ରନ୍ଥ ପୁଣ୍ୟମୟେ
ଇତଂ ଦ୍ୱାଦଶ ଅଧ୍ୟାୟ ସମାପତ ହୋଏ ।
ଅଜ୍ଞାନ ମୂରୁଖ ହୀନ ମୁଁ ଅଚ୍ୟୁତ ଦାସ
କେବଳ ଶ୍ରୀହରି ପଦ୍ମପାଦ ମୋର ଆସ ।

—*—

## ଗୋପପୁରରୁଉଦ୍ଧବରପ୍ରତ୍ୟାବର୍ତ୍ତନ

ଏଥୁଅନ୍ତରେ ପରୀକ୍ଷ ନାମେ ମହାରାଜା
ଶୁକମୁନି ଚରଣରେ କରି ଦିବ୍ୟପୂଜା ।
ବୋଇଲେ ହେ ମୁନି ତୁମ ଯୋଗେ ହରିବଂଶ
ଶୁଣି କୋଟି ଜନ୍ମ ପାପ ହେଲା ମୋର ଧ୍ୱଂସ ।
ଜରାସନ୍ଧ ପଞ୍ଚଦଶ ବାର ଧାଡ଼ି ଦେଲା
ଛତିଶୋଇ ସସ୍ତ୍ର ରାଜାଘେନି ସେ ବାହୁଲା ।
ବାଣାବଜ୍ର ନାଭ ଆଉ ଶମ୍ବର ନାରକା
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା ସମସ୍ତେହିଁ ସଖା ।
ରଥୀମହାରଥୀ ସର୍ବେ ଯୁଝିଲେ ଝସାଇ
ଜିଣି ନ ପାରିଣ ଗଲେ ଅପମାନ ପାଇ ।
ରାମକୃଷ୍ଣ ମାଲ୍ୟବନ୍ତ ଗିରିରେ ଲୁଚିଲେ
ତଦନ୍ତେ ବାହୁଡ଼ିଣ ସେ କେଉଁ କ୍ରୀଡ଼ା କଲେ ।
ଏକଥା ସଂକ୍ଷେପି ମୋତେ କହ ମୁନିବର
ପାଇବି ପରମ ଗତି ଶୁଣି ତୁମ ଗୀର ।
ଏତେ ବୋଲି ମୁନିଙ୍କର ଚରଣେ ବନ୍ଦିଲେ
ଧୂପ ଦୀପ ନଇବେଦ୍ୟ ଗନ୍ଧ ପୁଷ୍ପ ଦେଲେ ।

ରାଜା ଭକ୍ତ ଭାବ ଦେଖି ରାମଙ୍କୁ ସେ ବାଛି
ସନ୍ତୋଷ ହୋଇ ପୁସ୍ତକ ଫେଡ଼ି ବ୍ୟାସବର୍ଣ୍ଣି ।
ଶୁଣ ମହୀକ୍ଷ ବଦନ୍ତି ମୁନି ବ୍ରହ୍ମଚାରୀ
ଜରାସନ୍ଧଦଳ ଧାଡ଼ି ଆସନ୍ତେ ଯେଉଁ କଥା ।
ରୁକ୍ମିଣୀ ଲଭେ ରାଜା ସମଦଣ୍ଡ ଥିଲେ
ମଗଧେଶ୍ୱର ଆଜ୍ଞାରେ ଯେଝାରାଜ୍ୟେ ଗଲେ ।
ମାନ୍ଧାତନ୍ତ ରାମକୃଷ୍ଣ ଦୁହେଁ ଥିଲେ ଲୁଚି
ଦେଖିଲେ ସେ ଜରାସନ୍ଧ ପଳାଇଲା ଘୁଞ୍ଚି ।
ତହୁଁ ବାହାର ହୋଇଲେ ରାମ ବନମାଳୀ
ଏକାଦିନକେ ମଥୁରା କଟକରେ ମିଳି ।
ଦେଖିଲେ ରାଜ୍ୟ ପଡ଼ାଇଅଛି ସେ ଉଜାଡ଼
ଦେଶ ଗୃହ ଗଡ଼ ଆଦି ଯାଇଅଛି ପୋଡ଼ି ।
ପ୍ରଜାଙ୍କ ଉତ୍ପନ୍ନ ଲକ୍ଷ୍ମୀ ସୁନା ଧନଧାନ୍ୟ
ମେଡ଼ ମଣ୍ଡପ ଅଟ୍ଟାଳ ହୋଇଅଛି ଭଗ୍ନ ।
ତପୀ ଭଗବନ୍ତ ସାଧୁ ବ୍ରାହ୍ମଣଜନ ପ୍ରଜା
ପାତ୍ରମନ୍ତ୍ରୀ ଆଦି କରି ଉଗ୍ରସେନ ରାଜା ।
ଜରାସନ୍ଧ ଭୟେ ପୁରୁ ପଳାଇଣ ଥିଲେ
ବାହୁଡ଼ାଇ ମଥୁରାରେ ଆସି ଠୁଳ ହେଲେ ।
ଚୌରାଶୀ କୋଟି ଯାଦବ କୁଟୁମ୍ବ ସହିତେ
ନିଜସ୍ଥାନେ ଆବୋରଣ ରହି ଯେଝାମତେ ।
ହାଟୁଆ ବାଟୁଆ ଆଦି ବଣିକ ସକଳ
କ୍ରମେ କ୍ରମେ ଆସି ସର୍ବେ ହୋଇଲେକ ଠୁଳ ।
ଶାଢ଼ୀ ମଣ୍ଡପ ବୁନ୍ଦୁଆ ଲୁଗାମାନ ଟାଣି
ଯେଝା ସ୍ଥାନରେ ରହିଲେ ସକଳ ନଗରୀ ।
ଉଗ୍ରସେନ ବସୁଦେବ ପୁତ୍ରଙ୍କୁ ଦେଖିଲେ
କୁଳଧର୍ମ ଯେଝାମାନ୍ୟ ଉତ୍ସବେ କଲେ ।
ଦେଖନ୍ତି ସେ ଭଗ୍ନରଥ ହୋଇ ଯୋଡ଼ାଯୋଡ଼ା
ପର୍ବତ ସମାନ ପଡ଼ିଛନ୍ତି ପାଶେ ମଡ଼ା ।
ଛତିଶ କୁଳ ପାଟକ ଅଷ୍ଟାଦଶ ଆଦି
ହସ୍ତୀ ଘୋଡ଼ା ନରମୁଣ୍ଡେ ପୂରିଅଛି କ୍ଷିତି ।
ଗଡ଼ ଦୁଆର କବାଟ ହୋଇଅଛି ଭଗ୍ନ
ଦୂଜାପୀଠ ମନ୍ଦ୍ରପାଦ୍ଧି ପଡ଼ି ଛିନ୍ନ ଛିନ୍ନ ।
ଲୋକଙ୍କ କ୍ରନ୍ଦନ ଦେଖି ଶ୍ରୀରାମ କହ୍ନାଇ
ଏକାନ୍ତରେ ଆଜ୍ଞା ଦେଲେ ବିଶ୍ୱକର୍ମା ଧ୍ୟାଇ ।
ନାରାୟଣ ବୋଲନ୍ତି ହେ ବିଶ୍ୱକର୍ମା ଶୁଣ
ମଥୁରା କଟକ ଯୋଡ଼ି ଏକ୍ଷଣି ନିର୍ମାଣ ।

ଯେମନ୍ତେ ଗଡ଼ ରଚନା ହୋଇଥିଲା ପୂର୍ବେ
ତହୁଁ ସତେକ ଗୁଣରେ ନିର୍ମାଣ ଏବେ ।
ବିଶ୍ୱକର୍ମା ବୋଲେ ତୁମ୍ଭେ ଅଟ ଅନ୍ତର୍ଯ୍ୟାମୀ
ତୁମ୍ଭର ଆଜ୍ଞାରେ ଗଡ଼ ତୋଳାଇବି ପୁଣି ।
ଅପୂର୍ବ ଗଡ଼ ହୋଇବ ଇନ୍ଦ୍ରପୁର ଜିଣି
ନଗରମାଣି ଦେବା ଶତେଗୁଣେ ଚକ୍ରପାଣି ।
ତହିଁର କରୁ କରୁ ସେ ସୂର୍ଯ୍ୟ ହେଲେ ଶେଷ
ଅନ୍ନବ୍ୟଞ୍ଜନ ଭୁଞ୍ଜିଣ ସର୍ବେ ହେଲେ ତୋଷ ।
ଭଗ୍ନ ଗଡ଼ ଭିତରେ ସେ ସୁଖେ ନିଦ୍ରା ଗଲେ
ଶୁଣ ମହୀକ୍ଷ ନୃପତି ଶ୍ରୀ ଶୁକ କହିଲେ ।
ଏଥୁ ଅନନ୍ତରେ ସାତ ଘଡ଼ି ଯେ ରଜନୀ
ବିଶ୍ୱକର୍ମା ମିଳେ ନିଜ ଶସ୍ତ୍ର କରେ ଘେନି ।
କୋଟିଏ ରୂପ ବହିଲେ ଆଜ୍ଞାରେ ଆପଣେ
ନିଃଶ୍ୱାସ ମାତ୍ରକେ ପୁର ସୃଜିଲେ ତକ୍ଷଣେ ।
ମେଡ଼ ମଣ୍ଡପ ଅଟ୍ଟାଳୀ ଜଗତି ଦେଉଳ
ହାଟ ବାଟ ପେଣ୍ଠ ଅଶ୍ୱଘର ଗଜଶାଳ ।
ମେଘନାଦ ପାଚେଶ୍ରୀ ଯେ ଅଙ୍କିତ ରଚନା
ପୂର୍ବୁ ଅଧିକ ସୁନ୍ଦର ହୋଇବ ଘଟନା ।
କେତେହେକ ବେଳ-ଯହୁଁ ଫିଟିଲା ତିମିର
ନିଦ୍ରା ଭଙ୍ଗେ ଯାଦବେ ଉଠିଲେ ଉଭାର ।
ଦେଖିଲେକ ଗୃହମାନ ହୋଇଛି ସଞ୍ଚ
ନାହିଁ ପଟାନ୍ତର ସ୍ୱର୍ଗ ପାତାଳ ଯେ ମଞ୍ଚ ।
ଲଙ୍କାକାନ୍ତୁ କାନ୍ତି ଶୋଭା ଅତ୍ୟନ୍ତ ଦିଶିଲା
ଅମର ପୁର ପରାୟେ ଜ୍ୟୋତି ପ୍ରକାଶିଲା ।
ଘରେ ଘରେ ପୂରିଛି ଯେ ସ୍ୱର୍ଣ୍ଣ ରତ୍ନଧନ
ନେତ ସିନ୍ଦୁଆ ପତନି ଚିତ୍ରକ ଶୋଭନ ।
କୁବେର ଅଳକା କିବା ରତ୍ନାକର ଦ୍ୱାର
କି ଅବା ବସ୍ତୁ ମନ୍ଦିର କିବା ଶିବାଗାର ।
ଦେଖିଣ ଯାଦବେ ମନେ ଆଶ୍ଚର୍ଯ୍ୟ ବିଚାର
ବୋଇଲେ କମ୍ପିତ ମାୟା ଜାଣିତ ନପାର ।
ପ୍ରତ୍ୟକ୍ଷେ ଦେଖିଲୁ ଜରାସନ୍ଧ ଗଲା ପୋଡ଼ି
ଅଦଭୁତେ ଦ୍ରବ୍ୟ ବାର୍ତ୍ତା ଅଇଲା ବାହୁଡ଼ି ।
କେହୁ ବୋଲନ୍ତି ଏ ଅଟେ ଜଳନ୍ଧର ମାୟା
କେ ବୋଲେ ବିଧାତା ଅବା କରିଲା ସୁଦୟା
ସବୁକାଳେ ପ୍ରାଣୀମାନେ କୁହନ୍ତି ଦୁଃଖୀ
ସମୟେ ଲଭନ୍ତି ଦୁଃଖ ସମୟରେ ସୁଖୀ ।

ଅନନ୍ତ ସଂସାର ଭେଦ କାହାର ନୁହଇ
ଛାଳ ଗ୍ରଢପଣ ଯୁଗେଗୋଟି ବଞ୍ଚାଇ ।
ନ ଜାଣିଣ ଜଗସନ୍ତ ଅଛନ୍ତି ଅଜ୍ଞ
ଯୋଗ୍ୟାଏ ବଳରେ ନଷ୍ଟେଁ ହେବ ପ୍ରବୋଧ
ଚତୁକଟ ମାୟା ଧର ଅଟନ୍ତି ଶ୍ରୀହରି
କଳ୍କର୍ମମାନ ସେହୁ ସାରେ ଆନ କରି ।
ରାମକୃଷ୍ଣ ଆହ୍ଲାଦରେ ଆପଦ ଯେ ନାହିଁ
ସର୍ବେଶ୍ୱର ନାଥ ଯେଣୁ ଅନ୍ତର୍ଯ୍ୟାମୀ କହି ।
ପୃଥିବୀର ଭାରଭର ନଶାଇବା ପାଇଁ
ଏହି ପ୍ରଭୁ ସୃଜନ୍ତି ଚରାଚର ମହୀ ।
ଏ ଦେ ଅପାର ମହିମା ଦେଖାଇଲେ ଆଣି
ଏହାଙ୍କ ଯୋଗରୁ ଆମ୍ଭେ ଦୁଃଖକୁ ନ ଗଣି ।
ଯୁକତେ ଯାଦବମାନେ ହେବ ଅବତାର
ଜଣ ଜଣକେ ନର୍ମାଣି ପାରନ୍ତି ସଂସାର ।
ଜାତି କୁଳ ପୌରୁଷ ମହତ୍ତ ଗୁଣ ଶୀଳ
ଭୁବନପୁରେ ଶୁଭିଲାକ ଯାଦବ ଚହଳ ।
ମହନ୍ତୁ ମର୍ଯ୍ୟାଦାବନ୍ତ ସକଳେ ଆଶ୍ଚର୍ଯ୍ୟ
ଯେ ବଂଶେ ଜନମିଛନ୍ତି ପ୍ରଭୁ ନରହରି ।
କହିଲେ ଯେ ନ ସରଇ ଯାଦବ ମହିମା
ପାଞ୍ଚ ଯୋଜନ ଅଟଇ ମଥୁରାର ସୀମା ।
ଯେତେ ରହିଅଛନ୍ତି ତହିଁ ନଗରବାସୀ
ଲକ୍ଷ୍ମୀଙ୍କ ପ୍ରସାଦେ ସର୍ବେ ଭଣ୍ଡାରାଧିକାରୀ ।
ଜରାସେନ୍ୟ ଯେଉଁ ରାଜ୍ୟ ଭଙ୍ଗ ପକାଇଲେ
ପୁନରପି ସେ ସମ୍ପଦ କ୍ଷଣକେ ପାଇଲେ ।
ଯେଣ୍ଟା ଆଶ୍ରମରେ ବସି ମିଳି ଜନ ପ୍ରଜା
ନଗରେ ବିଜୟ କଲେ ଉଗ୍ରସେନ ରାଜା ।
ସାତ୍ୟକ ଅକ୍ରୂର ଅନାଧୃଷ୍ଟ ସତ୍ରାଜିତ
ଯେଣ୍ଟାରେ ପୁରେ ରହିଲେ ଯାଦବ ସମସ୍ତ ।
ବସୁଦେବ ଅଗ୍ରେ ମିଳି ରାମ ବଳମାଳ
ତୋଷେ ଦେବକୀ ବନ୍ଦାଣ କଲେ ଅର୍ଘ୍ୟଥାଳ ।
ପିତାମାତାଙ୍କୁ ପ୍ରଣାମ କରି ନେବକୀସ୍ତେ
ମହାସୁଖରେ ରହିଲେ ତହିଁ ଦ୍ୱାରକାସ୍ତେ ।
ଏଥୁ ଅନନ୍ତରେ ଗ୍ରୀଷ୍ମଋତୁ ହେଲା ଶେଷ
ବରଷା ଋତୁ ଆସିଣ ହୋଇଲା ପ୍ରବେଶ ।
ଆଷାଢ଼ ପୌର୍ଣ୍ଣମୀ ତିଥି ଶୁକ୍ଳଚନ୍ଦ୍ରବାର
ପୂର୍ବାଷାଢ଼ା ନକ୍ଷତ୍ର ଯେ ଯୋଗ ସେ ବଳର ।
ନବଘନ ମେଘ ଆସି ହୋଇଲା ଉଦୟ
ହେମନ୍ତା ବର୍ଷିଲା ସବୁ ଅନ୍ଧକାର ମୟ ।
ଦୁସ୍ତନ୍ତୁ ମେଘ ଉଠିଣ ବରଷଇ ଜଳ
ଧରଣୀରେ ଭୃଣମଣ୍ଡି ପକ୍ଷୀବର୍ଗ ଡାକ ।
ମେଘ ଘଡ଼ଘଡ଼ ଗରଜନ ଘୋର ରଡ଼
ଉଚ୍ଛୁଳେ ଯମୁନା ଉଠେ ତରଙ୍ଗ ଲହରୀ ।
ଏମନ୍ତ ବରଷାକାଳେ ଗ୍ରହ ଘଡ଼ ମାନେ
ଉଦ୍ଧବେ ଚିନ୍ତିଲେ ବଳରାମ ଭଗବାନେ ।
କହିଲେ ବରଷେ ହେଲା ଗୋପନଗ୍ରେ ଗଲା
ବାରତା ଯେବେ କେଉଁଟି ସେହୁ ତ ନଇଲା ।
ଏତେ ବୋଲି ସୁମରଣା କଲେ ନନ୍ଦସ୍ୱଟ
ତତକ୍ଷଣେ ଉଦ୍ଧବଙ୍କୁ ଲାଗିଲା ଉଚ୍ଚାଟ ।
ଖୁଡ଼ ମହାଖୁଡ଼ଆଦି ଗୋପାଳ ସକଳ
ଚନ୍ଦ୍ରସେଣ ଆଦିକରି କେତେକ ଗୋପାଳ ।
ଯଶୋଦା ନାରୀ ଆବର ରାଧିକା ସୁନ୍ଦରୀ
ସମସ୍ତଙ୍କୁ ଉଦ୍ଧବ ଯେ ମାନ୍ୟବିଧି କରି ।
କହିଲା ଯହିଁ ନମନ୍ତେ ପେଶିଥିଲେ ହରି
ମୁହିଁ ସେହି କଥା ଜାଣି ଅଛୁ ତଥ୍ୟ କରି ।
ଏବେ ମୁହିଁ ମଥୁରାକୁ ଯାଉଛୁ ପେଶଣ
କହିବଇଁ ତୁମ୍ଭ କଥା ରାମ କୃଷ୍ଣେ ଜାଣ ।
ଏହା ଶୁଣି ଗୋପାଳମାନେ ଆଶ୍ଚର୍ଯ୍ୟହୋଇଲେ
ଆଜ୍ଞା ବଳାକେତେ ଥାଅ ବୋଲିଣ କହିଲେ ।
ଉଦ୍ଧବ ହୋଇଲା ମୁହିଁ ଯାଉଛାରେ ସିନା
ରାମକୃଷ୍ଣଙ୍କୁ ଘେନିଣ ଦିବନେ ଆସିବ ।
ନନ୍ଦ ଯଶୋଦା ବୋଇଲେ ଉଦ୍ଧବଙ୍କୁ ରହିଁ
ତୁମ୍ଭର ଆସିବା ବାଟ ଥିବୁଟି ଅନାଇ ।
ଅନେକ ବନସ୍ତୀ ହୋଇ ତାଙ୍କୁ ଘେନ ଆସ
ତନ୍ଦ୍ରମା ବଦନ ଦେଖି ହେବୁ ମହାତୋଷ ।
ଉଦ୍ଧବ ବୋଇଲା ଏଥେ ମିଥ୍ୟା କେବେନାହିଁ
ନିଶ୍ଚୟ ପୁଅଙ୍କୁ ତବ ଆଣିବି କଡ଼ାଇ ।
ଯାହା ମୁହିଁ ଆସି ଏଥେ ତୁମ୍ଭଙ୍କୁ ଦେଖିଲି
କୋଟି ଜନମ ପାତକ ସକଳ ନାଶିଲି ।
ଗୋପନଗ୍ରେ ଯେତେ ତୁମ୍ଭେ ସମାନ୍ୟତ ନୁହଁ
ନିଶ୍ଚୟ ଜାଣିଲି ସର୍ବେ ଶ୍ରୀକୃଷ୍ଣର ଦେହ ।
ବାଳଲୀଳା ସମୟରୁ କୃଷ୍ଣେ କଲ ସେବା
ପୁଣ୍ୟବନ୍ତ ଦେଖି ତୁମ୍ଭେ କ ତୁଳନା ଦେବା ।

ଧନ୍ୟ ଏ କାଳନ୍ଦୀ ନଦୀ ଧନ୍ୟ ବୃନ୍ଦାବନ
ଧନ୍ୟ ଏ ଗୋପ ନଗରୀ ଧନ୍ୟ ସର୍ବଜନ ।
ବ୍ରହ୍ମା ଇନ୍ଦ୍ର ଗଙ୍ଗାଧର ଯାକୁ କରି ଲକ୍ଷ୍ୟେ
ଦେଖିଲେ ଯେ ବିଶ୍ୱରୂପୀ ଦେବଜ୍ୟୋତିର୍ମୟେ ।
ଏତେ ବୋଲି ଗୋପାଳଙ୍କୁ ବହୁ ପ୍ରଶଂସିଲେ
ରାମ କୃଷ୍ଣ ଆଣିବଇଁ ପ୍ରବୋଧି କହିଲେ ।
ଉଦ୍ଧବଙ୍କୁ ନନ୍ଦ ଆଣି ବହୁଧନ ଦେଲେ
ଗୁପତ ବାରତା ତାଙ୍କୁ ଏକାନ୍ତେ କହିଲେ ।
ଯଶୋଦା ବୋଇଲେ ଶୁଣି ଉଦ୍ଧବଙ୍କୁ ପୁଣି
ନ ଆଣିଲେ କୃଷ୍ଣ ହେବ ହତ୍ୟାର କାରଣି ।
ନନ୍ଦ ବୋଇଲେ ବିଳମ୍ବ ହେଲେ ମୁହିଁ ଯିବି
ଦୁହିଙ୍କର ଭୁଜ ଧରି ଓଟାରି ଆଣିବି ।
ଛତ୍ର ଭାବରେ ଭଣିଲେ ରାମ ଭଗବାନ
ଦିନକେ ଆସିବୁ ବୋଲି ଗଲ ଏତେ ଦିନ ।
ଗୋପୀମାନେ ବୋଇଲେ ଯେ ଉଦ୍ଧବଙ୍କୁ ଶୁଣି
ଜଣ ଜଣକେ ସମସ୍ତେ ଅଛୁ ତାଙ୍କ ଦେହି ।
ସେ ଅବା ଆମ୍ଭ ଉପରୁ ଛାଡ଼ିଦେଲେ ସ୍ନେହ
ଦିନେ ଓଳକ ଅନ୍ତରେ ଉଠେ ଆମ୍ଭ ଦେହ ।
ରଖୁଆଳ ବାଳଗୋପ ଆସି ଆଗଭରି
ଜଣ ଜଣକେ ସନ୍ଦେଶ କହିଲେ ଯେତ୍ଥାରି ।
ସମସ୍ତଙ୍କୁ ଉଦ୍ଧବ ଯେ ପ୍ରବୋଧି ଏମନ୍ତ
ଅବଶ୍ୟ ଘେନି ଆସିବି ନ ହୁଅ ଚିନ୍ତିତ ।
ଏହିପରି ଉଛବାରେ ପାହିଲା ରଜନୀ
ଦେବତାଙ୍କ ଆଳୟରେ ଶୁଭେ ଶଙ୍ଖଧ୍ୱନି ।
କାକ କୁମ୍ଭାଟୁଆ ରାବଦେଲେ କୋଳାହଳ
ସୁରାଗରେ ପୂର୍ବଦିଗ ଦିଶିଲା ଉଜ୍ଜ୍ୱଳ ।
ଉଦ୍ଧବ ଏକାକେ ନନ୍ଦଠାରୁ ବିଦା ହୋଇ
ନିତ୍ୟକର୍ମ ସାରି ରଥେ ଆରୋହିଲେ ଯାଇ ।
ରଜନୀ ପାହିଲେ ଆସି ହେବ ଗୁରୁବାର
ଶ୍ରୀହରି ସ୍ମରି ଉଦ୍ଧବ ହୋଇଲେ ବାହାର ।
ରଥ ଚଳାଇଣ ଚହୁଁ ଯାଇ ଅତିବେଗେ
ପାଞ୍ଚଦଣ୍ଡେ ପହଞ୍ଚିଲେ ମଥୁରାର ରାଜ୍ୟେ ।
ଦେଖିଲେ ମଥୁରା ଗଡ଼ ନୂତନ ଘଟଣା
ପାଞ୍ଚତାଳ ଗଡ଼ାରେ ଚଉପାଶେ ଖଣା ।
ଅଳକା ଭୁବନ ପ୍ରାୟ ଦିଶେ ଶୋଭାବନ
ମୂକତ ମନ୍ଦିରେ ଯେତେ ପୁଣ୍ୟବନ୍ତ ଜନ ।

ଯାଦବେ ଯେସନ ତହିଁ କରନ୍ତି ବିହାର
ରାମ କୃଷ୍ଣ ଆହ୍ଲାଦରେ ନାହିଁ ତାଙ୍କୁ ଡର ।
ଦେଖିଣ ଉଦ୍ଧବ ନିଜ ମନରେ ବିସ୍ମୟେ
ଜରାସନ୍ଧ ଭାଙ୍ଗିଥିଲା ଏ ଗଡ଼ କ୍ରୋଧରେ ।
ଗଢ଼ୁଁ ସତେଗୁଣ ଏବେ ହୋଇଲା କେମନ୍ତେ
ଆଶ୍ଚର୍ଯ୍ୟ ପରାପ୍ରେ ଏହା ଲାଗୁଅଛି ମୋତେ ।
ପୁଣି ବିସ୍ମରଇ ଯହିଁ ବିଜେ ବ୍ରହ୍ମରଶି
କ୍ଷଣକରେ କୋଟିଲକ୍ଷ୍ମୀ ମିଳପାରେ ଆସି ।
ଏତେ ବିସ୍ମରିଣ ତହିଁ ଗମେ ଶୀଘ୍ର ହୋଇ
ବାସୁଦେବ ମନ୍ଦିରରେ ପ୍ରବେଶିଲେ ଯାଇ ।
ଦ୍ୱାରରେ ରଥ ରୁହାଇ ଭିତରରେ ପଶି
ଚନ୍ଦ୍ରଶାଳା ପୁରେ ଭେଟିଲେକ ବ୍ରହ୍ମରଶି ।
ଇନ୍ଦ୍ର ଦେଇଛନ୍ତି ଦଶମହସ୍ର ନାୟିକା
ବିହାର କରନ୍ତି ସ୍ୱାମୀ ଘେନିଣ ଯେ ଏକା ।
ନଅବକାଶେ ବିଜୟ ଲକ୍ଷ୍ମୀଦେବୀ ସାଇଁ
ଭୁଟିକାଟି ହୋଇକରି ଉଦ୍ଧବ ରଜଇ ।
ଦୂରରୁ କୁଣ୍ଡ ଶୁଣାଇ ଭିତରକୁ ଗଲେ
ନିଜଗାଳ କରି ପାଦପଦ୍ମରେ ପଡ଼ିଲେ ।
ଉଠ ଉଠ ବୋଲି ଆଜ୍ଞାଦେଲେ ଦେବହରି
ଗୋପ ନଗରର ଶୁଭ କହ ତ ବିସ୍ତରି ।
ଉଦ୍ଧବ ବୋଲଇ ଗୋପ ନଗର ବୃତ୍ତାନ୍ତ
ମନ ଦେଇକରି ତୁମ୍ଭେ ଶୁଣ ଲକ୍ଷ୍ମୀକାନ୍ତ ।
ଜଣ ଜଣକେ ତୁମ୍ଭର କୁଶଳ ପୁଚ୍ଛିଲେ
ନନ୍ଦ ଯଶୋଦା ତୁମ୍ଭଙ୍କୁ ଯିବାକୁ କହିଲେ ।
ଶୁଣିକରି ସନ୍ତୋଷ ଯେ ଲକ୍ଷ୍ମୀଦେବୀ କାନ୍ତ
ହୋଇଲେ ଯିବାକୁ ଅଛି ଆମ୍ଭ ମନୋରଥ ।
କିଛି ଦିନରେ ଅବଶ୍ୟ ଆମେ ଗୋପେ ଯିବୁ
ପ୍ରିୟଜନ ପିତାମାତା ବନ୍ଧୁଙ୍କୁ ଦେଖିବୁଁ ।
ଉଦ୍ଧବ ବୋଇଲେ ତୁମ୍ଭେ ସଂସାରର ନାହା
ମୁଁ କିସ କହିବି ତୁମେ ନ ଜାଣ ବା କାହା ।
ଯାହାର ଶରୀରେ ବିଶ୍ୱ ବ୍ରହ୍ମାଣ୍ଡ ପୂରିଛି
ସଂସାରେ ଉଦାର ତାଙ୍କୁ ନାହିଁ ପୁଣି କିଛି ।
ଗୋପନଗ୍ରେ ଲୋକେ ତୁମ୍ଭନାମ ଜପୁଛନ୍ତି
କ୍ଷଣେ କ୍ଷଣେ ସୁମରିଣ ମୂର୍ଚ୍ଛିତ ହୁଅନ୍ତି ।
ଏସନକ ବିସ୍ମରନ୍ତେ ସାତଦିବ୍ ବେଳ
ମଣୋହିକ ବିଜେ କଲେ କୃଷ୍ଣ କାମପାଳ ।

ଉଦ୍ଧବଙ୍କୁ ସଙ୍ଗେ ଘେନ ମଣୋହିକୁ ଗଲେ
ସବୃଙ୍କୁ ଦେବକୀ ଆଣି ଅନ୍ନ ପରଷିଲେ ।
ଆଚମନ ସାରି କଲେ ତାମ୍ବୁଳ ଭୋଜନ
ଶୁକ ବୋଇଲେ ହେ। ଶୁଣ ପରୀକ୍ଷ ରାଜନ ।
ଅନନ୍ତେ ଯାଦବମାନେ ରହି ନିଜ ପୁରେ
ନିତ୍ୟକର୍ମ ବିଧାନରେ ଲାଗିଲେ ପ୍ରେମ୍ଭାରେ ।
ରାଜ୍ୟ ଅଧିକାର କରି ଉଗ୍ରସେନ ରାଜା
ଉପଦ୍ରବ ବାଧା ନାହିଁ ପାଳନ୍ତି ପରଜା ।
ପାଖଲୋକେ ନିଯୋଗରେ ହୋଇଥାନ୍ତି ମେଣ୍ଟ
ଅନନ୍ତେ ପ୍ରଜା ପାଳନ୍ତି ହୋଇ ସମରସ୍ତ ।
ଜୟ ଜୟ ଜଗନ୍ନାଥ ପ୍ରଭୁ ବିଶ୍ୱମୟ
ଅଲେଖ ଅଚିନ୍ତ୍ୟ ଯୁକ୍ତ ଅଟେ ଯାର କାୟ ।
ନୟନ କମଳ ତୁଲ୍ୟ ସୁଧା ଯାର ବାଣୀ
ସପତ ବ୍ରହ୍ମାଣ୍ଡ ଗର୍ଭେ ଅଛୁ ଯାର ପୁଣି ।
ପକ୍ୱ ବିମ୍ବଫଳ ପ୍ରାପ୍ୟ ସୁରଙ୍ଗ ଅଧର
ଆଜାନୁଲମ୍ବିତ ବାହୁ ଅତି ମନୋହର ।
ସୁବର୍ଣ୍ଣ କ ବକ୍ଷସ୍ଥଳେ ବନମାଳ ଲୋଟି
ହର ଉମ୍ବରକୁ ଜିଣି ଶୋଭା ପାଏ କଟି ।
ହୀରା ମାଳା ବଇଡ଼ୂର୍ଯ୍ୟ ପ୍ରବାଳ ମୁକୁତା
ଯେଉଁ ଶ୍ରୀଅଙ୍ଗରେ ଥାଇ ଦିଶନ୍ତି ଶୋଭିତା ।
ଜାଈ ଯୂଥୀ ପାରିଜାତ ସେବତୀ ବଉଳ
ଦମ୍ଫଣା ସହିତେ ଶୋହେ ତୁଳସୀର ମାଳ ।
ସିଦ୍ଧ ତଟ ବଟବୃକ୍ଷ ନିକଟରେ ବିଜେ
ଅଷ୍ଟରତ୍ନ ସିଂହାସନେ ପ୍ରଭୁ ଦେବରାଜେ ।
ଚତୁର୍ଦ୍ଧା ମୂରତି ଧରି ଭକ୍ତଜନ ହିତେ
କଳିଯୁଗେ ଅବତାର ଆପେ ଜଗନ୍ନାଥେ ।
ଶ୍ରୀମୁଖରେ ବିନତାସୁତ ଅଛୁ ଖଗେଶ୍ୱର
ଅନ୍ନ ବ୍ୟଞ୍ଜନାଦି ଭୋଗ ଅନେକ ପ୍ରକାର ।
ତେତିଶ କୋଟି ଦେବଙ୍କୁ ଘେନିଣ ସଙ୍ଗତେ
ଜନ୍ମିତରୁ ସିଂହାସନେ ବିଜେ ଜଗନ୍ନାଥେ ।
ଏକବାର ଦରଶନେ ସର୍ବପାପ ଖଣ୍ଡି
ନାମ ସୁମରନ୍ତେ ଯମ ନ ପାରଇ ଦଣ୍ଡି ।
ନିର୍ମାଲ୍ୟ ତୁଳସୀ ସେବା କରେ ଯେଉଁ ପ୍ରାଣୀ
ବିଷ୍ଣୁ ଲୋକେ ବସଇ ସେ କର୍ମବନ୍ଧ ଜିଣି ।
ବୃକ୍ଷରାଜ ପକ୍ଷୀରାଜ ଗ୍ରନ୍ଥରାଜ ମୂଳେ
ଦେବରାଜ ସହିତରେ ସେବ ପାଦତଳେ ।

ଜଗନ୍ନାଥ ଶ୍ରୀଚରଣେ ସଦା ମୋ ଭକତି
ଅଚ୍ୟୁତ ଦାସ କହନ୍ତି ଦିଅ ସଦଗତି ।

—*—

## ଜରାସନ୍ଧର ଷୋଡ଼ଶ ଏବଂ ସପ୍ତଦଶ ବାର ଧାଡ଼ି

ଏଥୁ ଅନନ୍ତରେ ପୁଣି ପରୀକ୍ଷ ରାଜନ
କରଯୋଡ଼ି ବୋଲେ ଆହେ ଶୁକ ତପୋଧନ ।
ତବ ମୁଖପଦ୍ମାରୁ ଶୁଣି ଶ୍ରୀହରି ଚରିତ
ଖଣ୍ଡିଲା ସକଳ ପାପ ଶୁଦ୍ଧ ହେଲା ଚିତ୍ତ ।
ଆବର ସଂକ୍ଷେପି ମୋତେ କହ ମୁନିବର
ତହିଁପରେ କିସ କଲେ ରାମ ଦାମୋଦର ।
ରାଜାର ବଚନ ଶୁଣି ବ୍ୟାସଙ୍କ ତନୟ
ବୋଲନ୍ତି କହିବା ତାହା ଶୁଣ ନରରାୟ ।
ଉଦ୍ଧବ ଗୋପରୁ ଆସି ବାର୍ତ୍ତା ଜଣାଇଲେ
ଶୁଣି ରାମକୃଷ୍ଣ ଦୁହେଁ ଆନନ୍ଦ ହୋଇଲେ ।
ଏଥୁ ଅନନ୍ତରେ ତହୁଁ କେତେଦିନ ଗଲା
ବସନ୍ତ ଋତୁ ଆସିଣ ପ୍ରବେଶ ହୋଇଲା ।
କୁମ୍ଭମାସ ଶୁକ୍ଳପକ୍ଷ ତିଥି ଗୁରୁବାର
ରେବତୀ ନାମେ ନକ୍ଷତ୍ର ଅଟେ ସେ ଦିନର ।
ବେଳ ପାଞ୍ଚଘଡ଼ିମାନେ ମଗଧ ନୃପତି
ଆସ୍ଥାନେ ବିଜୟ କଲା ହୋଇ ଶୁଦ୍ଧମତି ।
ସକଳ ରାଜାମାନଙ୍କୁ ଦୂତ ବରଗାଇ
ଶ୍ରୀକରେ ପତ୍ର ଲେଖଇ ଅତି ମୋଦ ହୋଇ ।
ଲେଙ୍କା ଲମ୍ବହତା ଜେନା ଆଉ ପଡ଼ିହାରୀ
ଏମାନଙ୍କ ନିକଟକୁ ଲେଖେ ଦଣ୍ଡଧାରୀ ।
ଆଜ୍ଞାପତ୍ର ଦୂତମାନେ ଘେନିଣ ଚଳିଲେ
ଆଠଦିନେ ସମସ୍ତଙ୍କୁ ନିମନ୍ତ୍ରଣ ଦେଲେ ।
ସକଳ ଭୂପତିମାନେ ବରଣକୁ ପାଇ
ମଗଧଦେଶେ ପ୍ରବେଶିଲେ ସମଦଣ୍ଡ ବାହି ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମର ଜତି
ସମସ୍ତେ ଆସି ପ୍ରବେଶ ସକଳ ନୃପତି ।
ଜରାସନ୍ଧ ରାଜ୍ୟେ ଯାଇ ସର୍ବେ ହେଲେ ରୁଣ୍ଡ
ପାଦଭରେ କମ୍ପ ଅଛୁ ପୃଥ୍ୱୀ ନବଖଣ୍ଡ ।
ହାତୀ ରଥୀ ଅଶ୍ୱ ଗଜ ପଦାତି ବହୁତ
ମରଦଳ ବଡ଼କାଠ ଗୋମୁଖା ସହିତ ।

ଭେରୀ କାହାଳ ଶଙ୍ଖ ଯେ ମର୍ଦ୍ଦଳ ତୁମ୍ବୁରୀ
ଉପାଙ୍ଗ ଅଧାଟି ବାଜେ ହୋଇ ଅତିଘୋର ।
ତାଜନ୍ତ୍ରି ସାରଙ୍ଗୁର ଯେ ବଜଘୋଷ ଗୁଣା
ପଞ୍ଚସ୍ୱର ସପ୍ତସ୍ୱର ଆବର ଯେ ସାଣା ।
ଘଣ୍ଟ ଝାଞ୍ଜ ମହୁରୀ କଂସାଳ କନ୍ୟାଳ
ବଉଁଶୀ ଆଦି କରି ଏ ବାଇଦ ସକଳ ।
ବାଜେ ତହିଁ ଉଚ୍ଚସ୍ୱରେ ହୋଇ ଘନ ଘନ
ଫିରଫିରି ତାଉଁ ତାଉଁ ବାଜେ ଅପ୍ରମାଣ ।
ହସ୍ତୀ ଘଣ୍ଟି ଘଗୁଡ଼ି ଯେ ଅଶ୍ୱଙ୍କର ଘଣ୍ଟ
ରଥଙ୍କର ଘୋର ରବେ ପୂରେ ସମସ୍ତ ।
ଫରିକାର ଧନୁ ଧରି ସେନା ପଏଦାର
ଭୟଙ୍କର ରୂପ କରି ଧାମନ୍ତି ଅସୁର ।
କରରେ କାଣ୍ଡ ଖଣ୍ଡା ଯେ କଟିରେ ଧାଗୁଡ଼ି
କେତ ଚରମ ସିନ୍ଦୂଆ ଅଣ୍ଟାରେ ସେ ଭିଡ଼ି ।
ଆଗଭର ହୋଇ କେହୁ ଧାମେ ଅଶ୍ୱପରେ
ରେରେକାର ଗଦାଗୋଟି ବୁଲାଏ କେ କରେ ।
ରଜାଏ ଆସିବେ ବୋଲି ଜରାସନ୍ଧ ବୀର
ତାହାଙ୍କ ପାଇଁ ଆଗରୁ ତୋଳିଅଛି ଘର ।
ଅଶ୍ୱ ଗଜଶାଳ ପାଇକଙ୍କର ଯେଉଁ ବିଧି
ଛତିଶ ନିଯୋଗମାନ କରାଇଣ ସିଦ୍ଧି ।
ଖୁଣ୍ଟିଆ ଲମ୍ବହତା ଯେ ଲେଙ୍କା ପଡ଼ିହାରୀ
ଅନୁକ୍ରମେ ବସାମାନ ରହିଲେ ଆବୋରି ।
ଗୁଣଭୂଷଣ ମନ୍ତ୍ରୀ ଯେ ଥାଇଣ ଆପଣେ
ସମସ୍ତ ତରବ୍ରମାନ କରେ ଜଣେ ଜଣେ ।
ଯଥାକ୍ରମରେ ସମ୍ଭାର ଯାକୁ ଯେତେ ଲାଗି
ତତକ୍ଷଣେ ଆଣି ସବୁ ଦିଅନ୍ତି ସେ ବେଗି ।
ଏହିରୂପେ ସର୍ବସୈନ୍ୟ ରୁଣ୍ଡ ହେଲେ ଆସି
ଅଲଙ୍ଘିତ ନିୟମକୁ କଲେ ତହିଁ ବସି ।
ସକଳେ ବୋଲନ୍ତି ରାମ କୃଷ୍ଣଙ୍କୁ ମାରିବା
ଧସିଣ ମଥୁରାଗଡ଼ ଉଜାଡ଼ିଣ ଦେବା ।
ଯେବେ କି ଇନ୍ଦ୍ର ଦେବତା ଆସେ ପରଧାଇ
ନିଶ୍ଚୟ ବିନାଶ ତାକୁ କରିବାଟି ଯାଇ ।
ଏଥିରୁ ବଳି ଆମ୍ଭର ନାହିଁ ଆଉ ଲଜ୍ଜା
ହରାଇଲେ ଗୌଡ଼ପିଲ ଦୁଇ ଏଡ଼େ ରଜା ।
ଏତେ ବୋଲିଣ ତୁଳିଲେ ଖଣ୍ଡା ତରବାରି
ଧାନ ସୁନା ତା ଉପରେ କଅଁଳା ବାଳୁରି ।

ବୃଷଭ କଳଧ ଛୁଇଁ ପର୍ବ ସତ୍ୟ କଲେ
ମାରିବୁ ମାରିବୁ ବୋଲି ପାଷା ସେ ବାନ୍ଧିଲେ ।
ଏଡ଼େ ସ୍ଥିତଜ୍ଞା ଦେଖିଣ ଜରା ମହୀପାଳ
କରପତ୍ର ଯୋଡ଼ି ଉଭା ଆସ୍ଥାନର ତଳ ।
ବହୁସ୍ତୁତି କଲ ନରପତିଗଣେ ସ୍ତୁହିଁ
ଏ ତମେ ହରି ମାନ ସର୍ବେ ରଖ ସଙ୍ଗ ହୋଇ ।
ନାନା ଉପାୟ କରିଣ ଯେବେ ଜିଣିପାରି
ତେବେ ଶୋକସାଗରୁ ମୁଁ ହୋଇବି ଉଦ୍ଧାର ।
ତାହାଙ୍କୁ ଜିଣିବା ପାଇଁ ଭରସା ମୋ ନାହିଁ
ଚଉର ବାର ଆସିଲି ମହାଲଜ୍ଜା ପାଇ
ବଢ଼ାଇ ମାୟାରୀ ସେହି ଗରୁଡ଼େ ଅଟନ୍ତି
ହାତେ ଧରୁ ଧରୁ ଟର୍କେ ପଳାଇ ଯାଆନ୍ତି ।
କୌଣସି ପ୍ରକାରେ ମୋର ତାଙ୍କୁ ନାହିଁ ବୁଦ୍ଧି
ଏହା କହି କରପତ୍ର ଯୋଡ଼ି ନୃପନିଧି ।
ରଜାମାନେ କହିଲେ ଏ ଆମ୍ଭ ଦୃଢ଼ବ୍ରତ
ତୁମ୍ଭ କାର୍ଯ୍ୟ କରୁ କରୁ ହେଉ ପଛେ ହତ ।
ଆମ୍ଭେ ଅଟୁ ବୀରଗଣ ଲକ୍ଷେ ନୃପବର
ତଶବିଂଶ କ୍ଷୌଣୀବଳ ଏକ ଏକଙ୍କର ।
ତୁମର ନିମନ୍ତେ ଆମେ ଯୁଝିବୁ ଧସାଇ
ମଙ୍ଗଳ ମହୁରି ଯୋଡ଼ା ଶଙ୍ଖକୁ ବଜାଇ ।
ଦିଗବିଜେ ଅନୁକୂଳ କଲେ ଦଣ୍ଡଧାରୀ
ଆପଣା ସଇନ ସଜ ହେଲେ ଯେ ଯାହାରି ।
କୁମ୍ଭ ଶୁକଳ ଅଷ୍ଟମୀ ତିଥି ବୁଧବାର
ମୃଗଶିରା ନକ୍ଷତ୍ର ଯେ ଅଟେ ସେ ଦିନର ।
ବାଳବ ନାମେ କରଣ ଇନ୍ଦ୍ର ନାମେ ଯୋଗ
କୁମ୍ଭ ସଂକ୍ରାନ୍ତିରୁ ଚଉବିଂଶ ଦିନ ଭୋଗ ।
ବେଳ ବାଇଶି ଦଣ୍ଡରେ ଲଗ୍ନମାନ ଘେନ
ଅନୁକୂଳ କଲେ ନୃପେ ଚଳାଇ ସଇନ ।
ଥୋକେ ଦୂର ଯାଇ ସରସ୍ୱତୀ ନଦୀତଟରେ
ଅରବନ୍ଦ ପଦା ମଧ୍ୟେ ରହିଲେ ସନ୍ଧ୍ୟାରେ ।
ରାତ୍ର ପ୍ରହରେକ ଥାଉଁ ଚଳାଇଲେ ତହୁଁ
ପବନ ବେଗରେ ମାଡ଼ିଯାନ୍ତି ହୁହୁଁ ହୁହୁଁ ।
ସୁବର୍ଣ୍ଣପ୍ରଭା ନାମରେ ପର୍ବତେ ବିସ୍ତାର
ସେଠାରୁ ଗୋମନ୍ତନଦୀ କଟେହ ଉନଧାର ।
ସେ ଦିନ ସେ ନଦୀକୂଳେ ସମସ୍ତେ ରହି
ଉଷାଲଗ୍ନେ ଉଠି ତହୁଁ ଗଲେ ପଥ ବାହି ।

ଚୌରାଶୀ ଯୋଜନ ମାଡ଼ି ଚଳେ ମହାଥାଟ
ଖାଲ ଡିଙ୍ଗର ଭାଙ୍ଗିଣ ହେଲା ସମବାଟ ।
ଅନେକ ହାଟ ବାଟ ଯେ ହୋଇଲା ଉଜାଡ଼
ଛୁଇଛନ୍ଦ ହୋଇଗଲା ଭାଙ୍ଗିକେତେ ଗଡ଼ ।
ବନକୁ ବନ ସେ ଥାଟ ଗହନେ ଚଳନ୍ତେ
କଟକୁଁ ଦଶଯୋଜନେ ଯାଇଁଣ ମିଳିଲେ ।
ଯମୁନା ନଦୀକୂଳରେ ବସ୍ତ୍ର ଘର ଟାଣି
ଚତୁରଙ୍ଗ ବଳ ତହିଁ ରହିଲେକ ପୁଣି ।
ରଣସଖା ସଜମାନ ଘେନଛନ୍ତି କରେ
ଗଡ଼ ବେଢ଼ିବା ବୋଲିଣ କେତୁ ବା ବଦ୍ୟରେ
ରନ୍ଧନ ଭୋଜନ କରି ତାମ୍ବୁଳାଦି ସାରି
କଟୁଆଳଙ୍କୁ ଜଗାଇ ନିଦ୍ରା ନେଲେ ଘାରି ।
ଏଥୁଅନନ୍ତରେ ଶୁଣ ଶୁକମୁନି ଭଣି
ଶୁଣ ପରୀକ୍ଷିତ ରାଜା ଅତି ପୁଣ୍ୟବାଣୀ ।
ଏହି ବାରତା ଘେନିଣ ଚଳିଲେ ଡଗର
ମଥୁରା କଟକରେ ସେ ମିଳି ଧାଡିକାର ।
ରାଜା ଉଗ୍ରସେନ ଆଗେ ପ୍ରବେଶିଲେ ଯାଇ
ଛପନକୋଟି ଯାଦବେ ରହିଛନ୍ତି ଯହିଁ ।
ରାମକୃଷ୍ଣ ବସୁଦେବ ସାତ୍ୟକି ଅକ୍ରୂର
ଅନାଧୃଷ୍ଟ ଉଦ୍ଧବ ସେ ଶଙ୍କାଜିତ ବୀର ।
କଞ୍ଚନ ଶ୍ରୀକୃତବର୍ମା ଆଉ ଶତଧନୁ
ବୃହଦ୍ଧ୍ୱଜ ବୃଷଶ୍ରବା ପ୍ରଶ୍ନାଜିତ ଭାନୁ ।
ରବଜିତ କେତନ ଯେ ଆଉ କଳନାଗ
କୁନ୍ଦ କାମୋଦ ବରାଜ ବକଣ୍ଠ ଉତ୍ତଙ୍ଗ ।
ବସୁଦେବ ଷଡ଼ପୁତ୍ର ସୁଭଥ ସହିତେ
କେତନ କାନ୍ତମାଳା ଯେ ମନ୍ତ୍ରୀ ସମେତେ ।
ଏପରି ସର୍ବ ଯାଦବେ ଛନ୍ତି ରୁଣ୍ଡ ହୋଇ
ଦେଶାନ୍ତର ବାରତାକୁ କହେ ଶବଦାଇ ।
ଶୁକଦେବ ସାବଧାନରେ ଶୁଣ ନୃପମଣି
ଜରାସନ୍ଧ ରାଜା ପୁଣି ସଇନ୍ୟଙ୍କୁ ଘେନି ।
ସନ୍ଧ୍ୟା ସମୟରେ ଆସି କଟକେ ମିଳିଲେ
ସମ୍ଭବେ ଅଛନ୍ତି ବେଢ଼ାଇ ନ ଗିରିତଳେ ।
ଅଗୋଚର ସଇନ ଯେ ନାହିଁ ଅନ୍ତ କୂଳ
ଯେସନେ ମାଡ଼ି ଆସଇ ସମୁଦ୍ରର ଜଳ ।
ସବ ପାହିଲେ ବେଳେ ସେ ମଥୁରାକୁ ଧାଡ଼ି
ଲକ୍ଷେପୁର କରି ଗଡ଼ି ବସିଲେକ ମାଡ଼ି ।

କେଉଁ ଉପାୟ କରିବା ଏବେ ଦଣ୍ଡଧାରୀ
ବେଳ ଥାଉଁ ଥାଉଁ ଆଗୁ ଯିବା ଅପସରି ।
ବୃତିଉଣା ଲକ୍ଷ ରାଜା ପ୍ରତିଜ୍ଞା କରନ୍ତି
ରାମକୃଷ୍ଣେ ବିନାଶିବୁ ନିଶ୍ଚୟ ଏ ଥାନ୍ତି ।
ତାଙ୍କ ସମ୍ମୁଖରେ ରହି କେ କରିବ ସମର
ରଥୀ ମହାରଥୀ ଛନ୍ତି ଅପାରୁ ଅପାର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳକୁ ପାରନ୍ତି ସେ ଜିଣି
ଶୁଣି ଶଙ୍କାଏ ଉଗ୍ରସେନ ନୃପମଣି ।
ଅନେକ ଶୋକ କଲା ସେ ରାମକୃଷ୍ଣ ଆଗେ
ହୋଇଲା ପ୍ରମାଦ ଆସି ପଡ଼ିଲାକ ବେଗେ ।
ବୃଦ୍ଧିଉଣା ଲକ୍ଷେ ରାଜା ବନ୍ଧନ ଯା ଘରେ
ତାର ବୈରୀ ହୋଇ ଯାଇ ରହିବା କାହିଁରେ ।
କହୁଁ କହୁଁ ଆସି ସେନ୍ୟ ମିଳିଲେ ନିକଟେ
କି ଉପାୟ କରି ଆମେ ଯିବେ କେଉଁବାଟେ ।
କୁଟୁମ୍ବ ଭାଇ ଭାରିଯା ପୁତ୍ର ଧନଧାନ୍ୟ
ଶରୀରରେ ପ୍ରାଣଥିଲେ ଛାଡ଼ିବା କେସନ ।
ମଥୁରା ଆମର ପିତୃ ପିତାମହ ବୃତ୍ତି
ଏତେକାଳେ ଧାତା କଲା ଏସନକ ରୀତି ।
କର୍ମବିପାକ କାଳକୁ ଲକ୍ଷ୍ମୀ ଛାଡ଼ିଯାଇ
ନିଶ୍ଚୟ ଜାଣିଲୁ ନାଶ ଯିବା ଏହିଠାଇଁ ।
ଯାଦବେ ବୋଇଲେ ଆମେ କଲୁ କେଉଁ ଦୋଷ
ଅନମିତ୍ରେ ଜରା କପାଁ କରିଅଛୁ ରୋଷ ।
ସେ ଆମ୍ଭର ବନ୍ଧୁବତ ଅଟଇ ଯୁକତେ
ନ ଜାଣିଣ ଏତେ କୋପ କରେ ଅନମିତ୍ରେ ।
ଥୋକାଏ ବୋଲନ୍ତି ରାମ କୃଷ୍ଣ ବଡ଼ ମନ୍ଦ
ଏହାଙ୍କ ଯୋଗୁ ଆମ୍ଭରେ କୋପେ ଜରାସନ୍ଧ ।
ଏ ଯେବେ କଂସକୁ କରି ନ ଥାନ୍ତେ ବିନାଶ
ମଥୁରା ଲୋକେ କପାଇଁ ପାନ୍ତେ ଏତେ ତ୍ରାସ ।
କଂସକୁ ଏ ଜରାସନ୍ଧ ହାରିବାରୁ ରଣେ
ଡରେ ଦୁହିତାକୁ ଦେଲା ପଶିଣ ଶରଣେ ।
ସେ ମହାବଳିଷ୍ଠ କଂସେ [illegible] ତହଁପାଣି
ତେଣୁ ଉପଦ୍ରବ ଜରା କରୁଅଛି ଜାଣି ।
ଥୋକାଏ ବୋଲନ୍ତି ଆଉ ଉପାୟ ତ ନାହିଁ
ବଡ଼ଲୋକ ନାଶଯିବା ଏକା ଜଣ ପାଇଁ ।
ସକଳ ଯାଦବେ ବସି ବିଚାର ସୁମନେ
ଏ ରାମକୃଷ୍ଣଙ୍କୁ ଦେବା ଜରା ସନ୍ନିଧାନେ ।

ଆଗତୁଁ ତ ଜରାସନ୍ଧ ନିୟମ କରନ୍ତି
ରାମ ହରି ପାଇଲେ ସେ ନ କରିବ କିଛି ।
ଯେ କାଏ ବୋଲନ୍ତି କିଛି ନ ଜାଣ ବ୍ୟବସ୍ଥା
ରାମ କୃଷ୍ଣ ଆସ୍ତଉ ନ ଛୁଡନ୍ତି ସର୍ବଥା ।
ଚଉଦ ବ୍ରହ୍ମାଣ୍ଡେ ପ୍ରଭୁ ଯେଉଁ ଦେବରାୟେ
ତା ପାଶେ ଥିଲେ ଆମ୍ଭର ନାହିଁ କିଛି ଭୟେ
ଭାରାଭର ଅର୍ଥେ ଜାତ ଯେଉଁ ଭଗବାନ
କପଟରେ ଜଳନ୍ଧର ମାୟାର ସେ ସ୍ଥାନ ।
ଅବହେଳା ସମରେ ଯେ କଂସେ କଲେ ନାଶ
ତାଙ୍କ ମନ ହେଲେ ଜରା କରିପାରେ କିସ ।
ଥୋକେ ଯାଦବେ ବୋଇଲେ ଗତପର ହୋଇ
ଶୀଘ୍ର କୃଷ୍ଣମ୍ଭଙ୍କୁ ଘେନ ଯିବାକ ପଳାଇ ।
ଥୋକେ ଯାଦବ ବୋଲନ୍ତି ନଗ୍ରେ ରହିଥିବା
ରାମ କୃଷ୍ଣଙ୍କ ପଶ୍ଚାତ ସମର କରିବା ।
ଅନେକ ସମର ହେଲା ଦେଖି ଏହିମତେ
ବେଳକୁବେଳ ଜରା ସୈନ୍ୟ ମାରନ୍ତି ଅଚ୍ୟୁତେ ।
ରାଜାମାନଙ୍କର ଯେତେ ଚତୁରଙ୍ଗ ବଳ
ରଥୀ ମହାରଥୀ ନାଶ ଗଲେଣି ସକଳ ।
ଏତେମତେ ଜରାସନ୍ଧ ମନେ ଶଙ୍କା ନାହିଁ
ପୁଣି ନର୍ଲଜ୍ଜ ପଣରେ ଆସିଅଛି ବାହି ।
ଏସବୁ ମାରଣ ଆମ୍ଭେ ଛୁଡାଇବା କାହିଁ
କେହି ଜଣେ ରଣମଧ୍ୟେ ନ ଯିବେଟି ବହି ।
ଏସନକ ଉଚ୍ଚବାଚ ହୁଅନ୍ତି ସର୍ବ ଘରେ
ବୃହଦ୍ଧ୍ୱଜ କହେ ତହୁଁ ବଚନ ସଧୀରେ ।
ତୁମ୍ଭେମାନେ ସମସ୍ତେହେଁ ଶୁଣ ମୋର ବୋଲ
ପଣ୍ଡିତ ହସ୍ତରେ ଏହା ନୁହଇଟି ଭଲ ।
ରାମକୃଷ୍ଣଙ୍କୁ ଯେ ପୁରୁ ଦୂର କରିଦେବା
ଯୁଦ୍ଧ ନ କରି ଜରାକୁ କରିବାଟି ସେବା ।
ଗଳାରେ କୁଠାର ବାନ୍ଧେ ତିରଣକୁ ଘେନ
ଦାଠରେ ପାଗ୍ରେଟି ଯାଇ କରିବା ବନ୍ଦନା ।
ଥୋକେ ଯାଦବେ ବୋଲନ୍ତି ଏତ ସୁବିସ୍ତର
ବିଳମ୍ବ ନକରି ଏହା କର ଧାଡିକାର ।
ଉଗ୍ରସେନ ବୋଲୁଅଛି ଦେହେ ପ୍ରାଣ ଥାନ୍ତେ
ଏସନ ଦୁର୍ବୁଦ୍ଧି କଥା କରିବା କେମନ୍ତେ ।
ରାମକୃଷ୍ଣ ହେତୁ ଯିନା ଆମ୍ଭର ବହୁତ
ପଞ୍ଚଭୂତ ଆମ୍ଭ ଜାଣ ଅଟନ୍ତି ଶ୍ରୀପତ ।

ତାଙ୍କୁ ଉପେକ୍ଷି କେମନ୍ତେ ଧରିବା ଜୀବନ
ଅନ୍ଧର ଲଉଡ଼ି ସେହି କାହ୍ନୁ ସଙ୍କର୍ଷଣ ।
ଏ ମଥୁରାପୁର ପଛେ ଶ୍ମଶାନ ହୋଇବ
ଏଥୁଁ ରାମକୃଷ୍ଣ ଗଲେ ଜୀବନ ନ ଥିବ ।
ଶତେବାର ପଛେ ଜରାସନ୍ଧ ଧାଡ଼ିଦେଉ
ମଥୁରା ସମ୍ପଦ ପଛେ ସବୁ ବନ୍ଦିନେଉ ।
ଧନଧାନ୍ୟ ରତ୍ନ ଆଦି ସମସ୍ତେହେଁ ଗଲେ
ରାମକୃଷ୍ଣଙ୍କୁ ମୁ ଛୁଟି ନ ପାରିବି ଭଲେ ।
ଶୁଣ ପରୀକ୍ଷ ରାଜନ ଭଣି ଶୁକଯତି
ଏପରି ସର୍ବ ଯାଦବେ ବ୍ୟାକୁଳ ହୁଅନ୍ତି ।
ଯାଦବେ ଆକୁଳ ହେବା ଜାଣି ଦେବରାୟେ
ବୋଲନ୍ତି ନ କର ତୁମ୍ଭେ ମନେ କିଛି ଭୟେ ।
ଆମ୍ଭେ ନିବାରିବା ଯିନା ସବୁ ଉପଦର୍ପ
ପୃଥ୍ୱୀଭାର ନିବାରିବା ପାଇଁକ ଏ ରୂପ ।
ଅସୁର ନିବାରି ମହୀ କରିବା ଉଶ୍ୱାସ
ତେଣୁ ମର୍ତ୍ତ୍ୟରେ ଜନ୍ମିଣ ବିନାଶିଲୁ କଂସ ।
ଯାଦବେ ବୋଇଲେ ଆମ୍ଭେ ଜାଣୁ ସବୁ ଏହା
ତୁମ୍ଭେ ତ ଦେବାଧିଦେବ ଲକ୍ଷ୍ମୀଦେବୀ ନାହା ।
ତୁମ୍ଭ ଯୋଗୁଁ ଯିନା ଚର ଅଚର ମେଦିନୀ
ଆରତଭଞ୍ଜନ ନାଥ ଦେବ ଚିନ୍ତାମଣି ।
ତୁମ୍ଭେ ସର୍ବଜ୍ଞ ପୁରୁଷ ଶୁଦ୍ଧଶୁଦ୍ଧ କର୍ତ୍ତା
ତୁମ୍ଭଙ୍କୁ ଅଗୋଚର ତ ନାହିଁ କେଉଁ କଥା ।
ବୃହଦ୍ଧ୍ୱଜ ବୋଇଲା ଯେ ରାମକୃଷ୍ଣ ରହି
ଅନେକ ଦୁଃଖ ପାଇଲୁ ପଳାଇ ପଳାଇ ।
ଏବେ ଆସି ପଡ଼ିଅଛୁ ପୁଣି ସେ ବିପତ୍ତି
କେଣିକ ଯିବୁ ହେଲାଣି ଆସି ଅଧରାତ୍ରି ।
ପ୍ରଭାତ ହୋଇଲେ ଗଡ଼ ବସିବ ସେ ମାଡ଼ି
ଏହିକ୍ଷଣି ଉଠି ସର୍ବେ ପଳାଇବା ଛାଡ଼ି ।
ଲକ୍ଷେ ରାଜା ଉପରେ ସେ ଅଟେ ଶିରୋମଣି
ଶାସ୍ତ୍ର ଦ୍ରୋଣ ଆଦି ରଥି ସଙ୍ଗେ ଅଛି ଆଣି ।
କେ ତାଙ୍କ ଆଗରେ ରହି କରିବ ସମର
ମନ କଲେ କ୍ଷଣକରେ ଜିଣିବେ ତ୍ରିପୁର ।
ଚମ୍ପାଣୋଇ ସସ୍ତ୍ର ରାଜା ଭୂର୍ମ୍ପା ଭୂମିପାଳ
ଜଣେ ଜଣେ ପାରନ୍ତି ସେ ଜିଣି ଦିଗପାଳ ।
ଆଦର ସେ ନୃପଙ୍କର ଅଙ୍ଗବଳ ଯେତେ
ଏକ ଏକ କରି ତାହା କହିବଇଁ କେତେ ।

ଏକମୁଖ ହୋଇ ସର୍ବେ ଯୁଝିବାର ପାଇଁ
ତିନିବାର ସତ୍ୟକରି ଆସିଛନ୍ତି ବନ୍ଧୁ ।
ସୈନ୍ୟ ଘେନି ଆମ୍ଭେ ଯୁଦ୍ଧ କଲେ ତାଙ୍କସଙ୍ଗେ
ଜିଣି ନପାରିଣ ନାଶ ଯିବା ସମସ୍ତାଙ୍କ ।
ମୁଁ ତୁମ୍ଭର କୁଳବୃଦ୍ଧ ମୋର ବୋଲ କର
ଜରାର ସମ୍ମୁକୁ ମୋତେ ପେଷ ଧାଡ଼ିକାର ।
ମୁଁ ଯାଇ ସକଳ କଥା କରିପାରେ ଭଲ
ପୂର୍ବପ୍ରୀତି ରକ୍ଷା ଯାଉ ମଥୁରାକୁ ସଳ ।
ସବୁ ଯାଦବେ ବୋଇଲେ ଏହ୍ନ କଥା କର
ରାମକୃଷ୍ଣ ବୋଇଲେକ ସମ୍ମତ ଆମ୍ଭର ।
ତୀର୍ଥଯାତ୍ରା ବିବାଦରେ ବୃଦ୍ଧଲୋକ ଲୋଡ଼ି
ବୃଦ୍ଧଲୋକ ବୋଲେ ସବୁ ମାନ ଯାଏ ଫେଡ଼ି
ତୁମ ପାଶୁ ଆମେ ଯାଉଁ ବାହାର ଯେ ହୋଇ
ଜରାସନ୍ଧ ଆଗେ କହ ଏହ୍ନ କଥା ଯାଇ ।
ଏହା ବୋଲୁ ହେଲ ରାତ୍ର ନବଘଣ୍ଟି ଆସି
ମଥୁରାଗଡ଼ୁ ବାହାର ରାମ ହୃଷୀକେଶୀ ।
ହସ୍ତେ ଅସ୍ତ୍ର ଶସ୍ତ୍ର ନାହିଁ ପାଦରେ ଗମନ୍ତି
ସ୍ଥଳଯାନ୍ତେ ଶୋଭିବନ ଛଟଶ ବସୁମତୀ ।
ବୃହଦ୍ଧ୍ୱଜ ଯାଦବ ଯେ ରଥକ ଆରୋହି
ଜରାସନ୍ଧ ଆଗେ ଯାଏ ସମାଧାନ ପାଇଁ ।
ହରି ବଳରାମ ଚଳିଗଲେ ସେହ୍ନ ମାର୍ଗେ
ଦେଖିଣ ରଥ ଚଢ଼ିଣ ଜରା ଆସେ ବ୍ୟଗ୍ରେ ।
ରାତ୍ର ଘଡ଼ିଏକ ଥାଉଁ ବେଢ଼ିବାର ପାଇଁ
ସମୁଦ୍ର ଲହରି ପ୍ରାୟେ ଅଛନ୍ତି ସେ ଧାଇଁ ।
ଯେଉଁ ମାର୍ଗେ ରାମକୃଷ୍ଣ ଯାଆନ୍ତି ପଳାଇ
ଯେବେ ଜରା ସେହ୍ନପଥେ ଆସେ ସୈନ୍ୟବାହି
ରାତ୍ର ପାହାନ୍ତା ହୋଇଛି ଅନ୍ଧାର ରଜନ
ଅଯୋଗରେ ଭେଟ ପଡ଼ି ଗଲେ ଭାଇ ବେନି ।
ଆଗୁଅଣି ଥାଟେ ଯାଇ ହେଲେ ଭେଟାଭେଟି
ଅକୂଳ ସାଗରେ ଯେହ୍ନେ କ୍ଷୁଦ୍ର ନଦୀ ପୁଟି ।
ଥାଟର ଭିତରେ ପଶିଗଲେ ଭାଇ ବେନି
ଚିହ୍ନି ନପାରିଲେ ସୈନ୍ୟ ଥାଆନ୍ତେ ରଜନୀ ।
ପର ଥାଟେ ପଶିକରି ଯାନ୍ତେ ଦେବରାୟେ
ହସ୍ତେ ଶସ୍ତ୍ର ନାହିଁ ପୁଣି ଗମନ୍ତି ନିର୍ଭୟେ ।
କେତେହେଁକ ବେଳେ ଆସି ପାହିଲା ରଜନୀ ।
ଅନ୍ଧକାର ଗଲା ଉଦେ ହୋନ୍ତେ ଦିନମଣି
ମୁହଁକୁ ମୁହଁ ଦିଶନ୍ତେ ଚିହ୍ନି ତଥ୍ୟ କରି
ନୁହନ୍ତି ଅବା ସେ ବଳଦେବ ଚକ୍ରଧାରୀ ।
କେହ୍ନ ବୋଲଇ ଅପୂର୍ବ ଅଟଇ ଏ କଥା
କେହ୍ନ ରାଜା ବୋଲନ୍ତି ଫ୍ୟା ନୁହଇ ସର୍ବଥା ।
ଜାଣିତ ନପାରୁ ଏହା ବିଧାତାର କୂଟ
ଛେଳ କଣ୍ଟୂରି ଆସିଣ ହେଲ ଏବେ ଭେଟ ।
ଜରାସନ୍ଧ ରାଜାରତ କାର୍ଯ୍ୟ ହେଲା ସିଦ୍ଧି
କେ ବୋଲଇ ଧରି ବେଢ଼ି କରି ହାଦେ ବୁଦ୍ଧି
ଏହା କହୁଣ ଥୋକାଏ ହସ୍ତକୁ ବଢ଼ାନ୍ତି ।
ଭରସି ନ ପାରି ପୁଣ ଅପସରି ଯାନ୍ତି ।
ଥାଟ ଭିତରେ ପଶିଣ ଯାନ୍ତି ଦେବରାୟେ
ସର୍ବେ ଦେଖନ୍ତି ଦେଖଣାହାରିଙ୍କ ପରାୟେ ।
ସମସ୍ତଙ୍କ ମନ ହରି ଯାଉଛନ୍ତି ହରି
ହସ୍ତକୁ ବଢ଼ାଇ କେହ୍ନ ନପାରନ୍ତି ଧରି ।
ଗଜଯୂଥ ମଧ୍ୟେ ଯେହ୍ନେ ବିହମ କେଶରୀ
ସେପରି ଗମନ୍ତି ସୈନ୍ୟ ମଧ୍ୟେ ରାମହରି
ପଦ୍ମଦଳ ମଧ୍ୟେ ଯେହ୍ନେ ରାଜହଂସ ଯାଏ
ଅଜଯୂଥ ମଧ୍ୟେ କିବା ବ୍ୟାଘ୍ରର ପରାୟେ
ସେହ୍ନପରି ଜରାସୈନ୍ୟ ମଧ୍ୟେ ଯାନ୍ତି ପଶି
ନିଃଶଙ୍କେ ଗମନ୍ତି ବଳରାମ ଦ୍ୱାଶ୍ୱବାସୀ ।
ଶୁଣ ପରୀକ୍ଷ ରାଜନ ଭଣି ଶୁକଋଷି
ଇତି ଶିଶୁ ହରିବଂଶ ପୁରାଣର କାର୍ତ୍ତି ।

—※—

## ଜରାସନ୍ଧ କର୍ତ୍ତୃକ ଗୋମନ୍ତ ପର୍ବତ ଦହନ

ଏଥୁ ଅନନ୍ତରେ କଥା ଶୁଣ ମହାରାଜ
ରଥରେ ଆରୋହି ତେଣେ ଗଲା ବୃହଦ୍ଧ୍ୱଜ ।
ଜରାସନ୍ଧ ନୃପତିର ସମୀପରେ ମିଳି
ନାନା ଉପହାର ଦେଇ କଲା କୃତାଞ୍ଜଳି ।
ରତ୍ନବସ୍ତ୍ର ଅଳଙ୍କାର ପଦତଳେ ଥୋଇ
ବିନଇ ହୋଇଲା ନାନା ସ୍ତୁତିବାକ୍ୟ କହି
ଜରା ଆଜ୍ଞାଦେଲେ ମୋତେ ରାମକୃଷ୍ଣ ଦୁଇ
ସମସ୍ତ ଯାଦବ ତୁମ୍ଭେ ନିଶ୍ଚିନ୍ତରେ ଥାଅ ।
ସେ ଦୁଇ ଭାଇଙ୍କ ଯୋଗୁଁ ପାଉଅଛୁ ଲାଜ
ତାଙ୍କୁ ନ ମାରିଲେ ଫେରିଯିବୁ ନାହିଁ ଆଜ ।

ବୃହଦ୍ଧ୍ୱଜ ବୋଲେ ନଗ୍ରୁ ଦେଲୁ ଦୂରକରି
ଏକ୍ଷଣି ଥାଟେ ପଶିଲେ ପଡ଼ିଥିଲ ଦ୍ୱାର ।
ଅକଳନ୍ତ ସୈନ୍ୟ ସଙ୍ଗେ ଆସୁଛନ୍ତି ବାହି
କେବଣେ ସେ ଲୁଚିଲେ ତାଙ୍କୁ ଜାଣନ୍ତାକେ ନାହିଁ ।
ଆମ୍ଭେ ତ ତୁମ୍ଭ ରାଜାର ନୋହୁ ନା ବଇରି
ସମସ୍ତେ ଜୀବନ ଦେଇ ରଖ ଚୋର କରି ।
ରାଜାଧିରାଜା ତୁମ୍ଭେ ତ କକ୍ଷା ଜଗଜ୍ଜେଠୀ
ଅଙ୍କୁଳ ଦୋଷରେ ଜାନୁଯାକର୍ହି ନ କାଟି ।
ଏହି ସମସ୍ତେ କହିଲା ଆସିଣ ଉଗର
ହେ ଦେବ ସାବଧାନେ ହେ ଶୁଣ ନୃପବର ।
ଯେ ନିମନ୍ତେ ତୁମ୍ଭେ ସମଦଣ୍ଡ ଅଛ ବାହି
ସେ ଚୋର ଥାଟ ଭିତରେ ପଶିଛି ଗୋସାଇଁ
ହାତେ ଶସ୍ତ୍ର ନାହିଁ ଦୁହେଁ ଯାଉଛନ୍ତି ଏକା
ଜରା ଶୁଣି ଆଜ୍ଞା ଦେଲା ବେଗେ ବାନ୍ଧ ପକା ।
ବୃହଦ୍ଧ୍ୱଜକୁ ଅନେକ ପଉରୁଷ କଲା
ତୁମ୍ଭେ ଯାହା କହୁଥିଲ ପ୍ରତ୍ୟକ୍ଷେ ଘଟିଲା ।
ଯାଦବ ସମସ୍ତେ ତୁମ୍ଭେ ଶତ୍ରୁ ମୋର ନୁହ
ରାମକୃଷ୍ଣ ହେତୁ ସିନା ତୁମଠାରେ କୋହ ।
ଦଇବେ ସନ୍ଧାନ ଯେହ୍ନ ଅଇଲୁ ମୋ ପାଶ
ତାହାଙ୍କୁ ପାଇଲେ ତୁମଠାରୁ ଯିବ ରୋଷ ।
ଏମନ୍ତ ବଖାଣୁ କରୁ କରୁ ମହାରଥୀ
ଧାଉଡ଼ିଆ ଉଗରି ସେ କହିଲା ବାରତା ।
ହେ ଦେବ ଦ୍ୱିଜଇ ଆସି ପଶିଛନ୍ତି ଥାଟେ
ରାମୁକୁ ଧସାଇ ଆସୁଛନ୍ତି ଏହି ବାଟେ ।
ସାବଧାନେ କରେ ଅସ୍ତ୍ର ଧରିବା ଗୋସାଇଁ
ଜରାସନ୍ଧ ବୋଲେ କହୁଛନ୍ତି ଦେଖା ନେଇ ।
ଶୁଣିଣ ଉଗରି ବାଟ କଢ଼ାଇଣ ନେଲେ
ଯେଝା ଶସ୍ତ୍ର ଧରି ବୋଲି ସଇନଙ୍କୁ ବୋଲେ ।
ଜରା ଆଜ୍ଞାରେ ଧାମନ୍ତି ସକଳ ସଇନ
ତର୍ଜ୍ଜନ୍ତି ଗର୍ଜ୍ଜନ୍ତି ଘୋରେ କରେ ଶସ୍ତ୍ର ଘେନ ।
ଯେଉଁ ମାର୍ଗେ ଆସୁଥିଲେ ହରି କାମପାଳ
ମାଡ଼ି ପଡ଼ିଲେ ସଇନ ହୋଇ କୋପାନଳ ।
ମତ୍ତହସ୍ତୀ ଧୂଆଇଁଲେ କରେ କୋନ୍ତ ଧରି
ଅସିପତ୍ର ବୁଲାବନ୍ତି ହୋଇ ଅସୁଆରି ।
ରଥନ୍ତ ଆରୋହି ରଥୀ କ୍ଷେପନ୍ତି ଚଢ଼ବଢ଼
କୋଦଣ୍ଡେ କାଣ୍ଡ ପୁରାଇ ପଡ଼ନ୍ତି କେ ମାଢ଼ି ।

ମାରିବା ଧରିବା ବୋଲି ମନେ ମନେ ଭାଳ
ସେ କଥା ଜାଣିଲେ ବଳରାମ ବନମାଳୀ ।
ବଳରାମଙ୍କୁ ଗୁହାରି ଭଣି ପୀତବାସ
ହେ ଦେବ ପିଠି ଦେଇଣ ଯିବା ବେଗେ ଆସ
ରାମ ବୋଇଲେ ସଂଗ୍ରାମ କରିବା ହେ ରହି
ହରି ବୋଇଲେ ଆମର ହସ୍ତେ ଶସ୍ତ୍ର ନାହିଁ ।
ନ ନା ଉପାୟ କରିଣ ଏଥିଠାରୁ ଯିବା
ସମସ୍ତେ ଜରାସନ୍ଧକୁ ବିନାଶ କରିବା ।
ତେବେ ସେ ପ୍ରୁଡ଼ବ ସିନା ଯାଦବଙ୍କ ଭୟେ
ଏତେ ବୋଲିଣ ଭୁଲାଇ ଦେଇ ଦେବରାୟେ ।
ବିଶ୍ୱକୂଠ ମାୟାଧର ଯେଉଁ ଚକ୍ରପାଣି
ମହାମାୟା କଲେ ଜଳନ୍ତର ମାୟା ଜାଣି ।
କାହୁଁ କାହୁଁ ଗୁଲାଗଲେ ଭୁଲାଇଣ ବେଗେ
ଥୋକେ ବୋଲନ୍ତି ଏକ୍ଷଣି ଥିଲେ ଆମ ଆଗେ ।
ଗଲା ଗଲା ବୋଲି କରି ଶୁଭେ ଉଚ୍ଚ ବାଣୀ
କେବଣେ ଗଲେ କ୍ଷଣକେ କେ ନ ପାରିଲେ ଜାଣି
ଥୋକାଏ ଦୂରି ଯାଇଣ ଦଶିଲେ ଶ୍ରୀହରି
ଯେତେ ବଳୁ ବୋଲି ସର୍ବେ ଗଲେ ବେଗ କରି
ସମସ୍ତେ ଯେ ଏକମୁଖେ ଗଲେ ଶୀଘ୍ର ହୋଇ
ପ୍ରବେଶ ମାତ୍ରେ ଅଦୃଶ୍ୟ ହୋଇଲେ ମାଧୋଇ
ପୁଣିହିଁ ସେ ଖଣ୍ଡେ ଦୂରେ ଯାଇ ଦେଖାଦେଲେ
ପୁନରପି ସଇନଙ୍କୁ ଅଦୃଶ୍ୟ ହୋଇଲେ ।
ପୁଣି ଏକମନେ ଧୂଆଇଁଲେ ସର୍ବ ଥାଟ
ପୁଣିହିଁ ଖଣ୍ଡେ ଦୂରରେ ଦିଶି ନନ୍ଦସୁତ ।
ଏରୂପେ ଲାଗନ୍ତେ ହସ୍ତୁ ପକାନ୍ତି ସେ ବେନି
ଏକମୁଖେ ଗୋଡ଼ାବନ୍ତି ସକଳ ସଇନ ।
ଅନେକ ଦୂର ପର୍ଯ୍ୟନ୍ତେ ଗଲେ ଏହିମତେ
ଦୁଇଭାଇ ଉଠିଲେକ ଗୋମନ୍ତ ପର୍ବତେ ।
ସତ୍ରସ୍ୱର୍ଣ୍ଣ ନଦୀଘାଟରେ ବିସ୍ତାରି ସେ ଗିରି
ଦ୍ୱାଦଶ ଯୋଜନ ଦୀର୍ଘ ଅଟଇ ତାହାରି ।
ଉପରେ ବେନି ଯୋଜନ କି ଯୋଜନ ଉଚ୍ଚ
ଧବଳ ପିଙ୍ଗଳ ବର୍ଣ୍ଣେ ପାଷାଣ ସୁସଞ୍ଚ ।
ସେହି ପର୍ବତେ ଉଠିଲେ ହଳୀ ଚକ୍ରପାଣି
ତଳେ ମିଳିଲେ ଯାଇଁଣ ସକଳ ସଇନ ।
ଜରା ବୋଇଲା ଏ ଘାନ୍ତି ମୋର ପ୍ରାଣପୀଡ଼ା
ସହସ୍ରେ ପୁରି କରିଣ ପର୍ବତକୁ ବେଢ଼ା ।

ଖଞ୍ଜା ମୂଳରେ ପର୍ବତ ଅବେଶ ସମସ୍ତ
ଠଣା ବସାଇ ଜଗିଲେ ସର୍ବେ ସେଥାମତେ ।
ବେଣ୍ଟକାର ଶ୍ୱାନ ବ୍ୟାଘ୍ର ଭଲ୍ଲୁକର ମେଳେ
ଚଇଲ କାଟି ଆସନ୍ତ ସଇନ ସକଳେ ।
ରଜାଙ୍କ ପ୍ରମାଣେ ଥାଟ ବେଢ଼ି ନଉକନ୍ତ
ରେଖା ତୁରଙ୍ଗ ପଦାତି ହାସ୍ତୀ ଆଉ ରଥୀ ।
ସେଥି ଖଞ୍ଜାମୂଳେ ବାଣ୍ଟି ରହିଲେ ସକଳ
ସ୍ୱରଉଣା ଲକ୍ଷେ ରଜା ବେଢ଼ି ଚହିଁ ଚଳ ।
ଉପରେ ରହିଅଛନ୍ତି ସ୍ୱାମୀ ନନ୍ଦବଳା
ନଷ୍ଟିନ୍ତେ ବସି ଅଛନ୍ତି ଲଗାଇଣ ଲୀଳା ।
ଇଦଂ ପ୍ରତିବାକ୍ୟ ବଦନ୍ତି ଶ୍ରୀକାନ୍ତ
ଶୁଣ ତୁ ହେ ସାବଧାନେ ସୁଭଦ୍ରାର ନାଥ ।
ଏହି ପ୍ରକାରେ କୌରବଂଶ ଦଳ ବନ୍ଧିଗଲ
ଗୋମନ୍ତକୁ ବେଢି ଜରାସନ୍ଧ ଯେ ବସିଲ ।
ଛପ୍ପନକୋଟି ସହସ୍ରଙ୍କ ଚତୁରଙ୍ଗ ବଳ
ଅକଳନ ସୈନ୍ୟ ଯେସନ୍ତେ ସିନ୍ଧୁର କଲ୍ଲୋଳ ।
ପର୍ବତ ଚୌପାଶେ ଘାର୍ଷେ ଅଛନ୍ତି ସେ ପୂରି
ଚଳେ ନଡ଼ା ନାହିଁ ସୈନ୍ୟ ସେଥାମନ୍ତେ ଘେରି
ଦେଖନ୍ତି ପର୍ବତପରେ ଥାଇ ଦେବରାୟେ
ପୂରି ଅଛନ୍ତି ସଇନ ସିନ୍ଧୁଜଳ ପ୍ରାୟେ ।
ଏଥୁଅନ୍ତେ ଜରାସନ୍ଧ ନୃପ ଗୁଣନିଧି
ରଜାଙ୍କୁ ହକାରି ବୋଲେ କରିବା କି ବୁଦ୍ଧି ।
ରାମକୃଷ୍ଣ ଉଠିଲେ ଯେ ପର୍ବତ ଉପରି
ଅଗମ୍ୟ ଗହନ ବନ ଏହି ଗିରିବର ।
ଶାଳ ଶିଳ ଲଗା ଲଗି ଅତି ଲତାମୟେ
ଶିଖା ଲଗିଛି ଏହାର ଅର୍ଦ୍ଧ କାଶ ଯାଏ
ଦେବତାନ୍ତ ଘେନ ଯେବେ ଆସେ ବଜ୍ରପାଣି
ବଳବନ୍ତ ପଣେ କେବେ ନୁହଇ ନା ଜିଣି ।
ପୂର୍ବେ ରହିଥିଲେ ଏଥେ ଗୋମନ୍ତ ମହର୍ଷି
ଅନେକ ଯତନେ ଥିଲେ ଗଣ୍ଡାଟିଏ ପୋଷି ।
କଂସ ସୁନାସ ଏ ଦୁହେଁ ଏଠାକୁ ଅଇଲେ
ମୁନିଙ୍କ ଆଶ୍ରମ ଭାଙ୍ଗି ଗଣ୍ଡା ଗୋଟି ନେଲେ ।
ପୁଣି ବୋଇଲେ ମୁନିଙ୍କି ଭରତ୍ସନା ବାଣୀ
କୋପେ ପ୍ରଜ୍ୱଳିତ ମୁନି ତାଙ୍କ କଥା ଶୁଣି ।
ବଳବନ୍ତେ ଏ ପର୍ବତ ନ ପାରନ୍ତି ଜିଣି
ମୋ ଆଶ୍ରମ ଭାଙ୍ଗି ଗଣ୍ଡା ନେଲେ ହାଦେ ପୁଣି
ବଳବନ୍ତ ପଣ ମୋତେ ଦେଖାଇଲେ ଆସି
ବାଳକାନ୍ତ ଦୁଷ୍ଟ ମୋର ସଙ୍ଗେ ହେଲ ଦୋଷୀ
ମୋର ପୋଷା ଗଣ୍ଡା ଗୋଟି ନେଉଅଛନ୍ତେ
ତପୀଙ୍କର ତପ ସିନା ରଜାଙ୍କର ବଳେ ।
ଏତେ ମତେ ଆମ୍ଭ ତୁମ୍ଭ ଦୋଷରୁ ସହିଲୁ ।
ଆମ୍ଭର ବଚନ ଏବେ ଶୁଣ ଆରେ ଖଲୁ ।
ବଳବନ୍ତେ ଯେବେ କେହି ଏ ପର୍ବତେ ଉଠି ।
ହଗପାଳ ହେଉ ପଛେ ମୂର୍ଦ୍ଧା ଯିବ ଫାଟି ।
ଏ କଥା ପୂର୍ବରୁ ରାମ କୃଷ୍ଣ ଜାଣିଥିଲେ
ତେଣୁ କରି ପର୍ବତରେ ନିସତେ ଉଠିଲେ ।
ଏହି କଥା କହି ଆଜ୍ଞା ଦେଲ ନୃପମଣି
ଖଣ୍ଡ ଖଣ୍ଡ କରି ଗିରି ପକାଇବା ହାଣି ।
କାଙ୍କ କୁରାଢ଼ି କଟୁରୀ ଘେନିବ ସାବଳ
ପର୍ବତକୁ କାଟି ନେଇ ପକା ସିନ୍ଧୁଜଳ ।
ଯୋଦ୍ଧେ ଯାହା ଶୁଣି ବୋଇଲେ ପେଶି ବଜ୍ରଶର
ଏକାବେଳେ ପର୍ବତକୁ କରିଦେବା ଚୂର ।
ଏହା ଶୁଣି ବୋଇଲେ ଯେ ଯୋଦ୍ଧେ ନୃପସାଇଁ
ସ୍ୱରଉଣା ଲକ୍ଷେ ରଜା ଏଠାରେ ଅଛଇ ।
ଏକ ଏକ ରଜାଙ୍କର ଦଶବଂଶ ଥାଟ
ଖଣ୍ଡ ଖଣ୍ଡ କରି ଗିରି କାଟିବା ଯେ ବାଣ୍ଟ ।
ଯୋଦ୍ଧାଏ ବୋଇଲେ ନେଇ ପିଟିବା ହେ ଗଦା
ମସିଗୁଣ୍ଡା କରି ଗିରି କରିଦେବା ପଦା ।
ଏହା ଶୁଣିଣ ବୋଇଲ ମଗଧ ନୃସାଇଁ
ପର୍ବତକୁ ପୋଡ଼ିଦେବା କାଠକୁ କୁଢ଼ାଇ ।
ତୃଣ ନାନା ତରୁ କାଟି ଲତା ବୁଦାମାନ
ଏଠାରେ କୁଢ଼ାଅ ବହ୍ନି ଲଗାଇବା ଜାଣ ।
ଆକାଶ ପରାୟେ କାଠ କୂଢ଼ା ଆଣି ବେଗେ
ପାଉଁସ କରିଣ ଦେବା ପର୍ବତକୁ ବ୍ୟଗ୍ରେ ।
ମଗଧେଶ୍ୱର ବୋଇଲ ଯହୁଁ ଏହି ବାଣୀ
ସବୁ ସୈନ୍ୟ ବୁଦା କାଟି ଜମା କଲେ ଆଣି ।
କଞ୍ଚା ଶୁଖିଲ ବୋଲିଣ ନୁହେଁ ତହିଁ ବାଛ
ପାତ୍ର ପର୍ଯ୍ୟନ୍ତେ ଆଣିଲେ ମୁଣ୍ଡେ ବହିକରି ।
ରଜତ ମାହୁନ୍ତ ରଥୀ ପଦାତି ସହିତେ
ରଜା ଆଜ୍ଞା ପାଇ କାଠ ଆଣନ୍ତି ସମସ୍ତେ ।
ଏହିପରି ପାଞ୍ଚଦିନ ଯାକେ ଯେ ବୋହିଲେ
ଗିରିବର ସମାନରେ ଆଣି ଜମା କଲେ ।

ଦେଖିଣ ହରଷ ହେଲା ଜରାସନ୍ଧ ରାୟେ
ବୋଲନ୍ତି ଏଥାନ୍ତି ଶତ୍ରୁ ମୋର ହେଲେ କ୍ଷୟେ ।
ଏତେକ ବୋଲିଣ ରାଜା ଆପେ ଭଗ୍ନ ହୋଇ
ଗିରିଆଡ଼ରେ ଅନଳ ଦେଲା ସେ ଲଗାଇ ।
ଲାଗିଲା ପ୍ରଚଣ୍ଡ ତେଜେ ବିକରାଳ ବହ୍ନି
ଧୂମ ବ୍ୟାପିଲା ସଚରାଚର ଯେ ମେଦିନୀ ।
ଝଲ ଝଲ ଅନଳରେ ଭୟଙ୍କର ଜ୍ୟୋତି
ପର୍ବତଯାକ ଘୋଟିଣ ବେଢ଼ିଲା ଚୌକତ ।
ମହାପ୍ରଳୟ କାଳରେ ସିନ୍ଧୁ ଯେହ୍ନେ ହସି
ଜାଜ୍ୱଲ୍ୟମାନ ତେଜ ତା ଜ୍ୟୋତି ରୂପରାଶି ।
ଲହଲହ ଜିଭ କରି ଦହେ ଦାବାନଳ
ଦେଖି ଅପସରି ଗଲେ ସଇନ ସକଳ ।
ବେଳକୁ ବେଳ ଅନଳ ଘୋଟିଲା ଚୌକତ
ଦେଖି ବନଜନ୍ତୁମାନେ ପାଇଲେକ ଭୀତ ।
ହରିଣ ଶମ୍ବର ମୃଗ ବାହୁଟିଆ ଶଶା
ବ୍ୟାଘ୍ର ଭାଲୁ ହସ୍ତୀ ଗଣ୍ଡା ଯେ ନେଉଳ ମୂଷା
ଶୁକ ଶାରିକା ସୁଆଦ ଝିଙ୍କାରି ବଳିଆ
ମୟୂର ବକ ବାରେହା ଖୁରଣ୍ଟି ଶାଳେହା ।
ସିଂହ ଶାର୍ଦ୍ଦୂଳ ଗବୟ ଜମ୍ବୁକ ସହିତେ
ନିର୍ଧୂମ ଅନଳେ ମଧ୍ୟେ ପୋଡ଼ିମଲେ କେତେ ।
ଆକାଶମଣ୍ଡଳଯାଏ ଅଗ୍ନିଶିଖା ବଢ଼ି
ପକ୍ଷୀ ଜନ୍ତୁମାନେ ଶୂନ୍ୟେ ନ ପାରିଲେ ଉଡ଼ି ।
ନିର୍ଧୂମ ଅନଳ ଶିଖା ଅତିଅନ୍ତ ତେଜ
କାଷ୍ଠ ପାଷାଣ ମୃତ୍ତିକା ହୁଅନ୍ତି ଦହ୍ୟଯ୍ୟ ।
କଞ୍ଚା ଶୁଖିଲା କାଠ ଯେ ହୋଇଗଲା ଦଗ୍ଧ
ବନଜନ୍ତୁ ମାତ୍ର ତାହା ନ ପାରିଲେ ସନ୍ଧି ।
ଭୟେ କାତର ହୋଇଣ ପଳାନ୍ତି ସକଳ
ବିଶ୍ରାମ ନ ପାଇ ହେଉଅଛନ୍ତି ବିକଳ ।
କାର ପାଦ ପୋଡ଼ିଲା ପୋଡ଼ିଗଲାକ ତନୁ
କାର ପେଟ ପୋଡ଼ିଲା କା ପୋଡ଼ିଗଲା ଜାନୁ ।
ପ୍ରାଣ ଆକୁଳରେ କେହୁ ଧାମନ୍ତି ଆରତେ
ଛାଇ ଗୁଡ଼ରେ ପଳାନ୍ତି କେ ବିକଳ ଚିତ୍ତେ ।
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଚୌକତ
ପର୍ବତ ବେଢ଼ି ଜଳୁଛି ମହାନଳ ଜ୍ୟୋତି ।
ବନଜନ୍ତୁଏ ଏରୂପେ ଧାମନ୍ତି ଆରତେ
ଘର୍ଘର ରଡ଼କୁ ଛାଡ଼ଇ କେ ବିକଳ ଚିତ୍ତେ ।

ପର୍ବତକୁ ଜରାସନ୍ଧ ରାଜାର ଧାଉଡ଼ି
ମୃଗ ପଳାଇ ଯାଉଛନ୍ତି ମୃଗୁଣୀକି ଛାଡ଼ି ।
ଏପରି ବ୍ୟାକୁଳକ୍ରନ୍ତେ ସର୍ବ ବନଜୀବେ
ସନ୍ନିଧେ ଥାଇ ଦେଖିଲେ କୃଷ୍ଣ ବଳଦେବେ
ଶ୍ରୀକୃଷ୍ଣ ଆଜ୍ଞା ଦେଲେକ ବଳଦେବେ ଗୁର୍ଦ୍ଧି
କପାଳ ପଡ଼ିଲା ଏବେ ଆଣିଣ ଗୋସାଇଁ ।
ପାପିଷ୍ଠ ଜରାସନ୍ଧ ତ ଗିରି ଦେଲା ପୋଡ଼ି
ଦେଖୁଁ ଦେଖୁଁ ଦାବାନଳ ଗଢ଼ୁଅଛି ମାଡ଼ି ।
ପୃଥିବୀ ଘୋଟିଲା ଧୂମ ଅନ୍ଧକାରମୟ
ବୈଶ୍ୱାନର ଜ୍ୟୋତ୍ସ୍ନା ଲାଗି ପୋଡ଼ିଯାଏ କାୟ
ବନଜନ୍ତୁଙ୍କ ବିକଳ ପ୍ରତ୍ୟକ୍ଷରେ ଦେଖ
ଆମ ଆଗରେ ଏମାନେ ପାଉଛନ୍ତି ଦୁଃଖ ।
କେବଣ ପ୍ରକାରେ ସ୍ୱାମୀ ଏଥୁଁ ହେବା ପାର
କହୁଁ କହୁଁ ପାଶେ ଆସି ମିଳେ ବୈଶ୍ୱାନର ।
ହଳୀ ବୋଇଲେ ହେ କୃଷ୍ଣ କରୁଛ ଚିନ୍ତା କାହିଁ
ଏହିକ୍ଷଣି ଦାବାନଳ ପିବା ଆମ୍ଭେ ଡେଇଁ ।
ଶ୍ରୀକୃଷ୍ଣ ବୋଇଲେ ଭାଇ ତୁମେ ଆଗ ହୁଅ
ପୂର୍ବମୁଖ ହୋଇ ବେଗେ ଏଥୁ ଡେଇଁ ଯାଅ ।
ଶୁଣିଣ ବିକ୍ରମ ମହାବଳୀ କାମପାଳ
ଅନ୍ତରୀକ୍ଷେ ଡେଇଁଗଲେ ଯେସନେ ଶ୍ୟାମଳ ।
କାଳମେଘେ ଶୋହେ ଯେହ୍ନେ ବିଜୁଳିର ଜ୍ୟୋତି
ନୀଳମେଘେ ବଳାହକେ ଯେହ୍ନେ ଶୋଭାପାନ୍ତି
କିବା ହିମବନ୍ତ ଗିରି ହୋଇ ଦେହବନ୍ତ
ଉଡ଼ିଆସଇ ବ୍ୟଗ୍ରରେ ଗଗନର ପଥ ।
ସମ୍ପୂର୍ଣ୍ଣକଳା ବିମ୍ବ କି ଉଦେ ହୁଏ ଭାନୁ
ଦିବ୍ୟ ଦେହ ଘେନି ଉଡ଼ି ଆସନ୍ତି ଗଗନୁ ।
କ୍ଷୀରସମୁଦ୍ର ହେବେ କି ଉଚ୍ଚୈଃଶ୍ରବା ଜାତ
ମନ୍ଥନେ ଅମୃତ ନିଧି ଉପୁଜେ ଯେମନ୍ତ ।
ଶୁକ୍ଳାମ୍ବର ବସ୍ତ୍ର ବୋଲି ଦେଶାନ୍ତରେ ଭାଷି
ତେସନେ ଉଡ଼ି ଆସନ୍ତି ପରଂବ୍ରହ୍ମରାଶି ।
ଦକ୍ଷିଣ କରରେ ମୁଦ୍ରା ବାମରେ କୁଣ୍ଡଳ
କଣ୍ଠରେ ପଇତା ହୃଦମଧ୍ୟେ ବନମାଳ ।
ତାରା ମଣ୍ଡଳୁ ନକ୍ଷତ୍ର ଯେହ୍ନେ ପଡ଼େ ଖସି ।
ବିଜୁଳିର ତେଜ ପ୍ରାୟେ ହସେ ବିଶ୍ୱବାସୀ ।
ଶିରରେ ପିଙ୍ଗଳବର୍ଣ୍ଣ ଜଟା ସପ୍ତଫେଣି
ନାଭି ପର୍ଯ୍ୟନ୍ତେ ପୃଷ୍ଠୁ ପଡ଼ିଅଛି ବେଣୀ ।

କଟିତଟେ ମଣିବସ୍ତ୍ର ଜାଜ୍ୱଲ୍ୟ ଯେ ଅତି
ମଣି ମାଣିକ୍ୟ ଯେସନେ କବା ଗଜ ମୋତି ।
ବଳଦେବ ଶ୍ରୀଚରଣେ ରହୁ ମୋର ମତି
ଶବରି ଅଚ୍ୟୁତ ଦାସ କବି ଏହା ନିତି ।

—❊—

## ବଳରାମଙ୍କ ସହିତ ଜରାସନ୍ଧର ଯୁଦ୍ଧ ଓ କୃଷ୍ଣଙ୍କର ବାରୁଣାବନ୍ତରେ ପ୍ରବେଶ

ଏଥୁଅନନ୍ତରେ ପୁଣି ବଳରାମ ସ୍ୱାମୀ
ଅର୍ଦ୍ଧାକାଶ ଯାଏ ଷେପିଗଲେ ଅନ୍ତର୍ଯ୍ୟାମୀ ।
ଜରାସନ୍ଧ ଆଦିକରି ସକଳ ନୃପତି
ଦେଖିଲେ ଆକାଶମାର୍ଗେ ହଳଶ ଦିବ୍ୟଜ୍ୟୋତି
ନୟନ ସ୍ଥିର କରିଣ ଦେଖିଣ ସମସ୍ତେ
ବୋଇଲେ କମ୍ପୁଛି ମସ୍ତା ଜାଣିବ କେମନ୍ତେ
ତଦନ୍ତ କରିଣ ଏହା ଜାଣି ତ ନ ପାରି
କୃତାନ୍ତ ଦେବତା ଅବା ଆସେ ଦେହ ଧରି ।
ଜାଜ୍ୱଲ୍ୟମାନ ଶିଖା ଯେ ଅଗ୍ନିତେଜ ସ୍ୱୟେ
ପାତାଳ ଘୋଟି ଆସୁଛି ଶୂନ୍ୟପୁର ଯାଏ ।
କେ ବୋଲନ୍ତି ମୃତ୍ୟୁଦେବ ମୁଣ୍ଡରେ ଆହୂତି
ଆମ୍ଭଙ୍କୁ କରିବେ ଅବା ଆଜ ବେଦପତି ।
ଏମନ୍ତ ଭାଳନ୍ତି ଯେତେ ନୃପତି ସମସ୍ତ
ଅର୍ଦ୍ଧ ଆକାଶରୁ ଖସିପଡ଼ି ହଳହସ୍ତ ।
ଝଞ୍ଜାର ଘାତରେ ଯେସନେ ଯାଇଫୁଲ ଉଡ଼ି
ସେ ପ୍ରକାରେ ସ୍ୱାମୀ ଧୀରେ ଭୂମିପରେ ପଡ଼ି ।
ଦମଘୋଷ ବୋଇଲେ ଜରା ବନ୍ଦନକୁ ଚାହିଁ
ଶୁଣ ସାବଧାନେ ଏବେ ମଗଧ ନୃସାଇଁ ।
ଧନ୍ୟ ମହିମା ରଖିଲ ସ୍ୱାମୀ ରବିତନେ
ସ୍ୱରଉନ୍ନା ଲକ୍ଷେ ରାଜା ଛଟି ପାଦତଳେ ।
ଲକ୍ଷେପୁର କରି ଏଡ଼େ ଗିରି ଅଛୁ ବେଢ଼ି
ପାଞ୍ଚଶ ଗଦା ହୋଇଲ ଦେଲ ତାକୁ ପୋଡ଼ି ।
ଭୂମର ବୈଶ୍ୱାନର କେ ଅଛୁ ଦେହ ଘେନି
ଅବହେଳେ ଜିଣିପାରି ସକଳ ମେଦିନୀ ।
ଏବେ ଯେ ହଣିବ ଭୂମ ଭାଗ୍ୟବନ୍ତ ପଣ
କୃଷ୍ଣ ଜ୍ୟେଷ୍ଠଭାଇ ଯାଙ୍କ ନାମ ସଙ୍କର୍ଷଣ ।
ଦାବାନଳର ପ୍ରଖର ତେଜ ଦେହେ ଲଗି
କୃଷ୍ଣ ମଲ୍ଲକୋଳ ଭଳି ପଳାଉଛୁ ବେଗି ।
ବପଦ କାଳରେ ଭାଇ ଗୁଡ଼ ପଳାଇଲେ
ଯହିଁ ଉଡୁଥିଲେ ତହିଁ ଆସି ପୋଡ଼ ମଲେ ।
ଦନ୍ତବକ୍ର ବୋଲେ ରାଜା କ କଥା ବସ୍ତୁରୁ
ସମସ୍ତେହିଁ ବେଢ଼ି ମାର ସଙ୍କର୍ଷଣ ମରୁ ।
କେ ବୋଇଲେ ଏଠାରୁ ଉଠି ଯିବ ଆଉ କାହିଁ
ଆଶୁ ଗଣ୍ଡୀ ଭଙ୍ଗି ଅଛୁ ପର୍ବତରୁ ଡେଇଁ ।
କେହୁ ବୋଲଇ ଏହାତ ଅସମ୍ଭବ ବାଣୀ
ନୟନରେ ଦେଖା ନାହିଁ କର୍ଣ୍ଣେ ନାହିଁ ଶୁଣି ।
ଦ୍ୱାଦଶ ଯୋଜନ ଉଚ ଯେଉଁ ଗିରିବର
ତିନି ଯୋଜନ ସ୍ଥଳୀ ଯା ଯୋଜନେ ଓସାର ।
ଏହାକୁ ଡେଇଁ ଯିବାକୁ କାହାର ସାହସ
ଏଡ଼େ ବଡ଼ ଲୋକ କବା ଅଳ୍ପେ ଯାଇ ନାଶ
ଏତେ ଭଲ ସୈନ୍ୟ ଧାଡ଼ିକାରେ ଗଲେ ଧାଇଁ
ନୟନେ ଦେଖିଲେ ତାହା ରେବତୀର ସାଇଁ
ହଳ ମୂଷଳ ସ୍ମରଣ କଲେ ହୃଦଗତେ
ଆୟୁଧ ଆସି କରରେ ମିଳିଲା ତୁରିତେ ।
ଦକ୍ଷିଣକରେ ମୂଷଳ ବାମକରେ ହଳ
ବିକ୍ରମସିଂହ ପରାଏ ହଣେ କାମପାଳ ।
ଦେଖିକରି ରାଜାଗଣେ ହୋଇଲେ ଆଶ୍ଚର୍ଯ୍ୟ
ସୈନ୍ୟଙ୍କୁ ହକାରି ଆଜ୍ଞାଦେଲା ମହାରାଜ ।
ଏକହୋଇ ବଳରାମ ଭେଟି ପଡ଼ିଅଛୁ
ଏଥୁ ଉତ୍ତର ଗଲେ ତ ନୁହେ କାର୍ଯ୍ୟ କଛୁ ।
ହାଣ୍ଡି ରଥୀ ଅଶ୍ୱ ସୈନ୍ୟ ପଦାତି ସହିତେ
ବେଢ଼ିକରି ଧରି ମାର ଯେ ଯାହାର ମତେ
ରାଜାର ଆଜ୍ଞା ପ୍ରମାଣେ ଧାମନ୍ତି ସଇନ
କାମପାଳଙ୍କୁ ମାରନ୍ତି ଅସ୍ତ୍ର ଶସ୍ତ୍ର ଘେନ ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଯେ ରୁକ୍ମଣ
ବଜ୍ରନାଭ ନାରକା ଯେ ବାଣା ମହାରଣ ।
ଶମ୍ବର ଶୌନକ ଭଗଦତ୍ତ ବୀରସେନ
ଦ୍ରୁପଦ ପୁରୁଜିତ ଯେ ରାଜା ଦୁର୍ଯ୍ୟୋଧନ ।
କାଳଞ୍ଜନ କୁନ୍ତଭୋଜ ଜୟଦ୍ରଥ ବୀର
କୌଶିକ ପଦ୍ମକେଶର ଶତ୍ୟବନ୍ତ ଧୀର ।
ସୁବାହୁ ବୀରବାହୁ ଯେ ହରିସେନ ରାୟେ
ଭୀଷ୍ମ ଦ୍ରୋଣ ଭୂରିଶ୍ରବା କୃପାଚାର୍ଯ୍ୟ ଯାଏ ।
ରେତରେକ ରି କରି ମାଡ଼ି ପଡ଼ି ଦେଖାମତେ
ଧରି ଧରି ମାର ମାର ବୋଲନ୍ତି ସମସ୍ତେ ।

ଛୁରୀ ଯମଦାଢ଼ ଖର କମାଣ ଶକତି
ଶାବେଳ ଭୁଷଣ୍ଡି ଗଦା ଶସ୍ତ୍ର ନାନାଜାତି ।
ଚନ୍ଦ୍ରକାନ୍ତ ପରଘ ଯେ ଆଉ ତୀକ୍ଷ୍ଣ ମୁନା
ଅନବାର ଶରମାନ ଧରିଛନ୍ତି ନାନା ।
ଅନସଂଖ୍ୟାପ ସଇନଏ ଏକମୁଖ ହୋଇ
ହଳୀଙ୍କ ଅଙ୍ଗକୁ ଶସ୍ତ୍ର ବର୍ଷି ପରହାଇ ।
ଏକଜଣ ଦଶହସ୍ତ ଶର କରେ ଯେନ
ହଳୀଙ୍କୁ ବିନ୍ଧନ୍ତି ମିଳ ସକଳ ସଇନ ।
ଶସ୍ତ୍ରଙ୍କର ତେଜ ଦେଖି ସେ ଦେବାଧି ରାୟେ
ଅବ୍ୟକ୍ତ ବିଶ୍ୱ ମୁରତି ଧଇଲେ ସେ କାୟେ ।
ଶ୍ରୀହସ୍ତେ ହଳ ମୁଷଳ ଯେନ କାମପାଳ
ଶସ୍ତ୍ର ମାରନ୍ତେ ଦେଖାଇ ବ୍ୟକ୍ତ ବକ୍ଷସ୍ଥଳ ।
ମହା ମହା ଶରମାନ ତାଙ୍କ ଦେହେ ବାଜି
ଖଣ୍ଡ ଖଣ୍ଡ ହୋଇକରି ପଡ଼ୁଛନ୍ତି ଭାଜି ।
ପୁଣି ଶସ୍ତ୍ର ଧରି ସର୍ବେ ମାରି ଯେ ଯାହାରେ
ସବୁ ଶର ବାଜୁଅଛି ହଳୀଙ୍କ ଶରୀରେ ।
ଅତବକେ ବଳବନ୍ତ ସେହ୍ୱଣୀର ବସ୍ତି
କୋଟିସିଂହ ପ୍ରାକର୍ମ ଯା ରୋମମୂଳେ ଅଛି ।
କାଟି ବ୍ରହ୍ମ ପରଯନ୍ତେ ସବୁ ଦେହେ ପୂରି
ତାଙ୍କୁ ବଳ ସଂସାରରେ କେବା ଶସ୍ତ୍ରଧାରୀ ।
ଅନନ୍ତ ମହୀଧର ଯେ ଦେବ ଦେହବନ୍ତା
ଠୁଳଶୂନ୍ୟ ବିବର୍ଜିତ ଶସ୍ତ୍ରଳ ରଖନ୍ତା ।
ଅନନ୍ତ ବିଶ୍ୱମୂର୍ତ୍ତି ଯା ଆଦିଅନ୍ତ ନାହିଁ
ତାଙ୍କୁ ଘେରି ବନ୍ଦୀ କଲେ ପାରି ଅବା କାହିଁ
ଜରା ଆଦି ସୁରଜଣା ଲକ୍ଷେକ ନୃପତି
ନୃପତିକେ ଦଶହଂଶ କ୍ଷୌଣି ସୈନ୍ୟ ଛନ୍ତି ।
ଗଜତ ମାହୁନ୍ତ ରଥୀ ପଦାତି ସହିତେ
ଅନସଂଖ୍ୟାପ ଶର ଧରି ମାରନ୍ତି ସମସ୍ତେ ।
ବଳ ଅଙ୍ଗ ପାତୁଛନ୍ତି ଦେବ ଶୂଳପାଣି
ଶସ୍ତ୍ର ଉପୁଡ଼ି ପଡ଼ନ୍ତି ବର୍ଷାପାଣି ଜାଣି ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଯେ ରୁକ୍ମଣ
ଶାଡ଼ୀ ପାଇ ଆଗୁଆଣ ହେଲେ ସୁରଜଣ ।
ବାମକରେ ଧନୁଶର ଧରି ଦୃଢ଼ମୁଷ୍ଟି
ତୂଣୀରେ ପୂରାଇଛନ୍ତି ବାଣ ଲକ୍ଷେ କୋଟି ।
ଗୁଣ ଟଙ୍କାରଣ ଧ୍ୱନ ଜରିଛନ୍ତି ରଗେ
ରହ ରହ ବୋଲି ଉଭା ହେଲେ ଯାଇ ଆଗେ

ବୋଲନ୍ତି ଆମ୍ଭ ମହିମା ଶୁଣିନାହୁଁ କାଳେ
ପ୍ରାଣ ଲୁ ଯେନ କ ମିବୁ ଏଥୁ ଆଜ ଭଲେ ।
ନଶ୍ଚେଁ କୃତାନ୍ତକ ଦେବ ପୋଛୁଲଟେ ପାଞ୍ଜି
ତୂଳା ପ୍ରମାଣେରେ ମାଂସ ପକାଇବୁ ପିଞ୍ଜି ।
ଏତେବୋଲି ସୁରବାରେ ବେଢ଼ି ସୁରକତି
ପାର୍ଶ୍ୱେ ବେଢ଼ିଛନ୍ତି ପାଞ୍ଚ ସହସ୍ର ନୃପତି ।
ଏକମୂଖରେ ଯମର କରନ୍ତି ସକଳ
ଶ୍ରାବଣ ମାସରେ ଯେହ୍ନେ ବରଷା ପ୍ରବଳ ।
ମେଘ ଗଡ଼ଗଡ଼ ପ୍ରବେଶ ଶୁଭେ ଗୁଣମୁଷ୍ଟି
ଦିବସରେ ଅନ୍ଧକାର ଦିଶେ ନବପୃଷ୍ଟି ।
ସୈନ୍ୟଙ୍କର ଆଗଧର ଦେଖି ନୀଳାମ୍ବର
ହଳ ମୁଷଳ ବୁଲାଇ ଧାଇଁଲେ ସତ୍ୱର ।
ଦିବ୍ୟ ବିଶ୍ୱମୂର୍ତ୍ତି ଝଳଝଳ ତେଜମୟେ
ନୟନେ ଚନ୍ଦ୍ର ସୂର୍ଯ୍ୟ କି ହୋଇଛି ଉଦୟେ ।
ପ୍ରଖର ପବନ ବହେ ଅନେଷଣ ଜାଣି
ଦନ୍ତବକ୍ର ରଥେ ତାହା ପିଟିଲକ ଆଣି ।
ବାମହସ୍ତରେ ମୁଷଳ ବୁଲାଇ ବେଗରେ
ଶାଲ୍ୱରାଜା ରଥେ ନେଇ ପିଟି ତାହାବେଗେ ।
ଦୁର୍ଦ୍ଧର୍ଷ ବଜ୍ରଘାତରେ ସେ ମୁଷଳ ବାଜି
ଏକ ବେଳେ ଗଲା ଦୁଇଗୋଟି ରଥ ଭାଜି ।
ଶତେଖଣ୍ଡ ହୋଇ ରଥ ଭାଙ୍ଗେ ଏକାଧାଏ
ସାରଥି ସୁରଅଶ୍ୱେ ଯେ ମରିଲେ ସେଠାଏ ।
ବିରଥୀ ହୋଇଲେ ଶାଲ୍ୱ ଦନ୍ତବକ୍ର ବେନି
ଝକଳେ ପଳାଇଗଲେ ହୋଇ ପାଦଗାମୀ
ନିକଟେ ଦେଖିଲେ ଶିଶୁପାଳ ଯେ ରୁକ୍ମଣ
କରେ ଶସ୍ତ୍ର ଧରି ଆବୋରିଲେ ତତକ୍ଷଣ ।
ଦେଖିକରି କୋପଭର ହେଲେ ହଳପାଣି
ଏକାବେଳେ ଲଙ୍ଗଳକୁ ପ୍ରହାରିଲେ ପୁଣି
ନିର୍ଘାତ ଶବଦ ପ୍ରାୟେ ଶୁଭେ ପଚଣ୍ଡା
ବେନି ରଥବର ଭାଙ୍ଗି ହେଲେ ମସିଗୁଣ୍ଡା ।
ଝକଳେ ପଳାଇଗଲେ ଦୁହେଁ ପ୍ରାଣଘେନ
ଦେଖିଣ ଶଙ୍କା ପାଇଲେ ସକଳ ସଇନ ।
ରଥୀ ମହାରଥୀ ସର୍ବତରେ ଆଦିକରି
କଳ୍ପଗମ ମୂର୍ତ୍ତିଦେଖି ଗଲେ ଅପସରି ।
ହାତୀ ରଥୀ ପୁଣି ଅଶ୍ୱ ପଦାତି ଜହ୍ମତ
ସର୍ବଯୋଦ୍ଧା ପଳାଇଲେ ହୋଇ ମହାଭୀତ ।

ପଳାନ୍ତି ସଇନ୍ୟମାନେ ପଛକୁ ନ ଚାହିଁ
ଗୋଡ଼ାଇ ଯାଆନ୍ତି ସ୍ୱାମୀ ମୂଷଳ ବୁଲାଇ ।
ସୈନ୍ୟ ପଳାଇବା ଦେଖି ମଗଧ ନୃପତି
କାମପାଳ ଆଗେ ରଥ ନେଇଲା ତୁରନ୍ତି ।
ମାର ମାର ବୋଲି ସୈନ୍ୟ ଡାକେ ମହାରାୟେ
ମୁଁ ଥାନ୍ତେ କାହାକୁ ଅଛି ଭୂମରରେ ଭୟେ ।
ପର୍ବତ ଉପରେ କୃଷ୍ଣ ବସି ଦେଖିଲା ମୋଡ଼ି
ଏକ୍ଷଣି ମରିବ ଏ ତ ଆଗେ ଅଛି ଚଢ଼ି ।
ଅନେକ ଶାସ୍ତି ଦେଇଣ ମାରିବଇଁ ଆଜ
ତେବେ ସୁଫଳ ହୋଇବ ନଷ୍ଟେଁ ମୋହର କାର୍ଯ୍ୟ
ଏତେବୋଲି ଧନୁ ବେନ୍ୟେ ଧରେ ବାମକର
ସାରଥିକି ଆଜ୍ଞାଦେଲେ ବାହା ରଥବର ।
ଶୁଣି ସାରଥି ଚଳାଏ ରଥ ଅନ୍ତରୀକ୍ଷେ
ଘୂରଉଣା ଲକ୍ଷେବଜା ଯାନ୍ତି ପଛେପଛେ ।
ଆଗେ ଓଗାଳିଲା ଯାଇ ସଙ୍କୋଚନ ସୂତ
ଅକଳିତ ସୈନ୍ୟ ତାର ନ ଯାଏ କଥିତ ।
ବାଣା ବଜ୍ରନାଭ ଆଉ ନାରକା ଶମ୍ବର
ଦୁର୍ଯ୍ୟୋଧନ ଆଦିକରି ବହୁ ନୃପବର ।
ଜରାସନ୍ଧ ପାରୁଶରେ ସର୍ବେଛନ୍ତି ଘେରି
ଏଙ୍କୁ ଆରେକ ଯୋଦ୍ଧା ଯେ କ୍ଷୋହିଣୀବକୋଟି
କୋପମୁଖରେ ନୃପତି ପେଷେ ମୋହଶର
ଦୁସ୍ତର ବର୍ଷାରେ ଯେହ୍ନେ ବର୍ଷେ ଜଳଧର ।
ଏକା ବଳଦେବ ଅଙ୍ଗେ ଅସ୍ତ୍ରମାନ ପଡ଼ି
ଥୋକେ ଭାଙ୍ଗନ୍ତି ଥୋକାଏ ପଡ଼ନ୍ତି ଉଡ଼ି ।
କୋପେ ଜରା ଦଶସହ୍ର ନାରାଚ ଚୂରଇ
କାମପାଳଙ୍କ ଅଙ୍ଗରେ ବନ୍ଧନ କୁହାଇ ।
କଙ୍କପକ୍ଷ ତୀକ୍ଷ୍ଣମୁନ ପଚଶ ଚୂରଇ
ନିଃଶ୍ୱାସ ମାତ୍ରକେ ପେଷେ କେପଣର ହୋଇ
ପୁଣି ଶତେକ ନାରାଚ ବନ୍ଧେ ତେଜକରି
ମେଘ ଅଗ୍ନିଶର ପେଷେ ହୋଇ କୋପମୂର୍ତ୍ତି ।
ରଥୀ ମହାରଥୀ ଆଉ ପଦାତି ଯନ୍ତ୍ରରେ
ଅନ୍ତର୍ଯ୍ୟାମୀ ଶରବୃଷ୍ଟି କରି ଯେଝା ମତେ ।
ରଣେଣ ଟଙ୍କାରରେ କରି ଶର ବୃଷ୍ଟି
ଭୂମିରୁ ସ୍ୱରଗ ଯାଏ ପୂରିଅଛି ସୃଷ୍ଟି ।
ଅକ୍ଷୟ ଅନ୍ତାମର ଯେ ଆଦିଅନ୍ତ ନାହିଁ
ଅଗ୍ନିଶର ବନ୍ଧଲେ ନ ଲାଗେ ତାର ଦେହି ।

ଶସ୍ତ୍ର ମାରି ଅଙ୍ଗ ଭେଦ କରିବ କେ ତାକୁ
କେ ଆଗେ ଛୁଡ଼ା ହୋଇବ ଏଡ଼େ ଧର ବୁଲୁ
ଅନନ୍ତ ଯେ ଶେଷଦେବ କ୍ଷୀରସିନ୍ଧୁ ଶାୟୀ
ଅଚିନ୍ତ୍ୟ ଚିନ୍ତାମଣି ଯେ ପ୍ରଭୁ ଭବଗ୍ରାହୀ ।
ନୃପତିମାନେ ତାହାଙ୍କୁ ଜରାଇ ସତ୍ୱରେ
ଅବଛିନ୍ନେ ନାରାଚକୁ ବନ୍ଧ ଯେଝାମତେ ।
ଜଳନ୍ତି ଜଳନ୍ତା ପୋକ ପ୍ରାୟେ ସ୍ୱର୍ଗେ ଝସିପଡ଼ି
ଥୋକେ ଉପୁଡ଼େ ଥୋକାଏ ଅଧବାଟୁଁ ଝଡ଼ି ।
ଲୁହାରେ ଲୁହା ବାଜଣ ହୁଏ ସମତଳ
ଉଠେ ଅଗ୍ନିଶିଖା ଯେହ୍ନେ ମଧ୍ୟାହ୍ନର ଜଳ ।
ତୋଲ ଦମା ଟମକ ଯେ ବାଜେ କରତାଳ
ଭୁଲୋକ ଆଦି କରଣ କର୍ମେ ସ୍ୱର୍ଗଆଳ ।
ଟଳମଳ ବସୁନ୍ଧରା ବ୍ରହ୍ମାଣ୍ଡ ଯେ ତିନ
ଘୂରଉଣା ଲକ୍ଷେ ନରପତିଙ୍କ ସଇନ ।
ଏକା ଜଣକୁ ସମସ୍ତେ ଅସ୍ତ୍ରାନ୍ତ ହାଣିଲେ
ଦେବଶର ଆଦିକରି ନଠାଇ ବନ୍ଧିଲେ ।
କୌଣସି ଶସ୍ତ୍ର ନ କାଟେ ବଳଦେବ ଅଙ୍ଗେ
କଳ୍ପାପାଇ ରାଜାମାନେ ରହି ମାନଭଙ୍ଗେ ।
ସୈନ୍ୟଙ୍କୁ ବୃନ୍ଦିଣ ବୋଇଲେକ ନୀଳାମ୍ବର
ଆଉ ଆଉ କେତେ ଅସ୍ତ୍ର ଅଛିରେ ତୁମର ।
ଏ ଶସ୍ତ୍ରମାନଙ୍କେ ହୁଏ ଅମ୍ଭଙ୍କୁ କି ଜାଣି
ଦେବଶସ୍ତ୍ର ଶିଖିଥିଲେ ପ୍ରହାରରେ ଆଣି ।
ଏମନ ବାକ୍ୟ ଶୁଣିଣ ରାଜା ଦୁଷ୍ଟବଳେ
ପୁନରପି ବହୁଶର ପେଷି ଅଙ୍ଗଛଳେ ।
ବାଣାସୁର କରେ ଧରି ମାଇଲା ଶକତି
ଗରୁଡ଼ାସ୍ତ୍ର ପେଷେ ବଜ୍ରନାଭ ନରପତି ।
ରୁଦ୍ରଶର ପେଷେ ବେଗେ ନାରକା ଅସୁର
ନାରାୟଣ ଶର ମନ୍ତ୍ରି ପେଷଇ ସମ୍ବର ।
ଆପଣେ ଜରାସନ୍ଧ ଯେ ଭୈରବାସ୍ତ୍ର ମାରି
ବଜେ ଶକ୍ତି ମାରେ ମୃଗସେନ ଦଣ୍ଡଧାରି ।
କଳିଙ୍ଗସେନ ପେଷଇ ଲୌହ ପଞ୍ଚବାଣ
କଙ୍କପକ୍ଷ ଦଶବାଣ ମାରେ ଦୁର୍ଯ୍ୟୋଧନ ।
ଧୃଷ୍ଟ ବଂଶବାଣ ମାଇଲେକ ଖଣ୍ଡେହୁରୁ
ହାବୋଡ଼ା ତୀକ୍ଷଣ ନାରାଚ ମାରି ଦ୍ରୋଣଗୁରୁ
କର୍ଣ୍ଣ ଏକାଦଶ ବାଣ ଦୁଃଶାସନ ସାତ
ଚଉଦ ବାଣ ପେଷଇ ବୀର ଜୟଦ୍ରଥ ।

ଅଶ୍ୱତ୍ଥାମା ତିନବାଣ ସନ୍ଧାନକରି ପେଷି
ନମସ୍କାର କରି ବାଣ ମାରି କୃଚକେଶୀ ।
ଶାଲ୍ୱ ଶିଶୁପାଳ ଦନ୍ତବକ୍ର ଯେ ରୁକ୍ମଣ
ଅଭିମନ୍ୟୁ କରି ପେଷେ ସହସ୍ର ସହସ୍ର ବାଣ ।
ଦ୍ରୁପଦ ବିରାଟ ରାଜା ଆବର କୌଶିକ
ହରିସେନ ଶିବସେନ ସୁବାହୁ ଖେଷ୍ଟ୍ରକ ।
ଏସ୍ତମାନେ ବାଛି ବାଛି ତୀକ୍ଷ୍ଣ ଶରମାନ
ବଳରାମଙ୍କ ଉପରେ କରନ୍ତି ସନ୍ଧାନ ।
ଶୁଣ ପରୀକ୍ଷିତ ରାଜା ବଦସୁନ୍ତ ଯତି
ଇତି ଶ୍ରୀ ହରିବଂଶ ପୁରାଣର କୀର୍ତ୍ତି ।
ଶ୍ରୀକୃଷ୍ଣଙ୍କ ପୁରାଣ ଏ ସ୍ୱାର ଅନ୍ତ ନାହିଁ
ସିନ୍ଧୁ ଶୁଖାଇ ପାରିବ କେବା କରେ ବୋଧ
ଏ ରୂପରେ ସ୍ୱରଅଣା ଲକ୍ଷେ ରାଜା ସୈନ୍ୟ
ବଳରାମ ପରେ ଶସ୍ତ୍ର କରନ୍ତି ସନ୍ଧାନ ।
ବାଲି ପକାଇଲେ ସିନ୍ଧୁ ହୋଇବ କି ପୋତି
ପିମ୍ପୁଡ଼ିମାନେ କି ଗିରି ଉପାଡ଼ି ପାରନ୍ତି ।
ହସ୍ତୀକୁ ମଶକେ କାହୁଁ ବିନାଶି ପାରନ୍ତି
ଶୃଗାଳ କି ମାରିପାରେ ଶାର୍ଦ୍ଦୁଳ ନୃପତି ।
ତେସନ ପ୍ରକାରେ ରାଜାମାନଙ୍କର ଯୁଦ୍ଧ
ଦିକ୍‌ପାଳ ଦେବେ ଦେଖନ୍ତି ଥାଇ ସ୍ୱର୍ଗମଧ୍ୟ ।
ବୃହସ୍ପତି ବୋଇଲେକ ଶୁଣ ସୁରରାୟେ
ଦେଖ ଏବେ ତୁମ୍ଭେ ହଳୀଙ୍କର ବୀର୍ଯ୍ୟକାର୍ଯ୍ୟେ ।
ଯୋଦ୍ଧାଙ୍କର ଶର ବାଜେ କାମପାଳ ଅଙ୍ଗେ
ନିଃଶଙ୍କରେ ଛିଡ଼ା ହୋଇଛନ୍ତି କେହ୍ନେ ଆଗେ
ଅଚଳ ପର୍ବତ ପ୍ରାୟେ ଅଛନ୍ତି ସେ ରହି
ରାଜାମାନେ ଫୁଟିଲେଣି ମହାଲଜ୍ଜା ପାଇ ।
ଏସନକ ବିସ୍ମୟକୁ କରି ସୁରଗଣ
ହଳ ମୂଷଳ ବୁଲାଇ ଧାଇଁ ସଙ୍କର୍ଷଣ ।
ବକପକ୍ଷୀ ଦେଖି ଯେହ୍ନେ ଶ୍ୟାମଳ ଧାମଇଁ
ସୈନନ୍ଦ ମୂଷଳ ଧରି ପିଟିଲେ ବୁଲାଇ ।
ହୁଂକାର ନାଦ କରିଣ ପିଟନ୍ତେ ସେ ଘୋଟି
ପଡ଼ିଲେ ମୁକୁଟ ବନ୍ଧା ଯୋଦ୍ଧା କୋଟି କୋଟି
ରଥର ଉପରେ ରଥ କଚଡ଼ନ୍ତି ଧରି
ଗଜ ଉପରେ ଗଜକୁ ପିଟି ରୋଷଭରି ।
ପାଦରେ ମର୍ଦ୍ଦନ୍ତି କାହାକୁ ମାରନ୍ତି ସେ ନାତ
ମୂଷଳ ମାରି କାହାକୁ ହସ୍ତରେ ନପାତ ।

ପଡ଼ନ୍ତିଲେ ଅନେକ ଯୋଦ୍ଧା ଚତୁରଙ୍ଗ ଦଳ
ଉଚ୍ଛଳ ପ୍ରଖରେ ରକ୍ତ ବହେ ବେଗଚାଳ ।
ହସ୍ତି ରଥ ମଡ଼ା ଅଶ୍ୱ ପଦାତିକ ମୂଳେ
କାଠଭେଳା ପ୍ରାୟେ ଭାସିଯାନ୍ତି ରକ୍ତଜଳେ ।
ଚଣ୍ଡୀ ଚାମୁଣ୍ଡା ମାତଙ୍ଗୀ ଦେବୀ ଭଦ୍ରକାଳୀ
ରକ୍ତମାଂସ ଖାଇ ତୃପ୍ତି କରିଲେକ କେଳି ।
ଗାରତୂର ବାଜଣା ସେ ବାଜେ ଲକ୍ଷକୋଟି
ସହସ୍ର ସଙ୍ଖ୍ୟା କବନ୍ଧ ନୃତ୍ୟ କଲେ ଉଠି ।
ଏସନ ମାରନ୍ତେ ସୈନ୍ୟ ପଣି କାମପାଳ
ଭୟେ ଧ୍ୱଜ ପକାଇଲେ ଜରାସନ୍ଧ ବଳ ।
ବସାଭଗ୍ନେ ପକ୍ଷୀ ଯେହ୍ନେ ବିକଳିତ ଚିତ୍ତ
ଜାଲରୁ ଫିଟି ଯେସନେ ଯାନ୍ତି ମୀନଯୂଥ ।
ବ୍ୟାଧକୁ ଦେଖି ପଳାଏ ଯେହ୍ନେ ମୃଗ ଡରେ
ଶୃଗାଳ ନ ରହେ ଯେହ୍ନେ ବ୍ୟାଘ୍ରର ସମୁରେ
ସେପରି ଲୋକେ ପଳାନ୍ତି ସଂଗ୍ରାମକୁ ଛାଡ଼ି
ପ୍ରାଣ ବିକଳେ ଧାମନ୍ତି ହୋଇ ଚଡ଼ବଡ଼ି ।
ପ୍ରଳୟ କାଳ ପଡ଼ିଲେ ଯେହ୍ନେ ହତମେରୁ
ଧନ ତେଜି ଜୀବ ଘେନି ପଳାଏ କେ ଦୂରୁ ।
ତିନକାଳ ଉଚେ ମଡ଼ା କୁଡ଼ ଜମା ହେଲା
ଭାଗ୍ୟବନ୍ତ ଲୋକ ତହୁଁ ଜୀବୁଣେ ଗଲା ।
ରଥର ଉପରେ ଗଜ ପଡ଼ିଲେକ ମାଡ଼ି
ଅଶ୍ୱ ସଙ୍ଗତେ ପଦାତି ହେଲେ ଗଡ଼ାଗଡ଼ି ।
ଆନୁ ଆନରୂପ ସ୍ୱାମୀ ବଳରାମ ଧରି
ସ୍ୱରଉଣା ଲକ୍ଷେରାଜା ସୈନ୍ୟ ଶେଷକରି ।
ଜାନୁଭଗ୍ନ ହେଲା କାର ଭଗ୍ନ ହେଲା ମୁଣ୍ଡ
ମୂଷଳ ବାଜିଣ କାର ଭାଙ୍ଗେ ଭୁଜଦଣ୍ଡ ।
ଆଣ୍ଠୁ ଭାଙ୍ଗିଗଲା କାର ଭାଙ୍ଗେ ବକ୍ଷସ୍ଥଳ
ବହୁ ପ୍ରଭାବ ପାଇଲେ ନୃପତି ସକଳ ।
ଜରାକୁ ଛାଡ଼ି ପଳାନ୍ତି ସର୍ବେ ଭୟ ପାଇ
ନୃପତି ଏକାକେ ଅଛି ଆରମ୍ଭ ଦେଖାଇ ।
ଦେଖିଣ ରାମ ବିଷମ ସ୍ୱରୂପକୁ ଧରି
ରଥର ପରେ ମୂଷଳ ପିଟି ରୋଷ ଭରି ।
ଖଣ୍ଡ ବିଖଣ୍ଡ ହୋଇଣ ପଡ଼େ ରଥବର
ଅକ୍ଷ ଚକ ଦଣ୍ଡମାନ ସବୁ ହେଲା ଚୂର ।
ନିର୍ଘାତ ଶବଦ ପ୍ରାୟେ ଶୁଭିଲାକ ରଡ଼ି
ସାରଥିଅଶ୍ୱ ସଙ୍ଗତେ ମଲେ ତଳେ ପଡ଼ି ।

ରଥଗୋଟି ଭାଙ୍ଗିଯାନ୍ତେ ମଗଧ ନୃପତି
ଧାଇଁ ଧପଡ଼ଣ ରଥୁଁ ଉଭୁରି ତଡ଼ିତ ।
ବାସ୍ତବ ଭାର ଗଦାକୁ ଘେନି ନିଜ କରେ
ବଳରାମଙ୍କ ଉପରେ ପିଟେ ଧାଡିକାରେ ।
ଦେଖି କାମପାଳ ପ୍ରଭୁ ଲାଙ୍ଗଳ ପ୍ରହାରି
ଉଠିଲା ପ୍ରଚଣ୍ଡ ବହ୍ନି ସର୍ବ ବସୁନ୍ଧରୀ ।
ପୁଣି ଚଇଗତି କରି ମଗଧ ନୃପତି
ଖଣ୍ଡେଦୂରେ ଉଭା ହେଲା କରି ପାଦଗତି ।
ପୁଣି ମନେ ବିଚାରଇ ଧରିବି ଆଣ୍ଟରେ
ବେକଷଣ୍ଢା ମୋଡ଼ି ପେଶିଦେବି ଯମପୁରେ ।
ଏହାର ପାଇଁକି ପଛେ ଜୀବ ଯାଉ କିନା
ସମର ସରୁ ପଛକେ ନାହିଁ ମୋ ଭାବନା ।
ନାନା ପରକାରେ ଆଜ ଏହାକୁ ମାରିବି
ନୋହିଲେ ତା ପାଇଁ ପଛେ ମରିଲେ ମରିବି
ଆବର ଦେଖିଲା ତାଙ୍କ ସଙ୍ଗେ କେହି ନାହିଁ
ଜୀବ ବିସର୍ଜନ କରି ପଡ଼େ ବେଗେ ଧାଇଁ ।
ବଳରାମ ଅଣ୍ଟାଧରି ଉଡ଼ି ରୋଷଭରେ
କଚାଡ଼ି ଦେବି ପର୍ବତେ ବୁଲାଇଣ ଥରେ ।
ଏମନ୍ତ ବିଚାରି ମାଡ଼ି ବସିବ ବୋଲିଣ
ମନ କରନ୍ତେ ତା ଜାଣିପାରି ସଙ୍କର୍ଷଣ ।
ଦକ୍ଷିଣ ପାଦ ସିଆଡ଼ି ଦେଲେ ତତକ୍ଷଣି
ଘୂମଇ ପଡ଼ିଲା ଜରା ଖଣ୍ଡେ ଦୂରେ ପୁଣି ।
ଦେଖିଣ ପ୍ରତିଜ୍ଞା କରି ଧାଇଁ ହଳପାଣି
କେଶ ଧରିଣ ଜରାକୁ ବନ୍ଦୀ କଲେ ଆଣି ।
ଜରାସନ୍ଧର ଯେତେକ ସୈନ୍ୟ ରହିଥିଲେ
ରାଜା ବନ୍ଦୀ ହେବା ଦେଖି ସର୍ବେ ପଳାଇଲେ
ଜରାସନ୍ଧେ କାଖେ ଯାକି ପ୍ରଭୁ ହଳପାଣି
ଆନନ୍ଦରେ ଚାଲିଯାନ୍ତେ ମତ୍ତଗଜ ଜାଣି ।
ଜଗନ୍ନାଥେ ରହିଁଛନ୍ତି ଗିରିପରେ ଥାଇ
ଦେଖନ୍ତି ଜରାକୁ ନୟନ୍ତ ରେବତୀର ସାଇଁ ।
ଗିରି ପୋଡ଼ିଯାନ୍ତେ ଜୀବଜନ୍ତୁ ଏ ଆରତ
ଦୟାବନ୍ତ ସ୍ୱାମୀ ତାହା ଦେଖନ୍ତି ସାକ୍ଷାତ ।
ମେଘକୁ ଅଜ୍ଞା ଦେଲେ ତୁ ଏକ୍ଷଣି ବର୍ଷିବୁ
ଆଜ୍ଞାପାଇ ମେଘମାନେ ଏକ ହେଲେ ସବୁ ।
ପୁଣି ମନେ ବିଚାରିଲେ ଅନାଦି ମାଧବ
ଘୋଟୁ ଘୋଟୁ ଘଡ଼ିଏକ ବିଳମ୍ବ ହୋଇବ ।
ଭାହୁଁ ଭାହୁଁ ପୋଡ଼ିଗଲେ ଜୀବଜନ୍ତୁମାନେ
କିପରି ଉଦ୍ଧାର ହେବେ ଏଥିରୁ ଏମାନେ ।
ଏତେ ବୋଲିଣ ବାମନ ରୂପକୁ ସେ ଧରି
ଅଙ୍ଗୁଷ୍ଠି ଘେନି ପର୍ବତ ଯାକି ଆଣ୍ଠି କରି ।
ଚେଉଁଳିବା ବେଳରେ ଚିରି ତଳେ ଗଲା ଲସି
ରସାତଳରେ ପର୍ବତ ପ୍ରବେଶଇ ଆସି ।
ସେ ଦାଢେ ପାତାଳୁ ପଡ଼େ ଉଚ୍ଛୁଳି ସଲିଳ
ସୂର୍ଯ୍ୟମଣ୍ଡଳକୁ ଛାଣି ଉଠେ ମହାଜଳ ।
ବତିଶ ଯୋଜନ ପାଞ୍ଚଯୋଜନ ଓସାର
ଗିରି ଲସି ସଂସାରରେ ହୋଇଲା ସେଠାର ।
ପହଁରିଣ ଜନ୍ତୁମାନେ କୂଳରେ ଲଗିଲେ
ଦରପୋଡ଼ା କାଠସବୁ ଜଳେ ଭାସିଲେ ।
ଜୀବମାନେ ମହାସୁଖେ ଖାଇ ତହୁଁ ପାଣି
ବତିଶ ଯୋଜନ ଯାଏ ଉଠେ ତରଙ୍ଗିଣୀ ।
ସମସ୍ତେ ଆଶ୍ଚର୍ଯ୍ୟ ହେଲେ ନେତ୍ରେ ତାହା ଦେଖି
ସର୍ବ ଜନ୍ତୁ ଉପକାର କଲେ ପଦ୍ମ ଆଖି ।
ଶୁକ ପରୀକ୍ଷେ ବଦନ୍ତି ଶୁଣ ମହୀପତି
ଇତି ଶିକ୍ଷା ହରିବଂଶ ପୁଣ୍ୟମୟ କୀର୍ତ୍ତି ।
ପର୍ବତ ଉପରୁ ହରି ବାହାରିଣ ଯାନ୍ତେ
ବିଦ୍ୟାଧରୀ ନୃତ୍ୟ କଲେ ମିଳି ଶୂନ୍ୟ ପଥେ ।
ଗନ୍ଧର୍ବେ ଗାଇଲେ ଗୀତମାନ ତାଳ ଧରି
ମୁନିମାନେ ସାମବେଦ ପଢ଼ିଲେ ଉଚ୍ଚାରି ।
ଆନନ୍ଦରେ ସିଦ୍ଧଗଣ ସ୍ୱସ୍ତି ସ୍ୱସ୍ତି ଭଣି
ଅପସରାମାନେ ପୁଷ୍ପ ବରଷିଲେ ଆଣି ।
କୈଳାସକନ୍ଦରେ ଥାଇ ଭବାନୀ ଶଙ୍କର
ସିଂହନାଦ ବଜାଇଣ କଲେ ଜୟକାର ।
ଇନ୍ଦ୍ର ଆଦି କରି ଯେତେ ଦେବତା ନିଚୟ
ସାନନ୍ଦରେ ସ୍ୱର୍ଗେ ଥାଇ କଲେ ଜୟ ଜୟ ।
ଅନେକ ଦୂର ପର୍ଯ୍ୟନ୍ତ ଶ୍ରୀହରି ଚଳିଲେ
ବାରୁଣୀ ପର୍ବତେ ଯାଇ କ୍ଷଣକେ ମିଳିଲେ ।
ଉଗରେ କହିଲେ ଯାଇ ଯୁଧିଷ୍ଠି ଅଗ୍ରତେ
ହେ ଦେବ ଭୂମିପୁରରେ ବିଜେ ଜଗନ୍ନାଥେ
ବଳଦେବ ଆଦି ସଙ୍ଗେ କେହି ଜଣେ ନାହିଁ
ଶ୍ରୀପର୍ବତରେ ବିଜେକରି ଆସନ୍ତି ଗୋସାଇଁ ।
ଉଗର ବାରତା ଶୁଣି ଯୁଧିଷ୍ଠିର ରାଜା
ବୋଇଲେ କୃତାର୍ଥ ହେଲି ନିସ୍ତାରିଲି ଆଜ ।

ଜଗବନ୍ଧୁ ନାଥ ମୋର ପୁରେ ବିଜେ କଲେ
ଏଥିର ପୁଣ୍ୟ ଅଧିକ ଅଛି କି ମୋ ଭାଲେ ।
ଏତେକ ବୋଲିଣ ଭୀମ ଅର୍ଜୁନ ଯୁଧିଷ୍ଠି
ନକୁଳ ସହଦେବ ଯେ ଚଳିଲେ ପାଞ୍ଚେଟି ।
ନଗରୁ ବାହାର ହୋଇ ଖଣ୍ଡେ ଦୂର ଲାଗେ
ଦେଖିଲେ ଶ୍ରୀଜଗନ୍ନାଥ ଆସୁଛନ୍ତି ଆଗେ ।
ନୀଳ ଇନ୍ଦୀବର ପ୍ରାୟେ ବିରାଜଇ ତନୁ
ନିର୍ମଳ ଗଗନେ ଯେହ୍ନେ ଶୋଭେ ଇନ୍ଦ୍ରଧନୁ ।
ଗଗନେ ଆଦ୍ୟାବଳୀ କି ତେଜ ବିଶ୍ୱମୟେ
ଅଶେଷ କୋଟି କନ୍ଦର୍ପ କି ଅବା ଉଦୟେ ।
ସବୁ ଜନ ପ୍ରଜା ଦେଖି ହୋଇଲେକ ମୋହି
ବୋଇଲେ ନିଷ୍ଟୟ ପ୍ରଭୁ ନାରାୟଣ ଏହି ।
କେହୁ ବୋଲନ୍ତି ଆମ୍ଭର ବହୁତର ପୁଣ୍ୟ
କମଳା କାନ୍ତକୁ ଆଜ ଦେଖିଲୁ ନୟନ ।
ଏହାଙ୍କ ବାସ ବୈକୁଣ୍ଠେ ଏହି ଅନ୍ତର୍ଯ୍ୟାମୀ
ଦେବାଧିଦେବଙ୍କ ପରେ ଏତ ଶିରୋମଣି ।
ପୃଥିବୀର ଭାରଭର ନିବାରିବା ପାଇଁ
କଉତୁକେ ଜାତ ମର୍ତ୍ତ୍ୟେ ନରତନୁ ବହି ।
ଅକ୍ଷୟ ଅଜରାମର ପ୍ରଭୁ ବିଶ୍ୱବାସ
ସନ୍ଥଜନ ପାଳିବେ ଏ ଦୁଷ୍ଟ କରି ନାଶ ।
ଏସନ ବିଚାର କରୁଛନ୍ତି ନର ନାରୀ
ଜଗବନ୍ଧୁ ପଛେ ପଛେ ଯାନ୍ତି ଅନୁସରି ।
କୁଳବଧୂମାନେ ଲଜ୍ଜା ଗୁଡ଼ିଣ ଆରତ
କେଶବାସ ଅସମ୍ଭାଳେ ହୋଇ ଏକଚିତ୍ତ ।
କେ ବୋଲେ ଏହାକୁ ଯେଉଁ ବିଧାତା ଗଢ଼ିଲା
ବୈକୁଣ୍ଠେ ନ ରଖି କିପାଁ ମର୍ତ୍ତ୍ୟକୁ ଆଣିଲା ।
ଭ୍ରୂଲତାକୁ ଫୁଲାଇଣ ଗୁହାନ୍ତି ଅପାଙ୍ଗେ
ବିନ୍ଧେ ପଞ୍ଚବାଣ ଯାଇ କାମିନୀଙ୍କ ଅଙ୍ଗେ ।
ରାଜହଂସ ଲୀଳା ନିନ୍ଦେ ଚାଲିବାର ଠାଣି
ଅଣ୍ଡିର କୋକିଳ ପରି କହିବାର ବାଣୀ ।
ସୁସଞ୍ଜ ନାସିକା ତାଙ୍କ ବନ୍ଧୁଲି ଅଧର
ସିନ୍ଦୂରେ ମୁକୁତା ଶେ ଭାପାଏ ଯେ ପ୍ରକାର
ସଙ୍କୀର୍ଣ୍ଣମଧ୍ୟା ଶଙ୍କର ଡମ୍ବୁରୁକୁ ଜିଣି
ମତ୍ସ୍ୟ ଅଙ୍କିତ ଲୋହିତ ବିଶେ ପାଦପାଣି ।
ବିସ୍ତାରିତ ବକ୍ଷମୂଳ ଜାନୁ ଯେ ଏ ଭୁଜ
କଣ୍ଠୋଳ କର୍ଣ୍ଣମୂଳ ଯା ଅତିଶୟ ତେଜ ।

ଅଙ୍ଗୁଷ୍ଠି ଚମ୍ପକ କଢ଼ୀ ପ୍ରାୟେ ଦିବ୍ୟ ଶୋଭା
ମସ୍ତକରେ ବାନ୍ଧିଅଛି ଜାଇଫୁଲ ଗଭା ।
ଭୂମିକି ଆକର୍ଷି ଚାଲୁଛନ୍ତି ସିଂହଠାଣି
ଦେଖିଣ ମୂର୍ଚ୍ଛି ପାରିବ କେବଣ ତରୁଣୀ ।
ସୁଚିର ଚିକୁର କେଶ ଅତିଶୟ ଘନ
ସୁହାଣୀ ଛଟକେ ମୋହୁଛନ୍ତି ତ୍ରିଭୁବନ ।
କେ ବୋଲଇ ମୋହ ଘରଦ୍ୱାରେ କାର୍ଯ୍ୟନାହିଁ
ଏହାର ପାଶେ ଥିବଇଁ ଦାସୀ ପ୍ରାୟ ହୋଇ ।
ଏତେ ବୋଲି ନରନାରୀ ଧାମନ୍ତେ ଆରତେ
ବାରୁଣାବନ୍ତେ ଉଚାଟ ହୋଇଲେ ସମସ୍ତେ ।
ଶ୍ରୀକୃଷ୍ଣ ସଙ୍ଗେ ସକଳେ ଅଛନ୍ତି ଗୋଡ଼ାଇ
ଥୋକାଏ ଦୂରେ ପାଣ୍ଡବେ ଭେଟିଲେକ ଯାଇ
ଯୁଧିଷ୍ଠିଙ୍କ ମୁଖ ଚାହିଁ ପ୍ରଭୁ ବନମାଳୀ
ଛାମୁରେ ନିଜଗୁଳିଣ ଶୋଇ ଗଡ଼ଗଡ଼ାଳି ।
ମନ୍ତ୍ରୀ ସହଦେବ ଆଉ ନକୁଳ ଅର୍ଜୁନ
ନମସ୍କାର କଲେ ଯାଇ ଗୋବିନ୍ଦ ଚରଣ ।
ଜଗବନ୍ଧୁ ଅର୍ଜୁନକୁ ସମ୍ଭାଷଣ କଲେ
ଶ୍ରୀକରେ ଦେବ ଆଉଁଷି ମୁଖ ଚୁମ୍ବ ଦେଲେ ।
ନିସ୍ତର ଗଲି ବୋଲନ୍ତି ଲକ୍ଷ୍ମୀଦେବୀ ପାଇଁ
ଅନେକ କଲ୍ୟାଣ କଲେ ପୁଣି ତାହାକୁହିଁ ।
ନକୁଳ ସହଦେବ ଏ ସମ୍ଭାଷଣ କରି
ଇଷ୍ଟବନ୍ଧୁ ମର୍ଯ୍ୟାଦାକୁ କଲେ ଯେ ଯାହାରି
କୁନ୍ତୀ ନନ୍ଦନ ଧର୍ମଶୀଳ ଯୁଧିଷ୍ଠିର
ଜଗନ୍ନାଥ ରୂପ ଦେଖି ଆନନ୍ଦ ଅପାର ।
ଅନେକ ଚାଟୁବଚନ ପ୍ରବୋଧି କହିଲେ
ନଗର ଭିତରେ ପ୍ରଭୁ ବିଜେ କରିଗଲେ ।
ସେ ସ୍ଥାନରେ ବିଜେ କୋନ୍ତିଭୋଜର ନନ୍ଦିନୀ
ସେ ସ୍ଥାନେ ପାଣ୍ଡବ ସହ ମିଳି ଚକ୍ରପାଣି ।
ଏକଥେ ଯାଇଣ କୁନ୍ତୀ ପାଦରେ ଶୁତିଲେ
ସୋମବଂଶ ଠାକୁରାଣୀ ଦେଖି ହୃଷ୍ଟ ହେଲେ ।
କୁନ୍ତୀ ବୋଇଲେ ଉଠ ଉଠ ଚକ୍ରପାଣି
ଉଠ ଉଠ ପୁତ୍ରେ ମୋର କୁଳର କାରିଣୀ ।
ଧନ୍ୟ ଧନ୍ୟ ପୁତ୍ରେ ସୋମବଂଶର ଧାରଣ
ତୁମ୍ଭର ବଶରେ ଛନ୍ତି ଦେବ ନାରାୟଣ ।
ସର୍ବ ଅନ୍ତର୍ଯ୍ୟାମୀ ନାଥ କଳପନାନିଧି
ଅସ୍ଥିଧ ତୁ ନାଟକାବି ପାର ତୁମ୍ଭେ ସାଧି ।

ଧନ୍ୟ ମୋହର ଭଗିନୀ ଅଟେ ତୁମ ମାତ
ଅନ୍ତର୍ଯ୍ୟାମୀ ପୁରୁଷଙ୍କୁ ଗର୍ଭେ କଲ ଜାତ ।
ଅଶେଷ ବ୍ରହ୍ମାଣ୍ଡ ରୋମେ ଅଛନ୍ତି ଯେ ବନ୍ଧି
ସ୍ତ୍ରୀଶରୀର ହୋଇ ଗର୍ଭେ ଧରେ ତାହାଙ୍କହିଁ ।
ଧନ୍ୟ ମୋହର ଜନକ ଧନ୍ୟ ମୋର ମ ଯେ
ଚର୍ମ ନୟନେ ଦେଖିଲି ଦିବ୍ୟଜ୍ୟୋତିର୍ମୟେ ।
ଶୁଭାଶୁଭ କର୍ମ ବନ୍ଧୁ ଆନ କରିପାରୁ
ଅଭିମାନ ଭଞ୍ଜନ ତୁ ଆଶା କଳ୍ପତରୁ ।
ଅପାର ମହିମା ତାର କହିବଇଁ କେତେ
ଏକ ପଞ୍ଚ ପାଣ୍ଡବଙ୍କ କଥା କହେ ତୋତେ ।
ଦେବସୁର ପୁତ୍ରେ ଅଟନ୍ତି ଅଗ୍ର ଲେଖା
ଭୀଷ୍ମଦ୍ରୋଣ ଆଦି ବୀର ଯାହାଙ୍କର ସଖା ।
ତାହାଙ୍କ ପକ୍ଷେ ଏମାନେ ସାମାନ୍ୟତ ଜାଣ
କକ୍ଷାରେ କାରେଣି ମନ ହେଲେ ଅକାରଣ
ତୁମ୍ଭେ ଯେବେ ଅନୁରାଗ କରିବ ଶ୍ରୀପତି
ତେବେ ସଂସାରେ ରହିବ ପାଣ୍ଡବଙ୍କ କୀର୍ତ୍ତି ।
ଜଗନ୍ନାଥ ବୋଇଲେ ଗୋ ଚିନ୍ତା ତୁ ନ କର
ଅଚଳାଶିରୀ ଭୋଗିବେ ତୋ ହର କୁମର ।
ବଳବନ୍ତ ଗୁଣବନ୍ତ ଅଟନ୍ତି ତୋ ପୋଏ
ତୁମ ପ୍ରସାଦେ ଏହାଙ୍କୁ ନାହିଁ କଷ୍ଟ ଭୟେ ।
ମାଗୋ ଜାଣ ଧର୍ମ ସବୁ କାଳରେ ଯେ ରଖି
ଇହ ପରଲୋକେ ସିନା ଧର୍ମ ଅଟେ ସାକ୍ଷୀ ।
ଧର୍ମହିଁ ଅତ୍ୟନ୍ତ ସୂକ୍ଷ୍ମ ଖଣ୍ଡେ ସର୍ବଭୟେ
ଧର୍ମରେ ପ୍ରାଣୀଏ ଥିଲେ ନାହିଁ ଅପଚୟେ ।
ମାଗୋ ତୁମ ନିଜ ସ୍ୱାମୀ ପଣ୍ଡୁରାଜା ଥିଲେ
ଧର୍ମ ପାଳି ରାଜ୍ୟ ଛଇ ଥାପି ବନ ଗଲେ ।
ଭାଗ୍ୟବଳେ ପାଇଅଛ ତୁମ୍ଭେ ପାଞ୍ଚ ସୁତ
ଯୁଧିଷ୍ଠିର ରୂପେ ଧର୍ମ ହୋଇଛନ୍ତି ଜାତ ।
ସତ୍ୟବାଦୀ ଅଟନ୍ତି ଏ ଶ୍ରୀମନ୍ତ ପୁରୁଷ
ନାମ ସୁମରିଲେ ମହାପାପ ଯିବ ନାଶ ।
ଅକ୍ଷୟ ଅଜରାମର ଅଟନ୍ତି ଗୋ ଏହି
ଜନମ ମରଣ ବାଧା ନାହିଁ ଯାଙ୍କ ଦେହୀ ।
ମହୀମଣ୍ଡଳେ ଏ ହେବେ ଏକ ଛତ୍ରବର୍ତ୍ତୀ
ଏହାଙ୍କ ପାଦେ ପୂଜିବେ ଲକ୍ଷେକ ନୃପତି ।
ତୁ ପରମ ମାହେଶ୍ୱରୀ ଅଟୁଗୋ ସାକ୍ଷାତେ ।
ତୁ କିସ ନ ଜାଣୁ ମାତ କହିବି ମୁଁ ତୋତେ

ଦ୍ୱିତୀୟ ପୁତ୍ର ତୋ ହର ଭୀମ ମହାବଳୀ
ପୃଥ୍ୱୀ ଦେଖି ନ ସହଇ ଏହାର ଆନ୍ଦୋଳି ।
ଦ୍ୱାପରେ ଘରେଇ ମଲ୍ଲ ଭାଗ ନିବାରଣ
ଏ ତୋତେ କରିବ ନିସ୍ତେଁ ବହୁତ କାରଣ ।
ଅରଜୁନ ନାମେ ଯେଉଁ ପୁତ୍ର ଅଛ ପାଇ
ସାକ୍ଷାତେ ଦ୍ୱିତୀୟ କୃଷ୍ଣ ଅଟଇ ଗୋ ସେହି ।
ପୃଥ୍ୱୀଶ୍ୱର ନିଦାରିବୁ ଆମ୍ଭେ ତାକୁ ଯେନ
ସର୍ବ ଜଗଜ୍ଜିତା ଅଟେ ବୀର ଫାଲଗୁନ ।
ଚନ୍ଦ୍ର ଗଙ୍ଗାଧର ତାକୁ ହାରିବେ ସମରେ
ସ୍ୱରୂଣା ଲକ୍ଷେଶ୍ୱରା ଏକା ଜିଣିପାରେ ।
ଗଣ ଗନ୍ଧର୍ବ ଦେବତା ସୁରାସୁର ଯେତେ
ଜିଣିପାରିବ ଏ ଏକାବାଣେକେ ଜଗତେ ।
ନକୁଳ ବୋଲି କରିଣ ଯେଉଁ ପୁତ୍ର ଗୋଟି
କୁନ୍ତମୁନେ ଜିଣିପାରେ ନଗରର ସୃଷ୍ଟି ।
ଅଶ୍ୱ ପିଠିରେ ମେ ଯେବେ ଥିବଟି ଆରୋହି
ସକଳଙ୍କର ଭିତରେ ଜିଣନ୍ତା କେ କାହିଁ ।
ସହଦେବର ମହିମା କହିବଇଁ କିସ
ଭୂତ ଭବିଷ୍ୟ ତିନି କାଳ ଯାକୁ ହୁଏ ଦୃଶ୍ୟ ।
ଅଂଶାବତାର ଏହି ତ ନର ଶିରୋମଣି
ବୁଦ୍ଧିବଳେ ଜିଣିପାରେ ସକଳ ମେଦିନୀ ।
ଏମନ୍ତ ପୁତ୍ର ଜନମ କର କିମ୍ପା ଭୟେ
ସଂସାରର ଉପଦ୍ରବ ନାହିଁ ଅପଚୟେ ।
ଏମନ୍ତ ହେଲେ ବିଦୁର ଦାସୀପୁତ୍ର ମିଳି
ଜଗନ୍ନାଥଙ୍କ ପୟରେ କଲେ ନଉଗ୍ରୁଳି ।
ଗୁମ୍ଫରେ କର ଯୋଡ଼ିଣ ଭଣି ବହୁ ସ୍ତୁତି
ଜୟ ଜୟ ଜଗନ୍ନାଥ ଅଟ ଲକ୍ଷ୍ମୀପତି ।
ଜୟ ପ୍ରଭୁ ଜଗନ୍ନାଥ କର୍ମାକର୍ମଦାନୀ
ବିହନ୍ତା ପୁରୁଷ ତୁମେ କର ଲଭ ହାନୀ ।
ଜୟ ଆହେ ଜଗନ୍ନାଥ କ୍ଷୀରସିନ୍ଧୁଶାୟୀ
କରୁଣାସାଗର ନାଥ ଅଟ ଭବତ୍ରାୟୀ ।
ଜୟ ଆହେ ଜଗନ୍ନାଥ କଳ୍ପାଦି ପୁରୁଷ
କଳଙ୍କାଳ ପୁଂସ ଦେଖି ପାପ ହୋଏ ଧ୍ୱଂସ ।
ଜୟ ଆହେ ଜଗନ୍ନାଥ ଦେବ ଚିନ୍ତାମଣି
ଅଶେଷ କୋଟି ବ୍ରହ୍ମାଣ୍ଡେ ତୁମେ ଯେ କାରଣି
ଜୟ ଜୟ ଜଗନ୍ନାଥ ମହାଯୋଗଜିତା
ସ୍ଥାବର ଜଙ୍ଗମ କୀଟ ଆଦି ପଡ଼ଦାତା ।

ଜୀବ ଅଜୀବ ତୁମ୍ଭେ ଯେ ସବୁ ଜୀବମୟେ
ବାସନାବର୍ଜିତ ଅନଙ୍ଗମର ଅକ୍ଷୟେ ।
ଏହି ସଂସାର ତୁମର ଖେଳଘର ଲୀଳା
ଭବସାଗର ତରଣେ ତୁମ ନାମ ଭେଳା ।
ତୁମେ ଭଗବନ୍ତ ନାଥ ସର୍ବ ଗୁଣମଣି
ସପ୍ତଦ୍ୱୀପା ପୃଥିବୀରେ ତୁମେ ଯେ କାରଣୀ ।
ସେ ଜଗନ୍ନାଥ ପଦ୍ମରେ ରହୁ ମୋର ଚିତ୍ତ
ଅଚ୍ୟୁତ ଦାସ କହଇ ଭାବନା ଏମନ୍ତ ।
ଏସନକ ସ୍ତୁତି ଯହୁଁ କରିଲେ ବିଦୁର
ଶୁଣିଣ ସନ୍ତୋଷ ହେଲେ ଜଗତ ଈଶ୍ୱର ।
ଆହେ ବିଦୁର ବୋଲିଣ ପାଖକୁ ହକାରି
ଶ୍ରୀକରରେ ଆଶ୍ୱାସନା ଦେଲେ ଦଇତାରି
ତୁମେ ଆମର ଜନ୍ମାନ୍ତ ବାସନାକୁ ଘେନ
ଶାନ୍ତଶୀଳ ପୁରୁଷ ଯେ ଅଟ ମହାଜ୍ଞାନୀ ।
ବ୍ୟାସଙ୍କ ନନ୍ଦନ ତୁମ୍ଭେ ସର୍ବ ଗୁଣେଗ୍ରାହୀ
ଧୃତରାଷ୍ଟ୍ର ପାଣ୍ଡୁ ଯାର ବୈମାତ୍ରେୟ ଭାଇ ।
ଭାଗ୍ୟରେ ତୁମର ଆମ ସାକ୍ଷାତ ହେଲାଇଁ
ପାଣ୍ଡବ କଥା ତୁମଙ୍କୁ ଲାଗେ ସର୍ବଦାଇ ।
ବିଦୁର ବୋଲେ ନ କହ ମୋତେ ସ୍ୱାମି ଏହା
ପାଣ୍ଡବେ ଅଟନ୍ତି ସିନା ମୋର ପ୍ରାଣସାହା ।
ଏହା କହି ବାର ଛୁଡ଼ା କରପତ୍ର ଯୋଡ଼ି
ପୁନରପି ସ୍ତୁତି କଲେ ହୋଇ ଆଗବଢ଼ି ।
ଏହି ସମୟରେ ଆସି ଡାକେ ସୂପକାର
ମଣୋହି ସଜ୍ଜାମାନ ହେ ବେଗେ ନିର୍ଭିକର
ତାହା ଶୁଣି ଯୁଧିଷ୍ଠିର ସଙ୍ଗତେ ଶ୍ରୀହରି
ରାଜମାତ୍ର ବେଭାରରେ ମଣୋହିକୁ କରି ।
ଆଚମନ ସାରି କଲେ ତାମ୍ବୁଳ ଭୋଜନ
ଅଚ୍ୟୁତ ଦାସକୁ ବାଞ୍ଛା କର ଭଗବାନ ।

—*—

## ଜରାସନ୍ଧର ମୋହ ଏବଂ ବଳଦେବଙ୍କର ଗୋପପୁରରେ ପ୍ରବେଶ

ବଦନ୍ତି ଯେ ଇଦଂ ପ୍ରତିକାବ୍ୟ ଶୁକମୁନି
ଶୁଣ ହେ ପରୀକ୍ଷ ରାଜା ହରିବଂଶ ଧ୍ୱନି ।
ଏଥୁ ଅନନ୍ତରେ ବଳଦେବଙ୍କର କଥା
ସଂକ୍ଷେପ କରି କହିବା ଶୁଣ ମହାରଥା ।
ଗୋମନ୍ତ ପର୍ବତ ତଳେ ରାଜାମାନେ ଥିଲେ
ଜରାସନ୍ଧ ବନ୍ଧ ହେବା ପ୍ରତ୍ୟକ୍ଷେ ଦେଖିଲେ ।
ସମଦଣ୍ଡ ନଷ୍ଟ ହେଲେ ଧନହେଲା ଜୂର
ଯେ ଯାହା ରାଜ୍ୟକୁ ଗଲେ ସର୍ବ ଦଣ୍ଡଧର ।
ଏକେକ ତଇଷ ମାସ ତାତ ଗୁରୁତର
ଶଙ୍କା ମନରେ କରିଣ ସର୍ବ ନୃପବର ।
ଖରତରରେ ପଳାଇଲେ ଘୁଞ୍ଚିପିଞ୍ଚି ହୋଇ
ଯେ ଯାହାର ନଗରରେ ପ୍ରବେଶିଲେ ଯାଇ ।
ଜରାସନ୍ଧେ ଜାକ କାଖେ ଗ୍ରାମ ଚଳଗଲେ
ରଇବତ ପର୍ବତରେ ଯାଇଣ ମିଳିଲେ ।
ଗଙ୍ଗାର ଦକ୍ଷିଣ କୂଳେ ଗିରି ବଢପଦ
ଚାରି ଯୋଜନ ଦୀର୍ଘ ଯେ ପ୍ରସ୍ତ ଦ୍ୱିଯୋଜନ ।
ସେ ଗିରିତଳେ ମିଳିଲେ ରେବତୀର ପତି
ମନେ ବିଚାରନ୍ତି ଜରା ମଣିବ ଏ ଯନ୍ତ୍ରି ।
ଏକ ହସ୍ତରେ ଅଛଇ ହଳ ଯେ ମୂଷଳ
କାଖରୁ ଆଣି ଧଇଲେ ଜରାସନ୍ଧ ବାଳ ।
ଉର୍ଦ୍ଧ୍ୱେ ବୁଲାଇଣ ତାକୁ କରୁଛନ୍ତି ରୋଷେ
ଅଦଭୁତେ ଶବ୍ଦେଗୋଟା ଶୁଭିଲା ଆକାଶେ ।
ହେ ବଳରାମ ସ୍ୱାମି କୋପ କର ଶାନ୍ତ
ଜରାସନ୍ଧ ପ୍ରାଣଦାନ ଦିଅ ଯେ ଏ ଧାନ୍ତ ।
ଏହାରେ ଦେବକାର୍ଯ୍ୟତ ଅଛି ହାଦେ ଜାଣ
ତେବେ ସଂସାରର ଭାର ହେବ ନିବାରଣ ।
ତୁମେ ଦେବ ଯେ ଅନାଦି ପୁଂସ ବିଶ୍ୱମୟେ
ଯୋଗିଜନମାନେ ତୋତେ କରୁଥାନ୍ତି ଲୟେ ।
ତୁମର କୋପରେ ବର୍ତ୍ତିବ କି ଜରାସନ୍ଧ
ବାଳେ କ୍ଷମାକର ସ୍ୱାମି ପ୍ରଭୁ ସଦାନନ୍ଦ ।
ଦେବଙ୍କ ସ୍ତୁତିରେ ସ୍ୱାମି ସନ୍ତୋଷହୋଇଲେ
ବୁଲାଇ ବୁଲାଇ ତାକୁ ଫୋପାଡ଼ିଣ ଦେଲେ ।
ଶିମିଳି ତୁଳା ପ୍ରାୟେ ଉଡ଼ିଣ ସେ ଗଲା
ତିନିଶତ ଯୋଜନରେ ଯାଇଣ ପଡ଼ିଲା ।
ଦେବଗିରି ନାମେ ତହିଁ ପର୍ବତ ସେ ଗୋଟି
ଭୈରବୀ ଧାର ତହିଁରୁ ଯମୁନାକୁ ଫୁଟି ।
ପଞ୍ଚ ଯୋଜନ ପର୍ଯ୍ୟନ୍ତେ ଘରଗ୍ରାମ ନାହିଁ
ଉଡ଼ିଣ ଜରାସନ୍ଧ ସେ ପଡ଼ିଲା ତହିଁ ।
ଖୁଣ୍ଟିମ୍ପି ଫିଟିଲେ ଯେହ୍ନେ ଅଣାଯୁକ୍ତ ଭେଳା
ପଡ଼ି ତହିଁ ମୂର୍ଚ୍ଛା ଗଲା ନୃପ ଅନର୍ଗଳା ।

ରଜନୀ ହୁଅନ୍ତେ ଲଗେ ଚନ୍ଦ୍ରମା କିରଣ
ଜରାସନ୍ଧ ଦେହେ ଆସି ପଶିଲା ଶୀତଳ ।
ସଚେତ ହୋଇଣ ଉଠି ବସେ ନୃପସିଂ
ଦଶଦିଗକୁ ଚାହିଁଲା ପାଶେ କେହି ନାହିଁ ।
କେତେବେଳେ ଜ୍ଞାନପାଇ ଗଲାକ ପଳାଇ
ଭଗ୍ନବଳ ଭେଟେ ପାଞ୍ଚ ଦିବସରେ ଯାଇ ।
ଅମନାତ୍ୟ ପୁରୋହିତ ମନ୍ତ୍ରୀର ସନ୍ନତେ
ନିଜ ରାଜ୍ୟେ ପ୍ରବେଶିଲା ଯାଇଣ ତ୍ୱରିତେ ।
ଜରାକୁ ଫିଙ୍ଗି ଦେଇଣ ସେ ପ୍ରଭୁ ମୁଷଳୀ
ଗୋପ ନଗରୀ ସୀମାରେ ଯାଇ ବେଗେ ମିଳି ।
ଯମୁନା ନଦୀ କୂଳରୁ କେତେଦୂର ଗଲେ
ଗୋଧିକା ଘାଟରେ ଯାଇ ପ୍ରବେଶ ହୋଇଲେ
ଦେଖିଲେ ମାଧବୀ-ଲତା ଅତି ପରିମଳ
ଅବସନ୍ତରେ ବସନ୍ତ ବହେ ସୁଶୀତଳ ।
ଫଳିତ ପୁଷ୍ପ ତରୁ ଏ ଅତି ଶୋଭମାନ
ପଲ୍ଲବ ବସନ୍ତ ଯେହ୍ନେ ଚଇତ୍ର କାନନ ।
ନାନାପକ୍ଷୀ ଜନ୍ତୁ ଚହିଁ କରୁଛନ୍ତି ଧ୍ୱନି
ପକ୍ୱଫଳମାନ ଝଡ଼ି ପଡ଼ନ୍ତି ଅବନୀ ।
କ୍ରୀଡ଼ୁଛନ୍ତି ମଧୁକରେ ପୁଷ୍ପ ଗନ୍ଧବାସେ
ମୟୂର କୁମ୍ଭାଟୁଆ ସେ ଡାକନ୍ତି ଚୌପାଶେ ।
କୁଞ୍ଜବନ ନେହେ ଦେଖି ଦେବ କାମପାଳ
ପୂର୍ବର କଥାମାନ ସେ ସୁମରି ସକଳ ।
ସଂଗ୍ରାମ ଭୂମିରେ ବହୁ ପରିଶ୍ରମ ପାଇ
କଦମ୍ବ ତରୁ ତଳରେ ମିଳିଲେ ସେ ଯାଇ ।
ସୁବର୍ଣ୍ଣ ଚଉଁରୀ ପରେ ଯାଇଣ ବସିଲେ
ତରୁକୁ ତିନିବାର ସେ ପ୍ରଦକ୍ଷିଣ କଲେ
ଶରୀରରେ ତୃଷା ତାଙ୍କୁ ବହୁଅଛି କଣ୍ଠି
ଡାହାଣ ହସ୍ତେ ଲଙ୍ଗଳୁ କାଢ଼ି ଫଳାଗୋଟି ।
ଆକର୍ଷଣ ମୁନ ଯେଣ ହାଣି ତରୁହୋଟେ
ଝରିଲା କଦମ୍ବ ରସ ପିଇ ମନହୃଷ୍ଟେ ।
ଶୁଦ୍ଧ ଶୁକଳ ବରନ ଗୋକ୍ଷୀରର ଜଳ
ଗଣ୍ଡୁନଳୀ ପରି ହୋଇ ଝରେ ଝର ଝର ।
ଦକ୍ଷିଣ ହସ୍ତ ପାତିଲେ ସେ ମୁଷଳଧାରୀ
ତୃଷା ଖଣ୍ଡିବା ଆଶାରେ ଭକ୍ଷି କାଦମ୍ବରୀ ।
କ୍ଷଣେ କ୍ଷଣେ ବିଶ୍ରାମିଣ ପିଅନ୍ତି ସଲିଳ
ଏମନ୍ତ ବସନ୍ତେ ରହି ଅସ୍ତ ମେରୁତଳ ।

ଲଗିଲା ଧାତୁ ମାତୁ ଯେ ଘୋଟେ ବ୍ରହ୍ମରନ୍ଧ୍ର
ହୋଇ ଅଚେତନ ଘୂମାଇଲେ ରାମଚନ୍ଦ୍ର ।
କହୁଁ କହୁଁ କାଦମ୍ବରୀ ଲଗିଲା ଘୂର୍ଣ୍ଣି
ଅଚେତନ ହୋଇ ସ୍ୱାମୀ ପଡ଼ି ମହୀ ଲୋଟି ।
କଦମ୍ବର ମୂଳେ ଦେବ ନିଦ୍ରା ଗଲେ ଯହୁଁ
ଗୋପାଳେ ଆସିଣ ରୁଣ୍ଡ ହୋଇଲେକ ତହୁଁ
ନନ୍ଦ ଉପନନ୍ଦ ସୁନନ୍ଦ ସେ ଚନ୍ଦ୍ରସେଣା
ଆବର ମହାଝଡ଼ ସେ ଗୋଷ୍ଠିର ପାତନା ।
ଏରୂପେ ଗୋପାଳମାନେ ମିଳିଲେକ ପାଶେ
ବଳଦେବ ବହୁଳିତ କାଦମ୍ବରୀ ରସେ ।
କଦମ୍ବ ବୃକ୍ଷରେ ହଳ ମୂଷଳ ସେ ଡେରି
ମତ୍ତଭାବେ ଅଚେଷ୍ଟାରେ ନିଦ୍ରିତ ସେ ହଳୀ
କଣ୍ଠତଟ ନୀଳବର୍ଣ୍ଣ ଶୋଭାକୁ ଧରଇ
ଷୋଳକଳା ସୂର୍ଯ୍ୟଜ୍ୟୋତି ଯେହ୍ନେ ବିକାଶଇ
ଧବଳ ପର୍ବତ ପ୍ରାପ୍ତ ହୋଇ ଦେବସ୍ୱାମୀ
ପଶ୍ଚିମକୁ ଶିରକରି ଶୋଇଛନ୍ତି ଭୂମି ।
ଦେଖିଣ ଗୋପାଳେ ଏକୁଁ ଆରେକ ବିସ୍ମର
କମ୍ପୂତ ମାଯ୍ୟାନ୍ତି ଏହାଜାଣି ତ ନ ପାରି ।
ଅକ୍ରୂର ସଙ୍ଗତେ ରାମକୃଷ୍ଣ ଚଳିଗଲେ
ଏତେଦିନ ଗଲା ଗୋପେ ଲେଉଟି ନଇଲେ ।
ଥୋକେ ଗୋପାଳ ବୋଲନ୍ତି କୃଷ୍ଣଛନ୍ତି କାହିଁ
ଥୋକେ ବୋଲନ୍ତି ଅବା ସେ ଗଲେଣି ପଳାଇ
ଥୋକାଏ ବାଟ ରୁଳନ୍ତି ଥୋକେ ଚଢ଼ି ଗଛେ
ଥୋକେ ବୋଲନ୍ତି ଅବା ସେ ଆସୁଛନ୍ତି ପଛେ
ଥୋକାଏ ଧାମନ୍ତି ଖଣ୍ଡେ ଦୂରେ ଏଣେତେଣେ
କେ ବୋଲନ୍ତି ଅବା ଲୁଚି ଦେଇଛନ୍ତି ବଣେ ।
କେ ବୋଲନ୍ତି ଖୋଜିବା ହୋ ଗୁଲଘରେଯାଇ
ଆନ ବାଟେ ଅବା ସେହୁ ଗଲେ ଆଗହୋଇ
ଥୋକାଏ ଗୋପାଳମାନେ ଏମନ୍ତ ବିଚାରି
ନନ୍ଦରାଜା ମନ୍ଦିରକୁ ଧାଇଁ ଶୀଘ୍ର କରି
ଗୋପ ନଗର ଭିତରେ ଛନ୍ତି ଯେତେ ଜନ
ରାମକୃଷ୍ଣ ଅଇଲେଣି ବୋଲି ହୃଷ୍ଟମନ ।
ଦେଖିବେ ବୋଲି କରିଣ କଲେ ହାଲହୋଳି
ମଦନରେ ଅଚେତନ ସର୍ବ ଗୋପୀବାଳୀ ।
କେହୁ ଅସମ୍ଭାଳେ ଏକ ଆରେକକୁ ପୃଚ୍ଛି
କେ ବୋଲଇ ସଖି ଆଗୋ କୃଷ୍ଣ କାହିଁ ଅଛି

କେହୁ ବୋଲଇ ମୋହଖି ଶୁଣିଲ ଏକ୍ଷଣି
କଦମ୍ବ ମୂଳରେ ଛନ୍ତି ହଳୀ ବେଣୁପାଣି ।
ଏହା ଶୁଣି ଲୋକମାନେ ବେଗେ ଧାଇଁଯାଇ
ଦେଖିଲେ କଦମ୍ବମୂଳେ ହଳୀଛନ୍ତି ଶୋଇ ।
ଏହା ଦେଖିଣ ଗୋପୀଏ ଝରଣ୍ଠାସ ଗୁଡ଼
ନୟନ ଥନଥନ ଯେ ହୃଦେ ହସ୍ତ କୋଡ଼ ।
ସ୍ୱପନର ଫଳ କାହିଁ ମଭାକେ ପାଇବୁ
ସତେ ଶ୍ରୀକୃଷ୍ଣଙ୍କୁ ଆମ୍ଭେ ନୟନେ ଦେଖିବୁ ।
କାମଦେବ ପର ଯାର ଜ୍ୟୋତି ଦଶୁଥିଲା
ଏକାବେଳକେ ସମସ୍ତ ବିଫଳ ହୋଇଲା ।
କେବୋଲଇ ଯେବେ ଅଇଲେଣି ସଙ୍କର୍ଷଣ
ନିଶ୍ଚେ ଶ୍ରୀକୃଷ୍ଣ ଆସିବେ ବୋଲ ତଥ୍ୟ ଜାଣ ।
କେ ବୋଲଇ କଥା ନିଶ୍ଚେ ଜାଣିଲଇଁକନା
ନିଦ୍ରା ଭାଙ୍ଗିଲେ ନୟନ୍ତ କଥା ଜାଣ ସିନା ।
ଲୁହାଲୁହି ହୁଅନ୍ତି ଯେ ଗୋପବାଳୀମାନେ
ବଳଦେବ ଚେତ ଭାବୁଛନ୍ତି ମନେ ମନେ ।
ଯଶୋଦାଙ୍କୁ ମୁଖ୍ୟକରି ସଙ୍ଗ ଗୋପ ଜୁଣୀ
ଶତେପୁର କରି ବେଢ଼ି ଦେଖି ହଳପାଣି ।
ନିର୍ମଳ ଆକାଶୁ ଯେହ୍ନେ ଖସେ ଶଶଧର
କ୍ଷୀରସମୁଦ୍ର ତଟରେ କିବା ଚନ୍ଦ୍ରଧର ।
ତେସନ ସଂଜାତ ଦିଶେ ବଳଦେବ ତନୁ
ଦେଖି ସ୍ତୁତି କଲେ ନାନାବିଧ ଶତମନୁ ।
କେତେବେଳ ଅନ୍ତେ ନିଦ୍ରା ଭାଙ୍ଗୁ ଅନ୍ତର୍ଯ୍ୟାମୀ
ଶ୍ରୀକରେ ନୟନ ମଳ ଗୁହିଁ ଦେବସ୍ୱାମୀ ।
ସଂଗ୍ରାମର ପରିଶ୍ରମ କାଦମ୍ବରୀ ନିଶା
ବେଳୁବେଳ ଅଙ୍ଗେ ଆସି ଘୋଟେ ଶ୍ରମଯୋଷା
ମୁଖ ପଖାଳିଣ ସ୍ୱାମୀ ଲୋଡ଼ଇ ଜଳ ଭକ୍ଷି
ଦେଖିଲେ ଯମୁନାନଦୀ ଖଣ୍ଡେଦୂରେ ଅଛି ।
ଆକର୍ଷି ଲଙ୍ଗଳ ପୁଣି ଦେଲେକ ବତାଇ
ସନ୍ନିଧିକୁ ଆଣିଲେ ସେ ଯମୁନା ବୁହାଇ ।
କୋଶେକ ଓସାର ତାର ଗଭୀର ବିତାଳ
ହଳେ ଚନ୍ଦ୍ରପର ବୁମାଇଲେ କାମପାଳ ।
ଗୋବର୍ଦ୍ଧନ ପର୍ବତରୁ କଦମ୍ବର ଯାଏ
ପାଞ୍ଚକୋଶ ପରିଯନ୍ତେ ବାହୁ ଦେବରାୟେ ।
ଗୋପୀ ଗୋପାଳେ ଦେଖିଣ ଅପରୁପମଣି
ହୃଦପାଦ ଚଳେ ଖଟି ଯମୁନାର ପାଣି ।
ମାନନ୍ଦ ହୋଇଣ ଦେବ ରେବତୀର ପତି
ନଦୀର ଭିତରେ ପଶି ତୃଷାକଲେ ଶାନ୍ତି ।
ରୋହିଣୀ ନନ୍ଦନ ମହାତୃଷାରେ ଆରତ
ପେଟଭରି ଜଳ ପିଇ ତୃଷାକଲେ ଶାନ୍ତ ।
ଶରୀର ସୁସ୍ଥ ହୋଇଲା ନିଶାଜ୍ଞଙ୍କ ଗୁଡ଼
ଦେଖିଲେଗୋପୀଗୋପାଳେପାଶେଛନ୍ତି ବେଢ଼ି
ନନ୍ଦ ଯଶୋଦା ବୋଇଲେ ବଳଦେବେ ଗୁହିଁ
ତୁମ୍ଭେତ ଅଇଲ କୃଷ୍ଣ ଉହିଛନ୍ତି କାହିଁ ।
ଅକ୍ରୂର ତୁମଙ୍କୁ ଯେଉଁଦିନ ଘେନିଗଲା
ସେହିଦିନୁ ଗୋପପୁର ଅନ୍ଧାର ଦିଶିଲା ।
ସପତାଙ୍କେ ଲକ୍ଷ୍ମୀ ଏଥୁ ପଳାଇଲେ ଗୁଡ଼
ଅନେକ ପ୍ରମାଦ ଆସି ପଡ଼ିଲାକ ମାଡ଼ ।
ଗଜ ବଦନ ତସ୍କର ଖଣ୍ଡ ଖଣ୍ଡାଇତ
ନାନା ଅରିଷ୍ଟି ଏଠାରେ ପଡ଼ିଲା ସନ୍ତତ ।
ଚରଣ ନ ପାଇ ଚରି ନ ପାରନ୍ତି ଗାବ
କ୍ଷିର ନ ଦିଅନ୍ତି ବତ୍ସାଠାରେ ନାହିଁ ଭାବ ।
ଦଣ୍ଡପାଟ ଉତପାତ ଦୁଷ୍ଟଙ୍କର ଡ଼କା
ଅରକ୍ଷିତ ହେଲୁ ବାବୁ କେହୁ ନାହିଁ ସଖା ।
ଆମ୍ଭଙ୍କୁ ଯେଦିନୁ ତୁମ୍ଭେ ଦୁହେଁ ଗଲ ଗୁଡ଼
ଉପର ପର୍ବତ କିବା ପଡ଼ିଥାଇ ମାଡ଼ ।
ଏମନ୍ତେ ନନ୍ଦ ଯଶୋଦା ଦୁହେଁ ଶୋକଭରେ
ସବୁ ବୃତ୍ତାନ୍ତ କହିଲେ ରାମଙ୍କ ସ୍ମୁମୁରେ ।
ଗୋପୀ ପଗ୍ଭରନ୍ତି କାମପାଳ ମୁଖ ଗୁହିଁ
ତୁମ୍ଭେ ତ ଅଇଲ କୃଷ୍ଣ ନଇଲେ କିମ୍ପାଇଁ ।
ଆମ୍ଭମାନଙ୍କୁ ଗୁଡ଼ିବାପାଇଁ ହେଲା ଚିତ୍ତ
ଜଣ ଜଣଙ୍କରେ ଆମ୍ଭେ ଅଛୁ ସିନା ଭୃତ୍ୟ ।
ପଥୁକା ପକ୍ଷୀଏ ସବେ ହେଲୁ ଗୋପନାରୀ
ଏତେବଡ଼ ଆଶା କେହ୍ନେ ଖଣ୍ଡିଲେ ଶ୍ରୀହରି ।
ବଳରାମଙ୍କ ଆସିବା ବାର୍ତ୍ତା ତଥ୍ୟ ପାଇ
ଗୋରକ୍ଷକ ବାଳପୋଏ ଆସି ବେଗେ ଧାଇଁ
ପୂର୍ବର ଭଜନା ହେତୁ ହୁଅନ୍ତି ଆନନ୍ଦିତ
ସମସ୍ତଙ୍କୁ ଆଶ୍ୱାସନ୍ତି ରେବତୀର ନାଥ ।
ପୁଣି ହଳୀ କହନ୍ତି ଯେ ନନ୍ଦମୁଖ ଗୁହିଁ
ହେ ପିତା ଆମ୍ଭର ଆତ୍ମା ତୁମ୍ଭଠାରେ ରହି ।
ଜନମ ଜନମ ଭୂଇଁ ଗଙ୍ଗାତଟେ ବାସ
ନିଶ୍ଚୟ ଏହା ପାଆନ୍ତି ପୁଣ୍ୟବନ୍ତ ପୁଂସ ।

ଆମର ଜନମଭୂମି ଅଟେ ଗୋପ ସୀମା
ପଟାନ୍ତର ନାହିଁ ପୁଣ୍ୟ ଭୂମିର ମହିମା ।
ନନ୍ଦ ପର ପିତା ମାତା ଯଶୋଦାର ପର
ପୁଣ୍ୟବନ୍ତ ପ୍ରାଣି ଏହା ଭାଗ୍ୟେ ପାଇବର ।
ରାଜା ଆଜ୍ଞାରେ ଅକ୍ରୂର ରଥେ ଘେନିଗଲା
ଆମଙ୍କୁ ଦେଖିଣ କଂସ ଜୀବନ ତେଜିଲା ।
ବହୁ ଉପଦ୍ରବ ମାତା ଲଗେ ସେହିଦିନୁ
କେ ରଖିବ ଆମଙ୍କୁ ଗୋ ଦଇବର ବିନୁ ।
କଂସର ଅଟେ ଶ୍ୱଶୁର ଜରାସନ୍ଧ ରାଜେ
କୋପେ ଧାଡ଼ିଦେଲା ସପ୍ତଦଶ ବାରଯାଏ ।
ତ୍ରିରଙ୍ଗଣା ଲକ୍ଷେ ରାଜା ଘେନିଣ ବାହିଲା
ଅଥୟ କରି ଆମଙ୍କୁ ବହୁ ଦୁଃଖ ଦେଲା ।
ଗୋପାଳେ ବୋଇଲେ ଆମେ ଜାଣିଛୁ ଏମାନ
ଏ ରାଜ୍ୟଯାକେ ପୂରିଲେ ଆସି ତାର ସୈନ୍ୟ
ତେଣୁ ଆମେ ପାଇଲୁଣି ଅନେକ ଅବସ୍ଥା
ଆଜଯାଏ ଛାଡ଼ି ନାହିଁ ହୃଦୟରୁ ଚିନ୍ତା ।
ରାମ ବୋଇଲେ ଦେଲଣି ବହୁବାର ଧାଡ଼ି
ଏହିରୂପେ ଆମେମାନେ ପଳାଉ ଯେ ଛାଡ଼ି ।
ଚୌରାଶୀ କୋଟି ଯାଦବେ ଉଗ୍ରସେନ କରି
ମଧୁବନ ଛାଡ଼ିଗଲୁ ସର୍ବେ ଯେ ଯାହାରି ।
ଆମେ ଦୁଇଭାଇ ଗଲୁ ଆତଙ୍କେ ପଳାଇ
ଗୋମନ୍ତ ଗିରି ଉପରେ ଉଠିଲୁ ଯେ ଯାଇ ।
ସେ ପର୍ବତ ପରେ ବହୁ କୁଢ଼ାଇ କାଠନ୍ତ
ପୋଡ଼ିଦ୍ୟନ୍ତେ ଆମେ ତହୁଁ ଅଇଲୁଁ ତୁରନ୍ତ ।
ମୋର ପଛେ ଥାଇ ଡେଇଁଗଲେ ଦେବହରି
କେଣେଗଲେ ସେହି ମୁଁ ନ ଜାଣେ ତଥ୍ୟକରି
ନନ୍ଦ ବୋଇଲେ ଏ କଥା ଜାଣୁ ତ ଆଗହୁଁ
ଯେବେ ଅରିଷ୍ଟି ସହିଲ ଧର୍ମ ସାକ୍ଷୀ ହେଉ ।
ପୂତନା ଷଣ୍ଢ ଶକଟା ଯାମଳା ଯେ ବକା
ତୃଣାବର୍ତ୍ତ ଅଘାସୁର ଯେତେ କଂସ ସଖା ।
ଏମାନେ କରିଲେ ବାବୁ ଯେତେ ଉପଦର୍ପ
ପ୍ରତ୍ୟକ୍ଷେ ଏମାନେ ଆମେ ଜାଣିଛୁରେ ବାପ ।
ଏହା କହି ମାତା ପିତା ହଳୀ ସଙ୍ଗେ ଘେନି
ନିଜପୁରେ ପ୍ରବେଶିଲେ ଯାଇ ତତକ୍ଷଣି ।
ଗୋପପୁରେ ନର ନାରୀ ଯେଝା ପୁରେ ଗଲେ
ସୁପକ୍ୱ ପଦାର୍ଥ ମାତା ରାମେ ଭୁଞ୍ଜାଇଲେ ।

କଥାନ୍ତେ ବୋଧ କରିଲେ ସେ ଗୋପିକାବୃନ୍ଦ
ବହୁତ ଆନନ୍ଦ ହେଲେ ଯଶୋଦା ଯେ ନନ୍ଦ
ଅନ୍ଧଙ୍କୁ ପ୍ରାପତ ହେଲା କିବା ବେନି ଚକ୍ଷୁ
ନିଧି ମିଳିଲା କି ଅବା ଦରିଦ୍ର ଯେ ଭିକ୍ଷୁ ।
ତେମନ୍ତ ସନ୍ତୋଷ ହେଲେ ନନ୍ଦ ଯଶୋବନ୍ତୀ
କି ଅବା ହୋଇଲା ତାଙ୍କୁ ସପ୍ତନିଧି ପ୍ରାପ୍ତି ।
ସ୍ୱର୍ଗପୁରେ ଦେବତାଏ ସାଧୁ ସାଧୁ କଲେ
ଧନ୍ୟ ଗୋପନଗ୍ରେ ନର ନାରୀ ଜନ୍ମ ହେଲେ
ଚର୍ମ ନୟନେ ଦେଖିଲେ ବ୍ରହ୍ମ ବିଦ୍ୟମାନ
ସପ୍ତପୁରୁଷ ତାରିଲେ କର୍ମର ଲିଖନ ।
ସର୍ବଗୋପିକା ଗୋପାଳ ଯେଝାପୁରେ ଗଲେ
ଅନ୍ନ ବ୍ୟଞ୍ଜନ ଭୁଞ୍ଜିଣ ସନ୍ତୋଷ ହୋଇଲେ
ଏହିରୂପେ ତହିଁ ଗତ ହେଲା ଦିନା ଚାରି
ନନ୍ଦକୁ ବୋଲନ୍ତି ରାତ୍ରି ଦେବ ହଳଧାରୀ ।
ହେ ପିତା ଆମ୍ଭଙ୍କୁ ବଡ଼ ପଡ଼ିଲା କଟାଳ
ପରବତ ପୋଡ଼ିଦେଲା ମଗଧ ଭୂପାଳ ।
ଧର୍ମେଣ ମୁହିଁ ତହିଁରୁ ଅଇଲି ଉବୁରି
କୃଷ୍ଣ କେଣେ ଗଲେ ଜଣାନାହିଁ ତଥ୍ୟକରି ।
ତ୍ରିରଙ୍ଗଣା ଲକ୍ଷେ ରାଜା ସଙ୍ଗେ ଆସ କଲା
ଏକୁ ଆର ସମର୍ଥ ଯେ ବଳେ ମହାବଳୀ ।
ପରବତ ପୋଡ଼ିଦେଲା କୃଷ୍ଣ ଛନ୍ତି ଏକା
ସଙ୍ଗତରେ କେହି ନାହିଁ ଶସ୍ତ୍ର ନାହିଁ ଦେଖା ।
ଆପେ ପଛେଥାଇ ପେଷିଦେଲେ ଆଗ ମୋତେ
ନ ଶୁଣି ପ୍ରମାଦ ପଡ଼େ ଭୟ ହୁଏ ଚିତ୍ତେ ।
ସ୍ୱରଦିନ ହେଲା କୃଷ୍ଣ ଚନ୍ଦ୍ର ନାହିଁ ଦେଖି
ପଞ୍ଚଭୂତ ଆତ୍ମା ମୋର ହୁଏ ମହା ଦୁଃଖୀ ।
ପ୍ରମାଦ ଭୂମିରେ ମୁହିଁ ଅଛି ତାଙ୍କୁ ଛାଡ଼ି
ତ୍ରିରଙ୍ଗଣା ଲକ୍ଷେ ରାଜା ପର୍ବତକୁ ବେଢ଼ି ।
କାର୍ଯ୍ୟ କାରଣ ଅର୍ଥରେ ତାଙ୍କୁ ବାଟ ରହି
ଅବଶ୍ୟ ଖଣ୍ଡେ ଦୂରରୁ ପାଶ୍ଚୋଟିଣ ଯାଇ ।
ଏତେ ଦିନ ହେଲା ନଇଲେକ ଦେବରାୟେ
ପଥ ଅନୁସରିବା ନା ଭେଟ ହେବାଯାଏ ।
ତୁମ୍ଭେ ଆମ ମାତା ପିତା ଜୀବ ଅଧିକାରୀ
ତୁମର ଗୁଣମାନ କି ପାଶୋରିଣ ପାରି ।
ଯହିଁ ଥିଲେ ଆମେ ତୁମ ପୁତ୍ର ଅଟୁ ସିନା
ସବୁବେଳେ ମନେ ଥିବୁ ନ କର ଶୋଚନା ।

ଏ ଗୋପ ଆବୋର ତୁମ୍ଭେ ଥାଅ ସ୍ଥିର ହୋଇ
ଜଗବନ୍ଧୁଙ୍କୁ ଘେନିଣ ଆସେ ଶୀଘ୍ର ଯାଇ ।
ନନ୍ଦବୋଇଲେ ବାପରେ ବିଳମ୍ବ ନକର
ଦୁଇ ଭାଇ ଭେଟ ହୋଇ ଆସ ଧାଡିକାର ।
ଅନ୍ନ ବ୍ୟଞ୍ଜନ ସମ୍ପୃକ୍ତ କରିଥିବ ସର୍ବି
ରଜମା ଦିବସ ଥିବୁ ଉଜାଗର ହୋଇ ।
ତୁମ୍ଭର ଶ୍ରୀମୁଖ ବାରେ ଦେଖିଲୁ ଏଥାନ୍ତ
ଶ୍ରୀକୃଷ୍ଣ ଦେଖିଲେ ହେବ ଆମ୍ଭମନ ଶାନ୍ତ ।
ଉଦ୍ଧବ ତହୁଁ ବହୁତ ପ୍ରତିଜ୍ଞାକୁ କରି
ଯେତେ ଶୀଘ୍ର ଆଣ ଯାଇ ତୁମ୍ଭେ ଦେବହରି ।
ହରି ବୋଇଲେ ପ୍ରତିଜ୍ଞା ଶୁଣ ଏବେ ମୋର
ଅବଶ୍ୟ ବେନି ଭାଇତ ଆସିବୁଁ ସତ୍ୱର ।
ଗୋପୀ ଗୋପାଳ ସମସ୍ତ ପ୍ରବୋଧନା କରି
ବାହାର ହୋଇଲେ ତହୁଁ ଦେବ ହଳଧାରି ।
ପାଦୁକା ମନ୍ତ୍ରବଳରେ ଧାଡିକାରେ ଗଲେ
ମଧୁବନ ନିକଟରେ ଯାଇ ପ୍ରବେଶିଲେ ।
ନମିଲେ ସେ ଉଗ୍ରସେନ ଇନ୍ଦୁମନ୍ତ୍ରୀ ପାଦେ
ସର୍ବ ଯାଦବ ମାନଙ୍କୁ ମାନ୍ୟ କରି ହରଷେ ।
ବସୁଦେବ ପୁରେ ଯାଇ ଆନନ୍ଦେ ରହିଲେ
ସଂଗ୍ରାମର ବାର୍ତ୍ତା ଦେବ ସକଳ କହିଲେ ।
ସେ ବଳରାମଙ୍କ ପାଦେ ସଦା ମୋ ଭକତି
ଅଚ୍ୟୁତ ଦାସ କବିକ ହିଅ ସଦଗତି ।



## କୃଷ୍ଣଙ୍କର ମଥୁରାପୁରେ ପ୍ରବେଶ

ଏଥୁଅନ୍ତେ ଶୁକମୁନି ପରୀକ୍ଷିତେ ସ୍ନିହିଁ
ବୋଇଲେ କହିବା ନୃପ ଶୁଣ ମନଦେଇ ।
ବାରୁଣାବନ୍ତ ପୁରକୁ କୃଷ୍ଣ ଯାଇଥିଲେ
ପାଣ୍ଡବଙ୍କ ସଙ୍ଗେ ଥୋକେ ଦିନ ବିହରିଲେ ।
ଜରାସନ୍ଧ ସଙ୍ଗ ଗ୍ଲୁଡ଼ି ମାନ ଚକ୍ରବର୍ତ୍ତୀ
ହସ୍ତୀନା କଟକେ ଯାଇ ମିଳିଲେ ତୁରିତ ।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା ଭୂରିଶ୍ରବା କର୍ଣ୍ଣ
ବାହ୍ଲିକ ଯେ ଜୟଦ୍ରଥ ଦୁଷ୍ଟ ଦୁଃଶାସନ ।
ଅଠର ଅକ୍ଷଉଣୀ ବଳ ଜରା ସଙ୍ଗେ ଥିଲେ
ଅପଚୟ ପାଇ ନିଜ ରାଜ୍ୟରେ ମିଳିଲେ ।
ସନ୍ଧ୍ୟାବକାଶେ ଅସ୍ଥାନେ ବିଜେ କୁରୁସାଇଁ
ଏହି ସମୟେ ଉତର ବାର୍ତ୍ତା ଦେଲି ନେଇ ।
ଚିଦ୍ଧ ଦେବ ମାନଗୋବିନ୍ଦ ସାବଧାନେ ଶୁଣ
ବାରୁଣାବନ୍ତ କଟକେ ଛନ୍ତି ନାରାୟଣ ।
ଶୁଣି ସନ୍ତୋଷ ହୋଇଲେ କୁରୁ ନୃପମଣି
ପୁରୋହିତ ବୋଲେ ଯିବ ଜଇନ୍ତା ଏକ୍ଷଣି ।
ବାରୁଣାବନ୍ତରେ କୃଷ୍ଣ ଅନନ୍ତ ଯେ ରହି
ଆମ୍ଭ ହୋଇଲେ ବୋଲିଣ ଆଣିବ ମଣାଇ ।
ଶୁଣି ଧୌମ୍ୟ ପୁରୋହିତ ତତକ୍ଷଣେ ଗଲେ
ଜଇନ୍ତ ଦେଖି ବାରୁଣାବନ୍ତରେ ମିଳିଲେ ।
ପାଣ୍ଡବନ୍ତ ଘେନି ବିଜେ ପ୍ରଭୁ ଯଦୁସାଇଁ
ଏ ସମୟେ ଗୁରୁ ବାର୍ତ୍ତା କହିଲେକ ଯାଇଁ ।
ତୁମ୍ଭ ପାଶେ ବିଜେ କଲେ ଧୌମ୍ୟ ପୁରୋହିତ
ଶୁଣି କରି କୃଷ୍ଣଚନ୍ଦ୍ର ହେଲେ ଆନନ୍ଦିତ ।
ତହୁଁ ଧୌମ୍ୟ ପୁରୋହିତେ ପ୍ରବେଶ ହୋଇଲେ
ଦେଖି ପଞ୍ଚପାଣ୍ଡବେ ଯେ ତାଙ୍କୁ ମାନ୍ୟ କଲେ ।
ଦୁର୍ଯ୍ୟୋଧନ ବାର୍ତ୍ତା ଜଣାଇଲେ ଜଗନ୍ନାଥେ
ଶୁଣିଣ ବହୁ ସନ୍ତୋଷ ହେଲେ ଲକ୍ଷ୍ମୀକାନ୍ତେ ।
ହସ୍ତିନାକୁ ବିଜେ କଲେ ପାଣ୍ଡବନ୍ତ ଘେନି
ବେଳ ସାତ ଘଡ଼ିରେ ସେ ମିଳିଲେ ତକ୍ଷଣି ।
ଗୋବିନ୍ଦ ବିଜୟ ବାର୍ତ୍ତା ପାଇ କୁରୁରାୟେ
ବାଟକୁ ପାଶ୍ଚୋରି ଆସେ ତହୁଁ ସେ ଥୋକାଏ
ଶ୍ୱେତ ଗିରିପାଶେ ମଧୁବନ ଟୋଟା ଗୋଟି
ସେସ୍ଥାନେ ସକଳେ ଯାଇହେଲେଭେଟାଭେଟି
ସୋମବଂଶ ବୃଦ୍ଧ ଯେ ଭୀଷ୍ମ ମହାରଥୀ
କର୍ଣ୍ଣ ଅଶ୍ୱତ୍ଥାମା ଦ୍ରୋଣଛନ୍ତି ତହିଁ କତି ।
ଦୁର୍ଯ୍ୟୋଧନ ଦୁଃଶାସନ ସହ ଶତେ ଭାଇ
ନଗ୍ର ଭିତରକୁ ସର୍ବେ ବିଜେକଲେ ଯାଇ ।
ଥୋକାଏ ଦିନ ରହିଣ ତହିଁ ବଂଶୀଧାରି
ବୀରବର ଅର୍ଜ୍ଜୁନକୁ ସଙ୍ଗେ ଘେନିକରି ।
ସତ୍ୱରେ ମିଳିଲେ ଯାଇ ଦମଘୋଷ ଦେଶେ
ବନ୍ଧୁପଣେରେ ପ୍ରବେଶି ସେଠାରେ ହରଷେ ।
ଦମଘୋଷ ଭାରିଯା ଦୈବକ୍ଷୀ ନାମେ ନାରୀ
ଶିଶୁପାଳ ମାତା ଉଗ୍ରସେନର କୁମାରୀ ।
ଯୁକତରେ ଅଟନ୍ତି ସେ କୃଷ୍ଣଙ୍କ ମାଉସୀ
ସାଷ୍ଟାଙ୍ଗରେ ପ୍ରଣିପତ୍ୟ ହେଲେ ବିଶ୍ୱବାସୀ ।
ଦେଖି ସୁରଗଣେ ତହିଁ କଲେ ସାଧୁ ସାଧୁ
ପାଟବଂଶୀ ରାଜା ଦମଘୋଷ ତୁମ୍ଭ ବନ୍ଧୁ ।

ଦମଘୋଷ ନିଜଗୃହେ କରେ ପାଦତଳେ
ସଙ୍ଗରେ ଅଛଇ ତାର ପୁତ୍ର ଶିଶୁପାଳେ ।
ରାମକୃଷ୍ଣ ନନ୍ଦ ସେହ୍ନ କରେ ଅନୁକ୍ଷଣେ
ଅଂଶବତାର ହୋଇଣ ଅଛି ଆଦ୍ୟଜନ୍ମେ ।
ତାଙ୍କୁରେ ନୟନ ତାର ଅଛଇ ଗୁପତେ
ଧାତ୍ରମାନେ ଜାଣନ୍ତି ତା ଜାଣନ୍ତି ଅନ୍ୟତେ ।
କେଶ ଭିତରେ ବନ୍ଧନ ନୟନ ଦିଓଟି
ଖୋଲିଲେ ଦିଶଇ ତାକୁ ଚରାଚର ସୃଷ୍ଟି ।
ଭୂବଲୋକ ମହଲୋକ ସ୍ୱର୍ଲୋକ ସବୁତେ
ଖୋଲିଲେ ଦିଶଇ ତାକୁ ଚରାଚର ଯେତେ ।
ଯେବଣ ନୟନେ ଗୁପ୍ତେ ବ୍ରହ୍ମାଣ୍ଡ ସର୍ଜି
ଶ୍ରୀକୃଷ୍ଣ ଖୋଲିବା ମାତ୍ରେ ହୋଇଗଲା ବୁଜି ।
ସେହି ଗୁପତ ହୁଅନ୍ତେ ସେ ଶିଶୁପାଳର
ହୋଇଗଲା ହୀନବୀର୍ଯ୍ୟ ପୁରୁଷାର୍ଥ ତାର ।
ତାଦେଖି ଲୋକେ ବୋଇଲେ ଆରେକକୃତନ୍ତୁ
କଳଙ୍କ ଖଣ୍ଡିଣ ଗଲା ଚନ୍ଦ୍ରମାର ଦେହୁଁ ।
ଏଡ଼େ ବଡ଼ କୁମରର ଗୁପ୍ତବ୍ୟାଧି ଗଲା
ବିପରୀତ କଥା ଏହା ଶୁଣାତ ନଥିଲା ।
ଏସନ ଦେଖିଣ ସର୍ବେ ସାନନ୍ଦ ହୋଇଲେ
ପରୀକ୍ଷିତ ନୃପତିଙ୍କୁ ଶୁକ ଯେ ବୋଇଲେ ।
ଯେ ଦିନ ଜନ୍ମିଲା ଦମଘୋଷର କୁମର
ଦେଖିଲେ ତିନୋଟି ନେତ୍ର ଶିରେ ଅବତାର
ଶୁମୁରେ ମିଳିଲେ ଆସି ନାରଦ ମହର୍ଷି
ଦେଖି ଦମଘୋଷ ତାଙ୍କୁ ବିନୟରେ ଭାଷି ।
କମ୍ପୁତ ମାୟା ହେ ମୁନି କାହିଁ ଅଛୁ ଦେଖି
ବିପରୀତ କଥା ନର ଶିରେ ଏକଆଖି ।
ନାରଦ ବୋଇଲେ ତହୁଁ ଏସନକ ବାଣୀ
ଏ ନୟନ ପ୍ରସାଦରେ ପୂର୍ବ ଜଗଜ୍ଜିଣି ।
ଆବର ବଚନ ଏକ କହୁଥିବା ତଥ୍ୟ
କା ଆଗେ ନ କହୁ ଏହା ରଖିବ ଗୁପତ ।
ଯାହାର ଦୃଷ୍ଟି ମାତ୍ରକେ ନେତ୍ର ଯିବ ଲୁଚି
ତାର ହସ୍ତେ ଏହା ମୃତ୍ୟୁ ଦୈବ ଅଛି ସଞ୍ଚି ।
ଏସନ ସନ୍ଦେଶ ମୁନି ପୂର୍ବୁ ଛନ୍ତି କହି
ଚକ୍ଷୁତାର ଲୀନ ହେଲା କୃଷ୍ଣ ମୁଖ ଚାହିଁ ।
ମାଉସୀ ବୋଲନ୍ତି ବାବୁ ଶୁଣ ନନ୍ଦସୁତ
ତିନକାଳ କଥା ତୁହି ଭଲରେ ଜାଣୁତ ।

ନ ଜାଣି ଅପ୍ରୀତି କଲା ଦୁଷ୍ଟ ରାଜା କଂସ
ତାହାକୁ ଦୋଷ ଦେବା ସେ ଅଳ୍ପ ଲୋକ ...
ତାକୁ ମୋର ପୁତ୍ର ଶିଶୁପାଳ ବଡ ଦୁଷ୍ଟ
ତୁମ୍ଭ ସଙ୍ଗରେ ଅପ୍ରୀତି କରେ ସେ ପାପିଷ୍ଠ ।
ବାବୁ ତୁମ୍ଭଙ୍କୁ ଅଧିକ କହିବଇଁ କସ
କ୍ଷମା କରିବୁରେ ବାବୁ ତାର ଦଶଦୋଷ ।
ହରି ବୋଇଲେ ପାଳିବି ସତେବାର ଯାଏ
ତିନିବାର ସତ୍ୟ କଲି ସମ୍ଭବ ଗୋ ମାୟେ ।
ଏଥୁ ବଳି ଦୋଷ ଯେବେ କରିବ ତୋ ସୁତ
ଦଣ୍ଡକୁ ଶାସ୍ତି ପାଇବ ଜାଣ ଏହା ତଥ୍ୟ ।
ଦଇବକୀ ବୋଲେ ତୁମ୍ଭେ ଅଟ ମାୟାଧର
ତୁମ୍ଭର ମହିମା ବ୍ରହ୍ମା ଶିବେ ଅଗୋଚର ।
ଜଗନ୍ନାଥ ବୋଇଲେ ଗୋ ଯେଝାର କରମ
ଦୋଷାନୁରୂପରେ ଦଣ୍ଡ ଦିଏ ସିନା ଧର୍ମ ।
ଦଇବକୀ ବୋଲେ ମୁହିଁ ଜାଣଇନା ବାବୁ
ସନାତନ ପୁଂସ ତୁମ୍ଭେ ଭିଆଇଛ ସବୁ ।
ପୋଡ଼ୁ ମେ ହର କରମ କେଉଁ ପାପ କଲି
ବିଗପ ଜ ପୁତ୍ର ଅର୍ଜି ଅକାରଣ ହେଲି ।
ଏତେ ବୋଲି ଚଳିଗଲେ ଆପଣା ଭବନ
ଦ୍ୱାଦଶ ଦିବସ ତହିଁ ରହି ଜନାର୍ଦ୍ଦନ ।
ଅର୍ଜ୍ଜୁନଙ୍କୁ ସଙ୍ଗେ ଘେନି ମଥୁରା ବିଜୟେ
ନମସ୍କାର କଲେ ଯାଇ ଉଗ୍ରସେନ ପ୍ରାୟେ ।
ତଦନ୍ତରେ ଗଲେ ବସୁଦେବଙ୍କ ମନ୍ଦିର
ଯଥାବିଧିରେ ସେ ମାନ୍ୟ କଲେ ଯେ ଯାହାର
ଚୌରାଶୀ କୋଟି ଯାଦବ କୃଷ୍ଣ ଆଗେ ମିଳି
ଯେଝା ଅନୁରୂପେ ମାନ୍ୟ କଲେ ବନମାଳୀ
ଯଥାନୁକ୍ରମେ ରହିଲେ ସେ ଯାଦବ ବୃନ୍ଦ
ସଙ୍ଗତେ କ୍ରୀଡ଼ା କରନ୍ତି ଦେବ ସଦାନନ୍ଦ ।
ଧନ୍ୟ ସେହୁ ମଧୁବନ ଧନ୍ୟ ଗୋପନାରୀ
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେ କରି ।
ପ୍ରତ୍ୟକ୍ଷେ ଚର୍ମନୟନେ ଦେଖି ଦେବରାୟେ
ନିରଞ୍ଜନ ନିରାକାର ପ୍ରଭୁ ବିଶ୍ୱମୟେ ।
ଧନ୍ୟ ସେ ଦ୍ୱାପରଯୁଗ ବିଷ୍ଣୁ ଜନମିଲେ
ଧନ୍ୟ ଧନ୍ୟ ସେ ସମୟେ ଯେତେ ଜନ୍ତୁ ଥିଲେ
ନିରାକାର ବିଷ୍ଣୁ ଅବତାର ଦେହବନ୍ତ
କଳ୍ପାଦି ପୁରୁଷ ଯାର ନାହିଁ ଆଦି ଅନ୍ତ ।

ଦ୍ୱାପରର ଭରାଭର ନିବାରିବା ଅର୍ଥେ
ଚତୁର୍ଦ୍ଧା ରୂପରେ ଜନ୍ମ ଲଭି ପୁଣ୍ୟପଥେ ।
କୃଷ୍ଣ ବଳଦେବ ଅନିରୁଦ୍ଧ ଯେ ପ୍ରଦ୍ୟୁମ୍ନ
ପ୍ରକୃତି ଅବ୍ୟକ୍ତ ପୁରୁଷ ଏ ବିରଜନ୍ମ ।
ମନପବନ ଯେ ତିଆଁ ଚଇତନ୍ୟ ମୂଳେ
ସହଜେ ଉଜାଣି ଯାଉ ଲଗି କର୍ମବଳେ ।
ଅଚ୍ୟୁତାନନ୍ଦ ବାନା ଯେ ନିରନ୍ତରେ ବନ୍ଧ
ଜଗତ ଚ୍ୟୁତ ହୋଇଲେ ଯାର ଚ୍ୟୁତ ନାହିଁ
ସୃଷ୍ଟି ପାତନା ଯାହାର ଖେଳଘର ନାଟ
ତ୍ରିଗୁଣ ରଜ୍ଜୁ ବନ୍ଧନେ ସର୍ବେ କରି ମୋଟ ।
ଚାରିଖାନି ଚାରିବାନି ମୂଳ ଜନ୍ତୁ ଜୀବ
ଜଳ ସ୍ଥଳ ପୂରିଣ ଯେ ଅଛଇ ସରବ ।
ଶ୍ରୁତି ସ୍ମୃତି ପ୍ରକୃତିରେ ବିସ୍ତରିଣ ମୋକ୍ଷ
ଧର୍ମ ଅଧର୍ମ ବୋଲିଣ ଅଟେ ବେନି ପକ୍ଷ ।
ଧର୍ମରୁ ଜାତ କରିଲେ ଦେବତା ସକଳ
ଅଧର୍ମରୁ ଜାତ ହେଲେ ସର୍ବ ଦୁଷ୍ଟବଳ ।
ଏମାନଙ୍କୁ ଜାତକରି ଅଛନ୍ତି ସେ ପୁଣି
ଲେଉଟି ସଂହାର କରେ ଯଥାକାଳ ଜାଣି ।
ଶତ୍ରୁ ମିତ୍ର ଉଦାସିତା ନାହିଁ ନା ଯାହାର
ତେଣୁକରି ଶଙ୍ଖ ଚକ୍ର ଗଦା ଅବଧାରି ।
ସନ୍ଥ ଜନ ପ୍ରତିପାଳ ଦୁଷ୍ଟ କରି ନାଶ
ପୃଥିବୀର ଭରାଭର କରିବେ ଉଶ୍ୱାସ ।
ଲବଣ ସମୁଦ୍ର ତଟେ ଶୋଭେ ନୀଳଗିରି
ଚତୁର୍ଦ୍ଧା ରୂପରେ ତହିଁ ବିଜେ ଦେବହରି ।
କଳ୍ପବଟ ନିକଟରେ ପ୍ରସାଦ ଶୋଭନ
ପୁଷ୍କର ମଣ୍ଡପ ତଳେ ରତ୍ନସିଂହାସନ ।
ସେ ସିଂହାସନ ଉପରେ ବିଜେ ଦେବରାଜ
ସମ୍ମୁଖରେ ଗରୁଡ଼ ଯନ୍ତ ବିନତା ଆତ୍ମଜ ।
ଲକ୍ଷ୍ମୀ ସରସ୍ୱତୀ ଆଉ ବିମଳା ଯେ ଦେବୀ
କୋଟି ବିଦ୍ୟାଧରୀ ପୁଣି ଅନନ୍ତ ଭୈରବୀ ।
ସନକ ସନାତନର ମୂଳେ ଦେବ କୋଟି
ବାରବ୍ରତ ବାରତୀର୍ଥ ପାଦେଛନ୍ତି ଖଟି ।
ଏକବାରେ ଦରଶନେ ଖଣ୍ଡେ ସର୍ବ ଭୟେ
ପାପାଧିପାପ ବିଧ୍ୱଂସ ଚାରିଯୁଗ ଯାଏ ।
ସର୍ବାଳଙ୍କାର ଭୂଷଣ ଯାହାର ଶରୀର
ଗନ୍ଧ ପୁଷ୍ପ ଆଭରଣ ନାନା ପରକାର ।
ହୀରା ନୀଳା ପ୍ରବାଳ ଯେ ବୈଦୂର୍ଯ୍ୟ ମୁକୁତା
ଶତେବାନ ହୋମ ମାଣିକ୍ୟରେ ମୋତିମୁକ୍ତା ।
ଧୂପ ଦୀପ ନଇବେଦ୍ୟ ସୁଧା ଷଡ଼ରସ
ନାନା ରଙ୍ଗରେ ଭୋଗନ୍ତି ସେବଣ ପୁରୁଷ ।
ଏକେ ନାଟ ବଦ୍ଧବାର ତୀର୍ଥଯାତ୍ରା ମୂଳେ
ଇନ୍ଦ୍ର ସମ୍ପଦ ବହଇ ପାଦପଦ୍ମ ତଳେ ।
ନମସ୍ତେ ସେ ଜଗବନ୍ଧୁ ସର୍ବ ଅନ୍ତର୍ଯ୍ୟାମୀ
ରାଗ ମୋହ ଅହଙ୍କାର ବିବର୍ଜିତ ସ୍ୱାମୀ ।
ଲକ୍ଷ୍ମୀର ବଲ୍ଲଭ ସ୍ୱାମୀ ଶାରଦା ବିଳାସ
ଶ୍ରୀପଦେ ଭକ୍ତ କରେ ଅଚ୍ୟୁତାନନ୍ଦ ଦାସ ।
କର୍ଣ୍ଣକୁହ୍ୱେ ଏ ଅମୃତ ସୁଧାରସ ବାଣୀ
ପଦେ ପଦେ ମୁକ୍ତି ପଥ ଧିତା ହୁଏ ଆଣି ।
ଅତିଭାଗ୍ୟ ଭାଗବତ ସାରସ୍ୱତ ଗ୍ରନ୍ଥ
ଅଷ୍ଟାଦଶ ପୁରାଣ ଏ ବେଦାନ୍ତ ମୋକ୍ଷାର୍ଥ ।
ପାପ ହରଣରେ ହରିବଂଶ ହରି କୀର୍ତ୍ତି
ଜ୍ଞାନସାହିତ୍ୟ ପରେ ଏ ଅଟେ କୃଷ୍ଣ ସ୍ତୁତି ।
ଯେଉଁ କୃଷ୍ଣ ନାମ ସୁମରନ୍ତେ ଏକବାର
ମାୟା ମୋହ ସଂସାରରୁ ହୋଇ ଯାନ୍ତି ପାର
ସେ ଯାହାନୁରୂପ ବଳ ଭିଆଇ ଯେଉଁଠାରେ
ଏତେ ଯୋଗ ଭିଆଇଲେ ଯେ ଦେବମର୍ତ୍ତ୍ୟରେ
ମଧୁବନ ପୁରେ ରହି କୃଷ୍ଣ କାମପାଳ
ଉଗ୍ରସେନ ଆଦି ସେବା କରନ୍ତି ସକଳ ।
ଇନ୍ଦ୍ରଦେବ ଦେଲେ ଦଶସହସ୍ର ନାୟିକା
ଅମର ବିଦ୍ୟାଧରର ମୂଳେ ଇନ୍ଦୁରେଖା ।
କନ୍ନରୀ ଅପସରା ସର୍ବେ ଅଂଶ ଅବତାର
ଜନ୍ମଜନ୍ମାନ୍ତରେ ସେହୁ ଦାସୀ ଶ୍ରୀକୃଷ୍ଣର ।
ତାହାଙ୍କୁ ଘେନିଣ କ୍ରୀଡ଼ାକରି ଦେବରାୟେ
ବସୁଦେବର ମନ୍ଦରେ ଥାନ୍ତି ସର୍ବଦାଏ ।
ସମସ୍ତେ ଦେବକୀଙ୍କୁ ଯେ କରୁଥାନ୍ତି ସେବା
ଅନ୍ତଃପୁରର ଭିତରେ ଥାନ୍ତି ନବଯୁବା ।
ସୁଦାସ ପୁତ୍ର ସୁରଥ ନାମରେ କୁମର
ଟିକାଇତ ହେଜା ସେହୁ ରାଜ୍ୟକୁ ଉଦ୍ଧାର ।
ଇନ୍ଦ୍ର ମନ୍ତ୍ରୀ ଦେବଙ୍କର ଅଷ୍ଟ ଅଷ୍ଟ ପୁତ୍ର
ସପତାଙ୍କେ ରହିଥାନ୍ତି ପାଶୋରନ୍ତି କଷ୍ଟ ।
ସାତବଂଶ ଯାଦବ ଚୌରାଶୀ କୋଟି କୁଳ
କୁବେର ସମାନ ଧନବନ୍ତ ସେ ସକଳ ।

ବହ୍ମଶୂଦ୍ର କ୍ଷତ୍ରୀ ବୈଶ୍ୟ ଆଉ ନାନାଜାତି
ସମସ୍ତେ ସୁଖରେ ଥାନ୍ତି ନାହିଁ ଭୟ ଭ୍ରାନ୍ତି ।
ଶ୍ରୀକୃଷ୍ଣଙ୍କ ପଞ୍ଚଆତ୍ମା ଅଟେ ଫାଲ୍‌ଗୁନ
ସବୁବେଳେ ଅର୍ଜୁନଙ୍କୁ ସଙ୍ଗତରେ ଘେନ ।
ସାନ୍ଦୀପନଙ୍କ ନିକଟେ ବିଦ୍ୟା ଶିକ୍ଷା ଯାହା
ଏକାଙ୍ଗେ ପାର୍ଥେ କହିଲେ କୃଷ୍ଣଚନ୍ଦ୍ର ତାହା
ନର ନାରାୟଣରୂପେ ହୋଇ ଅବତାର
ଏହି ନିବାରିବେ ମହୀଦେବୀ ଭାରଭାର ।
ହରିବଂଶ ପୁରାଣର ବାଣୀ ପୁଣ୍ୟମୟେ
ଇଦଂ ତ୍ରୟୋଦଶ ଅଧ୍ୟା ସମାପତ ହୁଏ ।

— ❋ —

## ଜରାସନ୍ଧର ଅଷ୍ଟାଦଶବାର ଧାଡ଼ି

ଏଥୁଅନନ୍ତରେ ତହୁଁ କେତେ ଦିନ ଗଲା
ଜରାସନ୍ଧ ଆଗେ ଯାଇ ଚର ଜଣାଇଲା ।
ହେ ଦେବ ବଳବନ୍ତ ହେ ନୃପ ଗୁଣରାଶି
ମଥୁରା ବାରତା ଏବେ ଶୁଣ ଦଣ୍ଡେ ବସି ।
ଗୋମନ୍ତ ଗିରି ଉପରୁ ରାମ କୃଷ୍ଣ ଗଲେ
ମଥୁରା କଟକେ ଯାଇ ବାହୁଡ଼ି ମିଳିଲେ ।
ତହୁଁ ଦଶଗୁଣେ ନିରମାଣ ସେହି ଗଡ଼
କାଙ୍ଗୁଲା କମଳଶିରା ଶୃଙ୍ଗ ବନ୍ଧା ଫେର ।
ସାତତାଳ ଖଣ୍ଡା ଆଉ ନବତାଳ ଉଚ
ରତ୍ନାକର ପାଟଣା ତହିଁକି ନୁହେଁ ସଞ୍ଚ ।
ଚୌରାଶୀ କୋଟି ଯାଦବେ ସର୍ବେ ଛନ୍ତି ତହିଁ
ଆନନ୍ଦରେ ବିହରନ୍ତି ମନେ ହିଂସା ନାହିଁ ।
ଜରାସନ୍ଧ ବୋଲେ ତହିଁ ଜାଣଇ ସକଳ
ଯାଦବଙ୍କ କଥା ଶୁଣି ଦେହେ ବାଜେ ଶଲ୍ୟ ।
କୌଣସି ପ୍ରକାରେ ତାଙ୍କୁ ନ ପାରିଲି ଜିଣି
ଅନେକ କଟାଳ ସେ ଯେ କଲେ ମୋତେ ପୁଣି
ତାହାଙ୍କଯୋଗେ ପ୍ରମାଦ ପଡ଼େ ମୋତେ ଜନା
ମନ ସିନା ଜାଣଇ ଯେ ମନର ବେଦନା ।
ସ୍ୱରଉଣା ଲକ୍ଷେ ରାଜା ଜିଣି ଭୁଜବଳେ
ଗୌଡ଼ ଦୁହିଙ୍କି ହାରିଲି କର୍ମର ଅବଳେ ।
ମାୟାଯୁଦ୍ଧ ସପ୍ତଦଶ ବାର ସେ କରିଲେ
ଧରୁ ଧରୁ ହାତରୁ ସେ ଫୋପଡ଼ାଇ ଗଲେ ।
ଦେବଶସ୍ତ୍ର ଆଦି ତାଙ୍କ ଅଙ୍ଗେ ନ କାଟଇ
ରଥୀ ମହାରଥୀମାନେ ଯାନ୍ତି ସମ୍ଭୂଇଁ ।
ଧନ ଭଣ୍ଡାର ଆଦି ମୋ ସର୍ବନାଶ ଗଲା
ସ୍ୱର ସହସ୍ର ନୃପତି ଗଣେ ବିନାଶିଲା ।
ଛଅ ସହସ୍ର ପଡ଼ିଲେ ରଣେ ବୀରଗଣେ
କେ ତାହା ସଂକ୍ଷେପ କରି କହିବ ବଚନେ
ମୋର ଭଳି ଲୋକ ହାରି ପଳାଇ ଅଇଲା ।
ପ୍ରାଣଭୟେ କିଏ କେଉଁଣେ ପଳାଇଣ ଗଲା ।
ସ୍ୱରଉଣା ଲକ୍ଷେ ରାଜା ସୈନ୍ୟ ସଙ୍ଗେ ଥିଲେ
ଅସମର୍ଥ ଦେଖି ମୋତେ ଛାଡ଼ି ପଳାଇଲେ ।
ପର୍ବତେ କରୁଡ଼ ଥିଲା ବଳରାମ ମୋତେ
ପୁଣି ସେ ଫୋପାଡ଼ି ଦେଲା କି ବରୁର ଚିତ୍ତେ
ହଇବେ ମୁଁ ବର୍ତ୍ତିଅଛି ପ୍ରାଣେ ଆଜଯାଏ
ସେ କଥା ମନେ ପଡ଼ନ୍ତେ ଚିତ୍ତ ଲାଗେଭୟେ
ପୋଡ଼ୁ ମୋର ରାଜ୍ୟଭାର ଯିବି ଦେଶାନ୍ତର
ଈଶ୍ୱରଙ୍କୁ ସେବାକରି ମାଗିବଇଁ ବର ।
ସାଗରରେ ଦେହ ଝାସି ମାଟିବଇଁ ଭିକ୍ଷା ।
ରାମ କୃଷ୍ଣ ଜିଣିବାକୁ ଅଟେ ମୋର କକ୍ଷା
ସାତବଂଶ ଯାଦବଙ୍କ ମସ୍ତକ କାଟିବି-
ଆହୁତିରେ ଦେଇ ଆଣି ଶିଳାରେ ବାଟିବି ।
ନୋହିଲେ ତ ଜୀବନକୁ ନାହିଁ ମୋର ଆଶ
କା ମୁଖ ନ ଚାହିଁ ଦେବି ଅନଳରେ ଝାସ ।
କ୍ଷତ୍ରିୟ କୁଳକୁ ନିନ୍ଦା ଅଟଇ ଏମାନ
ଯୁଦ୍ଧ ହାରି କେତେ କାଳ ରଖିବି ଜୀବନ ।
ଯେବଣ ହନୁ ଅଇଲା ଯୁଦ୍ଧେ ଲଙ୍କା ପାଇ
ସେ ହନୁ ହୃଦରେ ବ୍ୟଥା ରଖିଛି ପୂରାଇ ।
ସାମ ଦାନ ଭେଦ ଦଣ୍ଡ ବିଷ ପ୍ରୟୋଗରେ
ଶତ୍ରୁକୁ ଜିଣିବ ନୃପ ନାନା ଉପାୟରେ ।
ରାମ କୃଷ୍ଣ ଜିଣିବାକୁ ଯାର ବଳ ଅଛି
ମୁଁ ତାକୁ ସେବା କରିବ ନିଷ୍ଠାପୂର୍ବ କହୁଛି
ନୋହିଲେ ବା ଦେବତାଙ୍କୁ ପ୍ରସନ୍ନ କରାଇ
ଧନ ଜୀବନ କୁଟୁମ୍ବ ନିଷ୍ଠେ ତେଜିବଇ ।
ଏ ଦେହ ଅଜରାମର ଦେବ କେତେ ଦିନ
ଦିନେ ତ ହୋଇବ ନିଷ୍ଟେ କାଳର ଅଧୀନ
ବିଶୁଦ୍ଧ କ୍ଷତ୍ରି ମୁଁ ଯେ ଅଟେ ସୂର୍ଯ୍ୟବଂଶୀ
ହିନହାତେ ପରାଭବ ପାଇ ହେଲି ଧ୍ୱଂସି
ମୋ ଲାଗି ସକଳ ନୃପେ ପାଇଲେ ଅବସ୍ଥା
ଯୁଗ ଯୁଗାନ୍ତର ଯାଏ ରହିଲା ଏ କଥା ।

ଏସନ ଭାଳନ୍ତେ ରାଜା ଏକାନ୍ତରେ ବସି
ନାରଦ ପ୍ରବେଶ ହେଲେ ତା ଆଗରେ ଆସି
ହସ୍ତେ ଦଣ୍ଡ କମଣ୍ଡଳୁ ବ୍ରହ୍ମବୀଣା ଶୋଭେ
ମସ୍ତକରେ ଜଟାଜୂଟ ଦିଶେ ତେଜୋମୟେ ।
କାନ୍ଧେ ଜଉରଖ ପଇତା କାଖେ ବେଦ ପୋଥି
ତପତ କାଞ୍ଚନ ପ୍ରାୟେ ଦିଶେ ଦେହ ଜ୍ୟୋତି
ଅଙ୍ଗରେ ଦ୍ୱାଦଶ ଟିକା କର୍ଣ୍ଣରେ କୁଣ୍ଡଳ
କଣ୍ଠତଟେ ଲମ୍ବିଅଛି ରୁଦ୍ରାକ୍ଷର ମାଳ ।
ବ୍ରହ୍ମାଙ୍କ ନନ୍ଦନ ମହାତ୍ମା ଦେବର୍ଷି
ସାକ୍ଷାତେ ଧର୍ମ ଦେବତା ପରାୟେ ସେ ଦିଶି ।
ମନଦଣ୍ଡ ଆରୋହଣ କରି ଯୋଗମାର୍ଗେ
ଅଭ୍ରତେ ମିଳିଲେ ଆସି ଜରାସନ୍ଧ ଆଗେ ।
ଦେଖି ମଗଧ ଈଶ୍ୱର ନମସ୍କରିଲ ବୋଲି
ସାଷ୍ଟାଙ୍ଗରେ ପାଏ ପଡ଼ି ଶୋଏ ଗଡ଼ଘାଳି ।
କରପଦ୍ମ ଯୋଡ଼ି ଆଗେ କରେ ବହୁସ୍ତୁତି
ଗନ୍ଧ କୁସୁମେ ପୂଜଇ ହୋଇ ତୋଷମତି ।
ଅନେକ ବିନୟେ ଭାବେ କରି ପାଦପୂଜା
ବହୁ ଅରଚନା ମାନ୍ୟ କରେ ମହାରାଜା ।
ସୁବର୍ଣ୍ଣ ସିଂହାସନରେ କୃଷ୍ଣାଜିନ ପାଡ଼ି
ତା ପରେ ବସିଲେ ମୁନି ସିଂହାସନ ମାଡ଼ି ।
ମଗଧେଶ୍ୱର ପଚାରେ କିମ୍ପା ଆଗମନ
ପୂରି ମୋର ପ୍ରତିଷ୍ଠା ତ କଲ ତପୋଧନ
ନାରଦ ବୋଇଲେ ରାଜ କହଇ ମୁଁ ତୋତେ
ଅମଳାନ କ୍ଷତ୍ରୀ ଅଟୁ ସୂର୍ଯ୍ୟ କୁଳ ଗୋଷ୍ଠେ ।
ତ୍ରିଭୁବନ ଜିତା ତୁମ୍ଭେ ଏକ ମହାବଳୀ
ସମ୍ଭବେ ଥାଅ ତଳାଉ ଧନ୍ୟ ଏ ଅର୍ଦ୍ଧୋଳି ।
ଜମ୍ବୁଦ୍ୱୀପ ମଧ୍ୟେ ବ୍ୟରଜଣା ଲକ୍ଷେ ରାଜା
ତୁମ୍ଭ ଚରଣେ କରନ୍ତି ସର୍ବେ ପାଦପୂଜା ।
ତୁମ୍ଭଠାରେ ଶ୍ରଦ୍ଧା ମୋର ରହିଥାଏ ସହୁଁ
ତେଣୁ ତୁମ୍ଭର ସମୁଖୁ ଅଇଲଇଁ ତହୁଁ ।
ଜରା ବୋଇଲା ତୁମ୍ଭେ ତ ଅଟ ମୋର ପିତା
ଭୂତ ଭବିଷ୍ୟତ ଆଦ୍ୟ ତ୍ରିକାଳଜ୍ଞାତା ।
ପ୍ରତ୍ୟକ୍ଷରେ ବ୍ରହ୍ମବେତ୍ତା ଅଂଶୁ ଅବତାର
ସତ୍ୟବନ୍ତ ପୁରୁଷ ଯେ ପରଂ ଯୋଗେଶ୍ୱର ।
ହେ ମୁନି ତୁମ୍ଭର ଆଗେ କହିବି ଯେ କଥା
ତୁମ୍ଭେ ମହାତ୍ମା ଖଣ୍ଡିବ ମୋର ମନୋବ୍ୟଥା

ନନ୍ଦ ଗଉଡ଼ର ପୁଅ କଲା ବଡ଼ ହାନି
ମୋର ଭଲ ଲୋକ ପୁଣି ହେଲା ହୀନମାନୀ ।
ଷ୍ଟତ୍ତଜଣା ଲକ୍ଷେ ରାଜାଙ୍କର ସେ ପଇଡ
ମର୍ଦ୍ଦନସ୍ତୁ ପାଇକରି ହେଲେ ମାନହାନି ।
ଯତର ଦାର ଧାଡ଼ରେ ଯୁଟିଲ ଶଙ୍ଖାଇ
ଜିଣି ନ ପାରିଣ ତାଙ୍କୁ ଅଭିଲ ପଳାଇ ।
ବଡ଼ ମାୟାବୀ ଅଟନ୍ତି ସେହି ବେନିଭ୍ରାତ
ଆକର୍ଷି ଧନୁ ଧରନ୍ତି ଯେ ଯାନ୍ତି ହାଲୁ ହାତ ।
ହେ ମୁନି ଅଟ ତୁମ୍ଭେ ତ ମହା ତପୋନିଧି
ରାମ କୃଷ୍ଣ ଧରିବାକୁ ଅଛି କେଉଁ ବୁଦ୍ଧି ।
ନାରଦ ବୋଇଲେ ରାଜା ପଚାରିଲୁ ଯାହା
ସାବଧାନ ହୋଇ ଶୁଣ କହୁ ଆମ୍ଭେ ତାହା
ବଡ଼ ଗୁପତ କଥା ଏ ନ ଜାଣନ୍ତି ଆନ
ଏକା ଜାଣନ୍ତି ଭାର୍ଗବ ମହା-ତପୋଧନ ।
ଚନ୍ଦ୍ରକାନ୍ତି ପରେ କାଳଦମନ ନୃପତି
ଅତ୍ୟନ୍ତ ବଳବନ୍ତ ସେ ଶକ୍ତ ମହାରଥୀ ।
ବୀର ଅଭିମାନୀ ବଳବନ୍ତ ଶିରୋମଣି
ଏକା ନିଶ୍ଚେ ସେ ଯାଦବେ ପାରେ ସେହୁ ଜିଣି
ଶତେ ରାମ କୃଷ୍ଣ କୋଟି କୋଟି ଯେ ଯାଦବ
ଆରେଣି କରିବ ପଟୁଆରେ ଅସମ୍ଭବ ।
ଗଣ ଗନ୍ଧର୍ବ ଦେବତା ଘେନି ବଜ୍ରପାଣି
କାଳଦମନକୁ କେବେ ନ ପାରିବେ ଜିଣି ।
କହନ୍ତେ ନ ସରେ କାଳଦମନର ଖ୍ୟାତି
ଯାଦବେ ଜିଣିବ ପାଇଁ ଏକା ସେହି କ୍ଷତ୍ରୀ ।
ଆବର ବିଶେଷ ବର ଦେଲେ ଉମାସାଇଁ
କାଳଦମନ ଜନ୍ମିଛି ଯାଦବଙ୍କ ପାଇଁ ।
ଶୁଣି ତୋଷ ହେଲା ଜରାସନ୍ଧ ନରପତି
ସଂକ୍ଷେପେ କରି କହିଲେ ମୁନି ପୂର୍ବରୀତି ।
ନାରଦ ବତାଇ ଦେଲେ ଗୁପ୍ତ କଥାମାନ
ଆଗହୁଁ ଭିଆଇଛନ୍ତି ଏହା ପଞ୍ଚାନନ ।
ଶୂରବନ୍ତ ପଥ ତାର କି କହିବି ଅବା
ଜନମ ହୋଇବା ମାତ୍ରେ କରେ ଶିବପୂଜା ।
ସେ ନିଶ୍ଚେ ଫେଡ଼ିବ ରାଜା ଦୁଃଖକୁ ତୁମ୍ଭର
ଏହା କହି ଅନ୍ତର୍ଦ୍ଧାନ ହେଲେ ମୁନିବର ।
ଶୁକମୁନି ବୋଇଲେ ହେ ପରୀକ୍ଷ ନୃପମଣି
ଜରାସନ୍ଧ ତୋଷ ହେଲା ମୁନି କଥା ଶୁଣି ।

ପାତ୍ର ମନ୍ତ୍ରୀଙ୍କୁ ପାଶକୁ ଡାକି ନୃପନିଧି
ବିନୟେ ବୋଲଇ କହ କରିବା କି ବୁଦ୍ଧି ।
ନାରଦ ମୁନି କହିଲେ ମୋତେ ତ ବିଶ୍ୱାସି
କାଳଦମନ ସେ ରାମକୃଷ୍ଣ ପାରେ ଦାଶି ।
ଆଗରୁଁ ଏ କଥା ମୋତେ କେ କହି ନଥିଲା
ସକଳ ସମ୍ପଦ ବଡ଼ପଣ ନାଶଗଲା ।
ସ୍ୱର୍ଣ୍ଣ ଭୂଷା ଲକ୍ଷେରଜା ଚତୁରଙ୍ଗ ବଳ
ସର୍ବ ବିନାଶ କରିଲେ କରିଣ କୌଶଳ ।
କୌଣସି ପ୍ରକାରେ ତାଙ୍କୁ ନପାରିଲେ ଜିଣି
ଏବେକାଳେ ଦୈବ ବୁଦ୍ଧି ଦେଉଅଛୁ ଆଣି ।
ବାଣାସୁର ବଜ୍ରନାଭ ଶମ୍ବର ନାରକା
ମହାବଳୀ ରାଜାମାନେ ହେଲେ ମୋତେ ସଖା
ନାନାଛନ୍ଦ କୂଟ କପଟରେ ଯୁଦ୍ଧ କଲି ।
ଯୁଝି ନପାରିଣ ମୁଁ ଯେ ଗଞ୍ଜିଯୁ ହୋଇଲି ।
ତୁମ୍ଭେ ମୋର ମନ୍ତ୍ରୀ ଅଟ ରାଜ୍ୟକୁ କାରଣୀ
କି ଉପାୟ କରିବଇଁ କହ ହେ ଏକ୍ଷଣି ।
ଜରାର ବଚନ ଶୁଣି କହେ ମନ୍ତ୍ରୀବର
ନୁହସି ଆରତ ଦେବ ମନ କର ସ୍ଥିର ।
ତୁମ୍ଭେ ମହାବଳବନ୍ତ ଧାରମିକ ରାଜା
ବୁଦ୍ଧି ପରାକ୍ରମେ ପାଇ ସର୍ବଦେଶେ ପୂଜା ।
ବୁଦ୍ଧି ବଳ କଲେ ସିନା ହେବ କାର୍ଯ୍ୟସିଦ୍ଧି
ମୁଁ କିସ କରିବ ତୁମ୍ଭ ମନକୁ ଯେ ବୋଧି ।
କାଳଦମନ ଘ୍ରମୂକୁ ଦୂତ ବରଗିବା
ପ୍ରୀତି ଉପୁଯାଇ ତାଙ୍କୁ ସମାଧା କରିବା ।
ଉଭୟ ଅନୁମତରେ ବନ୍ଧୁପ୍ରଣ ଗଢ଼ି
ତେବେ ଯାଇ ସବୁକାର୍ଯ୍ୟ କରିବା ଯେ ଫେଡ଼ି
ମନ୍ତ୍ରୀର ବଚନ ଶୁଣି ମଗଧ ନୃପତି
ତଥ୍ୟବାର୍ତ୍ତା ପାଇ ତୋଷ ହେଲା ନିଜ ମତି ।
ସତ୍ତ୍ୱରେ ରଥବରକୁ ଆଣିଲା ସଜାଇ
ଷାଠିଏ ସହସ୍ର ଅଶ୍ୱ ବର୍ଣ୍ଣିବର୍ଣ୍ଣ ଯୋଗୁଇ ।
ନେତ ପତାକା ସିନ୍ଧୁଆ ଆବର ମାଞ୍ଜିଷ୍ଠ
ବସନ୍ତ ମାଧବୀ ନାନାବର୍ଣ୍ଣେ ରଙ୍ଗପାଟ ।
କର୍ପୂର କସ୍ତୁରୀ ଗନ୍ଧ ଚନ୍ଦନୋପହାର
ନବଲକ୍ଷ ସଜାଡ଼ିଣ ବନ୍ଧି ବୋଝସାର ।
ଉତଣ୍ଡ ଲକ୍ଷେକ ପାଟଛତ୍ର ଯେ ଚମର
ସନ୍ତୋଷେ ସଜ କରିଲା ମଗଧ ଭୂପାଳ ।

ଉତ୍ସୁକରେ ଆଜ୍ଞାଦେଲା ଦନ୍ତବକ୍ରେ ରାଇ
କାଳଦମନ ପାଶକୁ ଯିବ ମୋହ ପାଇଁ ।
ତୁମ୍ଭେ ଦେଖୁଛ ବେଦନାମୋର ଯେତେଯେତେ
ସମ୍ମୁଖ ଶନ୍ତାଜନେ ମୁଁ କହିବଇଁ କେତେ ।
ଧାର୍ମିକ ବିବେକ ତୁମ୍ଭେ ଅଟ ଗୁଣବନ୍ତା
ତୁମ୍ଭବିନୁ ଫେଡ଼ି ନୁହେଁ ମୋର ଯେତେ ଚିନ୍ତା ।
ତୁମ୍ଭେ ଅପମାନ ପାଇ ଆସିଛ ଆପଣେ
ଚନ୍ଦ୍ରକାନ୍ତ କଟକକୁ ଯାଅ ଏହିକ୍ଷଣେ ।
ଯେମନ୍ତ କାଳଦମନ ସଙ୍ଗେ ବଢ଼େ ପ୍ରୀତି
ତେମନ୍ତ କରିବ ତୁମ୍ଭେ ଯାଇଣ ଝଟତି ।
ଗୁଣବନ୍ତ ମନ୍ତ୍ରୀ ତୁମ ସଙ୍ଗେ ସଙ୍ଗେ ଥିବ
ନାନାବିଧିରେ କଥା ଯେ ସନ୍ଧାଇ କହିବ ।
ତୁମ୍ଭେ ଶୁଣିଅଛ ପୁଣି ନାରଦଙ୍କ ବାଣୀ
କାଳଦମନ ଯାଦବଗଣେ ପରେ ଜିଣି ।
ଏହିପରି ସମ୍ମାନନା କରି ନରନାଥ
ରତନ ମୁକୁଟ ବାନ୍ଧେ ଦନ୍ତବକ୍ର ମାଥ ।
ତାଡ଼ ତୋଡ଼ର ସୀମନ୍ତ ଆଉ ଜଗଦ୍ବଳା
ପଦକ ହୃଦରେ ହାର କାଞ୍ଚନର ମାଳା ।
ବହୁ ପୁରଃସର ରାଜା ସମ୍ମାନନା କଲା
ମନ୍ତ୍ରୀକୁ ଏହି ପ୍ରକାରେ ଉପହାର ଦେଲା ।
ବାଜଇ ଯେ ଜୟଶଙ୍ଖ ମଙ୍ଗଳ ମହୁରୀ
ଦୂତପଣେ ଗମେ ଦନ୍ତବକ୍ର ଦଣ୍ଡଧାରୀ ।
ହସ୍ତୀ ରଥୀ ପଦାତିକ ସୈନ୍ୟ ଚତୁରଙ୍ଗେ
ଅନେକ ବଳ ଗୋଡ଼ାଇ ଯାଆନ୍ତି ତା ସଙ୍ଗେ
ପାଶୁଶେ ଗୁଣଭୂଷଣ ମନ୍ତ୍ରୀବର ଥାଇ
ଉତ୍ତର ମୁଖେ ମଗଧ ଦେଶୁ ବାହାରଇ ।
ରାଜାର ଆତଙ୍କ ଦେଖି ଶୀଘ୍ର ଚଳିଗଲେ
ଚନ୍ଦ୍ରକାନ୍ତ ଦେଶେ ଦଶଦିନରେ ମିଳିଲେ ।
ରାଜ୍ୟ ପଶନ୍ତେ ଦେଖିଣ ଦମନର ଥାଟ
କରେ ଶଙ୍ଖ ଧରି ଆସି ଓଗାଳିଲେ ବାଟ ।
ଦନ୍ତବକ୍ର ବୋଲେ ନୃପେ ବେଗେ ଜଣା ଯାଇ
ଆମ୍ଭେ ଆସିଛୁ ରାଜାର ଦରଶନ ପାଇଁ ।
ମଗଧେଶ୍ୱର ଯେ ଜରାସନ୍ଧ ମହୀପତି
ସଙ୍ଗାତ ବେଭାର ଦେଇଛନ୍ତି ତାଙ୍କ କତି ।
ତାହାଙ୍କ ଆଜ୍ଞା ପ୍ରମାଣେ ଆସିଅଛୁଁ ଆମ୍ଭେ
ଶୁକ୍ଳଶିର ରାଜଗଣେ ଚଳିଗଲେ ତବେ ।

ବାର୍ତ୍ତା ଜଣାଇଲେ କାଳଦମନର ଆଗେ
କର ଯୋଡ଼ିଣ କହନ୍ତି ଅତ୍ୟନ୍ତ ସରାଗେ ।
ହେ ଦେବ ସାବଧାନେ ହୋଇ ଶୁଣ ନୃପସାଇଁ
ଦନ୍ତବକ୍ର ରାଜା ଆସେ ଦରଶନ ପାଇଁ ।
ଅନେକ ରଥ ଗଜ ତା ଚତୁରଙ୍ଗ ସଙ୍ଗେ
ଗୁଣଭୂଷଣ ମନ୍ତ୍ରୀ ଯେ ଅଛଇ ସରାଗେ ।
ଶୁଣିଣ କାଳଦମନ ହୋଇଲା ହରଷ
ଆଜ୍ଞା ଦେଲା ଦ୍ୱାରମୂଳୁ ବେଗେ ଘେନ ଆସ ।
ରାଜା ବଚନେ ଖୁଣ୍ଟିଆ ଅଇଲେକ ଧାଇଁ
ତାଙ୍କୁ ପାଛୋଟି କରିଣ ଆଗ ଗଲେ ନେଇ ।
ଦେଖା ଦରଶନ ଯେତେ ଦ୍ରବ୍ୟ କରି ସଜ
ଦେଖି ହୃଷ୍ଟହେଲା କାଳଦମନ ଯେ ରାଜ ।
ଦନ୍ତବକ୍ର ନୃପତିକୁ ଷଡ଼ର୍ଘ୍ୟେ ପୂଜିଲା
ଆସନାଦି ଦେଇ ବହୁ ଗଉରବ କଲା ।
ଅଷ୍ଟରତ୍ନ ସିଂହାସନେ ବସାଇ ଆଦରେ
ସର୍ବକୁଶଳ ପୁଚ୍ଛଇ ଅତି ହରଷରେ ।
ଦନ୍ତବକ୍ର ବୋଲେ ଶୁଣ ଗୋପାକାଳୀ ବହ୍ନି
ଦୂତପଣେ ତୁମ୍ଭପାଶେ ମୁହିଁ ତ ଆସିଛି ।
ମଗଧ ଈଶ୍ୱର ଜରାସନ୍ଧ ନରପତି
ତାଙ୍କର ବେନି ଦୁହିତା ହେଷ୍ଟି ଯେ ପ୍ରହେଷ୍ଟି ।
ସୁକୁମାରୀ ସୁଲକ୍ଷଣୀ ହୁଅନ୍ତେ ନବଯୁବା
ଉଗ୍ରସେନବେଳେ ତାଙ୍କୁ କଂସ ହେଲା ବର ।
କହିଲି ପ୍ରତାପୀ ସେହି ମଥୁରା ନୃନାଥ
ହଂସ ଡିମ୍ଭ ବୋଲି କରି ତାଙ୍କ ବେନି ସୁତ ।
ରାମକୃଷ୍ଣ ବୋଲି ଦୁଇ ବସୁଦେବ ବାଳେ
ନନ୍ଦଗଉଡ଼ର ଘରେ ଥିଲେ ବାଳକାଳେ ।
ବଢ଼ିଲେ ହୀନବୁଦ୍ଧି ସେ ଦୁର୍ଦ୍ଦାନ୍ତ ଦର୍ପିଷ୍ଠ
ଖୁଣ୍ଟି ମଉଳାଣୀ ସବୁ ହରିଲେ ପାପିଷ୍ଠ ।
ଅଷ୍ଟମଲ୍ଲ ମୂଳେ କଂସେ ବିନାଶ କରିଲେ
କପଟରେ ହଂସ ଡିମ୍ଭ ବେନି ନାଶ କଲେ ।
ପୁତ୍ର ଭର୍ତ୍ତା ହତେ ହେଷ୍ଟି ପ୍ରହେଷ୍ଟି ସୁକେଶୀ
ଉଚ୍ଚସ୍ୱରେ ରୋଦିଲେ ସେ ପିତା ପାଶେ ଆସି
ଦୁହିତାଙ୍କର ବିକଳ ଦେଖି ଜରାସନ୍ଧ
ଲକ୍ଷେରାଜା ସଙ୍ଗେଘେନ ହୋଇଲେ କ୍ରୋଧାନ୍ଧ
ମଥୁରା କଟକେ ବେଢ଼ି ସଂଗ୍ରାମ କରିଲେ
ରଥୀ ମହାରଥୀ ତହିଁ ବହୁ ବିନାଶିଲେ ।

ଯେଉଁ ଜରାସନ୍ଧ ତ୍ରୈଲୋକ୍ୟ ପାରେ ଜିଣି
ଦୁଇଗୋଟା ଗୋପ ଶିଶୁ ଦୁଃଖ ଦେଲେ ଆଣି
ଲକ୍ଷେ ରାଜାଙ୍କର ଅଟେ ଅଗଣିତ ବଳ
ମରର ବେଳ ଧାଡ଼ରେ ନାଶିଲେ ସକଳ ।
ଅସଙ୍ଖ୍ୟ ସୈନ୍ୟ ମରିବା ସଂଖ୍ୟା କେ କରିବ
ରଥୀ ମହାରଥୀ ମୂଳେ ଅଶ୍ୱାରୋହୀ ସର୍ବ ।
ତିନକାଳ ଉତ୍ସର୍ଗରେ ବହେ ରକ୍ତ ନଦୀ
ଅନେକ ସଇନ ନାଶକଲେ ସେ ଦୁର୍ବୁଦ୍ଧି ।
ତେଣୁ ମହାରାଜା ମନେ ପାଇ ମହା ଖେଦ
ଭୋଜନେ କ୍ଷୁଧା ନାହିଁ ରାତ୍ରେ ନ ମାଡ଼ଇ ନିଦ ।
ଗ୍ଳାନି ଗ୍ଳାନି ଦୁର୍ବଳ ଯେ ହେଲେଣି ନୃପତି
ଲଜ୍ଜାପାଇବାରୁ ମୁଖ ଟେକ ନ ପାରନ୍ତି ।
ଏକମାତ୍ର ତୁମକୁ ସେ କରିଛନ୍ତି ଆଶ
ତେଣୁ ପଠାଇ ଅଛନ୍ତି ମୋତେ ତୁମ୍ଭ ପାଶ ।
ବହୁ ଅଳଙ୍କାର ଦେଇଛନ୍ତି ହସ୍ତ ପାତି
ଭୃତ୍ୟ ପଣରେ ସେବିବେ ମଗଧ ନୃପତି ।
ଗୁଣବନ୍ତ ମନ୍ତ୍ରୀ ଯହିଁ ଜଣାଯାଏ ବାଣୀ
ସନ୍ତୋଷ ହୋଇଲା କାଳଦମନ ତା ଶୁଣି ।
ବୋଇଲେ କାଳଦମନ ପୂରିବ ମୋର ଆଶ
ସାତବଂଶ ଯାଦବଙ୍କୁ କରିବି ବିନାଶ ।
ମୋର ପିତାଙ୍କୁ ସମରେ ଦେଇଛନ୍ତି ଲାଜ
କରିବି କାର୍ଯ୍ୟ ଶୁଝିବି ପିତା ମାନ ଆଜ ।
ରାମକୃଷ୍ଣ ଆଦି ଯେତେ ତଉରାଶୀ ବଳ
ଏକା ନାରାଚକେ ସାଧି ମାରିବି ସକଳ ।
ଯଦ୍ୟପି ଇନ୍ଦ୍ରାଦି ଦେବେ ଯୁଝିବେ ରଖାଇ
ଏ ମୋହର ଗୁମୁରୁ କି ଯିବେ ପ୍ରାଣ ପାଇ
ସାଜ ସାଜ ସମହସ୍ତ ବୋଲେ ଦଣ୍ଡଧାରୀ
ଆଜ୍ଞା ପ୍ରମାଣରେ ସଜ ହେଲେ ଯେ ଯାହାର ।
ହାତୀ ରଥୀ ଅଶ୍ୱ ସୈନ୍ୟ ବଳ ଅପ୍ରମାଣ
ନିର୍ଘାତ ଶବ୍ଦ କି ଘଡ଼ଘଡ଼ି ବଜ୍ରବାଣ ।
ଢୋଲ ଦମା ଟମକାଦି ବାଦ୍ୟ ଶାରି ତୁରି
ଶଙ୍ଖ ମହୁରୀ ଭେରୀର ଶବ୍ଦ ମହାଘୋର ।
ଦମା ଉଦଣ୍ଡ ଘୁମୁରା ମରଦଳ ଭେରୀ
ଅପାଙ୍ଗ ଆଦି ବେଣୀ ଯେ ବାଜଇ କାହାଳି
ଗୁଞ୍ଜ ଦମାଲୁ ପଞ୍ଚୁ ଆଦି ବାଜ ଘୋଷ
କମ୍ପଇ ବ୍ରହ୍ମାଣ୍ଡ ଖଣ୍ଡ ପୁର ଦଶ ଦିଶ ।

ହେମର ଚମର ଛତ୍ର ଉଡ଼େ ପନ୍ତ ପନ୍ତ
ନେତ ଉଦ୍ଦଣ୍ଡ ପତାକାମାନ ବିରାଜନ୍ତ ।
ରଥନ୍ତ ଆରୋହ ରଥୀ ହେଲେ ବେଗେ ସଜ
ପର୍ବତେ ମାହୁନ୍ତ ଚଢ଼ିଲେ ମତଗଜ ।
ଅଶ୍ୱନ୍ତ ଖୁର ଦେଇଣ ଧାଇଁଲେ ପ୍ରବଳେ
ପଦାତିର ଆଗୁଆଣି ଥାଟ ମଧ୍ୟେ ଚଳେ ।
ମହିଷି ଗର୍ଦ୍ଦଭ ଓଟ ଗଜ ଶାର୍ଦ୍ଦୂଳ
ଭାଲୁ ଶ୍ୱାନ ଆରୋହ କେ ଗମନ୍ତ କେବଳ ।
ବିକରାଳ ବଦନ ଯେ ଭୟଙ୍କର ମୂର୍ତ୍ତି
ଅଟ୍ଟ ଦୀର୍ଘ କେଶ ଦନ୍ତ ବିଭୀଷଣ ଜ୍ୟୋତି ।
ଚର୍ମ ଆଭରଣ ଗଳେ ଜବାପୁଷ୍ପ ମାଳ
ପ୍ରଚଣ୍ଡ ଆଦିତ୍ୟ ପରି ନେତ୍ର ବିକରାଳ ।
ରଙ୍ଗମାଟି ଆଭରଣ ବିଭୂତି ଲେପନ
ହାଡ଼ମାଳ କଙ୍କାଳ କ' ବିକଟାଳ ପଣ ।
ଅସିପଟ୍ଟ କୋଦଣ୍ଡ କେତୁ ଯେନ କାଣ୍ଡ ଖଣ୍ଡା
କଳ କଳ କୁହ୍ନ କୁହ୍ନ ରବେ ନାଚ ଚଣ୍ଡା ।
ବ୍ରହ୍ମା ଇନ୍ଦ୍ର ଗଂଧର କାକୁ ନାହିଁ ଶଙ୍କା
ବୀର ବେଶରେ ଧାମନ୍ତ ଦୈତ୍ୟ ରଣରଙ୍କା ।
ରଥେକ ଆରୋହି କାଳଦମନ ଯେ ବୀର
ଅନୁକୂଳ ଯେନ ପୂର୍ଣ୍ଣ ହୋଇଲା ବାହାର ।
ଗୁଣ ଭୂଷଣ ଯେ ଦନ୍ତବନ୍ତ ହେଲେ ସଜ
ବାମ ଡାହାଣରେ ଛନ୍ତି ଅର୍ବୁଦେକ ଗଜ ।
ବତିଶ ଅକ୍ଷୌଣୀ ଦଳ ଚଳାଏ ନୃମଣି
ପାଦଭରେ କମ୍ପୁଛନ୍ତି ସକଳ ମେଦିନୀ ।
ପାଞ୍ଚ ଯୋଜନ ମାଡ଼ିଣ ଚଳଯାନ୍ତି ଥାଟ
ଖାଲଢ଼ିଙ୍କର ପଟତ ହେଉଅଛି ବାଟ ।
ହାତୀ ଘୋଡ଼ା ବ୍ୟାଘ୍ର ନର ଯେ ଆଗରେ ପଡ଼
ତତକ୍ଷଣେ ଧର ତାଙ୍କ ବେକ ଦ୍ୟନ୍ତ ମୋଡ଼ ।
ଗୋ ବ୍ରାହ୍ମଣ ଋଷି ଦେବ ଆଦ ନ ମାନନ୍ତି
ପାଇଲା ମାତ୍ରକେ ତାଙ୍କୁ ତକ୍ଷଣେ ଭକ୍ଷନ୍ତି ।
ଜରାସନ୍ଧ ଏହି ରୂପେ ବାରତାକୁ ପାଇ
ପାଣି ଦ୍ରବ୍ୟ ଯେନ କରେ ପାଟଗ୍ରଟିଣ ଯାଇ ।
ଗୋମତୀ ପାଶରେ ସିଂହ ନାଗ ଗିରିଗୋଟି
ସେହିଠାରେ ଦୁଇରାଜା ହେଲେ ଭେଟାଭେଟି ।
ଧାଡ଼କାରେ ଦୁଇରାଜେ ରଥୁ ଓହ୍ଲାଇଲେ
ଏକକୁ ଆରେକ କୋଳ ସମ୍ଭାଷଣ କଲେ ।

କୁଶଳ ବାର୍ତ୍ତା ହୋଇଲେ ପରସ୍ପର ପରି
ମଗଧେଶ୍ୱର କଟକେ ଗଲେ ବିଜେ କରି ।
କଟକ ଅନ୍ତରେ ନଗ୍ର ଏକ ବିରଚନ
ସାନନ୍ଦେ ରହିଲା କାଳଦମନ ରାଜନ ।
ପାଦ ପ୍ରକ୍ଷାଳିତ ଖଣ୍ଡୁଆ ଯେ ପଡ଼ିଆର
ଆନନ୍ଦେ ବସା ଆବୋର ରହିଲେ ଯେଝାର ।
ଆଗେ ଉଭାହେଲା ଆସି ଯେ ଗୁଣଭୂଷଣ
ସମ୍ଭାର ରଖାଇ ଡାକ ଦିଏ ଜଣ ଜଣ ।
ରାନ୍ଧଣା ଯୋଗାଡ଼ମାନ ଯାକୁ ଯେତେ ଅଣ୍ଟି
ଅଶ୍ୱଙ୍କୁ ଘାସ ଗ୍ରାସ ସେ ଖାଦ୍ୟ ଦିଏଁ ବାଣ୍ଟି ।
ସଜଳ ଯୋଗାଡ଼ ଦ୍ୟନ୍ତି ବେଳକାଳ ଜାଣି
ସବୁଙ୍କ ଚର୍ଚ୍ଚା ବୁଝନ୍ତି ଆପେ ନୃପମଣି ।
ଅନ୍ନବ୍ୟଞ୍ଜନାଦି ଖାଇ ସର୍ବେ ସୁସ୍ଥ ହେଲେ
ରଜନୀ ହୁଅନ୍ତେ ସୈନ୍ୟ ଶୟନ କରିଲେ ।
କେତେହେଁକ ବେଳ ଚଳୁଁ ପାହିଲା ରଜନୀ
ଗଗନେ ଉଦୟ ହେଲେ ପ୍ରଭୁ ଦିନମଣି ।
ଅନେକ ସଇନ ଦଣ୍ଡ ଭୂପାଳକୁ ଘେନ
ଆସ୍ଥାନେ ବିଜେ କରା କାଳଦମନ ବେନ ।
ସକଳ ନୃପତିମାନେ ଘେନ ଅଙ୍ଗବଳ
କ୍ରମେ କ୍ରମେ ଆସି ସର୍ବେ ହୋଇଲେକ ଠୁଳ
ଶୁଣ ପରୀକ୍ଷ ରାଜନ ଭଣି ଶୁକ ଯତି
ଅଷ୍ଟସଂଖ୍ୟ ଭାଗବତ ପୁରାଣର କୀର୍ତ୍ତି ।
ସୁରଗୁଣା ଲକ୍ଷେରାଜା ଅଇଲେକ ବାହୁ
ଜରା କଟକେ ରହିଲେ ଟଉରବ ପାଇ ।

—※—

## ଉଗ୍ରସେନ ନିକଟକୁ କାଳଦମନର ଚିଟାଉ

ଏଥିଅନନ୍ତରେ କାଳଦମ୍ନ ନରନାଥ
ଜାହାକୁ ବୋଇଲା ମିତ କରିବା କ ବୁଦ୍ଧି ।
ଉଗ୍ରସେନ ରାଜା ପାଶେ ଲେଖା ପଠାଇବା
ତାହାର କ ମତ ତାହା ନିକଟୁ ଜାଣିବା ।
ହେଉ କହି ଉଗ୍ରସେନ ପାଶେ ଲେଖା ଦେଲେ
ସ୍ୱର୍ଣ୍ଣ ପେଡ଼ିରେ କାଳସର୍ପ ପୂରାଇଲେ ।
କର୍ପୂର କସ୍ତୁରୀ ମୁଦ ଦେଇ ତା ଉପର
କ ଲଦୂତେ ପଠାଇଲେ ସେ ମଥୁରାର ପୁର ।

କହିବୁ ଚୁ ସ୍ବଣଉଣା ଲକ୍ଷେକ ନୃପତି
ଯେବଣ କାଳଦମନ ଯୁଦ୍ଧକୁ ଆସନ୍ତି ।
କେମନ୍ତ ବଳଷ୍ଟ ଅଟ ସବ ଯଦୁସାର
କାଳସର୍ପ ଆଗୁ କାହିଁ ନିସ୍ତାର ତୁମ୍ଭର ।
ନିଶ୍ଚୟ ମାରିବେ ସେହି ହଳୀ ବନମାଳୀ
ତାଙ୍କ ସଙ୍ଗରେ ତୁମ୍ଭର ଏତେକ ଢମାଳ ।
ସତର ବାର ଧାଡ଼ରେ ଗଲ ଯେ ଉବୁରି
ଜୀବନକୁ ଯେବେ ଭୟ ଥାଏରେ ତୁମରି ।
ଦନ୍ତେ ତିରଣ କାମୁଡ଼ି ଆସ ଶୀଘ୍ର ହୋଇ
କାଳଦମନ ରାଜାଙ୍କୁ ଦେଖା କର ଯାଇ ।
ଶରଣ ରକ୍ଷଣ ବାନା ଅଟେ ତାହାଙ୍କର
ନିଶ୍ଚୟ କ୍ଷମିବେ ଦୋଷ ଜାଣିବ ତୁମର ।
ରାଜା ଆଜ୍ଞା ପ୍ରମାଣରେ ଦୁତେ ଶୀଘ୍ରେ ଗଲେ
ମଥୁରା କଟକେ ଯାଇ ପ୍ରବେଶ ହୋଇଲେ ।
ଉଗ୍ରସେନ ହସ୍ତେ ଦେଲେ ନେଇ ଲେଖାଗୋଟି
ଚମକ ପଡ଼ି ତାହାକୁ ଫିଟାଇ ଲେଉଟି ।
ଫେଡ଼ି କରଣ ଦେଖିଲେ କାଳସର୍ପ କାୟେ
ଗର୍ଜିଲ ସେ ମହାମେଘ ଘଡ଼ଘଡ଼ି ପ୍ରାୟେ ।
ଚଳଇ ସର୍ପ ପର୍ବତ ପ୍ରାୟେ ଟେକ ଫେଣ
କୁଳ ପରାୟେ ଦିଶଇ ଘୋଷଣ ବଦନ ।
ଲହ ଲହ ବେନଜିହ୍ବା ଭୟଙ୍କର କାୟେ
ନୟନ ଦୁଇରେ ଚନ୍ଦ୍ର ସୂର୍ଯ୍ୟ କି ଉଦୟେ ।
ଦେଖିକରି ଯଦୁବୀରେ ଚଳେ ଭୟ ପାଇ
ବୋଇଲେ ଏମନ୍ତ ସର୍ପ ଦେଖିନ୍ଥିକ ନାହିଁ ।
ବହୁକାଳର ଏ ବୃଦ୍ଧ ଏଟେ ମହାସର୍ପ
ଦଂଶିଲେ ଧ୍ବଂସି ପାରଇ ଦେବତାଙ୍କ ଦର୍ପ ।
ଥୋକେ ଯାଦବ ବୋଲନ୍ତି ପ୍ରୟୋଜନ ନାହିଁ
ଅଯାହା ଜନ୍ତୁ ଏ ଯାକୁ ଆଣେ କିସ ପାଇଁ ।
ଥୋକାଏ:ବୋଲନ୍ତି କାଳଦମନ ବାତୁଳ
ସର୍ପ ଗୋଟାଏ ଦେଖିଣ ପେଷିଛି ପାଗଳ ।
ଏହାଶୁଣି ଉଗ୍ରସେନ ଦୁତେ ପଚ୍ଛରଇ
ଏ କାଳସର୍ପ ଯେବଣ ଅଇଲ କିମ୍ପାଇଁ ।
ଏହା ଶୁଣି ଦୁତ ତହୁଁ ବୋଲଇ ଉତ୍ତର
ମଗଧଦେଶେ ରୁଣ୍ଡ ଆସି ଲକ୍ଷେ ନୃପବର ।
ଲେଖି ଅଛନ୍ତି ସେ ରାମକୃଷ୍ଣ ଯିବାପାଇଁ
ଚତୁରଙ୍ଗ ବଳ ଘେନ ଆସିବେକ ବାହି ।
ବାରତାଦେଇ ପେଷିଲେ ମୋତେ ସେହିଆଗେ
ବୋଇଲେ ଏହା କହିବ ଯାଦବଙ୍କୁ ବେଗେ ।
ଜରାସନ୍ଧ ଆମେ ବଳବନ୍ତ ଶିରୋମଣି
ସ୍ବର୍ଗ ମର୍ତ୍ତ୍ୟ ପାତାଳକୁ କ୍ଷଣେ ପାରୁ ଜିଣି ।
ସ୍ବଉଣା ଲକ୍ଷେରାଜା ହୋଇଅଛୁ ମେଳ
ସବୁଙ୍କର ବୈରି ଜାଣ ରାମ ବନମାଳୀ ।
ଏହି ବର୍ତ୍ତା ଯାଇ ତୁମେ ଯାଦବଙ୍କୁ କହ
ସେ କିମ୍ପା କରନ୍ତି ରାମକୃଷ୍ଣ ଏଡ଼େ ସ୍ନେହ ।
ନ ଜାଣି ଏତେକଷ୍ଟ ସେ ପାଉଥିଲେ ରହି
ଏବେ ଆସନ୍ତୁ କୌଣସି ଭୟ ତାଙ୍କୁ ନାହିଁ ।
ଅର୍ଥେ ଅର୍ଥ ସମ୍ବନ୍ଧ ଯେ ତେଜେ ଗଜ ବାଜି
ଦୋରେହାଙ୍କ ସଙ୍ଗେ କିମ୍ପ ହୋଇଥାନ୍ତି ମଜ୍ଜି
ଯେବେ ମୋ କଥା ଲଙ୍ଘିବେ ନାହିଁ ତାଙ୍କୁ ଭଲ
କାଳଦମନ ଯେ ସର୍ପ ସେ ମଣ୍ଡୁକ ପଲ ।
ଦୁତର ବଚନ ଶୁଣି ଭଣି ଦେବରାୟେ
କୋଟି କାଳଦମନକୁ ନାହିଁ ଆମ ଭୟେ ।
କୋଟି ବଦନରେ କୋଟି ଜିଭ ଆସୁ ବାହି
କରିବୁ ସଂଗ୍ରାମେ ଆମେ କିଛି ଭୟ ନାହିଁ ।
ସେ ଯେ ସନ୍ଦେଶ ଦେଇଛି ଗୋଟା କାଳସର୍ପ
ଏକା ଜଦା ପିମ୍ପୁଡ଼ିକେ ଯିବ ତାର ଦର୍ପ ।
ଏତେ ବୋଲିଣ ପିମ୍ପୁଡ଼ି ଗୋଟାଏକ ଧରି
ସର୍ପ ପେଡ଼ାର ଭିତରେ ମୁନ୍ଦିଦେବ ହରି ।
ନାରାୟଣ ଉରନ୍ତେଣ ତହିଁ ଏକଗୋଟି
ତକ୍ଷଣେ ପେଡ଼ା ଭିତରେ ବ୍ୟାପେ ଲକ୍ଷକୋଟି
ଅନନ୍ତ ମାୟାଧର ସେ ରଚ ବିଶ୍ବମାୟା
ଆପଣେ ପେଡ଼ା ଭିତରେ ଧରି ନିଜ କାୟା
ସେ କାଳସର୍ପ ଶରୀରଯାକ ଗଲେ ବେଢି
ରକତ ମାଂସ ଭକ୍ଷିଲେ ସବୁ ଝାଡ଼ିଝୁଡ଼ି ।
ନିମିଷକେ ଧ୍ବଂସ ହେଲା କାଳସର୍ପ ଗାତ୍ର
ରକ୍ତମାଂସ ଭକ୍ଷନ୍ତେଣ ରହେ କଣ୍ଟାମାତ୍ର ।
ଏସନ ଚରିତ ଆନେ ଗୋଚରତ ନାହିଁ
ଜାଣନ୍ତି ହଳୀ ଜାଣନ୍ତି ଲକ୍ଷ୍ମୀଦେବୀ ସାଇଁ ।
ଦୁତମାନଙ୍କୁ ଶ୍ରୀହରି ଗଉରବ କଲେ
ଶାଢ଼ୀ ସୁନାବଳା ଧନରତ୍ନ ଦ୍ରବ୍ୟ ଦେଲେ ।
ବୋଇଲେ କାଳଦମନେ କହ ଏହା ଯାଇ
ବିଳମ୍ବ ନ କର ରାଜା ଦଣ୍ଡ ଆସୁ ବାହି ।

ଶୁଣି ଦୂତମାନେ ଶୀଘ୍ର ଲେଉଟିଣ ଗଲେ
ପୁଣି ଯାଇ ମଗଧେଶ୍ୱର ପାଶରେ ମିଳିଲେ ।
ଯାହା କହିଥିଲେ ରାମକୃଷ୍ଣ ହୋଇ ମେଳ
ରାଜାସଭା ପରମୁଖେ କହିଲେ ସକଳ ।
ଆସ୍ଥାନ ତଳରେ ମୂଦ ଫେଡ଼ ସାପଗୋଟି
ଦେଖିଲେ ପିମ୍ପୁଡ଼ି ପୂରିଛନ୍ତି କୋଟି କୋଟି ।
ରକ୍ତ ମାଂସ ଝୁଣ୍ଡି ଖାଇଦେଲ ସେ ସକଳ
ପେଡ଼ା ଭିତରେ ଅଛଇ ମାତ୍ର ହାଡ଼ମାଳ ।
ଦେଖି ବିସ୍ମୟ ହୋଇଲା ସେ କାଳଦମନ
ସର୍ବ ରାଜାମାନେ ମନେ ପାଇଲେ ବିଷର୍ଣ୍ଣ ।
ଜରା ପୁଚ୍ଛଇ ଦୂତଙ୍କ ବଦନକୁ ଚାହିଁ
ଏ କାଳସର୍ପ ପିମ୍ପୁଡ଼ି କେମନ୍ତେ ଗଲେ ଖାଇ ।
ଥୋକାଏ ନୃପତିମାନେ ପାଇଲେକ ବ୍ୟଥା
କେ ବୋଲନ୍ତି ଏ ଅଦ୍ଭୁତ ଅଗୋଚର କଥା
ଦୂତମାନେ ବୋଇଲେକ ସର୍ପେ ବନ୍ଧି ନେଇ
ଦେବସଭା ମଧ୍ୟେ ଦେଖାଇଲୁ ଫେଡ଼ିଦେଇ ।
ଏ ତୁମ୍ଭ ବଚନମାନ କହିଲୁ ସକଳ
ଶୁଣି ଉପହାସ କଲେ କୃଷ୍ଣ କାମପାଳ ।
ବୋଇଲେ କାଳଦମନ କୋଟି ଆସୁ ବଳ
କରିବୁ ସଂଗ୍ରାମ ଆମ୍ଭେ କିଛି ଭୟ ନାହିଁ ।
ଜରାସନ୍ଧ ପରି ଲକ୍ଷେ ଆସୁ ନରପତି
ତିଳେମାତ୍ର ଆମ୍ଭ ହୃଦେ ନାହିଁ ତାଙ୍କୁ ଭୀତି ।
ସଭା ସମ୍ମୁଖେ ଫେଡ଼ିଲେ ସର୍ପ ପେଡ଼ା ଗୋଟି
ସ୍ଥିର କରିଣ ଥୋଇଲେ ଆଣି ପିମ୍ପୁଡ଼ିଟି ।
ଏଡ଼େ ବଡ଼ କାଳସର୍ପ କ୍ଷଣେ ଗଲା ନାଶ
ଏକାବେଳେ ପିମ୍ପୁଡ଼ିଣ ଖାଇଲେ ମାଉଁସ ।
ରାଜାଧି ମହାରାଜା ସେ ବଳିଷ୍ଠ ଅଗ୍ରଣୀ
କମୂତ ମାୟା ତାହାର ନ ପାରିଲୁ ଜାଣି ।
ଆହୁରି ଗୁରୁର୍ଯ୍ୟ କରି କହିଲେ ବଚନ
ଭୟ ନ କଲେ ତୁମ୍ଭଙ୍କୁ ସେ ଯାଦବଗଣ ।
ଏ ଅପମାନ ସହିବ କିଏ ଦେହ ଧରି
ଶୁଣି କାଳଦମନ ଯେ କୋପଭରେ ଥରି ।
ଅଧରେ ଦନ୍ତ ଚାପିଣ ନୟନ ଚରିଟି
ଭୂମିକୁ ଆକର୍ଷି ମାରେ ସେହି ବଜ୍ରମୁଷ୍ଟି ।
ମେଘ ଘଡ଼ଘଡ଼ ପରି ଗର୍ଜି ରୋଷଭରେ
ରୋମ ଟାଙ୍କୁରିଲେ ଝାଳ ବହଇ ଦେହରେ ।

ବୋଇଲେ ସେ ଲକ୍ଷେରାଜା କରିଛନ୍ତି ସଭା
ଏତେ ବଡ଼ ଅପମାନ କେମନ୍ତେ ସହିବା ।
ସିଂହ ଆଗରେ ଶୃଗାଳ ଏଡ଼େ ଗର୍ବ କରି
ଶୃଗାଳକୁ ଦେଖି ଭୟ କରେ ଯେ କେଶରୀ ।
ଅଜାତି ଅଗୋଷ୍ଠି ନନ୍ଦ ଗଉଡ଼ର କଳା
ସବୁ ରାଜାଙ୍କ ମୁଖରେ ଲଗାଇଲା କଳା ।
ଏବେ ବିଳମ୍ବ ନ କର ସର୍ବେ ହୁଅ ସଜ
କ୍ଷତ୍ରୀ ବୃତ୍ତିରେ କରିବା ଜରାସନ୍ଧ କାର୍ଯ୍ୟ ।
ଏହା କହିଣ ଉଠିଲା ଗୋପ୍ରାବଳୀ ସୁତ
ଆସ୍ଥାନ ଉପେକ୍ଷି ସେହି ଆରୋହିଲେ ରଥ ।
ଜରାସନ୍ଧ ଆଦିକରି ସର୍ବ ରାଜାଗଣ
ଯେ ଯାହା ଯାନ ବାହନେ ଚଢ଼ିଲେ ତକ୍ଷଣ ।
ହାତୀ ରଥୀ ପଦାତିକ ଅଶ୍ୱଙ୍କ ସହିତେ
ଚତୁରଙ୍ଗ ବଳ ସଜ ହେଲେ ଯେଝାମତେ ।
ବାଜିଲା ଶଙ୍ଖ ମହୁରୀ ବାଦ୍ୟ କୋଟି କୋଟି
ମୁଖରାଜ ଶବଦରେ କମ୍ପେ ନବସୃଷ୍ଟି ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୁଦ୍ର ଜାତି ଚାରି
ବାଠୁଆ ବଣିଜାରି ଯେ ବ୍ୟବସାୟୁ କାରୀ ।
ପାତ୍ର ଆମାତ୍ୟ ପୁରୋହିତ ଯେତେ ଜନ
ଲେଙ୍କା ଲମ୍ବହାତ ଜେନା ଆଦି ଚତପନ ।
ହାତୀ ଘୋଡ଼କ ପାଇଙ୍କ ଛତୀଶ ତରାସ
ଗହଣେ ଚଳିଲେ ସର୍ବେ ହୋଇଣ ହରଷ ।
ଅନେକ ରାଜ୍ୟ ମାଡ଼ିଣ ଦେଶ ଉଜାଡ଼ିଲେ
ଖାଲ ଡ଼ଙ୍ଗର ସମସ୍ତ ସମତୁଲ କଲେ ।
ପ୍ରଥମ ଦିନ ରହିଲେ ପାରିଦେଶେ ଯାଇ
ରାତ୍ର ପ୍ରଭାତ ହୁଅନ୍ତେ ଚଳିଲେକ ଚଳାଇ ।
ଦ୍ୱିତୀୟ ଦିନ ରହିଲେ ନେପାଳ ଦେଶରେ
ରନ୍ଧନ ଭୋଜନ କଲେ ବ୍ରହ୍ମ ନଦୀ ତୀରେ ।
ଶଙ୍ଖଧ୍ୱନ କରି ସର୍ବେ ତହୁଁ ଚଳିଗଲେ
ଡ଼ଙ୍ଗର ପର୍ବତ ମାଡ଼ି ସଡ଼କ ବାଟ କଲେ ।
ଶଶକକେଶରୀ ବୋଲି ଗିରିବର ଗୋଟି
ଉତ୍ତରବାହିନୀ ସରସ୍ୱତୀ ଅଛି ପୁଟି ।
ଅଜଳନା ପଡ଼ା ଗୋଟି ପଶ୍ଚିମ ଭାଗରେ
ତହିଁରେ ରହିଲେ ସୈନ୍ୟ ଦିବସ ଶେଷରେ ।
ରନ୍ଧନ ଭୋଜନ କାର୍ଯ୍ୟ ତହିଁ ଶେଷ କଲେ
ରଜନୀ ପ୍ରଭାତ ହେନ୍ତେ ତହୁଁ ଚଳିଗଲେ ।

ଶୁଣ ପରୀକ୍ଷ କହନ୍ତ ଶୁକ ମହାମୁନ
ହରିବଂଶ ପୁରାଣ ଏ ପୁଣ୍ୟମସ୍ତୁ ଧ୍ୱନ ।
ଛପ୍ପାନବେ ସମ୍ବ ରାଜା ଅପ୍ରମିତ ବଳ
ଚଳିଯାନ୍ତେ ପାଦଭରେ କମ୍ପେ ଭୂମଣ୍ଡଳ ।
ଏକ ଏକ ରାଜାଙ୍କର ଦଶବଂଶ କ୍ଷୌଣୀ
ଆଦଅନ୍ତ କରି ସୈନ୍ୟ କେ କହିବ ଗଣି ।
ସମୁଦ୍ର ଲହରୀ ପ୍ରାୟେ ମାଡ଼ିଯାନ୍ତେ ଥାଟ
ପର୍ବତ କନ୍ଦର ଭଙ୍ଗ ସମ ହେଲା ବାଟ ।
ବାଣାସୁର ବଜ୍ରନାଭ ଶମ୍ବର ନାରକା
ଚାରିଜଣ ଲକ୍ଷେ ରାଜା ହୋଇଛନ୍ତି ସଖା ।
ଆପଣେ କାଳଦମନ ଥାଟେ ଆଗୁଆଣି
ସଙ୍ଗେ ଚାରି ଅଙ୍ଗବଳ ବତିଶ କ୍ଷଉଣୀ ।
ତିନ କ୍ଷଉଣୀ ମୁକୁଟବନ୍ଧା ରାଜା ଯେତେ
ଏମନ୍ତରୂପେ ସଂଖ୍ୟା କରି କହିବଇଁ କେତେ ।
ଅନେକ ସମ୍ଭାର ଥାଟ ଚଳାଇଣ ଗଲେ
ଚାରିଦିନେ ମଥୁରାରେ ଯାଇ ପ୍ରବେଶିଲେ ।
ମଥୁରା କଟକଠାରୁ ଚୌଦପୁଣ୍ଣ ଗୁଣ୍ଡ
ରହିଲେ ସକଳଥାଟ ବନଗିରି ମାଡ଼ି ।
ଜରାସନ୍ଧ ବୋଲେ ଶୁଣ ଦମନ ନୃମଣି
ମଥୁରା ନିକଟ ହେଲା କି କରିବା ପୁଣି ।
ସପ୍ତଦଶ ବେଳ ଧାଡ଼ି ଦେଲି ଏଥିମତେ
ଯାଦବଙ୍କୁ ଜିଣି ନ ପାରିଲି କଦାଚିତେ ।
କାଳଦମନ ବୋଲଇ ରହ ଅସ୍ତେ ଯିବା
ରନ୍ଧନ ଭୋଜନ ସାରି ଏଠାରେ ରହିବା ।
ନୃପତିମାନେ ବୋଇଲେ ଏହା ସୁବିଚାର
ରନ୍ଧି ଅନ୍ନ ବ୍ୟଞ୍ଜନ ଭୁଞ୍ଜିଲେ ଧାଡକାର ।
ଯମୁନା ନଦୀରେ ଅଶ୍ୱ ଗଜେ ଦେଲେ ପାଣି
ଧାଡକାରେ ଆଣିଦେଲେ ବ୍ରୀହି ଯେ ଚରଣି
ଏଥୁଅନନ୍ତରେ ହେଲା ଚୌଦଣ୍ଡ ବେଳ
ସମଦଣ୍ଡ ଚଳାଇଲେ ନୃପତି ସକଳ ।
ଆଗୁଆଣି ଥାଟେ ଚଳେ ଦମନ ନୃପତି
ବତିଶ କ୍ଷଉଣୀ ଥାଟେ ଆସେ ସେନାପତି ।
ଯମୁନା ନଦୀକୂଳରେ ଗଲେ ସମଦଣ୍ଡ
ପାଦଭରେ କମ୍ପ ଅଛି ପୃଥ୍ୱୀ ନବଖଣ୍ଡ ।
ବହୁତ ପତାକା ଅପ୍ରମିତ ରଥ ଟେକ
ସମସ୍ତେ ରଣ ଇଚ୍ଛାରେ ହୋଇଛନ୍ତି ସଜ ।

ପବନନ୍ତେଁ ବେଗେ ସୈନ୍ୟ ଚଳଯାନ୍ତି ଖରେ
ଏକ ପନ୍ଥ କରି ଏକ ଧାମଇଁ ଆଗରେ ।
ଗର୍ଜନ୍ତି ଗର୍ଜନ୍ତି ସାରେ କରନ୍ତି ପଇଜ
ଧଇଗଳ ଭୟଙ୍କର ରୂପ ମହାତେଜ ।
ଅନେକ ପ୍ରତିଜ୍ଞା କରି ତହୁଁ ଚଳିଗଲେ
ରଜନୀ ଦେଢ଼ ପହରେ ମଥୁରା ବେଢ଼ିଲେ ।
ଚୌରାଶୀ କୋଟି ଯାଦବ ଗଡ଼େ ଛନ୍ତି ରହି
ଲକ୍ଷେ ପୁର କରି ଗଡ଼ ବେଢ଼ିଲେକ ଯାଇ ।
ଏମନ୍ତ ଚରିତ କେହି ନ ଜାଣନ୍ତି ଆନ
ଏହା କେବଳ ଜାଣନ୍ତି ପ୍ରଭୁ ଭଗବାନ ।
କୃଷ୍ଣ ବିଚାରିଲେ କଥା ହୋଇଲାକ ମନ୍ଦ
ଏବେ ଘୋଟିଲାକ ଆସି ଭୟଙ୍କର ଦ୍ୱନ୍ଦ୍ୱ ।
କାଳଦମନ ନୃପତି ଜରାସନ୍ଧେ ଥାଇ
ଶତ୍ରୁ ମହାଢକା ଦେଲା କିସ କରିବଇଁ ।
ବଡ଼ ବଳବନ୍ତ ଗୋମାବଳୀର କୁମର
ତାହାକୁ ଜିଣିବ କିଏ ପୃଥିବୀ ମଧ୍ୟର ।
ଗର୍ଗଙ୍କର ବୀର୍ଯ୍ୟରୁ ଅଛି ଜାତ ହୋଇ
ଯାଦବେ ଜିଣିବ ଶିବ ଛନ୍ତି ବରଦେଇ ।
ତାହାର ସମାନ ନାହିଁ ତ୍ରିଭୁବନ ମଧ୍ୟ
ମୋ ହସ୍ତେ କାଳଦମନ ନୋହିବ ଯେ ବଧ ।
ଅଗ୍ନି ପାଣି ଖଡ୍ଗ ଆଦି ନ କାଟେ ତା ଦେହେ
ଦେବଗଣ ନ ପାରିବେ ତାହାକୁ କେବେହେଁ
ବିଚାରିଣ ଜରାସନ୍ଧ ଆଣିଛି ତାହାକୁ
ମେଦିନୀରେ ନ ଥୋଇବ ଯାଦବମାନଙ୍କୁ ।
ଏସନ ବହୁ ବିଚାର କଲେ ଦେବରାଜ
କୂଟ କପଟେ ମାରିବା ଏହାକୁହିଁ ଆଜ ।
ଏଥୁଅନନ୍ତରେ ପୁଣି ମଗଧେଶ ସାଇଁ
କୃତାଞ୍ଜଳି ହୋଇ କାଳଦମନକୁ କହି ।
ଆହେ ମଇତ୍ର ଶରଣପଞ୍ଜର ତୋ ବାନା
ଆରତ କାଳରେ ତୁମେ ଅଟ ବଜ୍ରସେନା ।
ଏ ଜମ୍ବୁ ଦ୍ୱୀପରେ ତୁମେ ଅଟ ଅଧିକାରୀ
ଚାରିଜଣ ଲକ୍ଷେ ରାଜା ଛନ୍ତି ସବେ ବେଢ଼ି ।
ତୁମେ ବିନା ହରିପାରି ଯାଦବଙ୍କ ଦର୍ପ
ଯାଦବେ ମଣ୍ଡୁକ ତୁମେ ଅଟ କାଳସର୍ପ ।
ଏତେକ ମାତ୍ରକ କଥା କହୁଅଛି ମୁହିଁ
ବଡ଼ ମୋ ସ୍ୱାଧର ରାମକୃଷ୍ଣ ବେନି ଭାଇ ।

ଏହି ପ୍ରକାରେ ହୋଇଲା ସପ୍ତଦଶ ଥର
ଧରୁ ଧରୁ ପଳାଇଲା ଗଡ଼ଡ଼ କୁମର ।
ଏବେ ସେହିମତେ ହୋଇ ଯିବେଟି ପଳାଇ
ଏହିକ୍ଷଣି ଗଡ଼ ବେଢ଼ି ପଶିବା ଧମାଇ ।
ଗଡ଼ ଜୟକରି ଯଦୁବଳ ହଣାଶିବା
ରାମକୃଷ୍ଣଙ୍କୁ ଜୀବନ୍ତ ଧରି ନେଇଯିବା ।
ଆମ୍ଭର ଆସିବା ବାର୍ତ୍ତା କେହି ନ ଜାଣନ୍ତି
ଯାଦବ କୁଟୁମ୍ବପାଳ ମଦରେ ଏଥାନ୍ତି ।
କାଳଦମନ ବୋଲଇ ମହାନିଶାକାଳ
ଆପଣା ଆପଣା ଥାନେ ଉପୁଜିବ ଗୋଳ ।
କେହି କାହାକୁ ଅନ୍ଧାରେ ନ ପାରିବେ ଚହ୍ନି
ଆପଣା ଆପଣା ମଧ୍ୟେ ହେବେ ହଣାହଣି ।
ଯୁଦ୍ଧକଲେ ଯାଦବବଂଶ ରଣେ ଅନର୍ଗଳ
ବିଶେଷରେ ପାଇଛନ୍ତି ରାମକୃଷ୍ଣ ବଳ ।
ନ ବୁଝି ସଂଗ୍ରାମ କଲେ ପଛେ ହେବ ହାନି
ଗୋଟି ଗୋଟି ଧରିନେବା ପାହିଲେ ରଜନୀ ।
ଏବେ ଗଡ଼କୁ ବେଢ଼ିଣ ବସିବା ଅବେଗେ
କେଉଁ ବାଟ ଦେଇ କାହିଁ ଯିବେ ନିଶାଭାଗେ
ଏଥିକୁ ଅଙ୍କୁର ତୁ କହୁଅ ମହାଶୟେ
ନାନା ଉପାୟେ ମାରିବ ତାହାଙ୍କୁ ନିଶ୍ଚୟେ ।
ମୋହ ଘୁମୁରେ ଯାଦବେ କାହିଁ ଯିବେ ଆଜ
ମାନ ଉଦ୍ଧାରିବ ମୁହିଁ କରି ତୋର କାର୍ଯ୍ୟ ।
ଚୌରାଶୀ କୋଟି ଯାଦବ ମାରିବ ବୋଇଲା
କୃଷ୍ଣଙ୍କୁ ମାରିବ ବୋଲି କଣେ ହସ୍ତ ଦେଲା ।
ଏତେ କହିଣ ଅନେକ ପ୍ରତିଜ୍ଞା ସେ କଲା
ନିଅବକାଶେ ଶଯ୍ୟନ ମନ୍ଦିରେ ଶୋଇଲା ।
ଜରାସନ୍ଧ ଆଦିକରି ସବୁ ରାଜାମାନେ
ପାତ୍ର ମନ୍ତ୍ରୀ ଯେଣ ଯାଇ ବିଜେ ଶଯ୍ୟସ୍ଥାନେ
ଯାଦବମାନେ ନିଶ୍ଚିନ୍ତ ହୋଇ ଶୋଇଛନ୍ତି
ହାତୁଆ ବାଟୁଆଙ୍କର ନାହିଁ କିଛି ଖିତି ।
ବଳରାମ ଆଦି ଉଗ୍ରସେନଙ୍କ ସହିତେ
କେହି ନ ଜାଣନ୍ତି ଶୋଇଅଛନ୍ତି ସମସ୍ତେ ।
ସାତ୍ୟକ ପ୍ରସନ୍ନଜିତ ଆବର ଉଦ୍ଧବ
ନିଦ୍ରିତ ଅଛନ୍ତି କୃତବର୍ମା ବସୁଦେବ ।
କହୁଁ କହୁଁ ଘୋଟିଗଲା ଅନ୍ଧାର ରଜନୀ
ଠଣା ମଣ୍ଡ ରହିଛନ୍ତି ଜରାସନ୍ଧ ସୈନ ।

ନ ଜାଣନ୍ତି ଏହା କିଛି ସକଳ ଯାଦବ
କେବଳ ଜାଣନ୍ତି ମାୟାଧର ବାସୁଦେବ ।
ଯା ମାୟାରେ ଚରାଚର ସୃଷ୍ଟି ଆତଯାତ
ସେ ପ୍ରଭୁଙ୍କ ପାଦତଳେ ରହୁ ମୋର ଚିତ୍ତ ।
ଜନ୍ମଜନ୍ମାନ୍ତରେ ମୂର୍ଖ ମୁଁ ଅଚ୍ୟୁତ ଦାସ
ଶ୍ରୀହରି କୃପାରୁ କଲି ଏ ଗ୍ରନ୍ଥ ପ୍ରକାଶ ।

— ❀ —

## ଶ୍ରୀକୃଷ୍ଣଙ୍କର ଦ୍ୱାରକାଗଡ଼ ନିର୍ମାଣ ଓ ଦ୍ୱାରକାରେ ଯାଦବମାନଙ୍କର ଅବସ୍ଥିତି

ଶୁକ ବୋଲନ୍ତି ହେ ଶୁଣ ପରୀକ୍ଷ ନୃପତି
ଜନଜନ୍ତୁ ଆଦି ଏହା କେହି ନ ଜାଣନ୍ତି ।
କେବଳ ଜାଣନ୍ତି ଏହା ପ୍ରଭୁ ଭଗବାନ
ବିଶ୍ୱକୁଟ ମାୟା ଅଟେ ଯାହାର ଅଧୀନ ।
ମନେ ମନେ ବିଚାରନ୍ତି ସେହି ଆଦିକନ୍ଦ
ଜରାସନ୍ଧ ସଙ୍ଗେ କେତେ କରୁଥିବା ଦ୍ୱନ୍ଦ୍ୱ ।
ଦେବକାର୍ଯ୍ୟ ପାଇଁ ଯାଙ୍କୁ ନ କରୁ ବିନାଶ
କେବଳ ଗର୍ଜି ହେଉଛୁ ରଣେ ପାଇ ତ୍ରାସ ।
ଏତେ ମାନହୀନ କଲି ପୁଣି ହିଁ ବେଢ଼ିଲା
ନିଶ୍ଚୟ ମଥୁରାଭୂମି ଗ୍ରହିବାକୁ ହେଲା ।
ପଳାଇ ପଳାଇ ସର୍ବେ ପାଇଲେଣି କଷ୍ଟ
ଉଗ୍ରସେନ ପରି ଲୋକ ହେଲେ ସ୍ଥାନ ଭ୍ରଷ୍ଟ ।
ହାଟବାଟ ପରାୟେ ମଥୁରା ହେଲା ନାଶ
ସମସ୍ତ ଯାଦବମାନେ ପାଇଲେଣି ତ୍ରାସ ।
ପୁଣିହିଁ ଆସିଣ ଜରା ଅଛି ଗଡ଼ ବେଢ଼ି
ରାତ୍ର ପାହିଲେ ଏହାଙ୍କୁ କାହିଁ ନେଇ କାଢ଼ି ।
ଚୌରାଶୀ କୋଟି ଯାଦବ ତାଙ୍କ ଅନ୍ତ ନାହିଁ
ହାତପଣ୍ଡ ହୋଇଲେ ଲୁଚନ୍ତେ ଯହିଁ ତହିଁ ।
ମତର ବେଳ ପର୍ଯ୍ୟନ୍ତେ ବଞ୍ଚାଇଲୁ ଭଲେ
ଅନେକ ପ୍ରମାଦ ହେବ ଦମନ ଶୁଣିଲେ ।
ଜାଣୁ ଜାଣୁ ବିପଦ ପଡ଼ିବା କାହିଁପାଇଁ
ଗାର୍ଗବ ଯୋଗେ ଦମନ ଆସିଅଛି ବାହି ।
ରଜନୀର ବିଭାଗେ ସବୁଙ୍କୁ ନେବି ଧରି
ଛୟାନବେ ସତ୍ରୁରାଜା ସର୍ବେଛନ୍ତି ବେଢ଼ି ।
ସେପାଡ଼ୁ ଏ ବିବାଦ ଆଜ ଅରଜିବା କେତେ
ବିନାଶ ହେଉ ସୈନ୍ୟକ ସମ୍ପଦାଦି ଯେତେ ।

ନରନ୍ତର ପରମାଦ ଉପୁଜଇ ଯହିଁ
ସେ ସ୍ଥାନକୁ ଛାଡ଼ିଯିବା ଶାସ୍ତ୍ରେ ଅଛି କହି ।
ଏମନ୍ତ ମନେ ବିଚାର କରି ଦେବ ସ୍ୱାମୀ
ବରୁଣ ରାଜାଙ୍କୁ ସ୍ତୁତି କଲେ ଅନ୍ତର୍ଯ୍ୟାମୀ ।
ଜୟ ଜୟ ରତ୍ନାକର ଜୟ ପୁଣ୍ୟ ବାରି
ଉତ୍ପତ୍ତି ସ୍ଥିତି ଲୟରେ ତୁମେ ଅଧିକାରୀ ।
ପାତାଳ ସୁତଳ ରସାତଳ ଆଦି ଜାଣି
ଏ ତୁମର ଉଦରଗର୍ଭ ନୁହେଁ ପରମାଣି ।
କ୍ଷୀର କ୍ଷାର ଇକ୍ଷୁ ପୁଣ ସୁରା ଘୃତ ଦଧି
ଚୌରାଶୀ କୋଟି ଗମ୍ଭୀର ଅଟେ ପୟୋନିଧି ।
ବଡ଼ବାନଳ ଭିତରେ ସୁଧାକର କୁଣ୍ଡ
ନବଦ୍ୱୀପ ସାତସିନ୍ଧୁ ତହିଁ ଏକଖଣ୍ଡ ।
ସେ କୁଣ୍ଡ ଭିତରେ ଅଛି ତୁମର ପାଟଣା
ବାରହ୍ମଣ ଭୁବନର କୋଟିଗୁଣ ଜାଣ ।
ସେ ପୁରେ ବିଶ୍ରାମ କର ସ୍ୱକୁଟୁମ୍ବ ଘେନ
ନିମିଷକେ ନାଶିପାର ସକଳ ମେଦିନୀ ।
ତୁମେ ଦେବ ଆଦିଅନ୍ତ ତିନିକାଳ ଜ୍ଞାତା
ପ୍ରାଣୀଙ୍କ ଜୀବନ ତୁମେ ଲକ୍ଷ୍ମୀଙ୍କର ପିତା ।
ଅକ୍ଷୟ ଅଜରାମର ତୁମେ ପୁଣ୍ୟଦେହୀ
ତୁମ ଆଦିଅନ୍ତ ମଧ୍ୟ ନ ଜାଣନ୍ତି କେହି ।
ଅଶେଷ କୋଟି ରତନ ତୁମ ଗର୍ଭୁ ଜାତ
ତୁମେ ଭିଆଇଛ ଚରାଚର ଏ ଜଗତ ।
ବୁଦ୍ଧିମନ୍ତ ବଳବନ୍ତ ସୁକ୍ଷ୍ମା ବିବେକ
ଅଷ୍ଟଲୋକପାଳଙ୍କର ତୁମେ ଯେ ପାଳକ ।
ଚାରିବେଦ ଅଷ୍ଟାଦଶ ପୁରାଣର ମୂଳେ
ତିର୍ଥ ବାରି ନକ୍ଷତ୍ରାଦି କର ସବୁକାଳେ ।
ନମସ୍ତେ ହେ ରତ୍ନ କର ଅର୍ଥୀ କାମଧେନୁ
ନମସ୍ତେ ହେ ରତ୍ନାକର ଯୁଗକଳ୍ପ ମନୁ ।
ନମସ୍ତେ ହେ ରତ୍ନାକର ଦେବ କାମରୂପୀ
ଅଶେଷ ବ୍ରହ୍ମାଣ୍ଡ ତୁମେ ରହିଅଛ ବ୍ୟାପି ।
ଭୂଲୋକ ଯେ ଭୁବଲୋକ ସ୍ୱର୍ଗଲୋକ ମୂଳେ
ଜନଲୋକ ମହଲୋକ ସତ୍ୟଲୋକ ତୁଲେ ।
ସୂର୍ଯ୍ୟଲୋକ ଚନ୍ଦ୍ରଲୋକ ଧ୍ରୁବଲୋକ ଜାଣି
ବ୍ରହ୍ମଲୋକ ରୁଦ୍ରଲୋକ ବିଷ୍ଣୁଲୋକ ପୁଣି ।
ଗୋଲୋକ ଭୁବନ ନିରଞ୍ଜନ ଲୋକ ଯାଏ
ଏକୋଣେଇ ବଇକୁଣ୍ଠ ଜାଣି ପୁଣ୍ୟମୟେ ।

ଏ ତୁମ ମହିମା ହାଦେ ଆଦି ଅନ୍ତ ନାହିଁ
ଜଳ ସ୍ଥଳ ଅନଳରେ ପୂରିଅଛ ରହି ।
ତୁମର ସଞ୍ଚଳ ଚରାଚର ଏ ଧରଣୀ
ପରମ ପ୍ରକୃଷ୍ଟ ତୁମେ ବେଦ ଅଛ ଭଣି ।
ରତ୍ନାକର ଶ୍ରୀଚରଣେ ଶରଣ ନମାମି
ଅତୁଳ ଦାସ କରକୁ ଉଦ୍ଧାରିବ ସ୍ୱାମୀ ।
ଏସନକ ସ୍ତୁତି ଯହୁଁ କଲେ ନନ୍ଦସୁତ
ବରୁଣ ଦେବତା ମନେ ଲାଗିଲା ଉଚାଟ ।
ମନ ମଧ୍ୟେ ଜାଣିଲେ ସେ ସୁନ୍ଦର ବର
ମଥୁରା କଟକେ ମୋତେ ସୁମନ୍ତ୍ର ହରି ।
ତରଙ୍ଗ ମନ୍ତ୍ରୀକୁ ପୁଚ୍ଛେ ସାଗରାଧିପତି
କପାଇଁ ଚଳନ୍ତି ମୋତେ ଦେବ ଶ୍ରୀପତି ।
ମନ୍ତ୍ରୀବର ବୋଲେ ଜରାସନ୍ଧ ରାଜାପାଇଁ
ଲକ୍ଷେରାଜା ଘେନ ସେହୁ ମଥୁରାକୁ ବାହି ।
ବତିଶ କ୍ଷୌହଣୀ ବଳେ ସେ ଦମନ ରାଜା
ଯାଦବଙ୍କୁ ଜିଣିବାକୁ କରିଛି ପରଜା ।
କାଳଦମନ ଗର୍ଗବ ମୁନିଠାରୁ ଜାତ
ଜବାର ଯେତେକ ବଳ ଆଣିଛି ସମସ୍ତ ।
ତେଣୁକରି ଜଗନ୍ନାଥ ଯିବେ ଅପସରି
ଭୂମିଖଣ୍ଡେ ମାଗିଣ ରହିବେ ବାସକରି ।
ବରୁଣ ବୋଲେ ଏହା ମୁଁ ପୂର୍ବୁ ଅଛି ଜାଣି
ଆଗହୁଁ ସେ କୁଶସ୍ଥଳୀ ଦ୍ୱାରକା ପ୍ରମାଣି ।
ଅନେକ କାଳ ପର୍ଯ୍ୟନ୍ତ ଗୁପ୍ତ ହୋଇଥିଲା
ବ୍ରହ୍ମାଙ୍କ ବରସେ ଆସି ଉଦିତ ହୋଇଲା ।
ସତରସହସ୍ର ଷାଠିଏ ଯୁଗର ଅନ୍ତରେ
ବସୁ ନାମରେ ହାପର ହୁଏ ସେ ସ୍ଥାନରେ ।
କଂସ ହୋଇଥିଲା ପୂର୍ବଜନ୍ମର ଶର୍ଯ୍ୟାତ
ଏହି ଶ୍ରୀକୃଷ୍ଣ କଲେ ଯେ ସେ କଂସକୁ ହତ ।
ତାହାଙ୍କର ପୂର୍ବଜନ୍ମ ଅନେକ ବସୁନ୍ଧରା
ସମୟେ ସେ ଆସିଣ ଜନ୍ମିଲେ ଦେହ ଧରି ।
ଏବେ ଗଲା ଦେବତାମାନଙ୍କ ମନୋଖେଦ
ପୃଥିବୀ ଦେବୀ ଉଶ୍ୱାସ ଲଭିଲେ ଏ ଘନ୍ତ ।
ଏବେ ସେ ଦ୍ୱାପରଯୁଗ ପ୍ରତିଷ୍ଠା ହୋଇଲା
ଏ ମର୍ତ୍ତ୍ୟ ଭୁବନେ ଏବେ ଶୋଭା ପ୍ରକାଶିଲା ।
ଋଷି ତପଙ୍କର ମନ ହେଲା ଏବେ ସୁସ୍ଥ
ସବଂଶେ ଅସୁର ବଳ କରିବେ ନିପାତ ।

ଯାହାଙ୍କୁ ବ୍ରହ୍ମାଦି ଦେବେ ଯୋଗେ ଧ୍ୟାନକର
ସେ ଅବ୍ୟକ୍ତ ରୂପ ଆସି ହେଲେ ଦେହଧାରୀ ।
ଯାହାଙ୍କ ନବାସଭୂମି ଦ୍ୱାରକା ନଗର
ରତ୍ନାକରରେ ଏଥିରେ କରନ୍ତୁ ବିହାର ।
ଚୌଷଠି କୋଟି ଯାଦବ କୁଟୁମ୍ବ ସହିତେ
ସଙ୍କେତେ ଯେଣ ବିଜୟ ହେବେ ଜଗନ୍ନାଥେ ।
ସ୍ୱର୍ଗଠାରୁ ଅଧିକ ଏ ପୁର ଶତ ଗୁଣେ
ଭୁଞ୍ଜିଲେ ସ୍ୱର୍ଗ ସମ୍ପଦ ଏଥି ଜଣେ ଜଣେ ।
ଅଷ୍ଟ ପାଟରାଣୀ ବିଭା ହେବେ ଜଗନ୍ନାଥ
ଲକ୍ଷେ ବାସ୍ତର କୁମର କରିବେ ସେ ଜାତ ।
ପ୍ରତ୍ୟେକେ ଦଶ କୁମର ଦଶଗୋଟି ଦୁହିତା
ଏରୂପେ ଦ୍ୱାଦଶ ପାଟ ହୋଇବ ଗଣିତା ।
ଶଙ୍ଖନିଧି ପଦ୍ମନିଧି ସୁଧର୍ମା ଯେ ସଭା
ଏ ଭୁବନ ମଧ୍ୟେ ଆସି ପ୍ରକାଶିବେ ଶୋଭା ।
ଏତେକାଳ ଏ ସ୍ଥାନର ଭାଗ୍ୟଙ୍କ ବଶିଲା
ଶୁଦ୍ଧ ସ୍ୱର୍ଣ୍ଣ ସଙ୍ଗେ ଅଷ୍ଟରତନ ମିଳିଲା ।
ଜଳ ତରଙ୍ଗ ମନ୍ତ୍ରୀକି ବୋଲେ ଜଳପତି
ବିଳମ୍ବ ନକରି ବାରୁ ଚଳ ଶୀଘ୍ର ଗତି ।
କୁଶସ୍ଥଳୀ ଦ୍ୱାରକାରେ ସିନ୍ଧୁ ଅଛୁ ମାଡ଼ି
ଶତେ ତାଳ ଗଭୀର ସେ ଜଳ ଯାଉ ଗୁଡ଼ି ।
ବିଶ୍ୱକର୍ମାଙ୍କୁ ବୋଇଲେ ପୁର ନିର୍ମାକର
ଯାଦବ ଯେଣ ରହିବେ ରାମ ଚକ୍ରଧର ।
ମଥୁରାକୁ ଲଗିଛନ୍ତି ଜରାସନ୍ଧ ଭୟ
ତେଣୁ ଏ ସ୍ଥାନେ ରହିବେ ଆସି ଦେବରାୟ ।
ବରୁଣଙ୍କ ଆଜ୍ଞା ଯେଣ ବିଶ୍ୱକର୍ମା ଗଲେ
କୁଶସ୍ଥଳୀ କଟକରେ ପ୍ରବେଶ ହୋଇଲେ ।
ସମୁଦ୍ର ସେଠାରୁ ଗୁଡ଼ିଗଲା ସତପୁଣ
ଆପେ ବିଶ୍ୱକର୍ମା କଲେ ସେ ପୁର ନିର୍ମାଣ ।
ଅଭୁଲାଇତ ସେ ଦିଶେ ବାରସ୍ୱାରୀ ପୁର
ନାହିଁ ପଟାନ୍ତର ତାକୁ ସ୍ୱର୍ଗ ମଞ୍ଚ ପୁରୀ ।
ପୁରେ ପୁରେ କରି ବିଶ୍ୱକର୍ମା ନିର୍ମାଣିଲା
ଛଅ ବିଛଅ ପୁର ସେ ଏକୁ ଏକ ଭଲ ।
ମେଡ଼ ମଣ୍ଡପ ଦେଉଳ ଜଗତୀ ଅଟ୍ଟାଳୀ
ନବ ରଚନରେ ପୁର ଦିଶେ ଭଲ ଭଲ ।
ରତ୍ନାକର ପୁର ନିର୍ମା ହେବା ଜାଣି କରି
ମଗରବାହନେ ଚଢ଼ି ଯାଏ ଦଣ୍ଡଧାରୀ ।
ପାଦୁକା ମନ୍ତ୍ର ସ୍ମରି ଚଳଇ ତୁରିତେ
କୃଷ୍ଣଙ୍କ ଆଗେ ମିଳିଲା ସେ ନିଃଶ୍ୱାସମାତେ ।
ଦେଖିଣ ଖଟଣ୍ଡ ଦୂରରୁ ଉଠିଲେ ଶ୍ରୀହରି
ବରୁଣଙ୍କୁ ସାଇ କୋଳ ସମ୍ଭାଷଣ କରି ।
ଉଭୟକୁଳ କୁଶଳ ଏକ ଆରେ ପୁଛି
ଜରାସନ୍ଧ ଉପଦ୍ରବ କଥା କହିବସି ।
ବୋଇଲେ ସତରଥର ଉବୁଟିଲୁଁ ତହୁଁ ।
କାଳଜମନ ଆସିଛି ପଳାଇବୁ କାହୁଁ ।
କେତେକ କଷ୍ଟରେ ଥିବା ଆମ୍ଭେ ଏଥେ ରହି
ସ୍ୱରାଜଣା ଲକ୍ଷେ ରାଜା ବେଢ଼ୁଁ ବେଳ ବାହି ।
ଆମ୍ଭ ହେତୁ ଯଦୁଗଣେ ପାଇବେକ କଷ୍ଟ
ଅନୁବ୍ରତେ ଧନ ସବୁ ହେଲା ଆମ୍ଭ ନଷ୍ଟ ।
କାଳଦମନ ନୃପତି ନ ହୋଇବ ଜୟେ
ଦେବକାର୍ଯ୍ୟ ପାଇଁ ଜରା ନ କରୁ ସେ କ୍ଷୟେ ।
ଅଯୋଗେ ଆସିଣ ରାଜ୍ୟ ବସିଅଛୁ ମାଡ଼ି
ଲକ୍ଷେପୁର କରିଣ ଯେ କଟକକୁ ବେଢ଼ି ।
ବଳଦେବ ଆଦି କରି ନ ଜାଣନ୍ତି ଆନ
ନିଶ୍ଚିନ୍ତରେ ନିଦ୍ରା ତ ସେ ନାହିଁ ତାଙ୍କ ଜ୍ଞାନ ।
ତୁମ୍ଭେ ଯେ ଉତ୍ତ୍ରୁ ସ୍ଥଳ ଅଟ ବାରାନିଧି
ଅଶେଷ ମହିମା ତବ ଅଟଇ ପ୍ରୟୋଧି ।
ମୁହିଁ ତୁମଙ୍କୁ ଆଶ୍ରୟ କଲି କରି ଶ୍ରଦ୍ଧା
ଜୀବନ ଉପରେ ମୋର ଲାଗେ ଆସି ବାଧା ।
ତେଣୁକରି ଶରଣ ମୁଁ ମାଗଇ ନବେଶି
କୁଟୁମ୍ବ ଯେଣ ରହିବ ସ୍ଥାନ ମୋତେ ଦେସି ।
ପ୍ରତ୍ୟକ୍ଷେ ଦେଖୁଛ ତୁମେ କରୁଛି କଟାଳ
ପ୍ରତିଜ୍ଞା କରି ଆସିଛି ଗୋପବାଳୀ ବାଳ ।
ରଜନୀ ପାହିଲେ ଆଜ ପଡ଼ିବ ପ୍ରମାଦ
ତେଣୁକରି ମନରେ ମୁଁ ପାଉଅଛୁ ଖେଦ ।
ଶ୍ରୀଜଗନ୍ନାଥଙ୍କ ମୁଖୁଁ ଏ ବଚନ ଶୁଣି
କରଯୋଡ଼ିଣ ବରୁଣ କହେ ମୃଦୁବାଣୀ ।
ହେ ଦେବ ଦେବଙ୍କର ତୁ ଅଟୁ ଶିରୋମଣି
ସ୍ଥାବର ଜଙ୍ଗମ ସବୁ ସୃଜିଅଛୁ ପୁଣି ।
ଦେବଙ୍କ ଉପରେ ତୁମେ ଅଟ ମହାଦେବ
ସର୍ବଙ୍କ ପୁରୁଷ ତୁମେ ଅଟ ଆଦିଦେବ ।
ତୁମେ ରତ୍ନାକର ପଦ ଦେଇଅଛ ମୋତେ
ଠାକୁର ହୋଇ ଭୃତ୍ୟକୁ ପଚାରୁଛ କେତେ ।

ହେ ଦେବ ଆଗହୁଁ ଏହା ମୁହିଁ ଅଛୁ ଜାଣି
ବ୍ରହ୍ମାଙ୍କ ଦିବସଠାରୁ ଅଛୁ ଦିନ ଗଣି ।
ଦ୍ୱାପର ଯୁଗରେ ଭାର ନିବାରିବା ପାଇଁ
କଉତୁକେ ଜନ୍ମି ଅଛ ନରଦେହ ବହି ।
ଯୁଗେ ଯୁଗେ ଏହିପରି ରୂପ ତୁମ୍ଭେ ଧରି
ଦ୍ୱାରାବତୀ ପୁରେ ଚିରକାଳ ବାସ କରି ।
ତୁମେ ମୋତେ ନ ସୁମରୁଁ ପୂର୍ବୁ ଅଛୁ ଜାଣି
କୁଶସ୍ଥଳୀ ଦ୍ୱାରକା ମୁଁ ଅଛଇ ନିର୍ମାଣି ।
ଦେବାଧିଦେବତା ତୁମେ ମହାଲକ୍ଷ୍ମୀ ସାଇଁ
ତୁମ ଆଜ୍ଞା ପ୍ରମାଣେ ବା କେଉଁକଥା ନାହିଁ ।
କୁଶସ୍ଥଳୀ ଦ୍ୱାରକା ଯେ ତୁମ୍ଭ ନିଜ ଭୂମି
ସର୍ବ ଯାଦବଙ୍କୁ ଆଗ ପେଶ ଅନ୍ତର୍ଯ୍ୟାମୀ ।
ପୁଣି ଜଗନ୍ନାଥ ଚିତ୍ତୁଁ ହୋଇଲେ ହରଷ
ଗରୁଡ଼କୁ ସୁମରଣା କଲେ ପୀତବାସ ।
ମେରୁ ମନ୍ଦରରେ ବୈନତେୟ ବସିଥିଲା
ଜଗନ୍ନାଥ ଚିନ୍ତା କଲେ ଅନ୍ତରେ ଜାଣିଲା ।
ପାଦୁକା ମନ୍ତ୍ରବଳେ ସେ ଗମେ ଶୂନ୍ୟମାର୍ଗେ
ନିମିଷେ ମିଳିଲା ଆସି କୃଷ୍ଣ ସ୍ୱାମୀ ଲାଗେ ।
କରପଦ ଯୋଡ଼ିକରି ସ୍ୱାମୀରେ ପଚାରି
କି କାରଣେ ସୁମରଣା କଲ ଦେବହରି ।
ଜଗନ୍ନାଥ ବୋଇଲେକ ଶୁଣ ବୈନତେୟ
ପ୍ରତ୍ୟକ୍ଷେ ଦେଖୁଛୁ କିସ କହିବା ଯେ କୁହ ।
ସ୍ୱର ଉଣା ଲକ୍ଷେ ରାଜା ସୈନ୍ୟ ଛନ୍ତି ବେଢ଼ି
କାଳଦମନ ସନ୍ତତେ ଦେଉଛନ୍ତି ଧାଡ଼ି ।
ସତର ଧାଡ଼ି ବଞ୍ଚିଲୁ ତାହାଙ୍କ ହାତରୁ
କପରି ରକ୍ଷା ପାଇବୁଁ ଏବେଟି ଏଥିରୁ ।
ଖଗେଶ୍ୱର ବୋଲେ ଦେବ ନ କୁହ ଯେ ଏହା
କେବଣ ଆଜ୍ଞା ହେଉ ହେ ଲକ୍ଷ୍ମୀଦେବୀ ନାହା
ତୁମ୍ଭ ଶ୍ରୀମୁଖରୁ ବାକ୍ୟ ଶୁଣନ୍ତେ ମୁଁ ହରି
ଛପ୍ପାଣୋଇଁ ସସ୍ର ରାଜା ଦେବି ଧ୍ୱଂସ କରି ।
ଆଜ୍ଞା ହେଲେ ସମସ୍ତଙ୍କୁ ନାଶିବି ଏକ୍ଷଣି
ଡେଣାଘାତେ ଉଡ଼ାଇବି ଅଣ୍ଡେ ହାଣି ହାଣି ।
ନିମିଷକ ମଧ୍ୟେ ସବୁ କରିବଇଁ ଧ୍ୱଂସ
ଖଣ୍ଡ ଖଣ୍ଡ କରି ପିଞ୍ଜି ଦେବି ହାଡ଼ମାଂସ ।
ନାରାୟଣ ବୋଇଲେକ ସମସ୍ତ ଇଶ୍ୱର
ଦୋଷଦେଇ ମାରିବଟି ଗୋଟି ଗୋଟି ଧରି ।

ଏବେ ଆମରି ବଚନ ଶୁଣ ବୈନତେୟ
କଳି ଭିଆଇବାର ଯେ ନୁହେଁ ଏ ସମୟ ।
ଏଥିରୁ ଧାଡ଼ି ଆମ୍ଭଙ୍କୁ ବିଷମ ପଡ଼ିଲା
ଅପସରି ଯିବାର ତ ଉଚିତ ହୋଇଲା ।
ବରୁଣଙ୍କୁ ମାଗିଲୁ ଯେ ଦେଲେ ଦିବ୍ୟଭୂଇଁ
ଯାଦବମାନଙ୍କୁ ନେଇ ଘୁଞ୍ଚିବୁ ଯେ ତହିଁ ।
ଯେ ଯାହା ଆୟୁଧ ଧନ ସମ୍ପଦାଦି କରି
ମଥୁରା ସ୍ଥାପିବୁ ନେଇ ଦ୍ୱାରାବତୀ ପୁରୀ ।
ପୁଣି ଖଗେଶ୍ୱର ଚିତ୍ତୁଁ ହୋଇଲେ ହରଷ
କଟକକୁ ପିଠିପରେ ବସାଇ ପକ୍ଷୀଶ ।
ବଳଦେବ ଉଗ୍ରସେନ କାହାରି ଜ୍ଞାନ ନାହିଁ
ନିଶ୍ଚେଷ୍ଟରେ ଅଚେତନେ ପଡ଼ିଛନ୍ତି ଶୋଇ ।
ଶ୍ରୀକୃଷ୍ଣଙ୍କୁ ଆଜ୍ଞା ମାଗି ବରୁଣ ଚଳିଲେ
ରତ୍ନାକର କଟକରେ ଯାଇଣ ମିଳିଲେ ।
ମଥୁରାପୁରକୁ ପୃଷ୍ଠେ ରଖି ଖଗେଶ୍ୱର
ଆକାଶ ମାର୍ଗରେ କ୍ଷେପି ଚଳେ ଧାଡିକାର ।
ରାତ୍ର ଚଉବଂଶ ଦଣ୍ଡ କାହାରି ଜ୍ଞାନ ନାହିଁ
ଦ୍ୱାରକାରେ ମଥୁରାକୁ ଥୋକେ ଦୃଢ଼େ ନେଇ
ଚୌରାଶିକୋଟିଯାଦବେ ଶୋଇ ଯେଯାହାରେ
ପାତ୍ର ଅମାତ୍ୟ ସବୁ ନେଲେ ସେ ପିଠିରେ ।
ଦ୍ୱାରକାରେ ଯାଇ ସବୁ ଯାଦବେ ମିଳିଲେ
ଶୁଣ ଆହେ ପରୀକ୍ଷିତ ଶ୍ରୀଶୁକ କହିଲେ ।
ଅଶେଷ ମାୟାଧର ଯେ ପ୍ରଭୁ ଦେବରାୟେ
ଦେବକାର୍ଯ୍ୟେ ରହିଲେ ସେ ଏସନ ଉପାୟେ
ଶୁଭାଶୁଭ କର୍ମ ଯେତ୍ତୁ କରିପାରେ ଆନ
କୌତୁକେ ରଖିଲେ ଯଦୁଗଣେ ଭଗବାନ ।
ସ୍ୱରଉଣା ଲକ୍ଷେ ରାଜା ଗଡ଼ ଛନ୍ତି ବେଢ଼ି
ନିଦ୍ର ଅଚେଷ୍ଟାରେ ସର୍ବେ ଶୋଇଛନ୍ତି ପଡ଼ି ।
କପଟ କରି ଅଛନ୍ତି ମାୟାଧର ଯାହା
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ନ ଜାଣନ୍ତି ତାହା ।
ମଥୁରା କଟକେ ଜନ ଜନ୍ତୁ ଗମ୍ୟ ନାହିଁ
ସମସ୍ତ ପଠାଇ ଏକା ଅଛି ଲକ୍ଷ୍ମୀସାଇଁ ।
ବିଶ୍ୱକର୍ମାକୁ ଯେ ଆଜ୍ଞା ଦେଲେ ଚକ୍ରଧର
ମାୟାପୁର ଗୋଟିଏକ ଶୀଘ୍ର ତୁମ୍ଭେ କର ।
ସ୍ୱରଉଣା ଲକ୍ଷେ ରାଜା ଆସିଛନ୍ତି ବାହୁ
ସର୍ବେ ଆଶ୍ଚର୍ଯ୍ୟ ହୋଇବେ ତାହାକୁ ଅନାଇଁ

ନାରାୟଣ ଆଜ୍ଞା ପାଇ ବିଶ୍ୱକର୍ମା ଯାଇ
ତତକ୍ଷଣେ ମାୟାପୁର ରଚିଲାକ ସେହି ।
ଅମର ବାରସ୍ତୀ ଯେ ନୋହିବ ସମାନ
ଏକା ରହିଛନ୍ତି ତହିଁ ଦେବ ଜନାର୍ଦ୍ଦନ ।
ଲକ୍ଷେ ରାଜାଙ୍କର ଥାଟ ବାହାରେ ଅଛନ୍ତି
କେହି ଜଣେ ସେହି କଥା ଜାଣିତ ନାହାନ୍ତି
ଚତୁର୍ଭୁଜ ମାୟାଧର ଯେଉଁ ଭଗବାନ
ତାଙ୍କମାୟା ଜାଣିବାକୁ କେ ଅଛି ସୁଜନ ।
ସେ ମାୟା ନ ଲାଗୁ ମୋତେ ଆହେ ପୀତବାସ
ତବ ପାଦଭୃତ୍ୟ ଅଟେ ମୁଁ ଅଚ୍ୟୁତ ଦାସ ।

---

## ମୁଚୁକୁନ୍ଦ କୋପାନଳରେ କାଳଦମନ ଭସ୍ମ

ଶୁକମୁନି ବୋଇଲେ ହେ ଶୁଣ ପରୀକ୍ଷିତ
ଅମିୟ ପୀୟୂଷ ଏ ଯେ ଶ୍ରୀହରି ଚରିତ ।
ଏମନ୍ତ ପ୍ରକାରେ ତହିଁ ଗଲା କେତେବେଳ
ରଜନୀ ପାହି ହୋଇଲା ପ୍ରଭାତର କାଳ ।
ରାଜାନ୍ତେ ନିଦ୍ରା ସେମାନେ ଉଠିଲେ ଚତୋଇ
ମାର ମାର ଧର ଧର ଶବ୍ଦ ଭୟଙ୍କର
ସମୁଦ୍ର ପର୍ଯ୍ୟନ୍ତେ ଶୁଭେ ମୁଖରାବ ଘୋର ।
ଅଷ୍ଟାଦଶ ଲକ୍ଷେ ରାଜା ପଦାତି ସହିତେ
କରେ ଶସ୍ତ୍ର ଧରି ସର୍ବେ ଧାଇଁ ଯେଝାମତେ ।
ମାର ମାର ଧର ଧର ଶବ୍ଦ ଘୋରରଡ଼ି
ପଥରମାନ ପୁରରୁ ପକାଇଲେ ତାଡ଼ି ।
ସେହି ପଥର ନେଇଣ ପୋତିଲେକ ଖଣା
ଜଣ ଜଣକରେ ଜୟ କରିଣ ପାତନା ।
ଝିଙ୍କାଝିଙ୍କି କରି ଉପାଡ଼ିଲେ କାଠମାନ
କୁରାଢ଼ିରେ କବାଟକୁ କରିଦେଲେ ଚୂର୍ଣ୍ଣ ।
ଯେ ଯାହାରୂପେ ସର୍ବେ ପଶିଲେ ଝସାଇ
ଅତି ଆନନ୍ଦରେ କେହୁ ଆଗ ଢେଲିଯାଇ ।
ଦେଖିଲେକ ଘରମାନ ହୋଇଅଛି ଛୁଚ୍ଛା
ବାହାରନ୍ତି ବଳ ସର୍ବେ ଯେ ଯାହାର ଇଚ୍ଛା ।
ପୁଣି ଭାଳନ୍ତି ଅଇଲୁ ଆମେ ଯହିଁପାଇଁ
ସର୍ବଘର ଛୁଚ୍ଛା ଏଥେ ଜଣେ କେହି ନାହିଁ ।
କେବଳ ମାତ୍ର ରହିଛି ଅଟାଳ ଜଗତି
କାନ୍ଥ ବାରନ୍ଦ ଖୋଜନ୍ତି ଆଉ ଚଉକତି ।

ଜରାମୁଖ ସ୍ତ୍ରୀହିଁ କାଳଦମନ ବୋଇଲା
ହେ ମଇତ ଏକଥା ତ ଗହନ ହୋଇଲା ।
ଯ ହାରି ଆମ୍ଭେନ୍ତେ ଆସି ଏତେ କଷ୍ଟ ପାଇ
ସର୍ବଘର ଛୁଚ୍ଛା କେହି ଜଣେ ଏଥେ ନାହିଁ ।
ଅଦୃଷ୍ଟ ଅଶ୍ରୁତ ଏହ ଅସମ୍ଭବ ଭଲା
ଏତେ ଲୋକ ଘରେ ଥିଲେ କାହିଁ କେଣେ ଗଲା
ଆମର ଥାଟ ଅଛନ୍ତି ଚଉକତି ବେଢ଼ି
କାହିଁ ଲୁଚିଲେ ଯେମାନେ ଗଲେ କବା ଉଡ଼ି
ଜଣେହେଁ ମନୁଷ୍ୟ ଏଥେ ନାହାନ୍ତି ତ ଭଲା
ଗାଈ ପଶୁଗୋଠ କେହି ଦୃଶ୍ୟ ତ ନୋହିଲା ।
ଜରା ବୋଇଲାକ ମୂର୍ଖ ଜାଣୁଛୁ ଆଗହୁଁ
ଅନେକ ବାର ସେ ତହୁଁ ଗଲେ କହୁଁ କହୁଁ
ବଡ଼ ମାୟାବୀ ସେ ଦୁଇଭାଇ ଯେ ଅଟନ୍ତି
ହାତେ ଧରୁ ଧରୁ ସେହୁ ଫୋପଡ଼ାଇ ଯାନ୍ତି
କୌଣସି ରୂପରେ ତାଙ୍କୁ ନ ପାରିଲୁ ଜିଣି
ତେଣୁ ମୁଁ ଆସିଛି ତୁମ୍ଭଙ୍କୁ ତ ସଙ୍ଗେ ଘେନି ।
ମୋର ବିଦ୍ୟାବୁଦ୍ଧି ସବୁ ସରିଲା ଉପାୟେ
ତୁମେ ଯାଦବ ବଳରେ ଜାରପାର ଜୟେ ।
ତୁମ ବୁଦ୍ଧିବଳେ କାର୍ଯ୍ୟ କରୁଛୁ ତ ନୋହିଲା
ଜନମୁଖେ ଲାଜ ଅପବାଦେ ସେ ମିଳିଲା ।
ଯେଉଁ ସମୟରୁ ଗଡ଼ ବେଢ଼ିଲୁଣି ଆସି
କାର୍ଯ୍ୟ ସିଦ୍ଧି ହୋଇଥାନ୍ତା ଗଡ଼ରେ ଥିଲେ ପଶି
ହେ ମଇତ ତୁମେ ମୋର ନ କରିଲ ବୋଲ
ହେଲେ କାର୍ଯ୍ୟ ନଷ୍ଟ ହେଲା ନୋହିଲାତ ଭଲ ।
ଦମନ ବୋଲଇ ମଲା ଗଲା ଦୁହେଁ ସରି
ପଣ୍ଡିତ ଲୋକ ତହିଁକି ଶୋଚନା ନ କରି ।
ତୁମେ ଆମ୍ଭ ଦୁଇଜଣ ଯେବେ ଏକ ହୋଇ
କ୍ଷଣକରେ ଯାଦବଙ୍କୁ ପାରିବା ଯେ ଦହି ।
ଲକ୍ଷେପୁର କରି ଗଡ଼ ବେଢ଼ନ୍ତେ ଚୌକତି
ଏହା ଦେଖିଣ ଗୋପାଳେ କଲେ ମହାଯୁକ୍ତି ।
ପ୍ରାଣର ବାଳକେ ସେହୁ ଲୁଚିଛନ୍ତି ଅବା
ସ୍ଥଳ ନିର୍ବନ୍ଧ କରିଣ ସକଳେ ଖୋଜିବା ।
ଏହିରୂପେ ସେହି ଦୁହେଁ ହୋଇ କୁହାକୁହି
ଶ୍ରୀପୁରରେ ବିଜେ କଲେ ଧରାଧରି ହୋଇ ।
ପଛରେ ଗୋଡ଼ାଇଛନ୍ତି ଲକ୍ଷେକ ନୃପତି
ଦ୍ୱାରଙ୍କ ଗଳି ଥାନମାନ ଲେଉଡ଼ି ଚଉକତି ।

ବିଶ୍ୱକର୍ମାର ଘଟନ ମଥୁରା ନଗରୀ
ବିଚିତ୍ର ପୁର ଯେସନେ ବାରସ୍ୱତୀ ପୁରୀ ।
ଶ୍ରଦ୍ଧା ପାଇଣ ଦେଖନ୍ତି ସର୍ବ ଦଣ୍ଡଧାରୀ
ଧନ୍ୟ ଏ ମଥୁରା ବୋଲି ପ୍ରଶଂସା କରି ।
କୋଟିପାଦେ ଲକ୍ଷ୍ମୀ ଏଥେ ବିଜେ କରିଛନ୍ତି
ଏ ପୁରକୁ ତେଜିବାକୁ ହେଲା କେଉଁ ମତି ।
ଏସନକ ବିସ୍ମରଣ ଧାଉଁକାରେ ଗଲେ
ନଗରର ସିଂହଦ୍ୱାରେ ଯାଇଣ ମିଳିଲେ ।
ଦେଖିଲେ ସକଳ ଶୋଭା ପାଏ ଦିବ୍ୟପୁର
ଦ୍ୱାଦଶ ତାଳ ଉତ୍ସର୍ଗ ଅଟେ ସିଂହଦ୍ୱାର ।
କାଞ୍ଚନ ବାଉମୁନ୍ଦା ଯେ କମଳର ଶିରୀ
ଚନ୍ଦ୍ରମଣ୍ଡଳ ଜ୍ୟୋତିକୁ ଧବଳର ଧାରୀ ।
ଉଭା ହୋଇ ମେଲି କାନ୍ଥ ମଣ୍ଡଳି ଉପରେ
ନେତ ପତାକ ଉଡ଼ଇ ତହିଁ ନିରନ୍ତରେ ।
ହାଟବାଟ ପରିମଳ ରମଣୀୟ ସ୍ଥାନ
ଦେଖିଣ ମୋହ ହୋଇବେ ସର୍ବ ଯୋଗୀଜନ
କାଠ ଅରଗଳ ଫେଇ ଭିତରକୁ ପଶି
ଦେଖିଲେ ସେ ପୁରେ ବାଳ କୁମରେକ ବସି ।
ମାଳେନ୍ଦ୍ରବର ପରାୟେ ବିରାଜଇ ତନୁ
ନିର୍ମଳ ଆକାଶେ ଯେହ୍ନେ ଉଦେ ଇନ୍ଦ୍ରଧନୁ ।
ମସ୍ତକରେ ଦିବ୍ୟଚୂଳ ବର୍ହିପୁଚ୍ଛ ଜିଣି
କଟିମୂଳ ପରିଯନ୍ତେ ଲମ୍ବି ଅଛି ବେଣୀ ।
ବାହୁରେ ବାଜୁବନ୍ଧ ଯେ କର୍ଣ୍ଣରେ କୁଣ୍ଡଳ
ଶ୍ରୀଭୁଜେ କଙ୍କଣ ଗଳେ ନବରତ୍ନ ମାଳ ।
ଲଲାଟରେ ଚିତା ମୃଗନାଭିର କସ୍ତୁରୀ
ହୃଦୟରେ ବନମାଳା ଅତ୍ୟନ୍ତ ମାଧୁରୀ ।
ପୀତବାସ ପରିଧାନ ହୋଇଛନ୍ତି ଅଙ୍ଗେ
ବିଦ ମୁଦ୍ରି କଙ୍କଣାଦି ସ୍ୱର୍ଣ୍ଣହାର ସଙ୍ଗେ ।
ଗୋଡ଼େ ଗୋଡ଼ବଳା ବାନ୍ଧି ଅଛନ୍ତି ବାହୁଟି
ମଣି ମାଣିକ୍ୟ ମୁକୁତା ହୀରା କୋଟି କୋଟି ।
ଅପୂର୍ବ ବାଳମୂରତି କନ୍ଦର୍ପ ଶୋଭା
ସିଂହଦ୍ୱାରେ ମାଡ଼ିବସି ସେ ଦେବାଧିଦେବା ।
ପାଦରେ ପାଦ ଛନ୍ଦିଣ ବସି ପଦ୍ମାସନେ
ପୂର୍ବକୁ ଚାହିଁ ମୁଖକରି ବିଜେ ଭଗବାନେ ।
ଦେଖି ତାଙ୍କୁ ମୋହ ହେଲେ ସର୍ବ ମହୀପାଳ
ଏକଦୃଷ୍ଟି କରିଣ ସେ ଚାହିଁଲେ ସକଳ ।

ଜରା କାଳଦମନକୁ ଚାହିଁଣ ପୁଚ୍ଛଇ
ଦେଖ ହେ ମଇତ୍ର ଏହା ଅପୂର୍ବ ଅଟଇ ।
ରାଜ୍ୟଯାକ ଲୋଡ଼ିଲୁ ଯେ ବୁଲି ସବୁଠାରେ
କାହାରିକି ଜଣେ ମାତ୍ର ନ ଦେଖି ନେତ୍ରରେ ।
ଆମ୍ଭମାନଙ୍କୁ ଦେଖି ଏ ନ କରଇ ଭୟେ ।
ଆରମ୍ଭେ ବସିଅଛଇ ସିଂହଠାଣି ପ୍ରାୟେ ।
ନଖ ମୁଖ ନାସିକା ଯା ଅତ୍ୟନ୍ତ ସୁସଞ୍ଚ
ନାହିଁ ପଟାନ୍ତର ଯାକୁ ସ୍ୱର୍ଗପୁର ମଞ୍ଚ ।
କେତେକାଳ ଧାତା ବସି ଗଢ଼ିଲା ଯା ଦେହ
ବାଖାଣିବା କେତେ ଯାର ରୂପଗୁଣଚୟ ।
ଭ୍ରୂଲତା ମଦନଧନୁ କାମ ପଞ୍ଚବାଣ
ଶର ଖଞ୍ଜିଲେ ବିନଷ୍ଟ ହେବ କାମୀପ୍ରାଣ ।
ଇଷ୍ଟ ବାନ୍ଧବ ଏହାର କେହି ନାହିଁ ସଖା
ସର୍ବେ ପଳାଇଣ ଗଲେ ରହିଅଛି ଏକା ।
କେ ଏହାର ପିଅର କେ ଅଟେ ଯାର ମାତ
ଯାକୁ ଛାଡ଼ିଯିବା କେଉଁ ବଳବନ୍ତ ଶତ୍ରୁ ।
ଜରା ବୋଇଲା ଆମ୍ଭେ ତ ଆସୁ ଅତି ବେଗେ
ନେଇ ନ ପାରି ପୁତ୍ର କେ ପଳାଇଲା ମାର୍ଗେ ।
ଜୀବନ ଥିଲେ ତେଜିକରି ପୁତ୍ର ଭାର୍ଯ୍ୟା
ପଳାଇଲା ଧନ ଗୃହ କରିଣ ସେ ତେଜ୍ୟା ।
କେବଳ ପ୍ରାଣ ଘେନିଣ ପଳାଇ ବିକଳେ
ଶରୀର ରଖନ୍ତି ଲୋକ ବିପତ୍ତିର କାଳେ ।
ଚୌରାଶୀ କୋଟି ଯାଦବେ ଥିଲେ ଗୃହବେଢ଼ି
ଅସମ୍ଭାଳ ହୋଇ ଗଲେ ଏ ବାଳକ ଛାଡ଼ି ।
କେବଣ ନୃପତି ବୋଲେ ବଦନକୁ ଚାହିଁ
ଆମଙ୍କୁ ଏ ନରପତି କେବେ ଦିଶୁନାହିଁ ।
କିମ୍ବା ତ ମାୟା ଏହାର ଜାଣି ତ ନ ପାରି
କେବଣ ଦେବତା ଅବା ହୋଇ ଦେହଧାରୀ ।
ବିପରୀତ କଥା ଏ ତ ଭଲ ଦିଶୁନାହିଁ
ନୋହିଲେ ଏତେ ଲୋକ ତ ଗଲେ ଅବା କାହିଁ
ଏମନ୍ତ ବିଚାର କରି ସର୍ବ ନରପତି
ଶ୍ରୀକୃଷ୍ଣଙ୍କ ଅଗ୍ରତରେ ମିଳିଲେ ଝଟତି ।
ମଣିମା ମଣିମା ବୋଲି ଡାକେ ପଉଡ଼ହାସ୍ୟ
ଦୁଇରଜା ସଙ୍ଗ ହୋଇ ଯାନ୍ତି ଧରାଧରି ।
ପାତ୍ର ମନ୍ତ୍ରୀ ଅମାତ୍ୟ ବଳ ଚତୁରଙ୍ଗ
ଶ୍ରୀହରିଙ୍କ ରୂପ ଦେଖି ପୁଲକିତ ଅଙ୍ଗ ।

ବଣ୍ଟକୂଟ ରୂପ ଦେଖି ସର୍ବେ ହେଲେ ମୋହ
ଶ୍ରୀମୂର୍ତ୍ତିକୁ ଉପଲକ୍ଷ୍ୟ ନ ପାରନ୍ତି କେହି ।
ପଦ୍ମାସନେ ସିଂହଦ୍ୱାରେ ବଳନ ଦେବଦ୍ୱାର
ରାଜାମାନେ ବେଢ଼ିଛନ୍ତି ଲକ୍ଷେ ପୁର କରି ।
ଗହଳଚଳ ପେଲାପେଲି ହୁଅନ୍ତେ ସଘନେ
ଏକକୁ ପଛକରିଣ ଏକ ଯାଏ ଆଗେ ।
କାଳଦମନ ବୋଇଲା ଶୁଣରେ ବାଳୁତ
ସର୍ବେ ପଳାଇଲେ ତୁମ୍ଭ ରହିଲୁ କେମନ୍ତ ।
ସକଳ ଯାଦବ ଏଥୁ ଗଲେକ ପଳାଇ
କାହିଁ ରହିଛନ୍ତି ତାଙ୍କ ପିତା ନ ମିଳଇ ।
କାଳଦମନ ମୁଖରୁ ଏସନକ ଶୁଣି
ଦରହସିତେ ବୋଲନ୍ତି ପ୍ରଭୁ ଚକ୍ରପାଣି ।
ଶୁଣ ତୁମ୍ଭେ ସାବଧାନେ ଗୋପାବଳୀ ବଳୀ
ଈଶ୍ୱର ବଳେ ଦମନ ଯୁଦ୍ଧେ ଅନର୍ଗଳ ।
ତୁମ୍ଭ ସପ୍ତଦଣ୍ଡ ବହିବାରର ବାର୍ତ୍ତା ପାଇ
ଯାଦବମାନେ ରହିଲେ ଦ୍ୱାରକାରେ ଯାଇ ।
ପଶ୍ଚିମ ସମୁଦ୍ର ମଧ୍ୟେ ଦୁର୍ଗପୁ ସେ ଗଡ଼
ସ୍ୱର୍ଣ୍ଣମୟ କୁଶସ୍ଥଳୀ ଅଛି ଅନ୍ତ ଗାଢ଼ ।
ବଳ କଳଣି ଦେଇଣ ରହିଛନ୍ତି ତହିଁ
ଶ୍ରଦ୍ଧା ଥିଲେ ସେହିଠାକୁ ଯାଅ ଏବେ ବାହି ।
ଜରାସନ୍ଧ ବେଳେ ମୁହିଁ ଥିଲି ଗଡ଼ ବେଢ଼ି
ଲୁହାର କବାଟମାନ ଥିଲି ତହିଁ ପଡ଼ି ।
ଏତେ ଲୋକମାନେ ଏଥୁ ଗଲେ କେଉଁବ ବାଟେ
ହାରୁ ବାହାର ହୁଅନ୍ତେ ପଡ଼ଥାନ୍ତେ ଭେଟେ ।
କେଉଁ ଉପାୟେ ଗଲେ ସେ ଲାଗୁଛି ସନ୍ଦେହ
ପାତାଳ ବବର ବାଟେ ଗଲେ କ ନିଶ୍ଚୟ ।
ସ୍ଥଳଗଲେ ଅବଶ୍ୟ ତ ଖୋଜ ପଡ଼ଥାନ୍ତା
କହନ୍ତେ ଦୁର୍ଲ୍ଲଭ ଏହା ନଥିଲା ଶୁଣନ୍ତା ।
କୃଷ୍ଣ ବୋଇଲେକ ସେହୁ ବିଷ୍ଣୁମାୟା କଥା
ତାହା ସଂକ୍ଷେପି କହନେ କେହୁ ସାମରଥା ।
ଦେବ ନର୍ମାଣ ଦ୍ୱାରକା ଆଗୁ ହୋଇଥିଲା
ଗରୁଡ଼ ପିଠି ଉପରେ ତାଙ୍କୁ ବସାଇଲା ।
ବସାଇ ପିଠିରେ ପକ୍ଷୀ ଶୂନ୍ୟେ ଗଲା ଉଡ଼ି
ନେଇଣ ସେ ଦ୍ୱାରକାରେ ସମସ୍ତଙ୍କୁ ଛାଡ଼ି ।
କାଳଦମନ ବୋଇଲା ସର୍ବେ ଯେବେ ଗଲେ
ତୁମ୍ଭଙ୍କୁ ଛାଡ଼ି ସଙ୍ଗତେ କମ୍ପାଇ ନ ନେଲେ ।

ଜଗନ୍ନାଥ ବୋଇଲେ ମୁଁ ରହେ ଯହିଁପାଇଁ
ସେ କଥା କହିବ ଶୁଣ ସବଧାନ ହୋଇ ।
ସ୍ୱରଭଣା ଲକ୍ଷେରାଜା ଆସିଛ ସକଳ
ଏକ ଏକ ରାଜାଙ୍କର ଦଶକ୍ଷୌଣୀ ବଳ ।
ସର୍ବ ରାଜାମାନଙ୍କର ଚରଚୁର ପାଇଁ
ଅନ୍ନ ବ୍ୟଞ୍ଜନ ଦେଇ ମୁଁ ତୋଷ କରିବଇଁ
ଅଶ୍ୱ ଗଜ ପଦାତି ଯେ ଆସିଛ ସମସ୍ତ
ଧର୍ମଦାନ ହେବ ଚର୍ଚ୍ଚା ନ କଲେ ଏମନ୍ତ ।
ଜରା ବୋଇଲା ମଇଁ ଜାଣ ତଥ୍ୟବାଣୀ
ନୁହଇ ବାଳୁତ ଏହି ଅଟେ ଚକ୍ରପାଣି ।
ତୁମ୍ଭେ ତ ନ ଜାଣ କରେ ଏ ବଡ଼ କପଟ
ଏସନକ ବହୁରୂପେ କରୁଥାଇ ନାଟ ।
ଏହି ଧରୁଥାଇ ବହୁରୂପ ନାନା ବେଶ
ଭଲ ଭଲ ଲୋକେ ଗଲେ ଯାହାର ଯୋଗୁ ନାଶ
ଅଶେଷ ନରପତିଙ୍କ ଗଜ ଶ୍ୱ ପଦାତି
ସମରରେ ନାଶ ଗଲେ ଲକ୍ଷେକ ନୃପତି ।
ସତର ବାର ପର୍ଯ୍ୟନ୍ତ ଧରୁ ଧରୁ ଯାଇ
ନବନ୍ଧ କରି ଧର ଯେ ଯିବାଟି ପଳାଇ ।
କାଳଦମନ ବୋଇଲା କାହୁଁ ଆମ୍ଭ ଭାଗ୍ୟ
ଏହା ଯୋଗୁ ଜଗନ୍ନାଥ ପଡ଼ ଆମ୍ଭ ଆଗ ।
ଦେଖିଲେ ନାନା ପ୍ରକାରେ କରିବଟି ନାଶ
ଯାଦବେ ଜୀବନେ ଥାଇ କହିବ ବା କସ
ଜରା ବୋଇଲା ମିଛ ନ କର ଭ୍ରାନ୍ତ ମନ
ଏହି ଶ୍ରୀକୃଷ୍ଣ ଅଟଇ ବଳଦେବ ସାନ ।
ସ୍ୱରଭଣା ଲକ୍ଷେରାଜା ସେନା ତୁମ୍ଭେ ବାହି
ଆନ କେ କହିବ ଆଗେ ଏତେଡ଼ ଭରସା ହିଁ ।
ଶବଦେ କର୍ମ ଅଛଇ ଚରାଚର ସୃଷ୍ଟି
ଆନ ଲୋକ ହୋଇଲେ ଯେ ହୃଦଯାନ୍ତୁ ଫାଟି
ବାଳୁତ ପୁଅର କାହିଁ ଭରଷା ଏତେଡ଼କ
ଆଣ୍ଟେ ବଚନ କହିବ ହୋଇଣ ଉଗ୍ରକ ।
କୃତାନ୍ତକ ପାପୁ ବଶୁଅଛୁ ଯାର କାପ୍ୟେ
ଏହି ଯଶୋଦା ନନ୍ଦନ କଂସକଲା କ୍ଷୟେ ।
ଜରା ବାକ୍ୟ ଶୁଣି କାଳଦମନ ପଚାର
କେ ତୁମ୍ଭର ପିତାମାତା କହ ତଥ୍ୟକର ।
ଶ୍ରୀହରି ବୋଇଲେ ମୋର ବସୁଦେବ ପିତା
ଉଗ୍ରସେନର ନନ୍ଦନୀ ଆମ୍ଭ ଜନ୍ମ ମାତା ।

ବାଲ୍ୟତ କାଳରେ ଆମ୍ଭେ ଥିଲୁ ନନ୍ଦଘରେ
ମଥୁରାରେ ଜନ୍ମହୋଇ ବଢ଼ିଲୁ ଗୋପରେ
କାଳଦମନ ବୋଇଲା ଅଧିକ ନ କହ
କଥାର ସ୍ୱରୂପ ଶୁଣି ହୋଇଲାଇଁ ମୋହ ।
ସର୍ବଶୁଭେ ହେଲା ତୁମ ଆମ ଭେଟାଭେଟି
ଆମେ ଆସିଅଛୁ ତୁମ ନିମିତ୍ତ ଜାଣିଟି ।
କାର୍ଯ୍ୟ ସିଦ୍ଧି ହୋଇଲା ଯେ ଫିଟିଲା ସଙ୍କଟ
ଅନେକ ଭାଗ୍ୟରେ ଆମେ ପାଇଅଛୁ ଭେଟ ।
ଛୟାଣୋଇ ସପ୍ତରାଜା ଚତୁରଙ୍ଗ ବଳ
ତୁମ ହେତୁ ବହୁ କଷ୍ଟ ପାଇଲେ ସକଳ ।
ଏବେ ଆମର କାର୍ଯ୍ୟତ ହୋଇଲାକ ସିଦ୍ଧି
ବାହାସ୍ଫୋଟ ମାର ହସେ ସେହୁ ନୃପନିଧି ।
ଜରାସନ୍ଧ ବୋଲେ ମିତ ବସ୍ତୁରୁଛ କମ
ଏହୁ କୃଷ୍ଣ ଲାଗି ମୋର ହେଲା ସବୁ ନାଶ ।
ଏକା ନାଶିଲା ଏ ଚାରି ଊଣା ଲକ୍ଷେ ବଳ
ଏହା ହେତୁ ନାଶ ହେଲା କଂସରାଜା-କୁଳ ।
ଏହାକୁ ଦେଖି ମୋହର ପୋଡୁଅଛି ମନ
ଏ ମୋର ପିତୃ ବଇରୀ ଅଟେ ନନ୍ଦନାନ ।
ଭୋ ମଇତ ଏହାକୁଟି ଉପ୍ରାଧ ନ କର
ନ ପୁଣ କହୁଁ କହୁଁ ଏ ଯାଏ ଧାଣକାର ।
କାଳଦମନ ବୋଇଲା ବାଇ ପ୍ରାପ୍ତ କହୁଁ
ଜାଲେ ପଡ଼ିଥିବା ମୀନ ଉଚ୍ଚୁରିବ କାହୁଁ ।
ଏତେବେଳେ ପରଯନ୍ତେ ନୋହିଥିଲା ଭେଟ
ଏବେ ପଡ଼ିଅଛି ନିଶ୍ଚେ ମଉବ ସଙ୍କଟ ।
ଆଖି ଆଗରେ ଝଧାଚା କଲାଣି ଯେ ଆଣି
ଏହାର ମାୟା ବୁଝିଣ ଅଇଲ ମୁଁ ଜାଣି ।
ସାର୍ଥକ ହୋଇଲା କାର୍ଯ୍ୟ ନିଶ୍ଚେ ହେବ ସିଦ୍ଧି
ପ୍ରାଣେ ନ ମାର ଜୀଅନ୍ତା ନେବଇଁ ମୁଁ ବାନ୍ଧି
ସମସ୍ତେକ ବନ୍ଦରେ ଯେ ନେଇଣ ରଖିବା
ଦୋଷ ଦେଖିଣ ଏହାକୁ ନିତ ଦଣ୍ଡୁଥିବା ।
କୃଷ୍ଣ ମୁଖ ଦେଖି କାଳଦମନ ବୋଇଲା
ନିଶ୍ଚୟ କାଳ ତୋହର ସମାପତ ହେଲା ।
ସୁମର ଗରୁଡ଼ ଏବେ ତୋର ପିତାମାତା
ସୁମର ଗରୁଡ଼ ତୋର ଯେ ଇଷ୍ଟ ଦେବତା ।
ଏତେ ବୋଲି ଉପରକୁ ପଡ଼େ ବେଗେ ଧାଇଁ
ଜଗନ୍ନାଥ ଉଭା ହେଲେ ଖଣ୍ଡେ ଦୂରେ ଯାଇ

ବଜ୍ରଳ ପର୍ବତ୍ୟେ ଖସିଲେକ ଚକ୍ରଧର
ସବ ରାଜାମାନେ ଦେଖି ହେଲେ ଚମତ୍କାର ।
ଆକାଶରେ ଯେଉଁ ରୂପରେ ବାୟୁ ନେଉଥିର
ତେସନ ସହଜତ କରି ଖସିଗଲେ ହରି ।
କାଳ ଦମନ ବୋଇଲା ମଲା କେତେ ପ୍ରାଣୀ
ଅବଶ୍ୟ ନିପାତ ହୁଏ ସବେ ଏହା ଜାଣି ।
ଯେ ଯାହାର କର୍ମଫଳ ଅବଶ୍ୟ ଭୁଞ୍ଜଇ
ମୋହର ଗ୍ରାମକୁ ତୁମ୍ଭ ଲୋଡ଼ୁ କଲେ ଯାଇ ।
ଅନିମିତ୍ତେ କଷ୍ଟ ତୁମ୍ଭେ ପାଇଲୁଟି ଆଜ
ନିପାତ ହୋଇବାରେ ତ କରୁ ନାହିଁ କାର୍ଯ୍ୟ
କ୍ଷତ୍ରିୟ କୁଳରେ ଜନ୍ମ ମରଣକୁ ଡ଼ର
ଶତେଜନ୍ମ ପରିଯନ୍ତେ ଉଦ୍ଧରିବେ ପଡ଼ ।
କେସନେ ବୋଲନ୍ତି ତୋତେ ଯଦୁବଂଶ ଜାତ
ବସୁଦେବ ପିତା ତୋର ଦେବକୀଯେ ମାତ ।
ସେହୁ କଥାମାନ ଅଟେ ତୋର ସବୁ ମାୟା
ନିଶ୍ଚେ ଜାଣିଲି ତୁମର ଗରୁଡ଼ ବିଷୟା ।
ତୁମ୍ଭ ହେଲେ କ୍ଷତ୍ରିୟାର୍ଯ୍ୟ ହୋଇଥାନ୍ତୁ ଜାତ
ତେବେ ତୁମ୍ଭ ନ ହୁଅନ୍ତୁ ମରଣେ ନିପାତ ।
ଏହା କହି ଧନୁଗୁଣ ଟଙ୍କାର ସେ କଲା
ନାଗଫାଶ ଶର ବେଗେ ମନରେ ସୁମରିଲା ।
ଏମନ ସ୍ୱରୂପ ଦେଖି ଲକ୍ଷ୍ମୀଦେବୀ ସାଇଁ
ଭାବିଲେ ଆମ ହସ୍ତରେ ଆମ ମୃତ୍ୟୁ ନାହିଁ ।
ପ୍ରସନ୍ନରେ ବର ଦେଇଛନ୍ତି ଉମାସାଇଁ
ଜାତ କରିଛନ୍ତି ଯ୍ୟାକୁ ଯାଦବଙ୍କ ପାଇଁ ।
ପରଶ୍ରମ ପାଇବା ନା ନ ହୋଇବ କାର୍ଯ୍ୟ
କପଟ ପ୍ରାଣ ଏହାର ଘେନିବଇଁ ଆଜ ।
ଏସନ ବିଚାର କରି ଦେବ ଚକ୍ରପାଣି
କାଳଦମନ କୁ ବୁଝି କହି ମଞ୍ଜୁବାଣୀ ।
ତୁ କାଳଦମନ ଅଟୁ ରାଜାଧିଙ୍କ ରାଜା
ଚାରି ଊଣା ଲକ୍ଷେ ରାଜା କରି ପାଦପୂଜା ।
ଅଭ୍ରସାରିକା ଲକ୍ଷଣେ ହୋଇଅଛୁ ଜନ୍ମ
ତୋହ ଭଳ ଲୋକ କେହ୍ନେଲଙ୍କ ବହି ଧର୍ମ ।
ଜାଣୁଛି ଏକାକୀ ଆମ୍ଭ କରେ କ୍ଷୟ ନାହିଁ
ଧନୁରେ ଶର ତୁ ପୂରାଇଲୁ ଜସ ପାଇଁ ।
ତୁମ୍ଭ କ ଭଲରେ ଜାଣୁ ସଂଗ୍ରାମର ବିଧି ।
ଶରବନ୍ତ ଶକ୍ତା ତୁମ୍ଭ କ୍ଷତ୍ରୀ ଗୁଣନିଧି ।

ଛୟାଣୋଇ ରାଜାଙ୍କର ଯେତେକ ସଇନ
ଜରାସନ୍ଧ ରାଜା ସବୁ ଆଣିଅଛୁ ଘେନ ।
ରଥୀ ମହାରଥୀ ଆଦି ଭଟଣେ ଅନର୍ଗଳ
ଜଣକେ ଜିଣି ପାରନ୍ତି ସ୍ୱରଗ ପାତାଳ ।
ଏକା ଜଣକୁ ତୁମେ ତ ସର୍ବେ ବେଢ଼ିଅଛ
ବିଶେଷରେ ଧର୍ମ ପଥ ଛାଡ଼ିବାକୁ ଇଚ୍ଛ ।
ସତ୍ୟେ ରହିଅଛି ଚରାଚର ଏ ଜଗତ
ସତ୍ୟେ ଚନ୍ଦ୍ର ସୂର୍ଯ୍ୟ ହେଉଛନ୍ତି ଆତଜାତ ।
ସତ୍ୟରେ ସମୁଦ୍ର ପୁଣି ନ ଲଙ୍ଘଇ କୂଳ
ସତ୍ୟରେ ମେଘମାନେ ଯେ ବରଷନ୍ତି ଜଳ ।
ସାତବାର ସତାଇଶ ନକ୍ଷତ୍ର ଯେ ତିଥି
ସତ୍ୟେ ଆତଯାତ ସିନା ହେଉଅଛି ପୃଥ୍ୱୀ ।
ଚାରି ବାର ଯୋଗ ଆଦି କରଣ ସହିତେ
ସତ୍ୟେ ଆତଯାତ ହେଉ ଅଛନ୍ତି ସମସ୍ତେ ।
ସତେ ବେଦ ବେଦାନ୍ତାଦି ସାଧି ସର୍ବ କର୍ମ
ତୁହି ମହାରାଜା ହୋଇ ଛାଡ଼ କେସ୍ନେ ଧର୍ମ ।
କାଳଦମନ ସନ୍ତୋଷ ଜଗନ୍ନାଥ ବୋଲେ
ବୋଇଲା ଜଣଜଣକେ ସଂଗ୍ରାମ ତୋ ତୁଲେ ।
ସ୍ୱର ଊଣା ଲକ୍ଷେ ରାଜା ଅଛୁଟି ପ୍ରମାଣ
ଜଣ ଜଣକର ସନୁ ନ କରିବୁ ରଣ ।
ଏ ଆମର ସତ୍ୟ ସତ୍ୟ ତିନବାର ସତ୍ୟ
କାହା ସଙ୍ଗରେ ଯୁଝିବ ଆଗ ହେ କୁହତ ।
ଜଗନ୍ନାଥ ବୋଇଲେ ମୁଁ ଅଖଡ଼େ ପଡ଼ିଛି
ଜଣ ଜଣକେ ବାହାରି ହୁଅ ବେଗେ ବାଛି ।
ହାତି ରଥୀ ଅଶ୍ୱାରୋହୀ ପଦାତି ସହିତେ
ସ୍ୱର ଊଣା ଲକ୍ଷେ ରାଜା ଅଛ ଯେ ସମସ୍ତେ
ଧର୍ମପଥେ ଚାଲ ମୂର୍ଖପଣ ନ ଆଚର
କାଳଦମନ ବୋଇଲା କେତେ ଦୃଢ଼ କର ।
ଜରାସନ୍ଧ ବୋଇଲା ହୋ କର ପୀଡ଼ କେତେ
ତୁମ୍ଭ ଆମ୍ଭର ସମର ହୋଇବ ଯୁକତେ ।
ମୀନର ଗଳାରେ ଏବେ ଲାଗିଅଛି ଫାଶୀ
ନ ପୂଣ ହେମନ୍ତ କରି ଯାଉ ହାତୁଁ ଖସି ।
କାଳଦମନ ବୋଇଲା ସର୍ବେ ହୁଅ ଦୂର
ମୋହର ଆଗରେ ଆସି କରୁ ସେ ସମର ।
ତୁମ୍ଭମାନଙ୍କର କାର୍ଯ୍ୟ ନୋହିବଟି ଜାଣ
ଯେଝାମତେ ସର୍ବେ ପାଇଅଛ ଲାଜ ପୁଣ ।

ଶୁଣି ଅପସରି ଗଲେ ସର୍ବେ ଦଣ୍ଡଧାରୀ
ଶସ୍ତ୍ର ଛାଡ଼ ହୋଇଲେକ ସେ ଦେଖଣାହାରୀ ।
କେଉଁ ଯୁଦ୍ଧ କରିବ ହେ କାଳଦମ୍ନ ଭଣେ
ଶ୍ରୀହରି ବୋଇଲେ ମାଲଯୁଦ୍ଧ ମୋ ପ୍ରମାଣେ ।
ଶୁଣିଣ କାଳଦମନ ସନ୍ତୋଷ ହୋଇଲା
ସମସ୍ତ ଶସ୍ତ୍ରମାନଙ୍କୁ ରଥରେ ଥୋଇଲା ।
ବୀରବେଶେ କଣ୍ଠାଞ୍ଜଳ ଆସ୍ତ୍ରମାନ ଛାଡ଼
ନିକଛ ବସନ ଛନ୍ଦେ ଅତି ଆଣ୍ଟେ ଭିଡ଼ ।
କାନ୍ଧରୁ ପଇତା କାଢି ବାନ୍ଧିଲା ଅଣ୍ଟାରେ
ଅଷାଢ଼ୁଆ ସୂତା କାଢ଼ି ଭିଡ଼ିଲା ଗଳାରେ ।
ବନ୍ଧାଣ ଗଣ୍ଠି କରିଣ ହେଲା ବୀର ଉଗ୍ର
ଭୟଙ୍କର ବଦନ ତା ମନ୍ଦରର ପ୍ରାୟ ।
ଶ୍ରୀକୃଷ୍ଣ ଉପରେ ବୀର ପଡ଼ିଲାକ ଧାଇଁ
ହୁଂକାର କରି ବିଧାଏ ମାରେ ଆଣ୍ଟେ ନେଇ
ଶ୍ରୀକୃଷ୍ଣଙ୍କ ଅଙ୍ଗେ ବାଜେ ଯେସ୍ନେ ବଜ୍ରଘାତ
ତାହା ସମ୍ଭାଳଣ ଦୂରେ ଉଭା ଜଗନ୍ନାଥ ।
ଦେଖି ଧାଏଁ କୋପେ କାଳଦମନ ନୃପତି
ଆଉ ଏକ ବିଧା ମାରେ ନେଇକରି ଛାତି ।
ପୁଣି ବଜ୍ର ବିଧା ମାରେ ନେଇଣ ପିଠିରେ
ଶ୍ରୀକୃଷ୍ଣ ନିବାରିଲେ ତା ବିଚନ ଗଣ୍ଠିରେ ।
ତତକ୍ଷଣେ ଅଦୃଶ୍ୟ ଯେ ହେଲେ ଦେବବର
ପୁଣି ଖଣ୍ଡେ ଦୂରେ ଯାଇ ନିଜ କାୟାଧରି ।
କାଳଦମନ ଦେଖିଣ ଧାଏଁ ଅତି ବେଗେ
ନିମିଷକେ ମିଳେ ଆସି ଶ୍ରୀକୃଷ୍ଣଙ୍କ ଆଗେ ।
ରଡ଼ମଡ଼ ଘୋରଦନ୍ତ ଭୟଙ୍କର ରୂପେ
ଜଗବନ୍ଧୁଙ୍କୁ ଗର୍ଜ୍ଜିଣ ବୋଲେ ପରିତାପେ ।
କ୍ଷତ୍ରିୟ ଧର୍ମଛାଡ଼ ତୁ ହୋଇଲୁ ନିଷତ
ସମ୍ମୁଖ ସମରେ ଆଜ ଯୁଝିବାକୁ ଚିନ୍ତ ।
ଦେହେ ଦେହ ଲଗାଇଣ ସମର କରିବା
କିଏ ସେ ହାରିବ କିଏ ଜିଣିବ ଜାଣିବା ।
ଜଗନ୍ନାଥ ବୋଇଲେକ ଯୁଦ୍ଧର ଏ ରୀତି
ଚୁହାଣ ଭୁହାଣ ଆଉ ନାହାଣ ଏମନ୍ତ ।
ଯୁକତେ କରିବା ଆମ୍ଭେ ଆଗ ମାଲବନ୍ଧ
କପଟେ କହନ୍ତି ଏହି କଥା ଯେ ଗୋବିନ୍ଦ ।
ତେଣୁ ଆମ୍ଭେ ଅପସରି ଯାଉ ପୁଣି ପୁଣି
ଦଗା ଦେଇଣ ପଳାଉ ଆମ୍ଭେ ଏହା ଜାଣି

ଧାଇଁଲେ ମୂର୍ତ୍ତିକୁ ଏହା ଜାଣି ଆମ୍ଭେ ଭଲେ
କୃଷ୍ଣ ତ ନ ଯୁଝବୁଟି ନସତ ହୋଇଲେ ।
ଲଗେ ଲଗେ ଗୋଡ଼ାଇବୁ ପ୍ରତ୍ୟକ୍ଷରେ କୃଷ୍ଣ
ଲଗି ହୋଇଲେକ ଆମ୍ଭେ ଯାଉ ତ ପଳାଇ
ଏତେ ବୋଲି ଧାତକାରେ ଧାଇଁ ଦେବ ହଣ୍ଡ
ଶୂନ୍ୟେ ଶୂନ୍ୟେ ଶବ୍ଦ ମାରି ଯାନ୍ତି ଅପସରି ।
ହସ୍ତର କରନ୍ତି ଦେବେ ଥାଇ ସ୍ୱର୍ଗପୁରେ
ଆମ୍ଭର ଦଶା ଦେଖିବ ନଷ୍ଟକୁ ଏ ବାରେ ।
ଏତେ ବୋଲି ଧୀରେ କରି ବୃଷ୍ଟି ଦେବବୃନ୍ଦ
ପିଠି ଦେଇଣ ପଳାନ୍ତି ଆପେ ଆନନ୍ଦ ।
କାଳଦମନ ବୋଇଲା ଦୃଢ଼ ପୀଢ଼ ଜରି
ସ୍ୱେର ପଥ ଏ ପଳାଇ କେଝେ ନରହରି ।
ଏତେ ବୋଲି ଧାଇଁଲେ ସେ ଅତ୍ୟନ୍ତ ପ୍ରଖରେ
ଶ୍ୟାମଳ ପକ୍ଷୀ ପରବେ ଉଡ଼ି ଧାଡ଼ଚାରେ ।
ପଛରେ ଗୋଡ଼ାଇଛନ୍ତି ସର୍ବେ ନୃପବରେ
ତେଜ ଲଗୁଅଛି ପଞ୍ଚାଶତ କୋଶ ଯାଏ ।
ଶୁଣ ପରୀକ୍ଷ ରାଜନ ଶୁକମୁନି ଭଣି
ଅତି ଭାଗ୍ୟେ ଭାଗବତ ପୁରାଣର ଧ୍ୱନି ।
କତ୍ଥ କତ୍ଥ ବହୁଦୂରେ ପଳାଇ ଶ୍ରୀହରି
ମାୟାଧର ପୁରୁଷକୁ ଧରି ଦେବା ପରି ।
କାଳଦମନ ଗୋଡ଼ାଏ କରି ପ୍ରାଣ ପୀଡ଼
ହସ୍ତରେ ହସ୍ତ ବାଜଇ ଗୋଡ଼େ ବାଜେ ଗୋଡ଼
ଗୋଡ଼ାଇଁ ଗୋଡ଼ାଇଁ ହରି ଉଛୁଡ଼ି ପଳାନ୍ତି
ଫୁଟି ରହିଣ ଥୋକାଏ ଦୂରେ ବୃଷ୍ଟିଦ୍ୟନ୍ତି ।
ମାୟାଧର ସ୍ୱାମୀ ସମସ୍ତଙ୍କୁ ମାୟା କଲେ
ଏକା ଘଡ଼ିକେ ସହସ୍ର ଯୋଜନ ଯେ ଗଲେ ।
ପଶ୍ଚିମରାଷ୍ଟ୍ରେ ଯେ ତୁଙ୍ଗଭଦ୍ରା ନଦୀକୂଳେ
ଇନ୍ଦ୍ରଗିରି ନାମେ ତହୁଁ ପର୍ବତର ତଳେ ।
ଭରଦ୍ୱାଜ ମହାଋଷି ମଠ କରିଥିଲେ
ମୟ ନାମେ ବିଶ୍ୱକର୍ମା ପୁରି ନିର୍ମାଇଲେ ।
ନହାଣ ଯେନ କୁନ୍ଦିଲେ ସେ ପର୍ବତ ଗୋଟି
ମନ୍ଦିର ରଚିଲେ ତହିଁ ଅତି ସୁନ୍ଦରଟି ।
କୋଣେ ଅପୂର୍ବ ତାର ମଧ୍ୟ ମହା ସଞ୍ଚ
ନାହିଁ ପଟାନ୍ତର ତାକୁ ସ୍ୱର୍ଗ ଆଦି ମଞ୍ଚ ।
ପଞ୍ଚନଳ ଅପୂର୍ବ ବୃକ୍ଷର ଗୋଟିଏ
ବୃକ୍ଷଗଣ ଲକ୍ଷଗ ଯେ ଅତି ଶୋଭାପାଏ ।

ହୀର ଲାଲା ବଇଡୂର୍ଯ୍ୟ ଲୁଚେ ପଦ୍ମ ପର୍ଣ୍ଣ
ମଣି ମାଣିକ୍ୟ ପଞ୍ଚଆମାନ ଶୋଭାବର୍ଣ୍ଣ ।
ଗଜଦନ୍ତର ପିଞ୍ଜର ନୋହକାର କାଠି
ସୁରଙ୍ଗ ପାଟ କେଶର ଶୋଭାରେ ପକ୍ଷି ।
ସ୍ଫଟିକ ପାବଚ୍ଛ ପୀଢ଼ ସ୍ୱର୍ଣ୍ଣ ଜ୍ୟୋତିର୍ମୟେ
ଶରତ ଚନ୍ଦ୍ରକାନ୍ତ ଭଳି ଦେଖିଛି ଉଦୟେ ।
ଚନ୍ଦ୍ର ତପ ପରେ ଇନ୍ଦ୍ର ଗୋବଧର କାମ
ଉପାରେ ପ ନଦର ଶବେଦାଖ ହେମ ।
ନେତ ମତନ ମିଞ୍ଜ ସୁ ଖ ଢ଼ୀ ଯେ ମଞ୍ଜିଷ୍ଟି
ବସନ୍ତ କାଳର ରଙ୍ଗ ମ ଧଙ୍କର ପାଟୀ ।
ରଙ୍ଗ ଶୂଜଳ ବ୍ରମର ଦବ୍ୟ ପଦ୍ମକାନ୍ତ
ମଣି ମାଣିକ୍ୟ ମୁକୁତା କେଶର ଶୋଭନ୍ତି ।
ଜାଈ ଯୂଥି ମଲ୍ଲୀ ଚମ୍ପା ଆଦି ଶତଦଳ
ଅମଳାନ ସୁରଗନ୍ଧ ପୁଷ୍ପ ଧଣ୍ଡାମାଳ ।
ଆମ୍ବ ପଣସ କଦଳୀ ଜାମୁ ନଟୀଭାଳ
ଇକ୍ଷୁ ଦ୍ରାକ୍ଷ ପଇଡ଼ ଆଉ ଜାଇଫଳ ।
ଖଜୁରୀ କଦଳୀ ଆଦି ଡ଼ାଳମ୍ବ ଭଇଥ
ଅମୃତ ପଦାର୍ଥମାନ ଅଛଇ ବହୁତ ।
ସେ ଭୁବନ ମଧ୍ୟ ଏକ ମଣ୍ଡପ ଶୋଭଇ
ମଧ୍ୟାହ୍ନ ଆଦିତ୍ୟ ପ୍ରାୟେ ଜ୍ୟୋତି ବରଜଇ ।
ତହିଁ ମଧ୍ୟରେ ରଚିତ ପଲ୍ୟଙ୍କ ପ୍ରମାଣି
ହଂସତୂଳି ସୁପାଟ ଶେଜ ହୋଇଛି ବଛଣି ।
ତହିଁପରେ ସେବତୀର ପ ଖୁଡ଼ାକୁ ମିଶ୍ର
କର୍ପୂର ଗୁଣ୍ଡି ତା ପରେ ଚନ୍ଦନର ହଞ୍ଚ ।
ଏମନ୍ତ ଅପୂର୍ବ ଶଯ୍ୟା ପଟାନ୍ତର ନାହିଁ
ସେ ପଲ୍ୟଙ୍କେ ମୁଚୁକୁନ୍ଦ ନିଦ୍ରାଛନ୍ତି ଯାଇ ।
ଅନେକ କାଳରୁ ତହିଁ ଶୋଇଣ ଅଛନ୍ତି
ଆଠସହସ୍ର ବର୍ଷପ ଏ ନିଦ୍ରାତ ସେ ଅତି ।
ତେତିଶ କୋଟି ଦେବତା ଛନ୍ତି ବର ଦେଇ
ଚେଣ୍ଡି କରି ଅଚେଷ୍ଟାରେ ନିଦ୍ରାଛନ୍ତି ଯାଇ ।
ଇଷ୍ଟବନ୍ଧୁ କୁଟୁମ୍ବ ସହୋଦର ସଖା
ସନ୍ନିଧେ କେହି ନାହାନ୍ତି ଶୋଇଛନ୍ତି ଏକା
ବାହାରରେ ଝଡ଼ାସ ହାର ଅଛି ଜଗି
ଶ୍ରୀକୃଷ୍ଣ କାଳଦମନ ଧାଇଁ ଅତି ବେଗି ।
ପର୍ବତ ଦେଖି କୋଣରୁ ତହିଁ ପଶନ୍ତି
ହଟେ ହାର ମିଶିବ ରହି [illegible] ।

କରିମଳ ପଥ ଅପୂର୍ବ ବନ୍ତ ପାଇ
ଶ୍ରୀକୃଷ୍ଣ ଦମନ ଦୁହେଁ ଯାଉଛନ୍ତି ଧାଇଁ ।
ଥୋକେ ଦୂରେ ଦେଖିଲେ ମେ ଶବରରହାର
ସ୍ତମ୍ଭରେ ଅଛଇ ସିଂହ ଅଷ୍ଟ ଶୋଭାକର ।
ଅପୂର୍ବ ମଣ୍ଡଳ ଚାର ଦ୍ୱାର ଦିବ୍ୟପଡ଼ା
ନବ ରତନ ନିର୍ମାଣ କବାଟର ପୁଡ଼ା
ଆଗହୁଁ ପିଟିଛୁ ବସୁଅଛୁ ହେମ ବାଟ
ପୁଡ଼ କୁ ପୁଡ଼ା ମିଟିଛୁ ପଡ଼ନ୍ତୁ କବାଟ
ଶ୍ରୀଜଗନ୍ନାଥ ପଳାନ୍ତି ଗୋଡ଼ାଏ ସେ ବୀର
ଧରଣୀ ନ ସହେ ଦନୁଜଙ୍କ ପାଦଭାର ।
ସଙ୍ଗେ ସଙ୍ଗେ ଗୋଡ଼ାଇଛୁ ନ ରହଣ କାହିଁ
ସତ୍ୟ କରିଛନ୍ତି ଶସ୍ତ୍ର ନ ଧରିବେ କେହି ।
କାଳଦମନ ଗୋଡ଼ାଏ ଗେଷ ପଛେ ପଛେ
ହାତେ ହାତ ବାଜ ପଳାବନ୍ତି ଶିଘ୍ରବେଗେ ।
କେତେକ ଦୂରରେ ଯାଇ ଅଦୃଶ୍ୟ ହୁଅନ୍ତି
ଆଡ଼ ଭଙ୍ଗୀ ଦେଇ ଟିକେ ଦୂରେ ଉଭା ହୁଅନ୍ତି ।
ସର୍ବେ ଦେଖୁଛନ୍ତି ଧାଇଁଥାନ୍ତି ବଣ୍ଣବାସୀ
ଦୁଆର ଜଣିଣ ହେତୁ ଭିତରକୁ ପଶି ।
କାଳଦମନ ଶ୍ରୀକୃଷ୍ଣ ଦେହ ଲଗ ଲଗି
ଅପୂର୍ବ ଗୃହକୁ ପଶନ୍ତି ଯାଇ ବେଗି ବେଗି ।
ପେଲପେଲ ହୋଇ ପଶି ଥୋକାଏ ନୃପତି
ଦେଖଣାହାରି ଠିଆ ହୋଇଣ ଦେଖନ୍ତି ।
ରଥ ଗଜ ଅଶ୍ୱ ସଙ୍ଗେ ନାହିଁ ତ କାହାର
ଠଣାବଣା ସନ୍ଧିଆଦ ଜଗି ସେ ଦ୍ୱାର ।
ଏହିପରି ଥୋକେ ଦୂର ଗଲେ ଲକ୍ଷ୍ମୀସାଇଁ
ଦେଖିଲେ ତ ମଧ୍ୟେ ମୁଚୁକୁନ୍ଦ ଛନ୍ତି ଶୋଇ
ଅପୂର୍ବ ପଲ୍ୟଙ୍କ ପରେ ଶୋଇଣ ଅଛନ୍ତି
ଅଚେଷ୍ଟାରେ ଘୋର ନିଦ୍ରା ସେହି ଯାଉଛନ୍ତି
ଦଣ୍ଡେମାତ୍ର ଛିଡ଼ା ହୋଇ ପବନ ଆଘାତେ
ମଣ୍ଡପ ପରେ ଉଠିଲେ ଯାଇ ଜଗନ୍ନାଥେ ।
ଉଲ୍କ ମନ୍ତ୍ର ସୁମରି ତେଜ ଗୋପ୍ୟ କଲେ
ଉଡ଼ଣ ସ୍ତମ୍ଭରେ ଯାଇ ଲୁଚିଣ ରହିଲେ
କାଳଦମନ ଗୋଡ଼ାଇ ଅଛି ସେ ନିଠାଇ
ଧାଇଁ ମଣ୍ଡପ ଉପରେ ଉଠି ବେଗେ ଯାଇ
ସ୍ୱରକତ ସ୍ୱଦାଇଁ ସେ କାହିଁ ନ ଦିଶଇ
ଦେଖିଲା ପଲ୍ୟଙ୍କେ ପୁରୁଷେକ ଅଛି ଶୋଇ ।

ଘନେ ଧବର ପରାୟେ ବସଇ ତନୁ
ନୀଳମେଘେ ଉଦେ କିବା ହୁଏ ଇନ୍ଦ୍ରଧନୁ ।
ଦିଶିପ୍ରେ କୃଷ୍ଣ ପରାୟେ ଶରୀର ଦିଶଇ
ଜାଜ୍ୱଲ୍ୟମାନ ଜ୍ୟୋତିରେ ଦେହ ପ୍ରକାଶଇ
ନିମିଷେ ଭେଟିଲା ଯାଇ ସେ କାଳଦମନ
ଗୁପ୍ତ ଦକଦକ ଚାର ମନ ଛନ୍ନଛନ୍ନ ।
ନିଶ୍ଚୟେ ଜାଣିଲା ଏହି ନନ୍ଦର ତନୟେ
ମେ ସ୍ତମ୍ଭୁରୁ ଅଇଲକ ଏତେଦୂର ଯାଏ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ମୁଁ କ୍ଷଣେ ପାରେ ବୁଲି
ମୋହର ନାମରେ ପଡ଼େ ପୃଥିବୀରେ ହୁଲି ।
ଏ ବାଳଛେଉଣ୍ଡା କଷ୍ଟ ଦେଲା ଏତେବେଳେ
ଏବେ ଯେ ଏହାର ନିଶ୍ଚେ ପୂରିଲାଟି କାଳ ।
ଏତେଦୂର ଧାଇଁ ଫୁଟି ନ ପାରନ୍ତେ ଚଳି
ନିଶ୍ଚେଷ୍ଟ ହୋଇ ଏ ସ୍ଥାନେ ଶୁଏ ବନମାଳୀ
ପୁଣି ବସ୍ତ୍ରରଇ ଅବା ମୋହ ନିଦ୍ରା ଗଲା
ଆସୁ ଆସୁ ଏତେ ବେଗେ କପରି ଶୋଇଲା ।
ପୁଣି ବସ୍ତ୍ରରଇ ମନେ ମଲା ଧାଇଁ ଧାଇଁ
କି ଅବା ଏ କପଟରେ ମହାନିଦ୍ରା ଯାଇ ।
ନିଦ୍ରିତ ପ୍ରାଣୀ ମାଇଲେ ପାପ ଶାସ୍ତ୍ରପଥ
ଏମନ୍ତ ବିଚାର ଅବା ଶୋଇଛି ନିସତେ ।
ପୁନରପି ବସ୍ତ୍ରରିଲା କିବା ରାଜଯୋଗ
ମୃତ୍ୟୁକାଳେ ମିଳେ ଇନ୍ଦ୍ର ସମ୍ପଦର ଭୋଗ ।
ଯେଝାର ଭକ୍ଷ୍ୟ ପାଇଲେ ଅବଶ୍ୟ ତା ଖାଇ
ବୋଲେରେ ଛେଉଣ୍ଡ ମୋତେ ଏମନ୍ତ ଭଣ୍ଡାଇ
ତୋ ନିମନ୍ତେ ଏତେ ରାଜା ଆସି ଶ୍ରମପାଇ
ଏହା କହି କର୍ଣ୍ଣମୂଳେ ବିଧା ମାରେ ନେଇ
କାଳଦମନ ବିଧାରେ ବହୁକଷ୍ଟ ପାଇ
ନିଦ୍ରାଭଗ୍ନ ମୁଚୁକୁନ୍ଦ ଚାହିଁ ଆଖି ଫେଇ ।
କ୍ରୋଧ ଦୃଷ୍ଟିରେ ଦେହେ ଲାଗିଲାକ ତ୍ରାସ
କାଳଦମନ ତକ୍ଷଣେ ହୋଇଲା ପାଉଁଶ ।
ଦେବାଧିଦେବଙ୍କ ଶ୍ରେଷ୍ଠ ଯେଉଁ ଦେବହର
ତାହାଙ୍କ ମାୟାରୁ କେବା ଯିବଟି ଉବୁରି ।
ଅଶେଷ ମହିମା ଯାର କହି ଅନ୍ତ ନୋହି
କେବଣ କଥାକୁ କରି ନ ପାରନ୍ତି ସେହି ।
ଆତ୍ମାରଆତ୍ମା ସେ ଥାନ୍ତି ସଭିଙ୍କର ଦେହେ
ନବଖଣ୍ଡ ମେଦିନୀ ଯା ଆଜ୍ଞାରେ ଅଛଇ ।

ଯା ଆଜ୍ଞାରେ ହେଉଅଛି ସୃଷ୍ଟି ଆଚଯାତ
ଜଳ ସ୍ଥଳ ପୃଥ୍ୱୀ ଯାର କୃପାରେ ସମ୍ଭୂତ ।
ନିତ୍ୟାଶ୍ୱର ହେଉଛି ଯା ସବୁଠାରେ ସଞ୍ଚ
ଆଗହୁଁ ନିର୍ମାଣ ତାହା କରିଥାନ୍ତି ସଞ୍ଚ ।
ଭୁଆଇ ଅଛନ୍ତି କାଳ କାମ ନିଦ୍ରା ସେହି
ତ୍ରିଗୁଣ ନିର୍ମାଣ କରିଛନ୍ତି ଯେ ଗୋଡ଼ାଇ ।
ଗୁଣ ଦୋଷ ଅନ୍ୟାଅନ୍ୟ ସେହି କରିପାରେ
ଦୋଷ ଗୁଣ ବାଛି କାର୍ଯ୍ୟ କରେ ନିରନ୍ତରେ
ଅଶେଷ ଶବ୍ଦ ସଂସାର ଯାର ଖେଳାଲୀଳା
ସଂସାରବ୍ଧି ଚରଣରେ ଯାର ନାମ ଭେଳା ।
ସେ ଦେବ ପଦ୍ମପାଦରେ ଲୁଚ୍ଛି ମୋର ମାଥ
ଅଚ୍ୟୁତ ଦାସ ଭଣଇ ଶ୍ରୀହରି ଚରିତ ।

—❋—

## ମୁଚୁକୁନ୍ଦ ଗନ୍ଧର୍ବର ପୂର୍ବ ବୃତ୍ତାନ୍ତ ଓ କୃଷ୍ଣଙ୍କର ସ୍ୱର୍ଗପୁର ଗମନାନ୍ତର ଦ୍ୱାରକା ପ୍ରବେଶ

ଏଥୁ ଅନ୍ତେ ପରୀକ୍ଷିତ ନାମେ ମହାରାଜା
ଶୁକମୁନି ଚରଣରେ କଲେ ନିତ୍ୟପୂଜା ।
ହେ ମୁନି ପବିତ୍ର ହେଲି ହରିବଂଶ ଶୁଣି
ପାପାଧି ପାତକ ମୋର ଅଙ୍ଗୁ ଗଲା ପୁଣି ।
କାହିଁ ମୁଚୁକୁନ୍ଦ କାହିଁ ସେ କାଳଦମନ
ଏଡ଼େ ଦାନବ କପରି ହୋଇଲା ନିଧନ ।
ମୁଚୁକୁନ୍ଦ ନିଦ୍ରା ଯାଇଥିଲେ କିସ ଅର୍ଥେ
ଏକଥା ସଂକ୍ଷେପି ମୁନି କହିବାକ ମତେ ।
ରାଜାଧିରାଜ ସେ କାଳଦମ୍ନ ମହାବଳୀ
ନୟନେ ଚାହିଁବା ମାତ୍ରେ ଭସ୍ମ ଗଲା ଜଳି
ଶ୍ରୀହରି ଚରିତ ଏହି ସୁଧାରସ ବାଣୀ
ଧନଧାନ୍ୟ ପ୍ରାପ୍ତ ହୁଅନ୍ତି ନରେ ଏହା ଶୁଣି ।
ଏତେ ବୋଲଣ ନୃପତି ବିନୟୀ ଯେ ହୋଇ
ମୁନିଙ୍କୁ ପୃଚ୍ଛା କରଇ ସ୍ୱର୍ଣ୍ଣପାତ୍ର ଦେଇ ।
ଏ ଭବସାଗରୁ ମୋତେ ଉଦ୍ଧର ହେ ନାଥ
ମୋକ୍ଷ କରିଣ ମୋ କାୟା କର ହେ ପବିତ୍ର ।
ଇତଂ ପ୍ରତିବାକ୍ୟ କଥା କହନ୍ତି ସେ ମୁନି
ସାବଧାନେ ଶୁଣ ପାଣ୍ଡୁ ବଂଶ ନୃପମଣି ।
ମୋତେ ପୃଚ୍ଛା କଲ ମୁଚୁକୁନ୍ଦ ପୂର୍ବକଥା
ସଂକ୍ଷେପି କହିବା ଶୁଣ ତାହିଁର ବ୍ୟବସ୍ଥା ।
ଯାହା ପୃଚ୍ଛା କଲ ଏ ତ ଅଟେ ସୁଧାବାଣୀ
କାୟାକୁ ପବିତ୍ର କର ସେହି କଥା ଶୁଣି ।
ଶୁଣ ତୁହେ ମହାରାଜା ପୁରାତନ କଥା
ବଶିଷ୍ଠ କହିଅଛନ୍ତି ପୂର୍ବେ ଯେଉଁ ବାର୍ତ୍ତା ।
ତାହା ଶୁଣିବାକୁ ଯେବେ ବଳିଛି ଉତ୍ସାହ
ଯମ ଦଣ୍ଡକୁ ତୁମ୍ଭର ନାହିଁ ଆଉ ଭୟ ।
ବସୁ ମତ୍ୟଯୁଗେ ସ୍ୱାରୋଚିଷ ନାମେ ଇନ୍ଦ୍ର
ଭାନୁ ନାମେ ସୂର୍ଯ୍ୟ ନିଶାକର ନାମେ ଚନ୍ଦ୍ର ।
ବ୍ରହ୍ମାର ପଣନାତି ସେ ବିଶ୍ରବାର ସୁତ
ତ୍ରିଲୋକ ଜୟୀ ରାବଣ ନାମରେ ଦଇତ୍ୟ ।
ନିକଷା ନନ୍ଦନ ସେହି ବଳେ ମହାବଳୀ
ଏକ ଦେହ ବଂଶଭୁଜ ଦଶଟି ମଉଳୀ ।
ଈଶ୍ୱରଙ୍କଠାରୁ ସେହି ପାଇଥିଲା ବର
ତ୍ରିପନ ଗଣ୍ଡା ଯୁଗକୁ ହୋଇଲା ଅମର ।
ଅଠାଣୋଇ ସମ୍ଭ୍ର ଭାର୍ଯ୍ୟା ତେରଶତ ନାତି
ବାଉଶ ସହସ୍ର ପୁତ୍ର ବିପ୍ର ଶୁଦ୍ଧଜାତି ।
ଭ୍ରାତା ବିଭୂ ସହୋଦର କୁମ୍ଭକର୍ଣ୍ଣ ଯେନ
ଭୁଜବଳେ ଜିଣିଲା ସକଳ ମେଦିନୀ ।
ସବୁପୁତ୍ର ମଧ୍ୟେ ଇନ୍ଦ୍ରଜିତ ଯେ ଉତ୍ତମ
ବିଦ୍ୟା ପଢ଼ିବା ପାଇଁକ ହେଲା ତାର ମନ
ମୟ ନାମେ ବିଶ୍ୱକର୍ମା ପଢ଼ାଇଲେ ପାଠ
ବିପରୀତ ମାୟାଯୁଦ୍ଧ ଜାଣେ ସେ ମୁରାଟ ।
ଶରୀର କଦର୍ଥି କରି ବହୁ ତପ କଲା
ବ୍ରହ୍ମା ସେବା କରି ବହୁଶସ୍ତ୍ର ସେ ପାଇଲା ।
ଶତେବାର ପରଯନ୍ତେ ସ୍ୱର୍ଗେ ଦେଲା ଧାଡ଼ି
ଡରେ ଦେବଗଣ ମାନେ ସ୍ୱର୍ଗେ ଗଲେ ଛାଡ଼ି
ମାୟା ସମର କରି ସେ ଇନ୍ଦ୍ରେ ବନ୍ଦୀ କଲା
ସୁକୁମ୍ଭ ଯେନ ଲଙ୍କା ଭିତରେ ରହିଲା ।
ଏଥୁ ଅନନ୍ତରେ ବେନିବର୍ଷ ଗଲା ବହି
ସ୍ୱର୍ଗ ପୁରଯାକ ସବୁ ଶୂନ୍ୟ ଯେ ହୁଅଇ ।
ସମସ୍ତେ ପଳାଇ ଗଲେ ଜଣେ କେହି ନାହିଁ
ମୁଚୁକୁନ୍ଦ ଗନ୍ଧର୍ବ ଏକା ଅଛି ରହି ।
ଧନ ସମ୍ପଦ ରକ୍ଷିଲା ଦଣ୍ଡୁ ଆସି ପଣେ
ସଙ୍ଗତରେ କେହି ନାହିଁ ହୋଇ ଏକଜଣେ ।
ଧନ ସମ୍ପଦ କୁମ୍ଭ ପ୍ରଭୃ ଆଦିକରି
ଦେବତାଏ ପଳାଇଲେ ଛାଡ଼ି ଯେ ଯାହାରି ।

ବାରସ୍ୱର୍ଣ୍ଣ ପୁରେ ଥିଲା ଯେତେ ଧନଦ୍ରବ୍ୟ
ପଳାଇଣ ଗଲେ ସେହୁ ତେଜକର ସର୍ବ ।
ଶ୍ରୀରାମଚନ୍ଦ୍ର କରିଲେ ରାବଣକୁ ହତ
ଦେବତାଏ ରହିଲେକ ସୁଖେ ସ୍ୱର୍ଗପଥ ।
ସେହିଦିନୁ ଦେବଗଣେ ସୁସ୍ଥ ଯେ ଲଭିଲେ
ସ୍ୱର୍ଗଭୁବନରେ ପୁଣି ସୁଖରେ ରହିଲେ ।
ଯେଝା ଦ୍ରବ୍ୟମାନ ସବୁ ଅଖଣ୍ଡିତ ଥିଲେ
ଦେଖିକରି ଦେବଗଣେ ସନ୍ତୋଷ ଲଭିଲେ ।
ଧନ୍ୟ ମୁଚୁକୁନ୍ଦ ବୋଲି କରିଲେ ପ୍ରଶଂସା
ତୋହର ଯୋଗୁଁ ସବୁ ଦ୍ରବ୍ୟ ମିଳିଲା ସହସା ।
ତୋହର ହେତୁରୁ ରକ୍ଷା ହେଲା ସ୍ୱର୍ଗପୁରୀ
ସର୍ବ ଦେବତାମାନଙ୍କ ଅଟୁ ଉପକାରୀ ।
ମାଗ ମାଗ ବର ତୋତେ ଦେବୁ ଆମ ଇଚ୍ଛା
ସକଳ ଦେବତାମାନେ ପୂରାଇବୁ ବାଞ୍ଛା ।
ମୁଚୁକୁନ୍ଦ ବୋଇଲେ ଯେ ଦେବେନ୍ଦ୍ରଙ୍କୁ ଚାହିଁ
ହେ ପିତା ତୁମ ପ୍ରସାଦେ ଭୋଗିପାରେ ମୁହିଁ ।
ତୁମେ ମୋତେ ସୁପ୍ରସନ୍ନ ହେଲ ସସ୍ତ୍ରେଯାନ
ସୁଖ ଭୋଗ କରିଲଇଁ ମୁହିଁ ତୁମ ହେନ ।
ଚୌରାଅଶୀ ଖଣ୍ଡ ଜ୍ଞାନ ଅଷ୍ଟାଙ୍ଗ ଯେ ଯୋଗ
ନିଦ୍ରା ଆହାର ମୈଥୁନ ସ୍ୱର୍ଗ ଉପଭୋଗ ।
ଦେବତାମାନେ ବୋଇଲେ କହିଲ ଯେ ବିଧି
ଯେ ତୁମ୍ଭର ମନବାଞ୍ଛା ହେଉ ସର୍ବ ସିଦ୍ଧି ।
ମୁଚୁକୁନ୍ଦ ବୋଲେ ଶୁଣ ସର୍ବ ଦେବତାଏ
ଅନିଦ୍ରାରେ ଅଛି ମୁହିଁ ବହୁ ଯୁଗଯାଏ ।
ରାତ୍ର ଦିବସ ଉନ୍ନିଦ୍ରେ ଜଗିଅଛି ପୁରୀ
ନିଦ୍ରାବଳେ ଲଭିବଇଁ ମହାସୁଖ ଶିରୀ ।
ଦେବଗଣ ଆଜ୍ଞାଦେଲେ ବିଶ୍ୱକର୍ମା ରାଇ
ପୁରେକ ନିର୍ମାଣକର ତୁମେ ଏଥୁ ଯାଇ ।
ଦେବତାଙ୍କର ଆଜ୍ଞାରେ ବିଶ୍ୱକର୍ମା ସ୍ୱାମୀ
ଶୀଘ୍ର କୁଣ୍ଡ ନଗ୍ର ନାମେ ନିର୍ମାଣିଲେ ଭୂମି ।
ମୁଚୁକୁନ୍ଦ ବୋଲେ ମୁହିଁ ଯେବେ ନିଦ୍ରା ଯିବି
ଆବର ବୁଝେତ ମୁଁ ଯେ ଦୃଢ଼ କରିଥିବି ।
ଯେ ମୋ ନିଦ୍ରାକୁ ଭାଙ୍ଗିବ ନ ଜାଣିଣ ବଳି
ପ୍ରଥମେ ଦୃଷ୍ଟାନ୍ତେ ନଷ୍ଟେ ସେହୁ ଯିବ ଜଳି ।
ତଦନ୍ତେ ଆଧାର ମୁହିଁ ଭୁଞ୍ଜିବି ସମୟେ
ତପୃରେ ଜନତା ଭୋଗ କରିବି ଥୋକାଏ ।

ହେଉ ବୋଲି ଦେବତାଏ ଯେଝାପୁରେ ଗଲେ
ସେହିଦିନୁ ମୁଚୁକୁନ୍ଦ ନିଦ୍ରା ଯାଇଥିଲେ ।
ମାୟାଧର ପୁରୁଷ ସେ କପଟ ରଚିଲେ
ଯୁଦ୍ଧବ୍ୟାଜେ କାଳଦମନକୁ ଭଣ୍ଡିନେଲେ ।
ଆଗହୁଁ ଏ କଥା ଜାଣିଥିଲେ ବନମାଳୀ
ମୁଚୁକୁନ୍ଦ କୋପାନଳେ ଗଲା ସେହୁ ଜଳି ।
ଗର୍ଗ ମାଗିଥିଲେ ବର ନ ହୋଇଲା କିଛି
ଉପାୟରେ ଉପଦ୍ରବ ଖଣ୍ଡିଲେ ଶ୍ରୀବତ୍ସି ।
ଏମନ୍ତ କୂଟରେ କାଳଦମନକୁ ମାରି
ଗରୁଡ଼କୁ ସୁମରଣା କଲେ ଦେବ ହରି ।
ରମ୍ୟକ ଦ୍ୱୀପରେ ଥାଇ ଜାଗି ଖଗେଶ୍ୱର
କୃଷ୍ଣଙ୍କ ଛାମୁରେ ଆସି ମିଳିଲେ ସତ୍ୱର ।
ତା ଦେଖି ପରମ ତୋଷ ହୋଇ ନାରାୟଣ
ଗରୁଡ଼ ପୃଷ୍ଠରେ ସ୍ୱାମୀ କଲେ ଆରୋହଣ ।
କରେ ଶଙ୍ଖ ଚକ୍ର ଗଦା ସାରଙ୍ଗ ଯେ ଧନୁ
ନୀଳ ଜୀମୁତ ପରାୟେ ଶୋଭେ ଦିବ୍ୟତନୁ ।
ହୃଦରେ କୌସ୍ତୁଭ ମଣି ମୁକ୍ତା ରତ୍ନମାଳ ।
ଆନନ୍ଦକନ୍ଦ ସ୍ୱାମୀ ତାର୍କ୍ଷ୍ୟ ପିଠିପରେ ଚଳ ।
ବଦ ମୁଦ୍ର କଙ୍କଣ ଯେ କରରେ ବାହୁଟି
ମଣିମାଣିକ୍ୟ ବିରାଜେ ତହିଁ କୋଟି କୋଟି ।
ମୁକୁଟ କର୍ଣ୍ଣାଞ୍ଚଳରେ ଗଣ୍ଡ ଶିର ଶୋଭେ ।
ମୃଗନାଭି କସ୍ତୁରୀର ଚିତା ଶୋଭାପାଏ ।
କଟିରେ ଝୀନ ବସନ କନ୍ଧରେ ପଇତା
କୋଟି କାମରୂପ ସ୍ୱାମୀ ଧରି ଜଗଜ୍ଜିତା ।
ଗରୁଡ଼ ପିଠି ଉପରେ ବିଜେ କଲେ ଯାଇ
ବାରସ୍ୱର୍ଣ୍ଣରେ ମିଳିଲେ ଜଗତ ଗୋସାଇଁ ।
ତେତିଶ କୋଟି ଦେବତା ଆସ୍ଥାନେ ବିଜୟେ
ଦେଖିଲେ ଦୂରରୁ ଆସିଛନ୍ତି ଦେବରାୟେ ।
ତକ୍ଷଣେ ଦେବତାମାନେ ଆସ୍ଥାନୁ ଉଠିଲେ
ଊର୍ଦ୍ଧ୍ୱମୁଖ ହୋଇ କରି ଉପରେ ଚାହିଁଲେ ।
ଇନ୍ଦ୍ର ଦେବତା ସହିତେ ଅଇଲେ ପାଶ୍ଚୋଟି
ଦେଖିଣ ମହାସନ୍ତୋଷ ହେଲେ ପରମେଷ୍ଠି ।
କରପଦ ଯୋଡ଼ି ସର୍ବେ ହୋଇଲେକ ଉଭା
କ୍ଷୀର ସମୁଦ୍ର ପରାୟେ ଦିଶି ଦିବ୍ୟ ଶୋଭା ।
ସକଳ ଦେବତାଙ୍କୁ ଯେ ଦେଖି ନାରାୟଣ
ଗରୁଡ଼ ପିଠିରୁ ଉତ୍ତରିଲେ ତତକ୍ଷଣ ।

ଦେବଙ୍କୁ ଘେନ ଆସ୍ଥାନେ ବିଜେକଲେ ଯାଇ
ବୃହସ୍ପତି ବୋଇଲେକ ଆସିଲ କିପାଇଁ ।
ଇନ୍ଦ୍ର ବୋଇଲେ ଶୁଣ ଗୁରୁ କ୍ଷଣେ ହୁଅ ସ୍ଥିର
ସୁସ୍ଥ ହୋଇ ପ୍ରଭୁ ବିଜେ କରନ୍ତୁ ସତ୍ୱର ।
ଏହା ଶୁଣି ଦେବଗଣେ ନୀରବେ ରହିଲେ
ଇନ୍ଦ୍ର ସଭାରେ ଉପେନ୍ଦ୍ର ସୁଖେ ବିଜେକଲେ ।
ଏଥୁ ଅନନ୍ତରେ ଶୁଣ ପରୀକ୍ଷ ନୃପତି
ହରିବଂଶ ପୁରାଣ ଏ ପୁଣ୍ୟମୟ କୀର୍ତ୍ତି ।
କାଳଦମନ ସଙ୍ଗରେ ଯେତେ ରାଜା ଥିଲେ
ତା ମୃତ୍ୟୁ ଦେଖନ୍ତେ ସର୍ବେ ଭୟେ ପଳାଇଲେ
ଯେ ଯାହାର ଚତୁରଙ୍ଗ ସେନା ଘେନ ସଙ୍ଗେ
ପ୍ରବେଶ ହୋଇଲେ ଯାଇ ଜରାସନ୍ଧ ଆଗେ ।
ବୁଝାଇ କହିଲେ କଥା ହୋଇଲା ଯେତେକ
ଶୁଣି ଦୁଃଖେ ଶୋକ କଲା ମଗଧ ନାୟକ ।
କପାଳରେ କର ମାରି ବୋଲେ ମୋ ସମାନ
ଜଗତ ମଧ୍ୟରେ କେହି ନାହିଁ କର୍ମହୀନ ।
ଆପେ ଲଜ୍ଜା ପାଇ ପୁଣି ପରେ ଆଶାକଲି
ତଥାପି ତହିଁରୁ କିଛି ଫଳ ନ ପାଇଲି ।
ଏତେ ବୋଲି ସବୁ ନୃପମାନଙ୍କୁ ହକାରି
ସମସ୍ତଙ୍କୁ ଆଜ୍ଞା ଦେଲା ମନେ ଦୁଃଖ ଧରି ।
ଆପଣା ରାଜ୍ୟକୁ ସର୍ବେ ଯାଅ ଯେ ଯାହାରେ
ରାଜ୍ୟ ପ୍ରଜା ସମ୍ଭାଳଣ ଥିବ ନିଶ୍ଚିନ୍ତରେ ।
ଦୂତ ବରଗିଲେ ପୁଣି ସତ୍ୱରେ ଆସିବ
ଏ ମୋର ବଚନ ସର୍ବେ ପ୍ରତିପାଳିଥିବ ।
ଏହା ଶୁଣି ରାଜାମାନେ ସୈନ୍ୟ ଘେନଗଲେ
ଯେ ଯାହା ରାଜ୍ୟରେ ଯାଇ ପ୍ରବେଶ ହୋଇଲେ
ଆପେ ଜରାସନ୍ଧ ରାଜା ସଇନ୍ୟ ଚଳାଇ
ବାହୁଡ଼ି ଆପଣା ରାଜ୍ୟ ପ୍ରବେଶିଲା ଯାଇ ।
ଗୁଣଭୂଷଣ ମନ୍ତ୍ରୀକି ପାଶକୁ ହକାରି
ବହୁତ ପ୍ରକାରେ ତାକୁ କହିଲା ତିଆରି ।
ଅନେକ ସଇନ୍ୟ ମୋର ଯୁଦ୍ଧେ କ୍ଷୟ ଗଲେ
ବଡ଼ ବଡ଼ ଯୋଦ୍ଧାମାନେ ପ୍ରାଣ ହରାଇଲେ ।
ବାକି ଯେ ଅଛନ୍ତି ତାଙ୍କୁ ସୁସ୍ନେହେ ପ୍ରତିପାଳ
ବହୁ ଦୁଃଖ ପାଇଛନ୍ତି ଅଙ୍ଗେ ନାହିଁ ବଳ ।
କାଳଦମନ ପୁତ୍ରକୁ ପୁଣି ସେ ହକାରି
ବହୁତ କହିଲା ତାକୁ ପ୍ରବୋଧନା କରି ।
ମୋ ପାଇଁରେ ଆସି ତୁମ୍ଭେ କଷଣ ଭୁଞ୍ଜିଲ
ପ୍ରାଣେ ଗଲା ବିନା କାର୍ଯ୍ୟ ସାଧି ନ ପାରିଲ ।
ଏବେ କାଳଦମନର ପୁତ୍ରକୁ ବସାଇ
ରାଜ୍ୟ ରାଜା କରି ଦଣ୍ଡ ସିଂହାସନ ଦେଇ ।
ଏମନ୍ତ ପ୍ରକାରେ କହି ତାଙ୍କୁ ବିଦା କଲା
ପାତ୍ର ମନ୍ତ୍ରୀ ଘେନ ନିଜ ପ୍ରଜାଙ୍କୁ ପାଳିଲା ।
ଏଥୁଅନନ୍ତରେ ଶୁଣ ପରୀକ୍ଷ ନୃପତି
ସ୍ୱର୍ଗପୁରେ ବିଜେ କଲେ ପ୍ରଭୁ ଲକ୍ଷ୍ମୀପତି ।
ବୃହସ୍ପତି ପରିହରେ ବଚନ ଉଚ୍ଚାରି
ରୁହାଇଣ ରଖିଲେ ତାହାକୁ ବଜ୍ରଧାରୀ ।
ପୁଣି ବୃହସ୍ପତି ଉଠି ପୁଚ୍ଛିଲେ ଏସନ
କିମର୍ଥେ କରିଲେ ପ୍ରଭୁ ଶୁଭ ଆଗମନ ।
ଶ୍ରୀଜଗନ୍ନାଥ ବୋଇଲେ ଗୋପେ ଆମ୍ଭେ ଥିଲୁ
କଂସକୁ ମାରିଣ ଆମ୍ଭେ ଏଥକୁ ଅଇଲୁ ।
ତହିଁ ଲାଗିଲା ଆମ୍ଭଙ୍କୁ ଜରାସନ୍ଧ ଭୟେ
ନିରନ୍ତର ଧାଡ଼ି ଦେଖି ଅଷ୍ଟାଦଶ ଯାଏ ।
ସମରାଜ୍ୟ ଯାକ ସବୁ ହୋଇଲା ନିରେଖ
ପଳାଇଲେ ଯାଦବେ ଯେ ପାଇ ମହା ଦୁଃଖ ।
ତେଣୁକରି ମଥୁରାକୁ ଆମ୍ଭ ଯିବା ନାହିଁ
ସର୍ବ ଯାଦବେ ରହିଲେ ଦ୍ୱାରକାରେ ଯାଇ
ଆମ୍ଭେ ବାହାରେ ବାହାରେ ଦ୍ୱାରକାକୁ ଯିବୁ
ସର୍ବ ଯାଦବଙ୍କ ସଙ୍ଗେ ସେଠାରେ ରହିବୁ ।
ତୁମ୍ଭେମାନେ ସଙ୍ଗେ ନ ଯେ କରିଥିବ ନିତି
ନିରନ୍ତର ଲାଗିଥାଇ ଅସୁରଙ୍କ ଭୀତି ।
ଦେବତେ ବୋଇଲେ ତବ ଦୈତ୍ୟହତବାନା
କଳ୍ପନା କାମନା ନିଧି ଆର୍ତ୍ତି ବଜ୍ରସେହ୍ନା ।
ଭାରାଭର ନିବାରଣ ହୋଇ ଅବତାର
ସଂସାର ନଉକା ତୁମେ ସିନା ତ କାଣ୍ଡାରୀ ।
ତୁମର ସ୍ଥାପିଲ ଆମେ ସକଳ ଦେବତା
ଭକତଜନବାନ୍ଧବ ତୁମେ ଜଗତ୍‌କର୍ତ୍ତା ।
ତୁମେ ସ୍ୱର୍ଗପୁର କଲ ଆହେ ଦେବରାୟେ
ନିଶ୍ଚିନ୍ତେ ରହିଲୁ ଆମେ ସର୍ବ ଦେବତାଏ ।
ତୁମେ ପ୍ରଭୁ ଅଟ ଦ୍ୱାରକାର ଅଧିପତି
ଶଙ୍ଖନିଧି ପଦ୍ମନିଧି ଅଛି ତୁମ୍ଭ କତି ।
ସୁଧର୍ମା ସଭାରେ ବିଜେ କରି ତୁମ୍ଭ ଆସି
ତୁମର ଅର୍ଜିଲ୍ଲ ଧନ ସବୁ ବିଶ୍ୱବାସୀ ।

ସ୍ୱର୍ଗ ସମ୍ପାଦନା ଯେତେ ରତ୍ନ ଧନଧାନ୍ୟ
ଅଶେଷ କୋଟି ଲକ୍ଷ୍ମୀର କ୍ଲେଷ ଆପଣ ।
ଏତେ କହି ଇନ୍ଦ୍ର ଶଙ୍ଖନିଧି କରେ ଦେଲେ
ସୁଧର୍ମା ସଭାରେ କୃଷ୍ଣ ଗୋଚରରେ ଅର୍ପିଲେ ।
ଅନେକ ବିନୟେ କହିଲେକ ସୁରଯୋନ
ବୋଇଲେ ଦ୍ୱାରକା କୃଷ୍ଣ ଯାଅ ନିଧି ଦେନ ।
ଏ ନିଧି ଅଟେ ଅମର ଭଣ୍ଡାରର ଆଦ୍ୟେ
ଯେତେ ବ୍ୟୟ କଲେ କେବେ ନୁହଇଟି କ୍ଷୟେ
କୋଟିଏକ ଶଙ୍ଖନିଧି ତୁଲଅଛି ଏଥି
ଏକା ନିଧିକେ ତୁଳନା ନାହିଁ ଏହି ପୃଥ୍ୱୀ ।
ସମୁଦ୍ର ମନ୍ଥନ କାଳେ ଉପୁଜିଲା ଏହି
ତୁମେତ ଏହା ମହିମା ଜାଣ ଭବଗ୍ରାହୀ ।
ଅନେକ ଯତ୍ନେ ସାଇତି ଥିଲ ସ୍ୱକୁ ମୁହିଁ
ଏ ରତନ ପାଶେ ଥିଲେ କଷ୍ଟ ଭୟ ନାହିଁ ।
ପଦ୍ମନିଧି ନେଇ ଦେଖାଇଲେ ପୁଣି ପୁଣି
ବୋଇଲେ ଯାହାର ମହିମା ଶୁଣ ଚକ୍ରପାଣି ।
ହସ୍ତେ ପଦ୍ମ ପାଦେ ପଦ୍ମ ବିଜେ କରିଛନ୍ତି
କ୍ଷୀର ସମୁଦ୍ରୁ ଉପୁଜିଅଛି ଚନ୍ଦ୍ରକାନ୍ତି ।
ଏହାଯୋଗେ ଉପୁଜଇ ଦେହେ ବୁଦ୍ଧିବଳ
ଏ ପଦ୍ମନିଧି ପ୍ରସାଦେ କଣିବ ସକଳ ।
ରୋଗ ଶୋକ ବାଧା ନାହିଁ ନାହିଁ ଶତ୍ରୁ ଭୟେ
ଦେବ ଶସ୍ତ୍ରରେ ନିର୍ମିତ ରତ୍ନ ହୁଏ ଜୟେ ।
ଯେତେବେଳେ ବାଞ୍ଛା କରିବଟି ଯେଉଁ ଦ୍ରବ୍ୟ
ତତକ୍ଷଣେ ପ୍ରାପ୍ତ ହୁଏ ଆସିଣ ସେ ସର୍ବ ।
ଇଦଂ ପ୍ରତିବାକ୍ୟ ବଦସୂନ୍ତ ବଜ୍ରଧାରୀ
ଏ ସୁଧର୍ମା ସଭାକଥା ଶୁଣ ଦେବହରି ।
ଏ ସଭାଗୋଟି ସମୁଦ୍ର ମନ୍ଥନରୁ ଜାତ
ମହା ପ୍ରଳୟକାଳେ ଏ ସାଇତି ଜଗତ ।
କହନ୍ତେ ନ ସରେ ଏହି ସଭାର ମହିମା
ନିରନ୍ତର ନିର୍ମାଣକୁ କୋଟି ବିଶ୍ୱକର୍ମା ।
କୁଳଶୂନ୍ୟ ବିବର୍ଜିତ ଏହି ସଭାଗୋଟି
ଏହାକୁ ପଟାନ୍ତର ଯେ ନାହିଁ ଲକ୍ଷକୋଟି ।
ଅମର ବାରସ୍ତ୍ରୀ ଏ ଅଟେ ଦେବସର୍ଭା
ବୃଦ୍ଧହିଁ ବସିଲେ ଏଠି ହେବ ନବଯୁବା ।
ତେତିଶ କୋଟି ଦେବତା ହୋଇ ଏକମୂର୍ତ୍ତି
ଖମ୍ଭ ଶ୍ରେଣି ରୂଅ ହୋଇଛନ୍ତି ନନ୍ଦପ୍ରତି ।

ଗନ୍ଧ ବିନ ବିବର୍ଜିତ ସଭା ପୁଣ୍ୟମୟେ
ନିରନ୍ତର ଚନ୍ଦ୍ର ସୂର୍ଯ୍ୟ ହୁଅନ୍ତି ଉଦୟେ ।
ତୁମେ ଯେବେ ଦ୍ୱାରକାରେ ରଖିବ ଅଚ୍ୟୁତ
ତୁମ ଦେହ ଶୋଭା ଏହୁ ପାଇବ ଅତ୍ୟନ୍ତ ।
ଏମନ୍ତ କୃତକୃତ୍ୟ ହୋଇ ବଜ୍ରପାଣି
ବହୁ ଉପହାର କୃଷ୍ଣଚନ୍ଦ୍ର ଦେଲେ ଆଣି ।
ଯେଝାର ଅନୁରୂପରେ ସର୍ବ ଦେବବୃନ୍ଦ
କୃଷ୍ଣେ ଆଶ୍ରିତ ହୁଅନ୍ତି ହୋଇଣ ଆନନ୍ଦ ।
ଜଗନ୍ନାଥଙ୍କର ପାଦେ ସର୍ବେ କଲେ ପୂଜା
ଗରୁଡ ପିଠିରେ ବିଜେ ସେ ଦେବାଧିରାଜା
ସର୍ବ ଦେବତାମାନଙ୍କୁ ଦେଇଣ ମେଲଣି
ଅନ୍ତରୀକ୍ଷ ମାର୍ଗେ ଚଳିଲେ ଚକ୍ରପାଣି ।
ଅନନ୍ତ ମାୟାଧର ଶ୍ରୀପ୍ରଭୁ ବଶ୍ୱବାସ
କୁଶସ୍ଥଳୀ ଭୁବନରେ ଯାଇଣ ପ୍ରବେଶ ।
ଖଣ୍ଡେ ଦୂରରେ ଥାଇଣ ଦେଖିଲେ ଶ୍ରୀହରି
ଅତ୍ୟନ୍ତ ସୁନ୍ଦର ଦିଶେ ଦ୍ୱାରକା ନଗରୀ ।
ନବ ରତ୍ନେ ନିର୍ମାଣ ଅତ୍ୟନ୍ତ ଘଟଣ
ଲକ୍ଷେଗୁଣ ଶୋଭା ପାଏ ଅପୂର୍ବ ଭୁବନ ।
ସକଳ ନର ନାରୀଏ ନିଦ୍ରା ଯାଇଥିଲେ
ରଜନୀ ପ୍ରଭାତେ ନିଦ୍ରା ତେଜିଣ ଉଠିଲେ ।
ଦେଖିଲେ ସୁବର୍ଣ୍ଣମୟ ପୁର ଝଟପଟ
ଘରେ ଘରେ ଗୃହଦୁଆ ଯେ ଅତ୍ୟନ୍ତ ଘଟଣ ।
ହାଟ ବାଟ ଦାଣ୍ଡଆଦି ବଣିଜ ପସରା
ପ୍ରବହୁଁ ଦିଶୁଅଛଇ ଅତିଶୟ ଶୋଭା ।
ଗୃହ ବସ୍ତୁ ଆଦିକରି ସେ ଯାହାର ଦ୍ରବ୍ୟ
ଅଖଣ୍ଡିତ ଭାବେ ପୂରି ଅଛନ୍ତି ସେ ସର୍ବ ।
ମେଘ ମଣ୍ଡପ ଦେଉଳ ଅଟାଳି ଜଗତି
ବ୍ରାହ୍ମଣ କ୍ଷତ୍ରିୟ ଆଦି ଷଟତ୍ରିଂଶ ଜାତି ।
ଯେସନ ଦିଶେ ମଥୁରା ଗଡ଼ର ପାଚନା
ବାପୀ କୂପ ତଡ଼ାଗାଦି ନଦୀ ଯାଇ ଖଣା ।
ପୁର ଦାଣ୍ଡମାନ ସବୁ ଅତିଶୋଭା ପାନ୍ତି
ରେଖ ରେଖ ଧାଡ଼ି ଧାଡ଼ି ମନ୍ଦିର ଶୋଭନ୍ତି ।
ଉଭା ହୋଣ ମେଳି କାଠ ସମସ୍ତଙ୍କ ଦାଣ୍ଡେ
ଯେଝାରେ ସାଇତି ଅବୋରଣ ଖଣ୍ଡେ ଖଣ୍ଡେ
ଫଳିତ କୁସୁମ ତରୁ ଅତି ଝଟପଟ
ନନ୍ଦନବନ ପରାୟେ ଦିଶଇ ଶୋଭନ ।

ଭୂମି ଆଦରକରି ପୁଣି ଷାଠିବାକ ଥୁକା
ଆବର କେତେ ସମ୍ପଦ ଅଟେ ଅକଳଣ ।
ମନ୍ଦ ମନ୍ଦ ଗନ୍ଧବହ ମଳୟର ବାୟେ
ଝିଙ୍କାରିଙ୍କର ଶବଦେ ପୁଲକତ କାୟେ ।
ଅଚଳାଚଳ ସମ୍ପଦ କସ ଯେ କହିବା
ଘରେ ଘରେ ଲକ୍ଷ୍ମୀଦେବୀ ପାଉଛନ୍ତି ଶୋଭା
ସକଳ ଯାଦବେ ଦେଖି ଅପୂର୍ବ ମଣିଲେ
କମ୍ପିତ ମାୟା ହେଲା ତା କେହି ନ ଜାଣିଲେ
ସମସ୍ତଙ୍କୁ ଭ୍ରମ କରାଇଣ ଦେବରାୟେ
ଥୋକାଏ ମନ୍ତ୍ରେ ଏହା ସ୍ୱପନ ପରାୟେ ।
ଥୋକେ ଯାଦବେ ଜାଣିବେ ପୁଣି ତଥ୍ୟକରି
ବୋଇଲେ ଜଗର ହେଲୁ ଗୁଡ଼ ମଧୁପୁରୀ ।
ଏଠାରେ ରହିଲୁ ଆମ୍ଭେ ଆସିକରି ପୁଣି
ହରିଙ୍କ ସ୍ୱର୍ଗ ପରାଏ ଧାତା ଦେଲା ଆଣି ।
ଏଥେ ବଳସିବା ନାରାୟଣଙ୍କ ସଙ୍ଗରେ
ଅଶେଷ କୋଟି ପାତକା ଥିଲା ଯା ଅଙ୍ଗରେ
ବେଦ ଶାସ୍ତ୍ରମତେ ତାହା ହୋଇବ ବିନାଶ
କୋଟିଜନ୍ମ ଯାଏ ଯେହୁ ସେବିବ ମହେଶ ।
ପ୍ରୟାଗ ମଣିକର୍ଣ୍ଣିକା ଆଦିରେ ଝାସିଲେ
ଏହିପରି ଭୂମି ତାକୁ ମିଳବଟି ଭଲେ ।
ଜଳ ତିଳ ଅନ୍ନ ବସ୍ତ୍ର ଆବର ଭୂଦାନ
ପଞ୍ଚ ଇନ୍ଦ୍ରିୟ ନିଗ୍ରହ ସାଧି ବ୍ରହ୍ମଜ୍ଞାନ ।
ନାନା ବାରବ୍ରତ କରିଥିବ ତୀର୍ଥ ଜପ
ସମଭକ୍ତିରେ କରିଣ ଥିବ ଘୋରତପ ।
ଯତ ସତ ନିୟମ ରଖି ହେବ ବନବାସୀ
କନ୍ଦମୂଳକୁ ଭକ୍ଷିବ ଆଉ କ୍ଷୀର ବାରି ।
କୋଟି କୋଟି ଯାଗକରି ହେବ ଶୁଦ୍ଧପୂତ
କାୟା କଦର୍ଥ ନକରି କହୁଥିବ ସତ୍ୟ ।
ଆଜନମ ପରିଯନ୍ତେ ଯେତେ ପୁଣ୍ୟକରି
ଗୋବିନ୍ଦ କୀର୍ତ୍ତନେ କେହି ନୁହନ୍ତି ସରି ।
ଯୋଗିଜନମାନେ ମୂଳମନ୍ତ୍ର ଜପି ଯାହା
କେବଣ ଭାଗ୍ୟରେ ଆମେ ଦେଖିଲୁଟି ତାହା
ପୁରାଣ ପୁରୁଷ ଯେହୁ ମହା ବିଶ୍ୱମୂର୍ତ୍ତି
ସ୍ୱରଖାନ ସ୍ୱରବାନ ହୋଇ ନାନାଜାତି ।
ସେହି ସେ ଜାଣଇ ସିନା ଯାବତ କପଟ
ଏ ସଂସାର ଗୋଟି ତାର ଅଟେ ଖେଳ ନାଟ

ଶୁଣ ହେ ପରୀକ୍ଷ ରାଜା ଭଣି ଶୁକଯତି
ଯାଦବମାନେ ଏମନ୍ତ ଭାବନା କରନ୍ତି ।
ବଳରାମ ଉଗ୍ରସେନ ବସୁଦେବ ସହ
ଉଦ୍ଧବ ଅକ୍ରୂର ଅନାଧୃଷ୍ଟ ଯେ ଦୁର୍ଜ୍ଜୟ ।
ସୁରଥ ଯେ ବୃଦ୍ଧଶ୍ରବା ଆବର ସାତ୍ୟକ
ଶତଧନୁ ପ୍ରଦ୍ୟୁମ୍ନ ଜତ ମୂଳେ ଯେତେ ଲେଖି ।
ବସୁଦେବ ଅଷ୍ଟ ପୁତ୍ର ଉଗ୍ରସେନ ପୁତ୍ର
ଶ୍ରୀକୃଷ୍ଣ ସୁମରି ରତ ସାମ୍ରାଜ୍ୟ ସମସ୍ତ ।
ଯେ ଯାହାର ନିତ୍ୟକର୍ମ ସର୍ବେ ଆଚୋରିଲେ
ପ୍ରଭାତରେ ଆସିଣ ଯହିଁ ଦିନମଣି ହେଲେ ।
ମକର ଶୁକଳ ତ୍ରୟୋଦଶୀ ବୁଧବାର
ପୁନର୍ବସୁ ନକ୍ଷତ୍ର ଯେ ଅଟେ ସେ ଦିନର ।
ବେଳ ଦଣ୍ଡଦଣ୍ଡେ ମୀନଲଗ୍ନେ ଅନୁକୂଳ
ଦ୍ୱାରକାରେ ବିଜେ କଲେ ପ୍ରଭୁ ଆଦିମୂଳ ।
ନକ୍ଷତ୍ର ଯେସନେ ଆକାଶରୁ ପଡ଼େ ଖସି
ମଧ୍ୟାହ୍ନ ଆଦିତ୍ୟ ପରି ଦିଶେ ତେଜରାଶି ।
ଆର୍ଦ୍ରାବଳୀମାସେଯେହ୍ନେ ବାଳସୂର୍ଯ୍ୟୋଦୟେ
ରୂପ ତେଜ ଲାଗଇଟି ତେସନ ପରାୟେ ।
ଆକାଶରୁ ଚଣ୍ଡପକ୍ଷୀ ଯେହ୍ନେ ଦିଏ ଝାମ୍ପ
ତେସନ ପ୍ରକାରେ ଅଟେ ବୈନତେୟ ଧାପ
ଖଗେଶ୍ୱର ପିଠିପରେ ଦିବ୍ୟମୂର୍ତ୍ତି ଧରି
ଚତୁର୍ଭୁଜ ରୂପରେ ହରି ତହିଁ ବିଜେକରି ।
ଶଙ୍ଖ ଚକ୍ର ଗଦା ପଦ୍ମ ସ୍ୱକରରେ ଶୋଭେ
ପୀତ ଅମ୍ବର ଶୋଭିତ ନାନା ଭୂଷଣମୟେ ।
ବିନତା ନନ୍ଦନ ପରେ ନାରାୟଣ ବସି
ଧୀରେ ଧୀରେ ଖଗବର ଆକାଶରୁ ଖସି ।
ପ୍ରେମ ଆନନ୍ଦ ଶବଦେ ଯେହ୍ନେ ଘଡ଼ଘଡ଼ି
ଶ୍ରାବଣ ମାସେ ମାରଇ ଯେହ୍ନେ ଚଡ଼ଚଡ଼ି ।
ଅଣଞ୍ଚାଶ ପ୍ରାୟେ ଶୁଭେ ଆସନ୍ତେ ଭୂଇତ
ଢଳଢଳ ବସୁନ୍ଧରା ମହୀ ଖଣ୍ଡ ସାତ ।
ଶବଦକୁ ଅନାଇଣ ସର୍ବ ଯଦୁବୃନ୍ଦ
ଦେଖିଲେ ଚତୁର୍ଭୁଜ ରୂପେ ବିଜୟେ ଗୋବିନ୍ଦ
ନଗରର ସିଂହଦ୍ୱାରେ ଆସି ବିଜେକରି
ଦେଖିବାପାଇଁ ଯାଦବେ ଆସନ୍ତେ ଯେଝାରି ।
ଅଗ୍ରତରେ ନିରନ୍ତର ହୁଏ ଶଙ୍ଖଧ୍ୱନି
ହୁଳହୁଳି ଦେଲେ ଦ୍ୱାରକାର ଯେ କାମିନୀ ।

ମେଘାଡମ୍ବର ଉଦ୍ଦଣ୍ଡ ଉଡ଼େ ଏକଲକ୍ଷ
ଆଲମ୍ବ ଶଗଳ ଝମକାଇ ପଞ୍ଚମୁଖ ।
ଧୂପକାଠି ଯେ ପମ୍ପାର ପାଣିମାନ ସିଞ୍ଚ
ଚନ୍ଦନ ଛେରା ସେବତି ପାଖୁଡ଼ାକୁ ବାଞ୍ଛ ।
ସାରଚୁର କାହାଳ ଯେ ବାଜେ ଅଜାବେଣୀ
ସାଣା ବଇଁଶୀ ଉପାଙ୍ଗ ସିଂହନାଦ ପୁଣି
ସୁବର୍ଣ୍ଣ ବେତ ଧେନଣ ପଡ଼ିହାରୀ ଆଗେ
ସୁଧର୍ମା ସଭାକୁ ଚଳେ ଜଗବନ୍ଧୁ ବେଗେ ।
କୋଟିଏ କନକର ସେହି ସଭା ଛନ୍ଦ ବନ୍ଧ
ଶଙ୍ଖନିଧି ପଦ୍ମନିଧି ପୂରିଅଛି ତହିଁ ।
ଭକ୍ତମୁକ୍ତିଦାତା ପର ବସେ ଜ୍ୟୋତିର୍ମୟେ
କୋଟିଚନ୍ଦ୍ର ସୂର୍ଯ୍ୟ କବା ହୋଇଛି ଉଦୟେ ।
ଦେଖିଣ ସନ୍ତୋଷହେଲେ ଯେ ସମସ୍ତ ଲୋକେ
ଏ କେବଣ ଦ୍ରବ୍ୟ ବୋଲି ପଚାରନ୍ତି ଥୋକେ
ଜାଣିମା ଲୋକେ ବୋଲନ୍ତି ଶଙ୍ଖ ପଦ୍ମନିଧି
ଶ୍ରୀଜଗନ୍ନାଥଙ୍କୁ ଏହା ଦେଲେ ଜମ୍ବୁଭେଟି ।
ସୁଧର୍ମା ସଭାଟେ ଦୋଇଛନ୍ତି ସପ୍ତଯୋଜନ
ଆବର ଅନେକ ଦ୍ରବ୍ୟ ଆସିଛନ୍ତି ଯେନ ।
ଏତେ ବୋଲିଣ ସକଳେ ଧାମନ୍ତି ଯେ ବେଗେ
ଭୁଲଟେ ମିଳିଲେ ଯାଇ ସିଂହଦ୍ୱାର ଲଗେ ।
ବଳଦେବ ଉଗ୍ରସେନ ବସୁଦେବ ହରି
ଏମାନେ ବାଟକୁ ଅଇଲେକ ଅନୁସରି ।
ଇନ୍ଦ୍ରମଣିର ନବରେ ପାର୍ଥ ରହିଥିଲେ
ଶ୍ରୀକୃଷ୍ଣ ଆସନ୍ତେ ଯାଇ ଦରଶନ କଲେ ।
ଅର୍ଜ୍ଜୁନର ହସ୍ତ ଧରି ପ୍ରଭୁ ଦେବହରି
ନବରକୁ ଚଳେକଲେ ଗରୁଡ଼ୁଁ ଉତ୍ତରି ।
ଉଗ୍ରସେନେ ନମସ୍କାର କଲେ ନାରାୟଣ
ପ୍ରଣାମ କରିଲେ ବସୁଦେବଙ୍କ ଚରଣ ।
ତଦନ୍ତରେ କଲେ ବଳଦେବ ପାଦପୂଜା
ତତ୍ପରେ ଇନ୍ଦ୍ରମଣିକୁ ନମି ଦେବରାଜା ।
ଆବର ଯାଦବଗଣେ ଯେଥାମାନ୍ୟ କଲେ
ଦେବକୀଙ୍କୁ ନମସ୍କାର ଯାଇଣ କରିଲେ ।
ସନାତନ ପୁରୁଷ ଯା ଆଦିଅନ୍ତ ନାହିଁ
ସମସ୍ତେ ହେଉଅଛନ୍ତି ଦେଖି ତାଙ୍କୁ ବାଇ ।
ସେ ଯେବେ ଆପଣା ଧର୍ମ ନ କରେ ପାଳନା
ସମସ୍ତ ପ୍ରାଣୀମାନେ ଯେ ହୋଇବେଟି ବଣା
ଯାହାରେ ଆନ ନୁହଇ ଶୁଭାଶୁଭ କର୍ମ
ଲୋକଙ୍କ ମନ ମନାଇ କରି ନାନାଧର୍ମ ।
ଏଥିଅନନ୍ତରେ ସକଳ ଯଦୁବୀରମାନେ
ଆନନ୍ଦ ମନରେ ଗଲେ ଯେ ଯାହା ଭୁବନେ
ନବରତନ ଜଡ଼ିତ ସବୁ ଗୃହମାନ
ଥୋକେ ବୋଲନ୍ତି ଏହା ତ ଅପୂର୍ବ ଗଠନ ।
ଥୋକାଏ ବୋଲନ୍ତି ଆଉ ଜରା ଭୟ ନାହିଁ
ଥୋକାଏ ବୋଲନ୍ତି ଆମେ ରହିଲେ ଯେ କାହିଁ
ଥୋକାଏ ବୋଲନ୍ତି ଜଗନ୍ନାଥେ ଯେ ଆସନ୍ତେ
କେବଣ କଥା ଅପୂର୍ବ ହୋଇବଟି ଏଥେ ।
ଏସନେକ ବସ୍ତୁରନ୍ତେ ନଗ୍ର ନରନାରୀ
ସ୍ନାହାନ ସାରିଲେ ଯାଇ ସ୍ୱାମି ଦେବହରି ।
ଭୋଜନରେ ବସିଲେ ଯେ ଆନନ୍ଦ ମନରେ
ଦେବକୀ ଦେବୀ ପର୍ଯ୍ୟନ୍ତ ଆଣି ହରଷରେ ।
ସୁସିଦ୍ଧ ପାକ ଅମୃତ ପରାୟ ରନ୍ଧଣା
ସୁପକ୍ୱ ଅନ୍ନ ବ୍ୟଞ୍ଜନ ଏକୁ ଏକ ଜଣା ।
ଭୁଞ୍ଜିଣ ତୃପତ ହେଲେ ଦେବ ଭଗବାନ
ଆଚମନ ସାରି କଲେ ତାମ୍ବୁଳ ଭୋଜନ ।
ସିଂହ ଦୁଆରେ ସୁଧର୍ମା ସଭାଗୋଟି ଥୋଇ
ଶଙ୍ଖନିଧି ପଦ୍ମନିଧି ପୁରରେ ରଖାଇ ।
ଏଥିଅନନ୍ତରେ ଅସ୍ତ ହେଲେ ଦିନମଣି
କହୁଁ କହୁଁ ପ୍ରବେଶିଲା ଆସିଣ ରଜନୀ ।
ଦ୍ୱାରକାପୁରେ ରହିଲେ ସର୍ବ ନରନାରୀ
ନିତ୍ୟକର୍ମ ସାରି ନିଦ୍ରାଗଲେ ଯେ ଯାହାରି ।
ସମସ୍ତଙ୍କ ମନ ମୋହିଛନ୍ତି ଲକ୍ଷ୍ମୀସାଇଁ
ଜଗବନ୍ଧୁ ଦେଖି ସର୍ବେ ଆନନ୍ଦିତ ହୋଇ ।
ଏହିପରି ପ୍ରସଙ୍ଗରେ କେତେଦିନ ଗଲା
ସବୁଦେଶ ବାର୍ତ୍ତା ଯାଇ ସ୍ୱର ଜଣାଇଲା ।
ଅଷ୍ଟାଦଶ ବେଳ ଜରା ଦେଲାକ ଯେ ଧାଡ଼ି
ଉଗ୍ରସେନ ରାଜା ଗଲେ ମଥୁରାକୁ ଛାଡ଼ି ।
ସବୁ ଯାଦବେ ଯେଦିନ ନିଦଶର ସାଇଁ
ଗଡ଼ ବାନ୍ଧିଣ ରହିଲେ ଅବ୍ଧି ମଧ୍ୟେ ଯାଇ ।
ସୁବର୍ଣ୍ଣମୟ ଅଟଇ ଦ୍ୱାରକା ଭୁବନ
ଆଉ ଦୀର୍ଘ ପ୍ରସ୍ଥ ତାର ସହସ୍ର ଯୋଜନ ।
ସୁନ୍ଦର ସେ ଶୋଭାକର ଜାଜ୍ୱଲ୍ୟ ତା ଜ୍ୟୋତି
କୈଳାସ କନ୍ଦର କି ପୁର ବାରମ୍ବତୀ ।

ସେ ପୁରେ ଯାଦବ ଯେଉଁ ରହି ନାରାୟଣ
ଏସନ ବାରତା ଯାଇ କହି ସୁରଗଣ ।
ଦେଶେ ଦେଶେ ବୁଲା ବୁଲି କହନ୍ତେ ଏସନ
କେତେ ହର୍ଷହେଲେ କେତେ ଦୁଃଖୀକଲେ ମନ
ଇତି ଶିରୀ ଭାଗବତ ପୁରାଣର ଧ୍ୱନ
ଧର୍ମବାଣୀ ଶୁଣି ନରେ ମୁକ୍ତ ହୁଅ ପୁଣି ।
ପବିତ୍ର ଗଙ୍ଗାଜଳ ଏ ଅଟି ପୁଣ୍ୟମୟେ
ଇଦଂ ଚତୁର୍ଦ୍ଦଶ ଅଧ୍ୟା ସମାପତ ହୁଏ ।

— ❁ —

## ଅର୍ଜ୍ଜୁନକୁ ଘେନି ସାତ୍ୟକିର ଦ୍ୱାରୁଣାବନ୍ତ ଗମନ ଓ ଗୋପନରୁ ସୁଭଦ୍ରାକୁ ଆନୟନ

ଏଥୁ ଅନନ୍ତରେ ପୁଣି ଶୁକମୁନି କହି
ଶୁଣ ସାବଧାନେ ତୁମେ କୁରୁକୁଳସାଇଁ ।
ଏହି ପରକାରେ ତହୁଁ କେତେଦିନ ଗଲା
ଦୁଃଖ ସୁଖ ଭାବ ଦିନ ଅତୀତ ହୋଇଲା ।
ଦିନେ ସୁଧର୍ମା ସଭାରେ ପ୍ରଭୁ ଦେବରାୟେ
ଅତ୍ୟନ୍ତ ଆନନ୍ଦ ଚିତ୍ତେ କରିଲେ ବିଜୟେ ।
ଉଗ୍ରସେନ ଆଦି ସର୍ବ ଯାଦବଙ୍କୁ ଘେନି
ବଳଦେବ ପାର୍ଥସହ କେତେକ ସଇନ ।
ଦକ୍ଷିଣ ଖମ୍ବ ମଣ୍ଡଣ ବସିଲେ ତକ୍ଷଣ
ତାହାଙ୍କର ପାଶେ ବିଜେ କଲେ ନାରାୟଣ ।
ଅଗ୍ରେ ଛନ୍ତି ଉଗ୍ରସେନ ସୁଦେବ ସହିତେ
ପାଖଶେ ବସିଅଛନ୍ତି ସାତବଂଶ ଯେତେ ।
ହାତୀ ରଥୀ ପଦାତିକ ଅତ୍ୟନ୍ତ ଗହଳ
ପଛୁଆର ଡକେ ବସି ସର୍ବ ଯଦୁଦଳ ।
ଉଗ୍ରସେନ ମୁଖ ଚାହିଁ ପୁଛନ୍ତି ଅଚ୍ୟୁତ
ମଥୁରା ରାଜ୍ୟ ଯିବାକୁ ବଳଇ କି ଚିତ୍ତ ।
ଜନନୀ ଜନ୍ମଭୂମି ଗଙ୍ଗାକୂଳ ବାସ
ଅନ୍ତମକାଳେ ପାଆନ୍ତି ଏହା ସୁପୁରୁଷ ।
ପୂର୍ବେ ମଥୁରା ପିତୃ ପିତାମହ ପୃଥ୍ୱୀ
ନହୁଷ ରାଜାଙ୍କର ସେ ଅପୂର୍ବ କୀରତି ।
ଯଦୁ ଆଦି ଥିଲେ ତହିଁ ଅନେକ ଯେ ରାଜ
ଦିଗପାଳ ସମାନରେ ପାଉଥିଲେ ପୂଜା ।
ସାତବଂଶ ଯାଦବ ଯେ ଏକ୍କ ଏକ ଯୋଦ୍ଧୀ
ସମସ୍ତେ ଭୋଗ କରିଲେ ମହନ୍ତ ସମୃଦ୍ଧି ।
ଏତେକାଳରେ ଖଣ୍ଡିଲା ଧାତା ତାହା ଆଣି
ପୂର୍ବର ବିଷୟ ଏହା ପୁରାଣେ ବଖାଣି ।
ସେ ବଂଶକୁ କଂସରାଜା ହେଲା ପୁଣି ସଲ
ଜଗ୍ଧ ଜୀବନେ ଥିଲେ କି ଅଛୁ ଆମ ଭଲ ।
ରାଜ୍ୟ ଉଜାଡ଼ି କଣ୍ଟକ ଗୋଟି ହେଲା ରାଜ
ପୁଣି ବାନ୍ଧବ ବୋଲିଣ ସଦା ଥାଏ ବୁଦ୍ଧି ।
କେତେ ତାହାର ସଙ୍ଗରେ ହେବ ଅମରଷ
ଅଟି ମନ୍ଥନେ ଉପୁଜେ କାଳକୂଟ ବିଷ ।
ଈଶ୍ୱର ଭଜ ଲୋକ ଯେ ତାହାକୁଟି ପୂଜ
ଦୁଷ୍ଟଲୋକ ହାତେ ଆଜ କେତେ ହେବ ଗଞ୍ଜି
ତେଣୁକରି ଅପସରି ଅଇଲୁ ସର୍ବଥା
ଲୋକେ ମହାଲଜ୍ଜା ପୁଣି ଆପଣାର କଥା ।
ତୁମେ ସେ ଅଟ ଆମର ପିତୃ ପିତାମହ
ତୁମ ଛନ୍ଦରେ ଏ କଥା ଯୋଗାଏ କି କହ ।
ନୋହିଲେ ମଥୁରାପୁରେ ଯେବେ ମନ ହୋଇ
ଅବଲମ୍ବେ ସେଠ ବରେ ଗ୍ଲାନିବାକ ନେଇ ।
ତୁମେ ତ ଜଗତର କରନାହିଁ ଦୋଷ
ଆମ ନମନ୍ତ ତୁମଙ୍କୁ କରଅଛୁ ରୋଷ ।
ପୂର୍ବତରେ ବନ୍ଧୁଭାବ ହେବ ପାଶେ ଗଲେ
ଉପେକ୍ଷା କରବ କୋଟିଏକ ଦୋଷ ଥିଲେ ।
ଯାଦବଙ୍କର ସେପରି ନାହିଁ ଦୋଷ ପୁଣି
ଶ୍ରଦ୍ଧା ଥିଲେ ମଥୁରାକୁ ଯିବା ଏହିକ୍ଷଣି ।
ପିତୃ ଭୂମିରେ ଯାହାର ହେଉଅଛି ବାଞ୍ଛା
ଯିବାକୁ ଉଦ୍‌ବେଗ ହୁଅ ଯେ ଯାହାର ଇଚ୍ଛା
ଉଗ୍ରସେନ ବୋଲେ ତୁମ୍ଭେ ଅଟ ବ୍ରହ୍ମରାଶି
ପୁରାଣ ପୁରୁଷୋତ୍ତମ ବସୁଦେବ ଶିଷି ।
ବ୍ରହ୍ମା ଇନ୍ଦ୍ର ଗଙ୍ଗାଧର ଯାକୁ ଧରି ଚିନ୍ତା
ସନାତନ ପ୍ରଭୁ ତୁମ୍ଭେ ଅଟ ମୁକ୍ତିଦାତା ।
ଭୂର୍ଲୋକ ଯେ ଭୁବର୍ଲୋକ ସ୍ୱର୍ଲୋକ ଏ ତିନ
ମହର୍ଲୋକ ଜନଲୋକ ସତ୍ୟଲୋକ ଘେନି ।
ଏରୂପେ ଅନେକ ଲୋକ ଅଶେଷ ବ୍ରହ୍ମାଣ୍ଡ
ଆଗହୁଁ ହୋଇଛି ତୁମ୍ଭେ ସମସ୍ତଙ୍କୁ ପିଣ୍ଡ ।
ପଞ୍ଚଭୂତ ପଞ୍ଚତତ୍ତ୍ୱ ଖେଳଘର ସିନା
ଭକତ ଜନ ବାନ୍ଧବ କର ହେ କରୁଣା ।
ସେ ପିତାମହ ଭୂମିରେ ନାହିଁ ମୋର କାର୍ଯ୍ୟ
ତୁମ୍ଭ ପାଦ ଆଶ କରିଥିବି ଦେବରାଜ ।

ସର୍ବେଶ୍ୱର ନାଥ ତୁମେ ଭୁଲଅ କମ୍ପାଇଁ
ମୁଁ ପୂର୍ବ ଅଭ୍ୟସମ୍ପାଚେ ଅଛୁ ଜନ୍ମ ହୋଇ ।
ସତ୍ୟ କହୁଅଛୁ ମଥୁରାକୁ ମନ ନାହିଁ
ଶିବଲୋକ ଅଭିଳାଷୁଁ ମୁକ୍ତ ଏବେ ହୋଇ ।
ତୁମ୍ଭ ସଙ୍ଗେ ରହିବନା ଛାଡ଼ି ଦ୍ୱାରକା
ତେବେ ରୁଦ୍ରଗଣେ ମୁକ୍ତି ହୋଇବାଲଁ ଲେଖା
ତୁମେ କହିଲେ କଦାପି ମୁଁ ତ ଯିବନାହିଁ ।
ନିର୍ବାଣ ମୁକତି କେବା ଗ୍ରହେ ଦେହ ବହି ।
ଅମୃତ ଛାଡ଼ଣ ଯେହ୍ନେ ଭୁଞ୍ଜିବ ଗରଳ
ମଣି ଛାଡ଼ି କରିବ କେ ଗଳେ ସର୍ପମାଳ ।
ଗଙ୍ଗାଜଳ ତେଜି କୂପଜଳ କେ ଭକ୍ଷିବ
ଗୋ ବ୍ରାହ୍ମଣ ଛାଡ଼ି ଶିବ ପୂଜା କେ କରିବ ।
ତୁମେ ଦେବାଧି ଦେବ ଯେ ଜାଣ ସର୍ବ ମନ
ଯାଦବଙ୍କୁ କାହିଁପାଇଁ କରୁଅଛ ଭିନ୍ନ ।
ଏ ମୋହର ପଞ୍ଚପ୍ରାଣ ପଛେ ହେଉ ତେଜ୍ୟା
ତୁମ ପାଶୁଁ ନ ଯିବଇଁ କେବେ ଦେବରାଜା ।
ସର୍ବ ଯାଦବେ ବୋଇଲେ ଏସନକ ବାଣୀ
ନିରାଶ ବଚନ କମ୍ପା କହ ଚକ୍ରପାଣି ।
ଯାଦବମାନେ ତୁମର ସିନା ଅଟୁ ଭୃତ୍ୟ
ଯାହା ଇଚ୍ଛା ତାହା କର ତୁମର ଯେ ଚିତ୍ତ ।
ସତ୍ୟ ସତ୍ୟ କହୁଅଛୁ ସତ୍ୟ ହେ ତୁମଙ୍କୁ
ତୁମେ ବା ଛାଡ଼ିଲେ ଆମେ ନ ଛାଡ଼ୁ ତୁମଙ୍କୁ
ତୁମ ଭୃତ୍ୟ ହୋଇ ସେବାକାରି ପଣେ ଥିବୁ
ତୁମେ ଯେଣେ ଯିବ ଆମେ ତେଣିକ ଯେ ଯିବୁ
ଏହା ଆମଙ୍କୁ ନ କହ ଆହେ ନାରାୟଣ
ନିରନ୍ତରେ ଭଜୁଥିବୁ ତୁମର ଚରଣ ।
ଏତେମତେ ଯାଦବନ୍ତ କଲେ ନିଉଛାଳ
ବୋଇଲେ ମୃତ୍ୟୁ ଲଭିବୁ ନଛାଡ଼ିଁ ବନମାଳୀ
ନଗ୍ର ନରନାରୀମାନେ ଏହି କଥା ଶୁଣି
ସମସ୍ତେ ତିବାର ସତ୍ୟ କଲେ ସେହିକ୍ଷଣି ।
ହରି ବଳରାମ ଆମ ଉପରେ ଯେ ରାଜା
ଉଗ୍ରସେନ ଆହ୍ଲକର ସକଳେ ପରଜା ।
ଏହିକ୍ଷଣି ଦଣ୍ଡଛତ୍ର ଟେକ ନେଇ ଆଗେ
ଅଭିଷେକ କରାଇବୁ ତୁମକୁ ଯେ ବେଗେ ।
ଜଗନ୍ନାଥ ବୋଇଲେ ସ୍ୱାମୀ ନୁହଇ ଉଚିତ
ଉଗ୍ରସେନ ଆମମାନଙ୍କର ନୃପନାଥ ।

ତାହାଙ୍କ ଥାଆନ୍ତେ ଆମେ ହୋଇବୁ କି ରାଜା
ମୂର୍ଦ୍ଧାଭିଷେକୀ ସେହୁ ଅଟେ ମହାରାଜା ।
ଆମେ ତ ବଳରାମେ ନୋହୁ ରାଜ୍ୟହ ଜେନା
ଆମ ପିତା ବସୁଦେବ ରାଜ୍ୟ ପାଇ ସିନା
ପାଣ୍ଡୁକୁଳେ ଜନ୍ମ ହୋଇ ଧରାଇବୁ ଛତ୍ର
ଉପହାସ କରିବେଟି ଶୁଣି ସ୍ୱା ଜଗତ ।
ଯାଦବେ ବୋଇଲେ ଦେବ ଯେ ତୁମର ଇଚ୍ଛା
ବ୍ରହ୍ମା ଇନ୍ଦ୍ର ରୁଦ୍ରପଦ ଯାହା ହୁଏ ବାଞ୍ଛା ।
ଅଶେଷ କୋଟି ଠାକୁର ପରେ ଶିରୋମଣି ।
ଚମ୍ପୂଲଙ୍କ ଥାଅନ୍ତେ ଶିଳପୁତାକୁ ବରଣି ।
ତୁମେ ଜଗତ କରତା ବ୍ରହ୍ମାଣ୍ଡ କାରେଣି
ତୁମେ ଯାହାକୁ ସ୍ଥାପିବ ଆମେ ରାଜା ମାନି ।
ଏତେ ବୋଲିଣ ଯାଦବ ଚଉରାଶୀ କୋଟି
ଉଗ୍ରସେନେ ପୂଜା କଲେ ସଭାପରୁ ଉଠି ।
ହସ୍ତୀର ଉପରେ ଛତ୍ରୀ ଧରାଇ ଯତନେ
ନଗ୍ରେ ବଜେ କରାଇଲେ ରାଜା ଉଗ୍ରସେନେ
ପରିବାରିଏ ଗୋଡ଼ାଇ ଅଛନ୍ତି ପଛରେ
ସମ୍ଭବେ ପାଣ୍ଡବଂଶୀଏ ଦେବରାଜ ଠାରେ ।
ଛଦଅନ୍ତେ ଯଦୁଗଣେ ଯେଝା ଗୃହ ଗଲେ
ସାତ୍ୟକଙ୍କୁ ଡାକି କୃଷ୍ଣ ଏମନ୍ତ ବୋଇଲେ ।
ତୁମେ ତ ସାତ୍ୟକ ଅଟ ଆମ ନିଜ ଦେହ
ରହିଥାଏ ତୁମପରେ ସଦା ଆମ ସ୍ନେହ ।
ବାରୁଣା କଟକେ ତୁହି ଏହିକ୍ଷଣି ଯିବୁ
ଯୁଧିଷ୍ଠିରଙ୍କ ଅଗ୍ରତରେ ପାର୍ଥେ ସମର୍ପିବୁ ।
ଆମ ବାର୍ତ୍ତା ଯୁଧିଷ୍ଠିରଙ୍କ ଅଗ୍ରତରେ କହି
ତାଙ୍କ ଶୁଭବାର୍ତ୍ତା ଘେନିଆସ ଶୀଘ୍ର ହୋଇ ।
ଆବର ବଚନ ଏକ ମୋର ଶୁଣିଯାଅ
ଲେଉଟାଣିବେଳେ ଗୋପେ ଯିବୁଟି ନିଶ୍ଚୟ
ନନ୍ଦ ଆମର ଜନକ ଯଶୋଦା ଯେ ମାତା
ଆମେ ତାଙ୍କ ପୁତ୍ର ସେହୁ ଆମ ଜନ୍ମକର୍ତ୍ତା ।
ଗୋପରେ ବସନ୍ତି ଯେତେ ନଗ୍ର ନରନାରୀ
ପ୍ରାଣର ସମାନ ସେହୁ ଅଟନ୍ତି ଆମରି ।
ନନ୍ଦ ଯଶୋଦାଙ୍କୁ ତୁମେ କହିବ ସନ୍ଦେଶ
ଆମ ଭଗ୍ନି ସୁଭଦ୍ରାକୁ ଘେନି ବେଗେ ଆସ ।
ଏତେ ବୋଲି ଲେଖାଗୋଟି ଲେଖିଣ ଶ୍ରୀହରି
ସାତ୍ୟକର ହସ୍ତେ ଦେଲେ ବିଶ୍ୱାସ ସେ କରି

ବୋଇଲେ ଏହା ନେଇଣ ନନ୍ଦ କରେ ଦେବୁ
ଯଶୋଦାଙ୍କ ଆଗେ ସବୁ ମଣାଇ କହିବୁ ।
ଯେତେ ସମ୍ପତ୍ତି ଅର୍ଜିଲୁ ଯେତେ ଧନ ଦ୍ରବ୍ୟ
ବିଚାରିଲେ ଏହିମାନ ଅଟେ ତାଙ୍କ ସବ ।
ଗୋପୀ ଗୋପାଳେ କହିବ ଏହି ଦୃଢ଼ବାଣୀ
ଆମ୍ଭେ ତାହାଙ୍କର ବୋଲି ମନେ ଥିବେ ଜାଣି
କାର୍ଯ୍ୟ ଅନେକ ହୋଇବ ଅର୍ଜୁନ ବହୁଯଶ
ନାନାମତେ କହି ସୁଭଦ୍ରାକୁ ଘେନିଆସ ।
ନନ୍ଦ ଯଶୋଦାଙ୍କୁ ପୁଣି କହିବଟି ଏହା
ଏହିମତେ କହିଛନ୍ତି ପ୍ରଭୁ ଚକ୍ରବାହା ।
ତାଙ୍କର ଦୁହିତା ବୋଲି କରିଥିବେ ସ୍ନେହ
ଆମ୍ଭର ଭଗିନୀ ତାଙ୍କ ତହିଁ ଆମ୍ଭ ମୋହ ।
ଥୋକେଦିନ ରହି ଏଥେ ବଢ଼ିବ ମୋ କୁଳେ
ଭଲଠାରେ ବିଭା ଦେବୁ ତାହାଙ୍କର ବୋଲେ
ଆମ୍ଭେ ଯେ ମଥୁରାପୁରୀ ଛାଡ଼ିଣ ଅଇଲୁ
ଜରାସନ୍ଧ ଡ଼ରେ ଆମେ ଏଠାରେ ରହିଲୁ ।
ଏହି କଥାମାନ ବାବୁ କହ ବେଗେ ଯାଇ
ଯୁଧିଷ୍ଠିରଙ୍କ ସମ୍ମୁଖରେ ଭେଷା ଦେବୁ ନେଇ ।
ଅର୍ଜୁନକୁ ଅକ୍ଷତ ଯେ ଦେଲେ ଜଗନ୍ନାଥ
ହୀର ମଣି ମାଣିକ୍ୟାଦ୍ଦି ଦ୍ରବ୍ୟ ସଚେ ରଥ ।
ସହସ୍ରେକ ମତ୍ତଗଜ ଦଶସହସ୍ର ଅଶ୍ୱ
ପାଟପତନୀ ସିନ୍ଧୁଆ ଦେଲେ ଶ୍ରୀନିବାସ ।
ଭାରବେଣ ଅର୍ଜୁନକୁ କରି ଦେବରାଜ
ବୋଇଲେ ନନ୍ଦଘୋଷରେ ବାରୁଣା ଯା ଆଜ
ତୁହି ମୋର ପଞ୍ଚପ୍ରାଣ ଅଟୁ ଧନଞ୍ଜୟ
ତୋତେ ଘେନି କରିବି ମୁଁ ଭବଭୟ କ୍ଷୟ ।
କୋଳ ସମ୍ଭାଷଣ ତାକୁ କଲେ ଚକ୍ରପାଣି
ନନ୍ଦଘୋଷ ରଥପରେ ବସାଇଲେ ଆଣି ।
ଖଣ୍ଡେକ ଦୂର ପର୍ଯ୍ୟନ୍ତେ ଚଳିଲେ ପାଛୋଟି
ଯାଦବଙ୍କୁ ଘେନି ତହୁଁ ଅଇଲେ ଲେଉଟି ।
ତତକ୍ଷଣେ ସାତ୍ୟକ ଯେ ଅଶ୍ୱନ୍ତ ହାଙ୍କୋଲି
ଅଶ୍ୱ ପିଟିଦ୍ୟନ୍ତେ ଶୂନ୍ୟ ମାର୍ଗେ ଗଲେ ଚଳି
ଇଦଂ ପ୍ରତିବାକ୍ୟ ବଦସ୍ୱନ୍ତ ଶୁକ ଯତି
ଶୁଣ ତୁ ହୋ ସାବଧାନେ ଅର୍ଜୁନର ନୀତି ।
ଚଳିଗଲା ନନ୍ଦଘୋଷ ଆକାଶ ମାର୍ଗରେ
ଧାଇଁବାରେ ମିଳେ ଯାଇ ବାରୁଣାବନ୍ତରେ ।

ଆସ୍ଥାନରେ ବସିଥିଲେ ଯୁଧିଷ୍ଠିର ରାଜନ
ଗ୍ରାମ୍ପରେ ମିଳିଲେ ଯାଇ ସାତ୍ୟକ ଅର୍ଜୁନ
ଧାଇଁକରେ ରଥପରୁ ଓହ୍ଲରିଣ ଗଲେ
ପାଦେ ପଡ଼ି ମାଆଙ୍କରେ ଦଣ୍ଡବତ କଲେ ।
ଯୁଧିଷ୍ଠିରଙ୍କ ମନ ଶାନ୍ତ ଅର୍ଜୁନଙ୍କୁ ଦେଖି
ଦୁହିଙ୍କୁ କୋଳ କରିଲେ ଆସନ ଉପେକ୍ଷି ।
ସାତ୍ୟକଙ୍କୁ ନିଜ ସିଂହାସନରେ ବସାଇ
ବାମ ଜାନୁରେ ପାର୍ଥଙ୍କୁ ବସାଇଲେ ନେଇ ।
ପୁଣ ପୁଣ ଚୁମ୍ବନ ଯେ ଦେଇ କୋଳକରି
ବହୁତ ଆଦର କଲେ କୁଶଳ ପଚାରି ।
ଭୀମ ନକୁଳ ଯେ ସହଦେବ ସହିତରେ
ବର୍ତ୍ତାପାଇ କୁନ୍ତୀଦେବୀ ମିଳିଲେ ସେଠାରେ
ଦୁବାକ୍ଷତ ବନ୍ଦାଇଲେ ଦେବୀ ଯେ ଦୁହିଁକି
ସମସ୍ତ କହିଲେ ତାଙ୍କୁ ଅର୍ଜୁନ ସାତ୍ୟକ ।
ଶୁଣି ଯୁଧିଷ୍ଠିର ରାଜା ହୋଇଣ ତୃପତ
ମନେ ବିଚାରିଲେ ନିସ୍ତରିଲି ମୁଁ ଏକାନ୍ତ ।
ଅଶେଷ କୋଟି ବ୍ରହ୍ମାଣ୍ଡ ଠାକୁର ଯେ ହରି
ଆମ୍ଭଙ୍କୁ ସୁଦୟା ଯେବେ ଅଛି ତାହାଙ୍କର ।
ଏଥିରୁ ଆଣିକ ଭାଗ୍ୟ କି ଅଛି ଜଗତେ
ଶ୍ରୀକୃଷ୍ଣଙ୍କ ପ୍ରସାଦରୁ ରହିବୁ ନିଷ୍ଠିନ୍ତେ ।
ସାତ୍ୟକ ମୁଖକୁ ଚାହିଁ କୁନ୍ତୀ ଯେ ବୋଲନ୍ତି
ପାଣ୍ଡବଙ୍କ ଇଷ୍ଟଦେବ ଶ୍ରୀକୃଷ୍ଣ ଅଟନ୍ତି ।
ତୁ ବାବୁ ସାତ୍ୟକ ଅଟ କୃଷ୍ଣଙ୍କର ଦେହ
ମୋ ପୁତ୍ରଙ୍କପାଇଁ ତାଙ୍କ ଛାମୁରେ ଜଣାଅ ।
ଆରତଭଞ୍ଜନ ବୋଲି ଉଡ଼େ ତାଙ୍କ ବାନା
ଅରକ୍ଷିତ ପ୍ରାଣୀଙ୍କର ସେ ଯେ ବଜ୍ରସେନା ।
ମୁହିଁ ପାଞ୍ଚପୁତ୍ର ଘେନି ପଶିଲି ଶରଣ
ସୁଦୟା କରନ୍ତୁ ମୋତେ ପ୍ରଭୁ ନାରାୟଣ ।
ବିଚାରିଲେ ସେହୁ ପୁଣି ନୁହନ୍ତି ତ ପର
ସୋଦର ଭଗ୍ନୀର ପୁତ୍ର ଅଟନ୍ତି ଯେ ମୋର ।
କୁରୁ ପାଣ୍ଡବଙ୍କ ଯୁଦ୍ଧ ହୋଇବା ସମୟେ
କୃଷ୍ଣ ସାହାହେଲେ ରକ୍ଷାପାଇବେ ମୋପୋଏ
ବିଶ୍ୱକୁଟ ମାୟାଧର ପ୍ରଭୁ ଚକ୍ରପାଣି
ପୂର୍ବଜନ୍ମ ହେଉଛନ୍ତି ମୁଁ ଅଛି ଏହା ଜାଣି ।
ତୁ ବାବୁ ସାତ୍ୟକ ଯଦୁବଂଶରେ ସୁଜାଣ
ବହୁତ ଦୟା କରନ୍ତି ତୋତେ ନାରାୟଣ ।

ବୁ ମୋହର ପାଇଁ ତାଙ୍କୁ କହିବୁ ବହୁତ
ଜାଣିଥା ପାଣ୍ଡବେ ନିଷ୍ଟେ ଶ୍ରୀକୃଷ୍ଣଙ୍କ ଭୃତ୍ୟ ।
ଏହି ସମୟକେ ଆସି ମିଳିଲେ ବିଦୁର
କୁଇନ୍ତାଙ୍କ ଚରଣରେ କଲେ ନମସ୍କାର ।
ଭୀମ ଅର୍ଜୁନ ନକୁଳ ଆଦି ଯୁଧିଷ୍ଠିର ।
ବିଦୁରଙ୍କୁ ନମସ୍କାର କଲେ ଧାଡିକାର ।
ସାତ୍ୟକିକୁ ଦେଖି କୋଳ ସମ୍ଭାଷଣ କଲେ
ନିତ୍ୟକର୍ମ ସାରି ମଣୋହିକ ବିଜେ କଲେ ।
ଆପେ କୁଇନ୍ତା ଦେବୀ ଯେ ପରଷିଲେ ଅନ୍ନ
ନାନା ବ୍ୟଞ୍ଜନ ରାନ୍ଧଣା ଅମୃତ ଭୋଜନ ।
ଭୁଞ୍ଜିକରି ସାତ୍ୟକ ଯେ ସନ୍ତୋଷ ହୋଇଲେ
କୁଇନ୍ତା ମୁଣ୍ଡକୁ ଗ୍ରହି ସଧିଚେ କହିଲେ ।
ମାଗୋ ପରଂ ମାହେଶ୍ୱରୀ ନ ଜାଣ ବା କାହା
ନିଷ୍ଟେ ଜଗନ୍ନାଥ ହେବେ ତୁମ ପୁତ୍ରେ ସାହା
ଅଭେଦ ଆତ୍ମା ଅଟନ୍ତି କୃଷ୍ଣ ଅରଜୁନ
ତେଣୁ ସ୍ନେହକରି ଦେଲେ ନନ୍ଦଘୋଷ ଯାନ
କୃଷ୍ଣଙ୍କ ଦୟାରୁ ମାଗୋ ଗଲା ତୁମ ଦୁଃଖ
ଏଣିକି ନିଶ୍ଚିନ୍ତ ହୋଇ ଭୋଗକରି ସୁଖ ।
ଏମନ୍ତେ ସାତ୍ୟକ ତାଙ୍କୁ ପ୍ରବୋଧନା କରି
ଗୌରବ ପାଇ ରହିଲେ ତହିଁ ଦିନ ଚାରି ।
କୁନ୍ତୀକୁ ଆଜ୍ଞା ମାଗିଣ ଯୁଧିଷ୍ଠିରଙ୍କୁ କହି
ରଥେ ବସି ଲେଉଟିଲେ ତହିଁ ବେଗ ହୋଇ
ଅନେକ ଅକ୍ଷତ ଦ୍ରବ୍ୟ ପାଇ ଉପହାର
ଗୋପରେ ପ୍ରବେଶ ହେଲେ ଯାଇଣ ସତ୍ୱର
ଦେଖିଲେକ ମଧୁପୁର ହୋଇଛି ଉଜାଡ଼
କଣ୍ଟକ ଆଦି କରିଣ ଯାଇଅଛି ପୋଡ଼ ।
ରାଜାର ଅଭାବେ ପ୍ରଜା ଅରକ୍ଷିତ ପରି
ଧନ କାଞ୍ଚନ ବସ୍ତିନେ ଯେହ୍ନେ ହତଶିରୀ ।
ଦେଖ ଗୋପପୁରଯାକ ହୋଇଅଛି ଏକା
ରାଜା ଉପଦ୍ରବ ହେତୁ ପୁରଜାକ ଉକା ।
ଖଣ୍ଡ ଦଣ୍ଡପାଟ ହେତୁ ଖଣ୍ଡାଇତ ଯେତେ
ନିରନ୍ତର ପୀଡ଼ାକରେ ଯେ ଯାହାର ମତେ ।
କଂସ ମଲା ଉଗ୍ରସେନ ଗଲା ରାଜ୍ୟଛାଡ଼ି
ଖଣ୍ଡାଇତ ଆଗକୁହା ବସିଲେକ ମଡ଼ି ।
ଖଳ ବଳୀୟାର ହେଲେ ରଖନ୍ତା କେ କାହିଁ
ସାଧୁ ସୁଜ୍ଜନେ ଭୟେ ଗଲେଣି ପଳାଇ ।

ଦେଖିଣ ସାତ୍ୟକ ମନେ ପାଇ ବହୁ ବ୍ୟଥା
ବୋଇଲେ ଶ୍ରୀକୃଷ୍ଣଙ୍କ ଆଗେ କହିବି ଏ କଥା
ଏ ମଥୁରା ଆମ ପିତୃ ପିତାମହ ପୃଥ୍ୱୀ
ରଖି ନ ପାରିଣ ଆମେ ଅର୍ଜିଲୁ ଅକୀର୍ତ୍ତି ।
ରାଜାର ଥାଆନ୍ତେ ଯେବେ ପ୍ରଜା ହୁଅନ୍ତି ନଷ୍ଟ
ଭର୍ତ୍ତା ଥାଇଁ ଭାର୍ଯ୍ୟା ଯେବେ ହୁଅଇ ଭ୍ରଷ୍ଟ ।
ପିତା ଥାଆନ୍ତେ ଅପାଣ୍ଡୁକ ହୁଏ ଯେବେ ପୁତ୍ର
ତାହାକୁ ବୋଲିବା ସିନା ଧାତା ଘଟସୂତ୍ର ।
ସପ୍ତନିଧି ଆବୋରି ଯେ ନ ପାଇ କାରଣ
ଜଗବନ୍ଧୁ ନାଥ ଯାକୁ ଗଲେକ ମୁର୍ଚ୍ଛିଣ ।
ପରଶୁ ପଥର ଲାଗି ଅଷ୍ଟଲୌହ ସୁନା
ଏ ମଥୁରା ରାଜ୍ୟ ଲୋକ ସେହି ମତେ ସିନା ।
ଏତେ ଭାଳି ରଥେ ଯାନ୍ତି ଯମୁନାର କୂଳେ
ନିମିଷକେ ମିଳିଲେକ କଦମ୍ବର ମୂଳେ ।
କୁଞ୍ଜବନ ଦେଖି ବହୁ ପରଶଂସା କରି
ଅନ୍ତର୍ଗତେ ଭାଳେ ଏଠାଥିଲେ ଦେବ ହରି ।
ଧନ୍ୟ ତରୁମାନେ ଏଥେ ବସି ଯେତେ ଜୀବ
ଏଥେ ବନକ୍ରୀଡ଼ା କରୁଥିଲେ ବାସୁଦେବ ।
ଧନ୍ୟ ଏ କାଳନ୍ଦୀ ନଦୀ ପୁଣ୍ୟ ଯାର ଜଳ
ଏ ନଦୀରେ କ୍ରୀଡ଼ା କରୁଥିଲେ ନନ୍ଦବାଳ ।
ଏତେ ଭାଳି ଯମୁନାରେ ସ୍ନାହାନ କରିଲେ
ଗୋଧିକା ଘାଟ କଟିଣ ଗୋପେ ପ୍ରବେଶିଲେ
ଗୋରୁଙ୍କର ତଡ଼ବଡ଼ ଭାଳିବାର ପ୍ରାୟେ
ଗୋପାଳମାନେ କ୍ରୀଡନ୍ତି ଯେଣ ବାଳପୋଏ
ଜଗତୀ ମେଢ଼ ମଣ୍ଡପ ଦେଉଳ ଅଟ୍ଟାଳି
ଝିଙ୍କପକ୍ଷୀ ବିହରନ୍ତି ହୋଇ ମେଳ ମେଳ ।
ବାଳବୃଦ୍ଧ ତରୁଣାଦି ଯେତେ ତହିଁ ନରେ
ଶ୍ରୀକୃଷ୍ଣଙ୍କ ଗୁଣମାନ ଗାବନ୍ତି ମୁଖରେ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗାଦି କରି
ଅଷ୍ଟପ୍ରହରେ ସକଳ ଘଟେ ଛନ୍ତି ପୂରି ।
ସେହି ସ୍ୱାମୀଙ୍କ ଦର୍ଶନ ପାଅନ୍ତୁ ଯଦ୍ୟପି
ଦେହେ ପ୍ରାଣ ଥିଲେ ମୂର୍ଚ୍ଛି ନ ପାରି କଦାପି
ସାତ୍ୟକ ବିଚାରେ ଗୋପେ ଯାଙ୍କ ଜନ୍ମ ଧନ୍ୟ
ମନ ବଚନ କାୟାରେ ଚିନ୍ତି ଭଗବାନ ।
ଘର ଦ୍ୱିବସ ଘୋଷନ୍ତି ଅଭ୍ୟାସକୁ କରି
ବିଚାରିଲେ ତପୀ ନୋହିବେ କ ଯାଙ୍କୁ ସରି ।

ଶ୍ରୀକୃଷ୍ଣ ସଙ୍ଗେ ଏ ଖେଳୁଥିଲେ ନନ୍ଦାଙ୍କଙ୍ଗେ
ପାପାଧିପାତକ ନ ଥିବଟି ସୁକ୍କ ଅଙ୍ଗେ ।
ଆଜ ମୂର୍ତ୍ତି ନୟନରେ ଏହାଙ୍କୁ ଦେଖିଲ
କୋଟିଏ ଜନ୍ମ ପାତକମାନ ଧ୍ୱଂସିଲ ।
ଏତେ ବିଚାରଣ ମନେ ହରି ହରି ସ୍ମରି
ଗୋପରେ ରଥ ଚଳାଏ ଅତି ଧୀରି କରି ।
ଦେଖି ନଗ୍ର ନରନାରୀ ଗୋଡ଼ିବନ୍ତେ ପଥେ
ଅପୂର୍ବ ପ୍ରାୟେ ମଣିଣ ଦେଖୁଛନ୍ତି ନେତ୍ରେ ।
ଏସନକ ଯାନ ଆମ୍ଭ ଦେଖିଲୁ ତ ନାହିଁ
କେଉଁଣ ଦେବ ଅବା ଏ ନରଚନ୍ଦ୍ର ବିହି ।
ଥୋକାଏ ବୋଇଲେ କିବା ଶ୍ରୀକୃଷ୍ଣ ଅଇଲେ
ଥୋକାଏ ବୋଲନ୍ତି ଅବା ହଳୀ ବିଜେ କଲେ
କେହୁ ବୋଇଲେ ସୁବର୍ଣ୍ଣପ୍ରାୟେ ଦେହଜ୍ୟୋତି
ଏ ଅଟେ ସାତ୍ୟକ କୃଷ୍ଣଠାରେ ଅତି ପ୍ରୀତି ।
ଯାଦବଙ୍କର ଅଗ୍ରଣୀ ଅଟେ ଦେବବଳା
ରାଜ୍ୟକୁ ତ ମନ୍ତ୍ରୀ ଏହୁ ମହା ଅନର୍ଗଳା ।
କେ ବୋଲଇ ପଳାଇବେ ରାଜ୍ୟ ଦେଶ ଛାଡ଼ି
କେହୁ ବୋଇଲେ ଅବା ସେ ଅଇଲେ ବାହୁଡ଼ି
କେହୁ ବୋଇଲେ ଅକ୍ରୂର ପୂର୍ବେ ଆସିଥିଲା
ଆମ୍ଭ ଆସା ଭର୍ଗି ରାମକୃଷ୍ଣ ଘେନି ଗଲା ।
କେହୁ ବୋଲେ ସେ ଉଦ୍ଧବ ଅଇଲେ ଗୁପତେ
ଦେଖିଛୁଁ ଭଣ୍ଡି ଗଲା ସେ ଆମ୍ଭଙ୍କୁ କେମନ୍ତେ ।
ଭୃତ୍ୟାପ୍ତରେ ସାତ୍ୟକ ତ ଆସିଅଛୁ ପୁଣି
ଭଲ ଜଣେ ଘେନିଯିବ ଆମ୍ଭ ମନ ଜାଣି ।
ଏସନକ ବିଚାରନ୍ତି ଗୋପ ନରନାରୀ
ସାତ୍ୟକ ପଛେ ଗୋଡ଼ଇଛନ୍ତି ସେ ଯାହାରି
ନଗ୍ରପରିମଳେ ଥୋକାଏକ ଦୂର ଗଲେ
ନନ୍ଦରାଜା ଭୁଆସରେ ଯାଇ ପ୍ରବେଶିଲେ ।
ତରତର ହୋଇଣ ସେ ଭିତରକୁ ପଶି
ଦେଖିଲେ ଯଶୋଦା କୋଳେ ଭଦ୍ରା ଅଛୁ ବସି
ଏହୁ ସମୟେ ସାତ୍ୟକ ମିଳିଲାକ ଯାଇ
ଯାମୁରେ ଉଭା ହୋଇଲା କାଖେ ହାତ ଦେଇ
ଅନେକ ସ୍ତୁତି ବଚନେ କଲା ଭକ୍ତିଭାବ
କହେ ଭଦ୍ରା ଯିବାବାର୍ତ୍ତା ଦେଇଛନ୍ତି ଦେବ ।
ତୁମେ ତାଙ୍କ ପିତା ମାତା ସେ ତୁମ କୁମର
ଅଶେଷ କୋଟି ବ୍ରହ୍ମାଣ୍ଡେ ଯେ ପ୍ରଭୁ ଈଶ୍ୱର ।
ସମୟେ ଖେଳିଲ ତୁମେ ତାହାଙ୍କୁ ତ ଘେନି
ଏବେ ତାହାଙ୍କର ଗୁଣ ମନରେ ବାହୁନି ।
ଦେଲେ ରାମକୃଷ୍ଣ ବାର୍ତ୍ତା ଏମନ୍ତ ରୂପେହିଁ ।
ଯେ ତୁମର ପୁତ୍ର ସିନା ଜାଣ ସର୍ବଦାହିଁ ।
ଏବେ ତୁମର ନିକଟେ ମନ୍ତ୍ର ମୋତେ ପେଷି
ସବୁ ଶୁଭବାର୍ତ୍ତା ଘେନିଅଛୁ ମୁହିଁ ଆସି ।
କେତେ ଟିଏକ ପାଣିଦ୍ରବ୍ୟ ଆଣିଅଛୁ ରଥ
ତାହା ତୁମେ ଘେନି କରି ହୋଇ ଆନନ୍ଦିତ ।
ପୁତ୍ର ଅର୍ଜିଲା ଦ୍ରବ୍ୟକୁ ନିତ୍ୟ ଭୋଗ କରି
ଶତ ଅଶ୍ୱମେଧ ଯାଗ ଯଜ୍ଞି ତୁହେଁ ସରି ।
କୋଟିଏ ପୁରୁଷ ଯାଏ କରିଥାଇ ଧର୍ମ
ତେବେ କୁଳଖ୍ୟାତ ସୁତ ହୁଅଇ ଜନମ ।
ତା ନାମଧରି ସଂସାରୁ ହୁଅନ୍ତି ସର୍ବେ ପାର
ଯୋଗୀଏ ତରନ୍ତି ଯାର ନାମଗୋଟି ଧରି ।
ତାଙ୍କର ଯୋଗରୁ କଲ ସବୁଦ୍ରବ୍ୟ ଭୋଗ
ତୁମେ ତାଙ୍କ ପିତାମାତା ସଦା ଏହୁ ଯୋଗ ।
ଗୁହାଳ ତୋଳାଇ ସୁଖରେ ଗୋରୁମାନ ରଖି
ନଯୋଗୀଙ୍କୁ ହାଟଘାଟ ଦେଉଥିବ ଲେଖି ।
ଖଣ୍ଡ ଖଣ୍ଡାଇତମାନେ ଉପଦ୍ରବ କଲେ
ଧାଡିକାରେ ବନ୍ଧି ଦେବ ସାତ୍ୟକ ବୋଇଲେ
ସେବକ ଲୋକଙ୍କୁ ଅନ୍ନବସ୍ତ୍ର ଲେଖିଦେବ
ଦେବତା ବ୍ରାହ୍ମଣ ଦାନ ଧ୍ୟାନ କରାଇବ ।
କଉଣସି କଥା ମନେ ନ କରି ଶୋଚନା
ପୁତ୍ରଙ୍କ ହେତୁରୁ ତୁମେ ଉଦ୍ଧରିଲ ସିନା ।
ଶୁଣିଣ ସାନନ୍ଦ ଅତି ଯଶୋଦା ହୋଇଲେ
ରାମକୃଷ୍ଣ ବାର୍ତ୍ତା ପାଇ କୃତ୍ୟ କୃତ୍ୟହେଲେ
ପୁଣି ପୁଣି ପୁଚ୍ଛନ୍ତି ସେ ଏହୁ ରୂପେ ବାଣୀ
ପୁଲକିତ ରୋମାବଳୀ ହୁଏ କଥା ଶୁଣି ।
ସକଳ ଶୁଭ ବାରତା ସାତ୍ୟକ ବୋଲଇ
ହରି ହରି ଶବଦରେ ଅଙ୍ଗ ଉଲ୍ଲସଇ ।
ସାତ୍ୟକ ବୋଇଲେ ଏଥେ ଅଷ୍ଟବର୍ଷ ଥିଲେ ।
ମଥୁରାରେ ଛଅବର୍ଷ ଯାଇଣ ରହିଲେ ।
ସେଠାରେ ଲାଗିଲା ଯହୁଁ ଜରାସନ୍ଧ ଭୟେ
ଯାଦବ ସେନା ଦ୍ୱାରକା ପୁରରେ ବିଜୟେ ।
କହନ୍ତେଣ ନ ସରଇ ଦ୍ୱାରକା ମହିମା
ଅତି ଯତନେ ଗଢ଼ିଛୁ ତାକୁ ବିଶ୍ୱକର୍ମା ।

ସେ ପୁରେ ତୁମର ପୋଏ ଛନ୍ତି ସବୁ ଶୁଭେ
ଉପକାର ଦ୍ରବ୍ୟମାନ ରଖି ନେଇ ଏବେ ।
ଆବର ବଦନେ ଯାହା ଅଛନ୍ତି ସେ କହି
ସଂକ୍ଷେପି କହିବା ଏବେ ଶୁଣ ମନ ଦେଇ ।
ତୁମେ ଦ୍ୱାରକାକୁ ଯେବେ ଯାଇବଟି ଯାଇ
ଧାତିକାରେ ସଜ ହୁଅ ଏହା ଛନ୍ତି କହି ।
ଦେଖିବ ସେ ପୁତ୍ରଙ୍କର ସମ୍ପଦ ଅପାର
ଇଚ୍ଛାସୁଖେ ବିହରିବ ତହିଁ ନିରନ୍ତର ।
ସେ ଘର ଏ ଘର ତୁମ ଭିନ୍ନ ନୋହେ କନା
ଦୁଇ ଘରକୁ କାରେଣି ତୁମେ ଅଟ ପିନା ।
ଯେବେ ଯାଇ ନ ପାରିବ ଗୃହ ଛାଡ଼ି କରି
ଭଦ୍ରାକୁ ବିଦାୟ କର କହିଛନ୍ତି ହରି ।
ଭାଇମାନଙ୍କ ସଙ୍ଗରେ ଥୋକେ ଧନ ଥିବ
ତୁମର ଲେଉଡ଼ିବା ଧନ ଲେଉଟି ଆସିବ ।
ଭାଇ ଯଦ୍ୟପି ଦେଖିବା ପାଇଁ କଲେ ମନ
ବେଡ଼ାଏ ଯାଇ ଆସନ୍ତୁ ନ ବିଚାର ଆନ ।
ଏହା କହି ଶ୍ରୀମୁଖରେ ସେ ଦେଲେ ରେଖାଗୋଟି
ଭାଷା ଶୁଣି ନନ୍ଦରାଣୀ ହୋଇଲେ ତୁଷ୍ଟି ।
ଆନନ୍ଦରେ ଅଶ୍ରୁଜଳ ଗଲେ ଘନ ଘନ
ପୁଲକଇ ରୋମାବଳୀ ଉଲ୍ଲସଇ ମନ ।
ବିଧାତା ସର୍ଜିଲ ପିନା ଏମନ୍ତ ମୁହାଁସ
ପୁତ୍ରଙ୍କ ବାରତା ଶୁଣି ପିତା ମାତା ତୋଷ ।
ସନ୍ଦେହ ହୋଇଲା ପରି ମନରେ ମଣିଲେ
ନିରାକାର ପ୍ରଭୁବୋଲି ସକଳେ ଜାଣିଲେ ।
ଜଗମୋହନ ରୂପରେ ମୋହିଛନ୍ତି ହରି
ତାହାଙ୍କର ମାୟାରୁ କେ ପାରିବ ଉବୁରି ।
ନନ୍ଦ ଯଶୋଦା ମନରେ ହେଲେ ଆନନ୍ଦିତ
ଅଷ୍ଟମଲ୍ଲ ମଲ୍ଲଦିନୁ ମଣିଛନ୍ତି ସତ ।
ଧନ ରତ୍ନ ଦେଖିକରି ମୋହିତ ହୋଇଲେ
ଏକା ଗୃହ ବୋଲି ମନମଧ୍ୟେ ପ୍ରତେ କଲେ ।
ଭଗ୍ନୀକି ଦେଖିବା ପାଇଁ ଭାଇ ଶ୍ରଦ୍ଧା କରେ
ତେଣୁ ଦୂତ ପେଶିଛନ୍ତି ଅତି ଉଲ୍ଲାସରେ ।
ଶ୍ରୀହରି ଜାଣନ୍ତି ଭଦ୍ରା ସ୍ନେହ କରେ ଯେତେ
ସ୍ୱାଙ୍କର ବାକ୍ୟକୁ ପ୍ରତେ ନ ଯିବା କେମନ୍ତେ ।
ସୁଭଦ୍ରା ବଚନ ଶୁଣି ନନ୍ଦ ବୋଲେ ହସି
ମାଗୋ ଭାଇଙ୍କ ଭୁବନେ ଯିବାରଥେ ବସି ।

ସେ ତୋତେ ନେବାପାଇଁକପେଷିଛନ୍ତି ଲୋକ
ଧନ ରତ୍ନ ଦେଇ କରେ ଲେଖିଛନ୍ତି ଲେଖ ।
ସମସ୍ତେ ଦ୍ୱାରକା ପୁରେ ରହିଲେକ ଯାଇ
କୁଶସ୍ଥଳୀ କଟକରେ ଛନ୍ତି ବେଢ଼ି ଭାଇ ।
ବହୁ ସମ୍ପଦମାନ ସେ କରିଛନ୍ତି ଆପ୍ତେ
ପରିସ୍ଥିର ପଣେ ଖଟି ସବୁ ଦେବତାଏ ।
ଅନୁରୂପେ ବରଖୋଜ କରାଇବା ବିଭା
ସୁଭଦ୍ରା ବୋଇଲେ ପିତା ଚାଲ ଏବେ ଯିବା ।
ନନ୍ଦ ବୋଇଲେ ଗୋ ଚତୁର୍ମାସ୍ୟା ହେଉଶେଷ
ତେବେ ଯାଇ ଯିବା ପିନା କୁଶସ୍ଥଳୀ ଦେଶ
ସୁଭଦ୍ରା ବୋଇଲେ ତୁମେ ଛମାସରେ ଯାଅ
ସାତ୍ୟକ ସଙ୍ଗରେ ଏବେ ମୋତେ ପଠିଆଅ
ଦେଖିବ ଦ୍ୱାରକା ଭାଇ ସଙ୍ଗେ ସଙ୍ଗେ ଥିବ
ତୁମେ ଗଲେ ପଛେ ତୁମ ସଙ୍ଗରେ ଆସିବ ।
ଇଦଂ ପ୍ରତିବାକ୍ୟ ବଦଯ୍ୟନ୍ତି ଶୁକମୁନି
ଇତି ଶିଶୁ ଭାଗବତ ପୁରାଣର ଧ୍ୱନି ।
ଶୁଣ ପରୀକ୍ଷ ନୃପତି ଏହି ହରିବଂଶ
ପାପାଧିପାତକମାନ ହୋଇବ ବିଧ୍ୱଂଶ ।
ଏହି ରୂପେ ସମସ୍ତେ ହୋଇଲେ ଏକ ମାନ
ସାତ୍ୟକକୁ କଲେ ପୁଣି ଗଉରବ ମାନ ।
ଅପୂର୍ବ ମନ୍ଦିରେ ନେଇ ଦେଲେ ତାକୁ ବାସ
ରନ୍ଧନ ଭୋଜନ କାର୍ଯ୍ୟ କରିଲେ ଅଶେଷ ।
ଅନେକ ବିଶ୍ରାମି ତହିଁ ରଜନୀ ପୁହାଇ
ଭଦ୍ରାକୁ ଘେନି ସତ୍ୱରେ ଚଳେ ତହୁଁ ବାହି ।
ନନ୍ଦ ଯଶୋଦା ପଛରେ ଅଛନ୍ତି ଗୋ ଡାକ
ବାବୁ ତୁ କୃଷ୍ଣଙ୍କୁ ଏହା କହିବୁ ମଣାଇ ।
ଆମେ ତାଙ୍କୁ ବାଟ ଚାହିଁ ଅଛୁ ନିରନ୍ତର
ହେଠା କାର୍ଯ୍ୟ ନିବାରଣ ଆସନ୍ତୁ ସତ୍ୱର ।
ବାରେ ବଳରାମ ଏକା ହୋଇଣ ଅଇଲ
କୃଷ୍ଣଙ୍କୁ ଆଣିବ ବୋଲି ପ୍ରତିଜ୍ଞା ସେ କଲ
ସେହିଦିନୁ ଆମେ ତାଙ୍କୁ ଚାହିଁଅଛୁ ବାଟ
ଗଲ ଦିବସ ଲଗିଛି ଶ୍ରୀକୃଷ୍ଣ ଉଚାଟ ।
ଏରୂପେ କହିବ ବୋଲି ଆଶା ଦେଇ ଗଲ
ଆଜଯାଏ ଚାହିଁଅଛୁ ଦେଖା ନ ମିଳିଲା ।
ସେହି କାଳରୁ ଆମେ ତ ଚାହିଁଅଛୁ ବାଟ
ଗୋବର୍ଦ୍ଧନ ଆମଙ୍କୁ ତ ଘଟଇ ସଙ୍କଟ ।

ଏହିରୂପେ କହ ଯାଇ ଶ୍ରୀକୃଷ୍ଣର ଆଗେ
ବୁଝାଇଣ ଥରେ ମାତ୍ର ଆଣିବଟି ବେଗେ ।
ସାତ୍ୟକ ବୋଲେ ମନରେ ନ ଧର କେଆନ
ଅବଶ୍ୟ ଆଣିବ ବଳରାମ ଭଗବାନ ।
ନ ଆସିବେ ବୋଲି ମନେ ଚିନ୍ତା ନ କରିବ
ବିଳମ୍ବ ହୋଇଲେ ତୁମେ ଦ୍ୱାରକାକୁ ଯିବ ।
ନନ୍ଦ ବୋଇଲେ ତୁମେ ତ କୃଷ୍ଣଙ୍କର ଦେହ
ସୁଭଦ୍ରା ପାଇଁ ତୁମ୍ଭରେ ବହୁତ ଯେ କହ ।
ସାତ୍ୟକ ବୋଇଲା ଏଥେ ସନ୍ଦେହ ତ ନାହିଁ
ସବୁ ଭଲ ହେବ କୃଷ୍ଣେ କହିବଇଁ ଯାଇ ।
ଏତେ ବୋଲି ନନ୍ଦ ତହୁଁ ବାହୁଡ଼ିଣ ଗଲେ
ଭଦ୍ରା ଘେନିଣ ସାତ୍ୟକ ରଥ ବାହି ନେଲେ ।
ମନପବନ ସମାନ ଚଳେ ଉଦ୍ଧ ହୋଇ
ଆକାଶମାର୍ଗେ ଗମିଲେ ପବନ ପରାୟି ।
ଦ୍ୱାରକାପୁରରେ ଯାଇ ମିଳିଲେ ତକ୍ଷଣ
ଆକାଶ ମାର୍ଗରେ ଥାଇ ଦେଖି ଦେବଗଣ ।
ସିଂହଦ୍ୱାରରେ ସାତ୍ୟକ ରଥରୁ ଉତ୍ତୁରି
ନଗର ମଧ୍ୟେ ପଶିଲେ ଦ୍ୱାର ଡେଇଁ କରି ।
ସୁଭଦ୍ରା ହସ୍ତକୁ ଧରି ଧୀରେ ଧୀରେ ଯାଇ
ସୁଧର୍ମା ସଭା ତଳରେ ମିଳିଲେକ ସେହି ।
ଉଗ୍ରସେନ ଆଦିକରି ସର୍ବ ଯଦୁବୃନ୍ଦ
ସମସ୍ତଙ୍କୁ ସଙ୍ଗେ ଘେନି ଅଛନ୍ତି ଗୋବିନ୍ଦ ।
ଏକାଳେ ସାତ୍ୟକ ଯାଇ ସଭାତଳେ ମିଳି
ଗଡ଼ଧାଳି ଶୁଣିଲେ ସେ କରି ନିଜଗ୍ଲାନି ।
ଭ୍ରାତାଙ୍କର ଅଗ୍ରେ ନେଇ ଭଦ୍ରା କଲେ ଉଭା
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ର ଦିଶେ ଶୋଭା
ପଦ୍ମବନେ ରାଜହଂସ କରେ ଯେହ୍ନେ କେଳି
ଅସ୍ତାଚଳ ଗିରିରେ ଉଦେ ଅଂଶୁମାଳୀ ।
ସୁକୁମାରୀ ସୁଲକ୍ଷଣୀ ଅତିଶୟ ଶୋଭା
ଲାବଣ୍ୟ ନିଧି କି ମନୋହର କାମଦେବା ।
ସକଳ ଯାଦବମାନେ ହୋଇଲେକ ମୋହି
ବିସ୍ମିତ ବୋଲନ୍ତି କି ଲକ୍ଷ୍ମୀଦେବୀ ଏହି ।
ରତି ଦମୟନ୍ତୀ କିବା ପାର୍ବତୀ ଅଟନ୍ତି
ଇନ୍ଦ୍ର ନାରୀ ଶଚୀଦେବୀ ପରାୟେ ଶୋଭନ୍ତି ।
ସର୍ବଲକ୍ଷଣେ ସମ୍ପୂର୍ଣ୍ଣ ଏ ପଦ୍ମିନୀ ଜାତି
କେ ବୋଲଇ ଅଳ୍ପବର୍ଷ କେ ବୋଲେ ଯୁବତୀ
ଭ୍ରୂଭଙ୍ଗୀ ନୟନ ସ୍ମାର ମୋହେ ନବସୃଷ୍ଟି
କେତେ କାଳ ବିଧି ମୂର୍ତ୍ତି ନିର୍ମାଣ କଲଟି ।
କେବଣ ଧଇବ ବସି ଏହାକୁ ଗଢ଼ିଲା
ଅପଟାନ୍ତର ଶରୀର କେହୁ ନିର୍ମାଣିଲା ।
ସ୍ୱଚର ଚିକ୍କୁର କେଶ ଶିରେ ଦିବ୍ୟ ଜଟ
ସୁବର୍ଣ୍ଣ ପଦକ ଗୋଟି ଲୁଲେ କଣ୍ଠ ତଟ ।
ମସ୍ତକରେ ଶୋଭା ପାଏ ଅତି ସ୍ୱଚ୍ଛ ବେଣୀ
ଧବଳ ପର୍ବତପରେ ଯେହ୍ନେ ମେଘ ଶ୍ରେଣୀ ।
ସୁନ୍ଦର କର୍ଣ୍ଣ ବଦନ କପୋଳ ଶ୍ରୀଖଣ୍ଡି
ଭ୍ରୂଲତା ଯେସନେ କାମଦେବର କୋଦଣ୍ଡି
ଗଣ୍ଡସ୍ଥଳ ଆବୋରିଣ ଶୋହେ ରତ୍ନକାପ
ଦିଶଇ ଯେମନ୍ତ ଧେନୁ କାମଦେବ ଚାପ ।
ବିମ୍ବଫଳ ପରାୟେକ ଶୋଭଇ ଅଧର
ଅମୃତ ସାଗର କିବା ଖେଳେ ଶଶଧର ।
ବାରିତରଙ୍ଗ ପ୍ରାୟେ କି ରାଜହଂସ ପନ୍ତି
ସିନ୍ଦୂର ମଣ୍ଡିତ ଯେହ୍ନେ ଅଳଙ୍କାର ଦ୍ୟୁତି ।
ଅପୂର୍ବ ସ୍ଥାନମାନ ତା ଦିଶେ ଦିବ୍ୟ ଶୋଭା
କଳାମେଘ ଝପିଲା କି ତାରାପୁଞ୍ଜ ଅବା ।
ଚକୋର ନେତ୍ରେ କଜ୍ଜ୍ୱଳ ଅଛି ଅବା ରଖି
ସମ୍ପୂର୍ଣ୍ଣ ଚନ୍ଦ୍ରବଦନେ କଳଙ୍କ ହେଲା କି ।
କୋମଳ କମ୍ବୁ କଣ୍ଠରେ କହେ ସୁଧାବାଣୀ
ବଚନ ଭାଷନ୍ତେ ଧାରା ବିନ୍ଦୁପଡ଼େ ପୁଣି ।
ହସ୍ତୀ ଥୋରହସ୍ତ ପରି ଦିଶେ ବେନି ବାହା
ରୁପିଲା ମର୍କତ ପ୍ରାୟେ ରାଜବପୁ ଦେହା ।
ମୃଗନାଭି କସ୍ତୁରୀର ଚିତା ବେନି ଗୋଟି
ଏଣୁ ଏହି ମୋହୁଅଛି ତର୍ଜ୍ଜରସୃଷ୍ଟି ।
ନବରତ୍ନରେ ନିର୍ମାଣ କଙ୍କଣ ଦରିବ
ଝଲନ୍ତେ ମୋହୁଅଛଇ ମେଦନୀ ସରିବ ।
ମଣି ମାଣିକ୍ୟ ପୋହଳା ମୁକ୍ତା ପନ୍ତି ପନ୍ତି
ନାନା ବର୍ଣ୍ଣରେ ମୁକୁତା ଦେହେଁ ଶୋଭାପାନ୍ତି ।
ପ୍ରସ୍ଫୁଟିତ ଚମ୍ପାକଢ଼ି ଶୋଭିତ ଅଙ୍ଗୁଳି
ସୁରେଖିତ ପାଖୁଡ଼ା ଯେ ଦିଶେ ନଖଝଳି ।
ହରି ଡମ୍ବରୁ ପ୍ରାୟେ ସମ୍ପୂର୍ଣ୍ଣ ସ୍ତ୍ରୀ ମଧ୍ୟ
ଝୀନ ବସ୍ତ୍ର ପରିଧାନ ସିଂହ କରେ ଲଜ୍ଜା
ଉଲଟ ରମ୍ଭା ପରାୟେ ଦିଶେ ବେନି ଜାନୁ
ମଦନ ଅମୃତ କିବା ଗ୍ରାସେ ହେମ ଭାନୁ ।

ଝଡ ମୁଦ୍ରିକା କଳସ୍ତ ଚୋଡ଼ାର ଯେ ସାଜେ
ପାଦେ ନୂପୁର ସ୍ୱନନ୍ତେ ରୁଣ୍ଟୁ ଝୁଣ୍ଟୁ ବାଜେ ।
କେହ୍ନ କେହ୍ନ ବୋଲନ୍ତି ଏ ରଜାର କୁମାରୀ
କେହୁ ବୋଲେ ଆମ୍ଭେ ଏହା ଜାଣିତ ନପାରି
କେହ୍ନ ବୋଲନ୍ତି ଏହାର ବାଳୁତ ବୟସ
ଯୋଗୀଜନମାନେ ଦେଖି ହେବେ ଯ୍ୱାର ବଶ
କେହ୍ନ କେହ୍ନ ବୋଲନ୍ତି ଏ ମୂର୍ତ୍ତେ ନରଜାଣ
ଗୋଷ୍ଠିଯାକ ଝଣେ ରାମକୃଷ୍ଣଙ୍କ ଆକୃତ ।
ଅଶେଷ ମାୟାଧର ଯେ ନ ଜାଣେ କ ଏହା
ସେହ୍ନ ସିନା ଜାଣେ ପୁଣି ଲୁଆଇଛୁ ଯାହା ।
ତାହାର ମାୟାରୁ କେହ୍ନ ପାରିବ ଉଦ୍ଧର
ସକଳେ ବୋଇଲେ ଏହା ଜାଣି ତଥ୍ୟକର ।
କେହ୍ନ କେହ୍ନ ବୋଲନ୍ତି ଏ ଯଶୋଦାଙ୍କ ଜେମା
କେହୁ ବୋଲନ୍ତି ସୁଭଦ୍ରା ନାମେ ହୁଏ ବାମା ।
ବାଳୁତ କାଳରୁ ଏହ୍ନ ଗୋପନଗ୍ରେ ଥିଲେ
ସାତ୍ୟକ ପଠାଇ ଜଗନ୍ନାଥେ ଅଣାଇଲେ ।
ଏପରି ବିସ୍ମର ଏଙ୍କୁ ଆଦରଙ୍କରେ କରି
ଭଦ୍ରାକୁ କୋଳେ ନେଇଣ ବସାଇଲେ ହରି ।
ଶ୍ରୀହସ୍ତରେ ଆଉଁସିଣ ମୁଖେ ଚୁମ୍ବ ଦ୍ୟନ୍ତି
ପୁଣ ହମ୍ମାଷଣ କରି ବଦନ ଗୃହାନ୍ତି ।
ହଂକ୍ଷେପିଣ ସବୁ ବାର୍ତ୍ତା ପୃଚ୍ଛି ପ୍ରିୟଭାବେ
ଉଗ୍ରସେନ ଆଦ ବଳରାମ ବସୁଦେବେ ।
ଜଗବନ୍ଧୁ ନାଥ ଯହୁଁ ହସ୍ତେ କୋଳ କଲେ
ତେଣୁ ସୁଭଦ୍ରାକୁ ସର୍ବେ ଧଇଲେକ କୋଳେ ।
ରାମକୃଷ୍ଣଙ୍କ ଭଗିନୀ ବୋଲିଣ ଜାଣିଲେ
ଅନ୍ତଃପୁରେ ସୁଭଦ୍ରାକୁ କୋଳକରି ନେଲେ ।
ଦେବକୀ ରୁକ୍ମିଣୀରେ ଦେଲେ ନେଇ ମୃଦୁସୁଲି
ସେବାକଲେ ଯାଇ ଦଶ ବଂଶ ଯେ ପୋଇଲି
ଗୋପ ପାସୋରି ସୁଭଦ୍ରା ଦ୍ୱାରକା ରହିଲେ
ଅପୂର୍ବ ଭୁବନ ଦେଖି ଆନନ୍ଦ ହୋଇଲେ ।
ଶୁକ ବୋଇଲେକ ଶୁଣ ପରୀକ୍ଷିତ ରାୟେ
ଏ ଗ୍ରନ୍ଥ ଶୁଣିଲେ ଅଙ୍ଗୁ ପାପ ଯାଏ କ୍ଷୟେ ।
ହରିବଂଶ ପୁରାଣ ଏ ଅତି ପୁଣ୍ୟ ବାଣୀ
ମହାପାପ ଯାଏ ନାଶ ଏ ଗ୍ରନ୍ଥକୁ ଶୁଣି ।
ଶ୍ରୋତା ବକତାଙ୍କୁ ଦୟା କରନ୍ତି ଶ୍ରୀହରି
ପୁରାଣ ଶୁଣି ଦକ୍ଷିଣା ଦେବ ଯତ୍ନକରି ।

ନମୋ ନମୋ ନାରାୟଣ କମଳାର କାନ୍ତ
କ୍ଷୀର ସମୁଦ୍ରେ ଶୟନ ବେଢ଼ା ପଦ୍ମନେତ୍ର ।
କରୀଟ ମୁକୁଟ ଶିରେ ଅତି ଶୋଭାବନ
କର୍ଣ୍ଣରେ କୁଣ୍ଡଳ ହୃଦେ କୌସ୍ତୁଭ ରତନ ।
ଲକ୍ଷ୍ମୀ ଦେବୀର ବଲ୍ଲଭ ଶାରଦାର କାନ୍ତ
ଶଙ୍ଖ ଚକ୍ର ଗଦା ପଦ୍ମ ଶୋଭେ ଚତୁର୍ହସ୍ତ ।
ସେ ହରି ନାମକୁ ମୁହିଁ ଧରେ ହୃଦୟର
କୃତାନ୍ତ କାଳ ଦଣ୍ଡରୁ କର ମୋତେ ପାର ।
ଅଖିଳ ନାଥ ପରମ ଯୋଗେଶ ପୁରୁଷ
କୃଷ୍ଣ ଚରଣେ ଶରଣ ମୁଁ ଅଚ୍ୟୁତ ଦାସ ।

—✻—

## ମଥୁରାରେ ସୁରଥର ଅଭିଷେକ

ଏଥୁଅନନ୍ତରେ ପରୀକ୍ଷିତ ମହାରଜା
ଶୁକ ମୁନି ଚରଣରେ କରି ଦିବ୍ୟ ପୂଜା ।
ପୁନଃ ପୁନଃ ପୁଚ୍ଛେ ହରିବଂଶର ଚରିତ
ଶ୍ରୀଶୁକ କହିଲେ ଶୁଣ ଆହେ ପରୀକ୍ଷିତ ।
ଏଥୁଅନନ୍ତରେ ଶୁଣ ସମସ୍ତ ବାରତା
ଜଗବନ୍ଧୁ ଆଗେ କହି ସାତ୍ୟକ ସେ କଥା ।
ବିଦୁର କୋଇନ୍ତା ଯୁଧିଷ୍ଠିର ସହଦେବ
ଯେ ଯାହା କହିଥିଲେ ସେ କହିଲେ ସରବ ।
ତଦନ୍ତରେ ବୋଇଲେକ ମଥୁରା ବାରତା
ପ୍ରଜା ବାର୍ତ୍ତା ପାଇ କୃଷ୍ଣ ଲଭି ବଡ ବ୍ୟଥା ।
ସଭାକର ମୁଖରେ ସେ ସୁରଥେ ହକାରି
ଶ୍ରୀକରେ ତାମ୍ବୁଳ ତାକୁ ଦେଲେକ ଶ୍ରୀହରି ।
ମଥୁରା ରାଜ୍ୟ ଆମର ପିତୃ ପିତା ବୃତ୍ତି
ସେ ରାଜ୍ୟ ବିନଷ୍ଟ ହେଲେ ହେବ ଅପକୀର୍ତ୍ତି ।
ତୁମ୍ଭେ ସୈନ୍ୟ ଘେନ ଏବେ ଧାଇକାରେ ଯାଅ
ପାଟହସ୍ତୀ ଧରାଇଣ ହୁଅ ତହିଁ ରଜା ।
ଯଦ୍ୟପି ଶତ୍ରୁ ଆସିଣ ହେବ ଉପଗତ
ଆମେ ଚକ୍ର ପେଷି ତାକୁ କରିବୁ ନିହତ ।
ଅନିତ୍ୟ ସଂସାର ଏହୁ କାର ନୁହେଁ କିଛି
ଭାଗ୍ୟଭୋଗୀ ବସୁନ୍ଧରା ପୁରାଣେ କହିଛି ।
ନିଶ୍ଚିତ ରାଜ୍ୟ ଆମର ସେ ମଥୁରା ଦେଶ
ଆମ୍ଭର ଦେଖୁ ଦେଖୁ ସେ ଯାଉଅଛି ନାଶ ।
ସୁରଥ ବୋଇଲେ ଦେବ ଯେ ତୁମର ଇଚ୍ଛା
ନିହନ୍ତା ବିହନ୍ତା ନାଥ ତୁମ୍ଭ ଧର୍ମରକ୍ଷା ।

ତୁମର ଆଜ୍ଞାକୁ କେହୁ ଲଙ୍ଘିବ ହେ ହରି
ତୁମେ ସର୍ବଙ୍କ ପେଷିବ ସିଦ୍ଧ ବେଗ କରି ।
ଏତେମାତ୍ର ମାଗୁଅଛୁ ମୁହିଁ ହୃଷୀକେଶି
ପାଦପଦ୍ମର କଠାଉ ମୋତେ ତ ଦିଅସି ।
ତାହାକୁ ନିରନ୍ତର ମୁଁ କରୁଥିବି ସେବା ।
ତାକୁ ନେଇ ଦଣ୍ଡଛତ୍ର ଶିରେ ଧରାଇବା ।
ସମସ୍ତ ଯାଦବେ ଶୁଣି ହୋଇଲେ ସନ୍ତୋଷ
ସୁରଥ ଶିରରେ ଶାଢ଼ୀ ବାନ୍ଧି ପୀତବାସ ।
ଲକ୍ଷେକ ରଥ ଯେ ତିନିସହସ୍ର ଲକ୍ଷ ହସ୍ତୀ
ପାଞ୍ଚଲକ୍ଷ ଅଶ୍ୱ ଦଶଲକ୍ଷେକ ପଦାତି ।
ବିବିଧ ବାଦ୍ୟ ବାଜଣା ଅଳଟ ଚାମର
ଦଣ୍ଡଛତ୍ର ଆଦି ଯେତେ ରାଜ ଉପସ୍କର ।
ପାତ୍ର ମନ୍ତ୍ରୀ ସେନାପତି ଚତୁରଙ୍ଗ ବଳ
ଏମନ ପ୍ରକାରେ ବିଧି ସଞ୍ଚିଲେ ସକଳ ।
ଅଭିଷେକ କରି ଶିରେ ପାଟ ବନ୍ଧାଇଲେ
ଅକଣ୍ଟକ ମଥୁରାକୁ ପାଳନ୍ତେ ବୋଇଲେ ।
ବିଜୟ ନାମରେ ଧନୁ ଶତ୍ରୁଘାତି ଶର
ବିରାଜ ନାମେ ମୁକୁଟ କୁଣ୍ଡଳ ଆକାର ।
ସଚଳା ନାମରେ ଅଶ୍ୱ ଶ୍ୱେତ ପାଟଗଜ
ଏ ବିଧିରେ ଉପସ୍କର କରାଇଲେ ସଜ ।
କକଡ଼ା ଶୁକ୍ଳ ପଞ୍ଚମୀ ତିଥି ଗୁରୁବାର
ହସ୍ତା ନାମରେ ନକ୍ଷତ୍ର ଅଟେ ସେ ଦିନର ।
କନ୍ୟା ନାମେ ଲଗ୍ନଭୋଗ ବାରଦଣ୍ଡ ବେଳ
ପାଦୁକା ଯେଣ ସୁରଥ କଲେ ଅନୁକୂଳ ।
ସୁନାସନନ୍ଦନ ବୀର ଉଗ୍ରସେନ ନାତି
ମୂର୍ଦ୍ଧା ଅଭିଷେକା ପାଟବଂଶୀ ଶୁଦ୍ଧଜାତି ।
ପାଠପଢ଼ା ବେଳେ ରାମ କୃଷ୍ଣ ସଙ୍ଗେ ଥାଇ
ସାନ୍ଦୀପନ ପଣ୍ଡାଠାରୁ ବିଦ୍ୟା ଅଛୁ ପାଇ ।
ବଡ଼ ବଳବନ୍ତ ସେ ଯେ ଭୋଜବଂଶ ବଳା
ତ୍ରୈଲୋକ୍ୟ ଜିଣି ପାରଇ ରଣେ ଅନର୍ଗଳା ।
ଶ୍ରୀକୃଷ୍ଣ ଆଜ୍ଞା ପ୍ରମାଣେ ଗଲ ଦଣ୍ଡ ଭିଡ଼
ସମ୍ଭାରେ ମଥୁରାଗଡ଼ ବସିଲକ ମାଡ଼ ।
କୃଷ୍ଣଙ୍କ କଠାଉ ସିଂହାସନେ କରି ପୂଜା
ମଥୁରାରେ ରାଜା ହୋଇ ପାଳିଲା ସେ ପ୍ରଜା ।
ଶୁଣ ପରୀକ୍ଷ କହନ୍ତି ଶୁକ ମହାମୁନି
ଇତି ଶିରୀ ଭାଗବତ ପୁରାଣର ଧ୍ୱନି ।
ଶ୍ରୀଜଗନ୍ନାଥ ପ୍ରଭୁଙ୍କ ପାଦପଦ୍ମ ସେବି
ମୁଁ ହୀନ ଅଚ୍ୟୁତ ଦାସ ବୋଲୁଅଛୁ କବି ।

—※—

## ଦ୍ୱାରକ ପୁରୀ ବର୍ଣ୍ଣନା ଓ ଦେବତା-ମାନଙ୍କର ଶ୍ରୀକୃଷ୍ଣଙ୍କୁ ଦେଖିବା ପାଇଁ ଦ୍ୱାରକାକୁ ଆଗମନ

ଏଥୁଅନନ୍ତରେ କେତେଦିନ ବହିଯାଏ
ସୁଧର୍ମା ସଭାରେ ବିଜେ କରି ଦେବରାଏ ।
ମୟ ନାମେ ବିଶ୍ୱକର୍ମା ପାଶକୁ ଡକାଇ
ଖଡ଼ି କାଟି ଦ୍ୱାରକାକୁ ପାତନା ସେ କରି
ସିନ୍ଧୁମଧ୍ୟେ ଭୂମି ଗୋଟି ଉତ୍ତ ଆୟତନ
ଆଡ଼ ଦୀର୍ଘ ପ୍ରସ୍ଥ ଦଶ ସହସ୍ର ଯୋଜନ ।
ତହିଁ ମଧ୍ୟେ ଭୂମି ଶତେ ଯୋଜନେକେ ସାରି
ସ୍ୱର୍ଣ୍ଣମୟ ଦ୍ୱାରକାକୁ ନାହିଁ ପଟାନ୍ତର ।
ସର୍ବଦା ଅମୂଲ୍ୟ ସେହୁ ନିରାଦେ ଭୂମି
ସବୁକାଳେ ତହିଁ ବିଜେ ଦେବ ଅନ୍ତର୍ଯାମୀ ।
ସମସ୍ତଙ୍କ ଦୃଶ୍ୟ ସେହୁ ହୁଏ କଳୁ ଦିନ
ପୁଣି ଦ୍ୱାପର ଅନ୍ତେ ସେ ହୁଅଇ ଗୋପନ ।
ମର୍ତ୍ତ୍ୟପୁରର ମଧ୍ୟରେ ସେ ଅମରାବତୀ
ନିର୍ବାଣ ମୁକ୍ତି ମନ୍ଦିର ଜାଜ୍ୱଲ୍ୟ ତା ଜ୍ୟୋତି
କହନ୍ତେଣ ନ ସରଇ ଦ୍ୱାରକା ମହିମା
ଅତି ଯତ୍ନେ ସୃଜିଅଛୁ ତାକୁ ବିଶ୍ୱକର୍ମା ।
ସୁବର୍ଣ୍ଣର ପାଚେରି ଯେ ଉଚ୍ଚ ବେନି ତାଳ
କାଙ୍ଗୁରା ଶୃଙ୍ଗ ବନ୍ଧା ଯେ ବାଘମୁହିଁ ମାଳ ।
ଅଶେଷ ତାଳ ଗଛର ସାତତାଳ ଖଣା
କପିଳାସ କନ୍ଦରୁ ସେ ସହସ୍ର ଗୁଣେ ଜଣା ।
ଚାରି ପାରୁଶରେ ରତ୍ନେ ରି ବିତପନ
ଗଡ଼ ଚଉପାଶେ ଚିତ୍ର ଅଟ୍ଟାଳ ଶୋଭନ ।
ଅଷ୍ଟରତ୍ନେ ବିତପନ ଶ୍ୱେତ ଜ୍ୟୋତିର୍ମୟେ
ନରେଖି ରହିଲେ ଦିଶେ ଧବଳର କାୟେ ।
ଉପରକୁ ଦୃଷ୍ଟି ଦେଲେ ଅର୍ଦ୍ଧକୋଶ ହୋଏ
ଷଣ୍ଟପୃଷ୍ଠ କାନ୍ତି ପୁର ବଡ଼ ଶୋଭାପାଏ ।
ପାଞ୍ଚତାଳ ଉଚ୍ଚର ସେ ସିଂହଦ୍ୱାର ବେନି
କବାଟ ସହସ୍ରେ ହାତ ତହିଁରେ ନିର୍ମାଣି ।
ତହିଁ ସୁଦର୍ଶନ ଚକ୍ର ବୁଲଇ ପ୍ରଚଣ୍ଡ
ଆଗରେ ମଛି ପଡ଼ିଲେ କରେ ନବଖଣ୍ଡ ।

ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମର ଜନ୍ତ
ଲକ୍ଷ ଲକ୍ଷ ପଡ଼ିହାରୀ ଦ୍ୱାରେ ବସିଛନ୍ତି ।
ଆଧି ଉପାଧିର ବାର୍ତ୍ତା ଜାଣନ୍ତି ସେ ନାହିଁ
ଛତିଷ ନିଯୋଗୀ ଛନ୍ତି ଚହିଁ ପରମାଣି ।
କୋଟି ବାରସ୍ୱର୍ଗ ପରି ଶୋଭଇ ସେ ପୁର
ହାଟ ବାଟ ଦାଣ୍ଡ ଘାଟ ଅତି ଆଡ଼ମ୍ବର ।
ଅଷ୍ଟରତନରେ ସେହି ପୁର ଶୋଭା ପାଇ
ଧାଡ଼ ଧାଡ଼ ରେଖ ରେଖ ବୃକ୍ଷ ଯେ ଶୋଭଇ
ହୀର ମାଳା ମରକତ ବଇଡ଼ୂର୍ଯ୍ୟ ମୋତି
ନାନା ମଣି ରତନରେ ଶୋଭାପାଏ ଅତି ।
ନନ୍ଦାବର୍ତ୍ତ କମ ଗଜଦନ୍ତରେ ଶୋଭଇ
ସ୍ୱର୍ଣ୍ଣ ଲ ପାତିଆମାନ ଚହିଁ ଝଟକଇ ।
ଗଜଦନ୍ତ ପିଣ୍ଡୁଳୀ ଯେ ଖମ୍ବ ଶ୍ରେଣୀ ଓଗ
ବଇଡ଼ ମନ୍ଦିର ଚହିଁ ସ୍ୱର୍ଣ୍ଣ କେଶ କେଶ ।
ଦୁଆରରେ କାଚଡ଼ାଳ ବଇଡ଼ୂର୍ଯ୍ୟ ଗଡ଼
ସ୍ଫଟିକ ପାବଛ ବନ୍ଧା ପିଣ୍ଡୁଳର ଦାଢ଼ ।
ନେତ ପାଟ ପାଟମା ଯେ ଆବୁର ମାଞ୍ଜିଷ୍ଟ
ବସନ୍ତ ମାଧବୀ କଳା ଧଳା ନାନା ପାଟ ।
ଦାଣ୍ଡେ ଉଭା ତୋରଣାରେ କଳସର ଖମ୍ବ
ନକ୍ଷତ୍ର ଗୁନ୍ଥା ପୋହଳା ପରାପ୍ତେ ଆରମ୍ଭ ।
ରଙ୍ଗ କଳା ଧଳା ମାଳ ଗୁମର ଶୋଭନ୍ତି
ସୁବନ୍ଧ ସେବତୀ ଧଣ୍ଡାମାନଙ୍କି ଲମ୍ବନ୍ତି ।
ଝଡ଼ିକ ପାଟଝୁମ୍ପା ଯେ ଆଉ ପାଟଚଣ୍ଡି
ଶୋଭିତ ପଞ୍ଚମ ଶର ପୋହଳାର କଣ୍ଡି ।
ରତନ ମୟୂର କଣ୍ଡି ଗୋବନ୍ଦ ଗୁନ୍ଦୁଆ
ବଖରାମ୍ଭଲେ ଖଞ୍ଜିଣ ସୂଚକମ ନୂଆ ।
ଚନ୍ଦନ କସ୍ତୁରୀ ଆଉ ପମାରର ପାଣି
ନଗରରେ କନ୍ୟାଏ ସିଞ୍ଚୁଛନ୍ତି ଆଣି ।
ମନ୍ଦଗନ୍ଧ ବହଇ ଯେ ସୁଶୀତଳ ବାୟେ
ଅବସନ୍ତରେ ବସନ୍ତ ପୁଲକାୟେ କାୟେ ।
ନ ଲାଗଇ ସେଠାବରେ ଆଦତ୍ୟ ଜ୍ୟୋଛନା
ଶଡ଼ରତୁ ବାରମାସେ ଫଳ ଫଳେ ନାନା
ମେଡ଼ ମଣ୍ଡପ ଦେଉଳ ଅଟାଳୀ ଜଗତୀ
ଛତ୍ରଶାଳ ଗଜଶାଳ ଯତ୍ନେ ତୋଳିଛନ୍ତି ।
କୂପ ବାମ୍ପି ତଡ଼ାଗାଦ ଅଛୁ ଦ୍ରବ୍ୟ ଖଣା
ଅମୃତ ସୁସ୍ୱାଦୁ ଦ୍ରବ୍ୟ ଏକୁ ଏକ ଜଣା ।

ଚୌରାଶୀ କୋଟି ଯାଦବ ପୁର ଭିନ୍ନ ଭିନ୍ନ
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଗୃହବର୍ଣ୍ଣ ।
ହାଟୁଆ ଗାଟକ ଆଦ ବାର ବଣିକାର
କର୍ଣ୍ଣିନ୍ତରେ ରହିଥାନ୍ତି ସେଠାରେ ଯେ ଯାର ।
ପଞ୍ଚ ଅର୍ବୁଦ ଘର ବସିଛି ସେଠାରେ
କୁବେର ଭଣ୍ଡାର ଦେଖାଯାନ୍ତି ଯେ ଯାହାରେ
ରୋଗ ଶୋକ ବିବର୍ଜିତ ଦରିଦ୍ର ଭିକ୍ଷାଣୀ
ଧର୍ମ ଆଶ୍ରେ ପ୍ରାଣୀମାନେ ଚହିଁ ସଦା ବସି ।
ଯେବଣ ଭୁବନେ ଯମ କରେ ଭୟ ଖ୍ୟାତି
ଯାର ନାମ ସ୍ମରନ୍ତେ ଲଭି ମୁକ୍ତି ଗତି ।
ସେ ସ୍ୱାମୀ ଦେହବନ୍ତରେ ବଜେଜ୍ୟେ ଆପଣ
ପରିବାଇପଣେ ଖଟିଥାନ୍ତି ଦେବଗଣ ।
କାମଦେବ ପ୍ରାୟ ଜନେ ଦ୍ୱିସି ଦିବ୍ୟଶୋଭା
ବୃଦ୍ଧଜନମାନେ ଯହିଁ ହୁଅନ୍ତି ନବଯୁବା ।
ଯେ ଯାହାର ଶବ୍ଦ ଶୁଭ ତୋଷ ନରନାରୀ
ଏକୁ ଆରେଜର କଛ ନାହିଁ ଯେ କାହାର ।
ପ୍ରାଣୀମାନେ ନେଉଥାନ୍ତି ଯେତେବେଳେ ଯାହା
ଚନ୍ଦ୍ରକର ପୁରୁଷ ଯେ ଦିଅୁଥାନ୍ତି ତାହା ।
ନଟ ନଟିକା ଚନ୍ଦନ ଦ୍ୟନ୍ତି ଶିବ ଆଳେ
ସେ ଛା ଆଖଡ଼ା କରନ୍ତି ମଧ୍ୟାହ୍ନର ବେଳେ ।
ଗାଉଥନ୍ତି ଗୀତ ବିପ୍ରେ କରି ବେଦଧ୍ୱନି
ସୁନ୍ଦରପଣ ହାଉକା ମୋହେ ପୁର ଜନ ।
ଆମ୍ବ ପଣସ ଗୁବାକ ରମ୍ଭା ନଡ଼ୀକାଳ ।
ଫଳଭରେ ତରୁଗଣେ ଲୋଟନ୍ତି ଭୂତଳ ।
କେନ୍ଦୁ କପିତ୍ଥ ପାଟଳୀ ଯେ ପାରିଜାତକ
ଦାଡ଼ିମ୍ବ ଚେଣ୍ଡି ଖଜୁରୀ ତାଳମ୍ବାଦ ବୃକ୍ଷ ।
ନାରଙ୍ଗ ଟଭା ଲେମ୍ବୁ ଯେ ଉଆଉ କରୁଣା
ଜାଇ ଯୂଇ ମଲ୍ଲୀ ଚମ୍ପା ଅଶୋକ ଦୟଣା ।
ଚଳର ତରାଟ ବୃକ୍ଷ ମନ୍ଦାର ସେବତୀ
କନିଅର କୁରୁବେଳି ଆଦ ନାନାଜାତି ।
କଦମ୍ବ ଧତୁରା କଆ କେତକୀ ମାଳତୀ
କୋକନଦ ଉତପଳ ଯେ ପୁଷ୍ପେ ନାନା ଜାତି
ଚମ୍ପକ ଚନ୍ଦ୍ରାବଳୀସେ କୋରୁଆ ନକୁଳ
ଏମନକ ନାନା ପୁଷ୍ପେ ଶୋହେ ପରିମଳ ।
ବୃକ୍ଷଙ୍କ ଚୌପାଶେ ପକ୍ଷୀ କ୍ରୀଡ଼ା କୁତୁହଳେ
କରନ୍ତି ପକ୍ଷୀଏ କୋଳାହଳ ଏକମେଳେ ।

ଅନନ୍ତରେ ଅଲୌକିକ ଥାନ୍ତି ସର୍ବେ ଜାଣ
ମୁକ୍ତି ଲୋକର ଗଣନା ହୁଅନ୍ତି ସର୍ବଜନ ।
ବସୁଦେବ ଆଦି କରି ସର୍ବ ଯଦୁବଳ
ଉଗ୍ରସେନ ଆରାଧନା କରନ୍ତି ସକଳ ।
ଧନ୍ୟ ଦ୍ୱାରକା ନଗର ନରନାରୀଗଣ
ଧନ୍ୟ ସେହି କୃଷ୍ଣଚନ୍ଦ୍ର ମୋହି ତାଙ୍କ ମନ ।
ସନକାଦି ମୁନି ଯାକୁ କରୁଥାନ୍ତି ଚିନ୍ତା
ପରମ ନିରଞ୍ଜନ ଯେ ହୋଇ ଦେହବନ୍ତା ।
ଶୁଣ ହେ ପରୀକ୍ଷିତ ରାଜା ଭଣି ଶୁକବ୍ରହ୍ମା
କହନ୍ତେ ନ ସରେ ସେହି ଦ୍ୱାରକା ମହିମା ।
ଆପଣେ ଶ୍ରୀବିଶ୍ୱକର୍ମା ବହୁ ମୂର୍ତ୍ତି ଧରି
ପୁର ନିର୍ମାଣ କରନ୍ତି ଭିନ୍ନ ଭିନ୍ନ କରି ।
ସାଧୁ ସେ ନିର୍ମଳ ଭୂମି ଦ୍ୱାରକା ନଗର
ପ୍ରତ୍ୟକ୍ଷରେ ବିଜେ ଯହିଁ ଦେବ ଚକ୍ରଧର ।
ନିରନ୍ତର ବିଷ୍ଣୁ ଚକ୍ର ଦ୍ୱାରକାରେ ବୁଲି
ଦୁର୍ବୁଦ୍ଧି ଦୁରାତ୍ମା ପୁଣ ନାହିଁ ତ କାହାରି ।
ପାତ୍ର ମନ୍ତ୍ରୀ ପୁରରକ୍ଷିତ ଯେତେ ରାଜବନ୍ଧୁ
କହନ୍ତେ ଅନ୍ତ ନାହିଁ ତା ଅଚଳ ସମୃଦ୍ଧି ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ଶୁଭେ ଧନ୍ୟବାଣୀ
ଯାଦବ ହେଲେ ଦ୍ୱାରକା ଇନ୍ଦ୍ର ଚକ୍ରପାଣି ।
ବ୍ରହ୍ମଲୋକ ଭୁବଲୋକ ଭୂଲୋକେ ଜାଣିଲେ
ବ୍ରହ୍ମାଣ୍ଡରେ ଋଷି ମୁନି ଯେତେ ଯହିଁ ଥିଲେ ।
ଶ୍ରୀକୃଷ୍ଣଙ୍କୁ ଦେଖିବାକୁ ସକଳେ ଆଇଲେ
ମହା ମହା ଋଷିମାନେ ତପ ତେଜ ଭରେ ।
ଶୁକ ସନକ ବଶିଷ୍ଠ ବିଶ୍ୱାମିତ୍ର ବ୍ୟାସ
ଭୃଗୁ ଭାର୍ଗବ ଚ୍ୟବନ ଗୌତମ ଲୋମଶ ।
ଅଗସ୍ତି ଅଙ୍ଗିରା ପୁଲସ୍ତି ବ୍ରହ୍ମବେତ୍ତା
ବିଭାଣ୍ଡକ ବିଶ୍ରବା ଯେ ଋଷି ମହାଜ୍ଞାତା ।
ସନନ୍ଦ ଶ୍ରୀ ସନାତନ ଜୈମିନି ମହର୍ଷି
ଜମଦଗ୍ନି କପିଳ ଯେ ବୃଦ୍ଧାଶ୍ରବା ଋଷି ।
ପୁଲସ୍ତି ଅଷ୍ଟାବକ୍ର ସୁମନ୍ତକ ମୁନି
ଅନନ୍ତ ଆସୁରି କାଶ୍ୟପ ଜ୍ଞାନୀ ।
ଗାର୍ଗବ ରୋମଶ କଣ୍ୱ ବିଶ୍ୱାବସୁ ଆଦି
କୁମ୍ଭଋଷି ଦୁର୍ବାସା ଯେ ମୌନତପ ଭେଦି
ରାଜର୍ଷି ବ୍ରହ୍ମର୍ଷି ନାରଦର୍ଷି ଦେବର୍ଷି
ଏକଦଣ୍ଡୀ ଦ୍ୱିଦଣ୍ଡୀ ଯେ ତ୍ରିଦଣ୍ଡୀ ସନ୍ନ୍ୟାସୀ ।

ମନପବନ ଦଣ୍ଡକୁ ସର୍ବେ ଆରୋହଣ
ରାମକୃଷ୍ଣେ ଦେଖିବାକୁ କଲେ ଆଗମନ ।
କପିଳାଶ୍ରମ କନ୍ଦରରେ ବାର୍ତ୍ତା ପାଇ ହର
ବୃଷଭ ଆରୋହି ଆସି ମିଳିଲେ ସତ୍ୱର ।
ହିମବନ୍ତର ନନ୍ଦିନୀ ଉମା ସଙ୍ଗେ ଘେନି
ସଙ୍ଗରେ ଅଛନ୍ତି ନନ୍ଦୀ ଭୃଙ୍ଗୀ ଏ ବେନି ।
ବାମ ଡାହାଣେ ଚଳନ୍ତି ସର୍ବ ଦେବଦେବୀ
ରାମକୃଷ୍ଣ ଦେଖିବାକୁ ଆସିଲେ ସେ ଶିବ ।
ମୂଷିକ ବାହାନେ ବସି ପ୍ରଭୁ ଗଣପତି
କାର୍ତ୍ତିକେୟ ସଙ୍ଗେ ଘେନି ଚଳି ସେ ଯାଆନ୍ତି
ଶଚୀ ସହ ବଜ୍ରପାଣି ଚଢ଼ି ଐରାବତ
ଦେଖିବା ପାଇଁକି ସେହୁ ହୋଇଲେ ଉନ୍ମତ ।
ଯମ କୁବେର ନୈର୍ଋତ ଆବର ବରୁଣ
ଧ୍ରୁବ ଅଙ୍ଗିରସ ଆଦି ବୃହସ୍ପତି ଗଣ ।
ଶୁକ୍ର ଶନୈଶ୍ଚର ରବି ମଙ୍ଗଳ ଯେ ବୁଧ
ସାତବାର ସତାଇଶ ନକ୍ଷତ୍ର ବିବୁଧ ।
ଚନ୍ଦ୍ର ସୂର୍ଯ୍ୟ ଆଦି କରି ଅମର ସମୂହ
ଗଣ ତେତିଶ ଦେବତା କରିଲେ ବିଜୟ ।
ପିତାମହ ଲୋକେ ବାର୍ତ୍ତା ପାଇ ବେଦବର
ପରମହଂସ ବାହାନେ ଚଳେ ଧାତୃକାର ।
ଚୌଷଠି ଅର୍ବୁଦ ଦ୍ୱିଜ ସଙ୍ଗତରେ ଘେନି
ସାମଗାୟନ କରିଣ ଯାନ୍ତି ପଦ୍ମଯୋନି ।
ତପୀ ଜପୀ ସିଦ୍ଧମୁନି ଯେତେକ ମହର୍ଷି
ଭୂଲୋକ ଯେ ଭୁବଲୋକ ଆଦି ସ୍ୱର୍ଗବାସୀ ।
ଶ୍ରୀହରି ଦେଖିବା ପାଇଁ ସମସ୍ତଙ୍କ ମନ
ଯେ ଯାହା ଯାନ ଚଢ଼ିଣ ଚଳିଲେ ବହନ ।
ଦେଖା ଦରଶନ ଧନ ଦେବେ ଯେ ଯାହାରେ
ସମସ୍ତେ ମିଳିଲେ ଯାଇ ଦ୍ୱାରକା ନଗରେ ।
ସକଳ ଯାଦବ ସଙ୍ଗେ ଘେନି ଦେବ ହରି
ସୁଧର୍ମା ସଭାରେ ଆସି ବିଜୟେ ମୁରାରି ।
ଶଙ୍ଖ ଚକ୍ର ଗଦା ଅବ୍ଜ ଶୋଭେ ଚାରିଭୁଜ
ଶ୍ରୀଲକ୍ଷ୍ମୀବଲ୍ଲଭ ନାଥ ହେ ଦେବାଧିରାଜ ।
ଦେବତାଙ୍କ ଆଗମନ କୃଷ୍ଣଚନ୍ଦ୍ର ଦେଖି
ଧାତୃକାରେ ଉଠିଲେ ସେ ଆସନ ଉପେକ୍ଷି ।
କୃତାଞ୍ଜଳି ଦ୍ୱାରକାକୁ ଆସନ୍ତି ତ୍ରିଦଶ
ଥୋକେ ଦୂରୁ ପାଦ ଛୁଟିଣ ଦେଲେ ପ୍ରବେଶ ।

ଦେଖିକରି ଗଙ୍ଗାଧରି ବୃଷଭୁ ଉତ୍ତୁରି
ପାର୍ବତୀଙ୍କୁ ସଙ୍ଗେ ଘେନିଯାନ୍ତି ଶୂଳକରି ।
ରାମକୃଷ୍ଣ ଆଗମନ ଦେଖି ବେଦଧର
ହଂସ ପିଠିରୁ ଓହ୍ଲାଇ ଯାନ୍ତି ଧାଡିକାର ।
ଐରାବତରୁ ଉତ୍ତୁରି ଦେବ ଶଚୀପତି
ପଦଗାମୀ ହୋଇକରି ଚାଲି ସେ ଯାଆନ୍ତି ।
ଏପରି ଦିଗପାଳ ଆଉ ଯେତେ ଲୋକପାଳ
ଯେଝା ଯାନ ବାହାନକୁ ତେଜିଣ ସକଳ ।
ସମସ୍ତେ ଠୁଳ ହୋଇଲେ ଗୋମତୀର କୂଳେ
ରାମକୃଷ୍ଣ ପ୍ରଣମିଲେ ବ୍ରହ୍ମା ପାଦତଳେ ।
ଈଶ୍ୱରଙ୍କୁ ରାମକୃଷ୍ଣ ହୋଇ ପ୍ରଣିପତ୍ୟ
ଯେଝାରୂପେ ମାନ୍ୟକଲେ ଦେବଙ୍କୁ ସମସ୍ତ ।
ସ୍ୱସ୍ତି କଲ୍ୟାଣ କରିଲେ ସନକାଦି ବୃନ୍ଦ
ମୁନିଙ୍କୁ ପ୍ରଣମିଲେ ସେ ଦେବ ଆଦିକନ୍ଦ ।
ଉଗ୍ରସେନ ଆଦିକରି ଯଦୁବଂଶ ଯେତେ
ଶୁକ ସନକାଦି ମୁନି ପ୍ରଣମି ସମେତେ ।
ସମ୍ଭବରେ ବିଜେ କଲେ ସୁଧର୍ମା ସଭାର
ଜଗନ୍ନାଥ ମୁଖସ୍ତୁତି ଭଣି ବେଦବର ।
ହେ ଦେବ ପୁରାଣପୁଂସ ତୁମେ ଦେବରାଜା
ସନକ ଆଦି କରନ୍ତି ତୋର ପାଦପୂଜା ।
ଜଳ ସ୍ଥଳ ଅନଳରେ ସବୁଠାରେ ବ୍ୟାପି
ଅନନ୍ତ ମାୟାଧରି ତୁ କାମକଳ୍ପ ରୂପି ।
ଏ ବିଶ୍ୱ ସଂସାର ତୁମ ଖେଳଘର ପିନା
ସ୍ୱୟଂ ଶିବ ତୋ ମାୟାରେ ହେଉଥାନ୍ତି ବଣା
ଅନାଦି ଅଚଳ ତୁମେ ପୁରାଣ ପୁରୁଷ
ଶ୍ରୀ ଜଗଦ୍‌ବନ୍ଦନ ନାଥ ଅନାଦି ରମେଶ ।
ଶାରଦାବଲ୍ଲଭ ତୁମେ ଲକ୍ଷ୍ମୀ ପ୍ରାଣପତି
ଅଶେଷ ବ୍ରହ୍ମାଣ୍ଡ ନାଥ ଧରି ବହୁ ମୂର୍ତ୍ତି ।
ଦିନବାର ନକ୍ଷତ୍ରାଦି ତିଥି ବାର ମନୁ
ସଦାବେଳେ ତୁମେ କଳପନା କାମଧେନୁ ।
କଳ୍ପ କଳ୍ପାନ୍ତେ ବିଦିତ ଅଟେ ତୁମ୍ଭ ନାମ
ପୃଥିବୀକୁ ରଚିବାକୁ ତୁମେ ସିନା କ୍ଷମ ।
ବ୍ରହ୍ମାଙ୍କ ଦିବସେ ଆଠସହସ୍ର ଯୁଗାନ୍ତେ
ଏହିପରି ଶତସହସ୍ର ଷାଠିଯୁଗ ଅନ୍ତେ ।
ଚଉଦ ମନୁରେ ଚୌଦ ଇନ୍ଦ୍ର ଯାଏ ମରି
ଦ୍ୱାଦଶ ଅବତାରକୁ ତୁମେ ଦେହଧାରି

ପୃଥ୍ୱୀ ଭାରଭର ଅର୍ଥେ ମର୍ତ୍ତ୍ୟରେ ବିଜୟେ
ବାଳମୁକୁନ୍ଦ ରୂପକୁ ଧରି କରି କ୍ଷୟେ ।
ଏହି ଦ୍ୱାରକା ଭୁବନେ କୃଷ୍ଣରୂପ ଧରି
ସର୍ବଦାକାଳେ ବିହରୁ ତୁହି ନରହରି ।
ଏ ଯାତବଂଶ ଯାଦବ ସଙ୍ଗେ ତୋର ଥାନ୍ତି
ମ୍ଳେଚ୍ଛାଦି ସଂହାର ତୁମେ କଲୁ ଯଦୁପତି ।
କୋଟିସ୍ୱର୍ଗ ଦ୍ୱାରକାକୁ ନୁହଇଟି ସମ
ରୋଗ ଶୋକ ବିବର୍ଜିତ ନ ପଶଇ ଯମ ।
ସମସ୍ୟୁକ ଭୋଗ ଦେବ କରି ତୁମେ ଏଥି
ପୁତ୍ର ନାତି କୁଟୁମ୍ବ ଯେ ହୁଅନ୍ତି ଅପ୍ରମିତ ।
ଶଙ୍ଖ ନିଧି ପଦ୍ମନିଧି ପୁରେ ବିଦ୍ୟମାନ
ବାଳ ବୃଦ୍ଧ ଯୁବା କେହି ନାହିଁ ଦୁଷ୍ଟଜନ ।
କୁବେର ପରାୟେ ସର୍ବେ ଅତି ଦଳବନ୍ତ
ଶତ୍ରୁର ଭୟ ଏଠାରେ ନାହିଁ ଯେ କଦାଚିତ ।
ମହାପ୍ରଳୟେ ଏ ପୁର ନୁହଇ ବିନାଶ
ତେତିଶ ଦେବ ଦେବୀଙ୍କ ଅଟେ ଏହୁ ବାସ ।
କହନ୍ତେ ନ ସରଇ ଏ ଦ୍ୱାରକା ମହିମା
ଶୁଣ ହେ ପରୀକ୍ଷ ରଜା ଭଣିଲେ ଶୁକବ୍ରହ୍ମା ।
ଏହିପରି କୁବେରାଦି ଦେବେ ଠୁଳ ହୋଇ
ଅଭିଷେକ କରିଲେ ସେ କୃଷ୍ଣଚନ୍ଦ୍ର ଯାଇ ।
ସରସ୍ୱତୀ ଯମୁନା ଯେ ନର୍ମଦା କାବେରୀ
ସରଯୂ ହନୁମତୀ ଏ ନଦୀ ଆଦିକରି ।
ବ୍ରାହ୍ମଣୀ ଗୋମତୀ ତେହାପୃଳା ବୈତରଣୀ
ଗନ୍ଧବତୀ ଗଣ୍ଡକି ଯେ ଆଉ କୃଷ୍ଣାବେଣୀ ।
ସାଗର ଚନ୍ଦ୍ରଭାଗାଦି ନାନାତୀର୍ଥ ଜଳ
ପୁଷ୍କର ଠୁଳ କରିଲେ ଆଣିଣ ସକଳ ।
ଅଷ୍ଟରତ୍ନ ପୂର୍ଣ୍ଣକୁମ୍ଭେ ପୁରାଇଣ ନୀର
ଅଭିଷେକ କଲେ ନେଇ ଶ୍ରୀକୃଷ୍ଣଙ୍କ ଶିର
ସନକ ନନ୍ଦନ ସନାତନ ମହାମୁନି
ଓଁକାର ସାମ ଗାୟନ ଉଚ୍ଚେ କରି ପୁଣି ।
ଡାହାଣାବର୍ତ୍ତ ଶଙ୍ଖରେ ଜଳ ତିଳ ଭରି
ସପ୍ତଋଷି ଅଭିଷେକ କଲେ ଶିରେପରି ।
ଯମ ନୈଋତ ଆଉ ବରୁଣ ମଘବା
ଛତ୍ର ଚାମର ଆଲଟ ଧରି ହେଲେ ଉଭା ।
ଗଣ ଗନ୍ଧର୍ବ ଅପସରା ଆଦି ଯେତେ
ନଟ ନାଟ୍ୟକାର ଅଗ୍ରେ ମିଳି ନୃତ୍ୟଗୀତେ ।

ବଂଶୀ ବୀଣା ମରଦଳ ମହୁରୀ କାହାଳ
ପଞ୍ଚମ ସ୍ୱରେ ବଜାନ୍ତି ହୋଇ କୁତୁହଳୀ ।
ଦୁର୍ବାକ୍ଷତ ଚନ୍ଦ୍ରାଳକୁ ଦ୍ୟନ୍ତି ମହାକାଳ
ଅପାର ଆନନ୍ଦ ମନେ ବହି ମୁନିକୁଳ ।
ଅଷ୍ଟରତ୍ନ ବେଦୀପରେ ବସି ଦେବରାୟେ
ପାରୁଶେ ବେଢ଼ି ଅଛନ୍ତି ସର୍ବ ଦେବତାଏ ।
ଚୌରାଶୀ କୋଟି ଯାଦବ ଉଗ୍ରସେନ ମୁନେ
ବସୁଦେବ ସହିତରେ ଜୟ ବେଦୀ ତଳେ ।
ଛତ୍ର ଅବଲମ୍ବନ ଚାମର ହଡ଼୍ପ ଧୂପକାଠି
ଘଣ୍ଟଣି ସାମନ୍ତ ସର୍ବେ ଛନ୍ତି ତହିଁ ଖଟି ।
ଆପେ ବ୍ରହ୍ମା ହୋଇଲେକ ଆଚାର୍ଯ୍ୟ ବରଣ
ଚତୁର୍ମୁଖେ ଚତୁର୍ବେଦ କରନ୍ତି ଗାୟନ
ଗଉରୀ ଅକ୍ଷତ ଆଣି ନଉଡ଼ନ୍ତି ମାଥ
ଅଭିଷେକ ହୋଇଲେ ଯେ ତହିଁ ଜଗନ୍ନାଥ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚତୁର୍ଭୁଜ
ଆନନ୍ଦକନ୍ଦ ଜ୍ୟୋତି ଯା ଜିତତ ସ୍ୱତେଜ ।
ମୁକୁଟ ଯେ କର୍ଣ୍ଣାଞ୍ଚଳ ସୀମନ୍ତନୀ ବଳା
ଲୁଳିତ ବକ୍ଷ ସ୍ଥଳରେ ଶୋଭେ ରତ୍ନମାଳା ।
ବଦ ମୁଦ୍ରିକା କଙ୍କଣ ବଳୟୁର କାନ୍ତି
ଶ୍ରୀନାରାୟଣ ଅଙ୍ଗରେ ଅତିଶୋଭା ପାନ୍ତି ।
ମହେନ୍ଦ୍ରଦଳ ପରାୟେ ରାଜେ ଦିବ୍ୟବପୁ
ଦନୁଜାନ୍ତକା ରୂପକୁ ଧରି କଂସରିପୁ ।
ଗଣ ଗନ୍ଧର୍ବ ଦେବତା ଦେଖି ସ୍ତୁତିକଲେ
ଯେଝା ଅନୁରୂପେ ଉପହାରମାନ ଦେଲେ ।
ଦଶସହସ୍ର ବିଦ୍ୟାଧରୀ ସୁନ୍ଦରୀ ରମଣୀ
ବେଧାତଳେ ଉତ୍ସୁକରେ ସମର୍ପିଲେ ଆଣି ।
ଜଗତମୋହିନୀ ବାମାରୂପେ ଜଗଜ୍ଜିଣା
ସୁନ୍ଦରୀପଣରେ ସେହୁ ଏକୁ ଏକ ଜଣା ।
ଜଳ ଅକ୍ଷତ ଦେଲେ ଯେ ଜଳସ୍ତମ୍ଭ ମଣି
ନବ ନାଟକ ବିଦ୍ୟାକୁ ଦେଲେ କୁଶପାଣି ।

ନୈଋତ ଦେଲେ କମଠ ପାଶାଙ୍କୁଶ ଆଣି
ଧନକର ସମର୍ପିଲେ ନେଇ ଦିବ୍ୟମଣି ।
କୁବେର ଦେଲେ ଅମର ଭଣ୍ଡାର ବାହୁଟି
ବୈଶ୍ୱାନର ସମର୍ପିଲେ ଶ୍ୱେତ ମୁଦଗୋଟି ।
ପବନ ଦେବତା ଦେଲେ ମନଯାନ ଖଣ୍ଡ
ଗୋମାତ କପିଳା ଦେଲେ କାମଧେନୁ ଦଣ୍ଡ ।
କୃତାନ୍ତକ ଦେବ ଦେଲେ ମୃତ୍ୟୁଞ୍ଜୟ ମଣି
ଜଳଧାର ନାଗଚକ୍ର ଦେଲେ ମେଘ ଆଣି ।
କୋଟି ବାରସ୍ୱର୍ଗ ପରି ଦିଶେ ସେ ନଗର
କେ ବୋଲଇ ବ୍ରହ୍ମଲୋକ ନୁହେ ପଟାନ୍ତର ।
କେଉଁ ଦେବତା ବିଜୟ କଲେ ଆସିକରି
କେହୁ ବୋଲଇ ବୈକୁଣ୍ଠ ନୁହେଁ ଏହାକୁ ସରି
ବର୍ଣ୍ଣନ୍ତି ଗୋବିନ୍ଦଙ୍କ ଅଭିଷେକ ବିଧି
ବ୍ରହ୍ମା ଇନ୍ଦ୍ର ଗଙ୍ଗାଧର କୋଟିଦେବ ସିଦ୍ଧି ।
ଯେ ଯାହା ଆଶ୍ରମେ ତହୁଁ ଗଲେ ଦେବଗଣେ
ଆହ୍ଲାନ ମୌଳନ୍ତେ ଆସି ସେ ଯାଦବମାନେ
ଉଗ୍ରସେନ ଆଦିକରି ସର୍ବ ଯଦୁବୃନ୍ଦ
କୃଷ୍ଣ ମହିମା ଦେଖିଣ ପରମ ସାନନ୍ଦ ।
ଜଗନ୍ନାଥ ବିଜେ କଲେ ଯାଇ ଅନ୍ତଃପୁରେ
ବଳରାମ ବିଜେକଲେ ଆପଣା ମନ୍ଦିରେ ।
ନିଜ ପୁରକୁ ଚଳିଲେ ସେ ଯାଦବମାନ
ଉଗ୍ରସେନ ଆଦିକରି ଯେତେ ଯଦୁଗଣ ।
ନିଜପୁରେ ପ୍ରବେଶିଲେ ସକଳ କାମିନୀ
ହରି ନାମେ ବନ୍ଦାଅନ୍ତି ଦୁର୍ବାକ୍ଷତ ଘେନି ।
ଅଟଳାର୍ଦ୍ଧେ ଦ୍ୱାରକାରେ ରହି ଦେବରାୟେ
ଶୁଭ ବାରତା ଶୁଣଇ ବ୍ରହ୍ମଲୋକ ଯାଏ ।
ଇତି ଶିରୀ ହରିବଂଶ ଗ୍ରନ୍ଥପୁଣ୍ୟମୟେ
ଇଦଂ ଅଷ୍ଟାଦଶ ଅଧ୍ୟା ସମାପତ ହୁଏ ।
ଶୁକବ୍ରହ୍ମାଏ କହିଲେ ପରୀକ୍ଷିତ ଶୁଣି
କୃଷ୍ଣ ପ୍ରସାଦେ ଅଚ୍ୟୁତ ଦାସ କବି ଭଣି ।

## ହରିବଂଶ ପଞ୍ଚମଖଣ୍ଡ ସମାପ୍ତ



ମୁଦ୍ରାକର—ଶଶିକାପ୍ରିଣ୍ଟିଂପ୍ରେସ, ଅଲିଶାବଜାର, କଟକ-୨

# ବିଜ୍ଞାପନ

ଅଗ୍ରୀମ ସହ ଅର୍ଡ଼ର ପାଇଲେ ସମସ୍ତ ପ୍ରକାର ପୁସ୍ତକ ବେପାରୀମାନଙ୍କୁ ବଜାର ଅପେକ୍ଷା ସୁବିଧା କମିଶନ ଦେଇ ରେଳଡାକ ଯୋଗାଇ ଦେଉ ।

| ପୁସ୍ତକ | ମୂଲ୍ୟ |
|---|---|
| ଶାରଳା ମହାଭାରତସେଟ୍ | ଟ ୧୫୦-୦୦ |
| ଆଦ୍ୟପର୍ବ | ଟ ୨୨-୦୦ |
| ମଧ୍ୟପର୍ବ | ଟ ୨୫-୦୦ |
| ସଭାପର୍ବ | ଟ ୨୪-୦୦ |
| ବନପର୍ବ | ଟ ୨୦-୦୦ |
| ବିରାଟ ପର୍ବ | ଟ ୧୨-୦୦ |
| ଉଦ୍‌ଯୋଗ, ଭୀଷ୍ମ, ଦ୍ରୋଣ ସପ୍ତପର୍ବ | ଟ ୨୭-୦୦ |
| କର୍ଣ୍ଣଠାରୁ ସ୍ୱର୍ଗାରୋହଣ ଦଶପର୍ବ | ଟ ୨୦-୦୦ |
| ରାମାୟଣ (ଭଗବତ ଦାସ୍) | ଟ ୭୫-୦୦ |
| ଆଦ୍ୟକାଣ୍ଡ | ଟ ୧୦-୦୦ |
| ଅଯୋଧ୍ୟା କାଣ୍ଡ | ଟ ୭-୦୦ |
| ଆରଣ୍ୟ କାଣ୍ଡ | ଟ ୭-୦୦ |
| କିଷ୍କିନ୍ଧ୍ୟା କାଣ୍ଡ | ଟ ୬-୦୦ |
| ସୁନ୍ଦର କାଣ୍ଡ | ଟ ୭-୦୦ |
| ଲଙ୍କା କାଣ୍ଡ | ଟ ୨୫-୦୦ |
| ଉତ୍ତର କାଣ୍ଡ | ଟ ୧୬-୦୦ |
| ରାମାୟଣ (ଜଗମୋହନ) | ଟ ୯୦-୦୦ |
| ଶିବ ପୁରାଣ ସେଟ୍ ଖଣ୍ଡ | ଟ ୪୫-୦୦ |
| ନୃସିଂହ ପୁରାଣ ଖଣ୍ଡ | ଟ ୭୦-୦୦ |
| ବ୍ରହ୍ମବୈବର୍ତ୍ତପୁରାଣ ସେଟ୍ | ଟ ୬୦-୦୦ |
| ଶ୍ରୀମଦ୍ଭାଗବତ ସେଟ୍ | ଟ ୬୫-୦୦ |
| ହରିବଂଶ ସେଟ୍ | ଟ ୭୦-୦୦ |
| ବିଲଙ୍କା ରାମାୟଣ ସେଟ୍ | ଟ ୧୨-୦୦ |
| ବୈଦେହୀଶ ବିଳାସ ,, | ଟ ୫୦-୦୦ |
| ବିଷ୍ଣୁ କେଶରୀ ପୁରାଣ ,, | ଟ ୪୫-୦୦ |
| ଚୈତନ୍ୟଭାଗବତାମୃତ,, | ଟ ୨୫-୦୦ |
| ମନୁ ସଂହିତା (ବଡ଼ାଇ) | ଟ ୩୫-୦୦ |
| ବଡାସ୍ୱଳଲ ଗୀତା ,, | ଟ ୬୦-୦୦ |
| ଆୟୁର୍ବେଦପ୍ରବେଶିକା ,, | ଟ ୩୫-୦୦ |
| ଜୈମିନି ଭାରତ ,, | ଟ ୧୮-୦୦ |
| ବେଣୁଧରପଦ୍ୟାବଳି ,, | ଟ ୩୦-୦୦ |
| ବଡ଼ାସ୍ୱ କର୍ମକାଣ୍ଡ ,, | ଟ ୩୫-୦୦ |
| ଯଜୁର୍ବେଦନିତ୍ୟକର୍ମପଦ୍ଧତି | ଟ ୧୨-୦୦ |
| କଣ୍ଠୋର ନିତ୍ୟକର୍ମ ପଦ୍ଧତି | ଟ ୭-୦୦ |
| ବେଦାନ୍ତ ସାର | ଟ ୮-୦୦ |
| ଗଦାଧର ପଦ୍ଧତି ଅର୍ଥସହ | ଟ ୪୦-୦୦ |
| ପରାଶର ସଂହିତା | ଟ ୧୨-୦୦ |
| ଋଗ୍ବେଦ ଓଡ଼ିଆ ସରଳାର୍ଥ ସହ | ଟ ୧୦୦୦-୦୦ |

—ପ୍ରାପ୍ତି ସ୍ଥାନ—

**ଧର୍ମଗ୍ରନ୍ଥ ଭଣ୍ଡାର**

ପ୍ରୋପ୍ରାଇଟର—ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ-୨